॥ ଓଁ ନମୋ ଭଗବତେ ବାସୁଦେବାୟ ॥

# ଭାବୁକ ଭାଗବତ

## ଷଷ୍ଠ ଖଣ୍ଡ

### ସ୍କନ୍ଧ: ଏକାଦଶ - ଦ୍ୱାଦଶ

ନକ୍ଷତ୍ର:
୨୪ଶ ଶତଭିଷା-୨୭ଶ ରେବତୀ

ପ୍ରକରଣ:
୩୭ଶ ସାଲୋକ୍ୟ ମୁକ୍ତି-୪୩ଶ ନିର୍ଗୁଣ ବ୍ରହ୍ମ

ପରିବେଷକ
ଅପଣ୍ଡିତ ଦାମୋଦର ବଳୀୟାରସିଂହ

# ଭାବୁକ ଭାଗବତ

ଅପଣ୍ଡିତ ଦାମୋଦର ବଳୀୟାରସିଂହ

ପ୍ରଥମ ସଂସ୍କରଣ: ଖ୍ରୀଷ୍ଟାବ୍ଦ - ୨୦୧୫
ବିକ୍ରମ ସମ୍ବତ୍- ୨୦୭୧

ପ୍ରକାଶକ:
ଶ୍ରୀମତୀ କଞ୍ଚନା ବଳୀୟାରସିଂହ
ନୀଳକଣ୍ଠନଗର ବ୍ରିଟ୍ କଲୋନି
ଷ୍ଟେଜ-୨, ଶ୍ୟାମ କୁଞ୍ଜମ୍
ବ୍ରହ୍ମପୁର (ଗଂଜାମ)
ମୋବାଇଲ: ୯୪୩୭୧୦୯୧୨୦

ଅକ୍ଷର: ସନ୍ତୋଷ ପଟ୍ଟନାୟକ
ପ୍ରଚ୍ଛଦ: କମ୍ପ୍ୟୁଟର ସଲ୍ୟୁସନ୍

ମୁଦ୍ରଣ : ମନମୋହନ ଟ୍ରେଡ଼ର୍ସ
ବାଲାଜୀପେଣ୍ଠ ଲେନ୍, ବ୍ରହ୍ମପୁର
ମୋ. : ୯୮୬୧୧୬୭୬୦୮

ମୂଲ୍ୟ: ଏକ ସେଟ୍ (ଛଅଖଣ୍ଡ) ପନ୍ଦରଶହ ଟଙ୍କା

# ଉତ୍ସର୍ଗ

ଯେଉଁ ଓଡ଼ିଆ ଭାଇ ଭଉଣୀମାନଙ୍କ ହାତକୁ ଏ ଗ୍ରନ୍ଥ ଖଣ୍ଡିକ ଯିବ ଏବଂ ସେମାନେ ଶ୍ରଦ୍ଧା ବିଶ୍ୱାସ ସହିତ ବିଷୟବସ୍ତୁକୁ ଶ୍ରବଣ, ମନନ, ବିଶ୍ଳେଷଣ କରି କିଂଚିତ ମାତ୍ରାରେ ହେଉ ପଛକେ ଦୁର୍ଲ୍ଲଭ କୃଷ୍ଣପ୍ରେମ ରସ ଆସ୍ୱାଦନ କରିପାରିବେ ତତ୍ ସହିତ ଧନଶ୍ରୀ ଆଶ୍ରୟ, ରୂପଶ୍ରୀ ଆଶ୍ରୟ, ବଳ ପରାକ୍ରମ ଆଶ୍ରୟ, ଦେବୀ ଦେବତା ଆଶ୍ରୟ ଇତ୍ୟାଦିର ଲୋଭ ତ୍ୟାଗ କରି କେବଳ କୃଷ୍ଣ ଓ କୃଷ୍ଣଭକ୍ତି ପ୍ରେମକୁ ସର୍ବଶ୍ରେଷ୍ଠ ଚରମ ପରମ ଆଶ୍ରୟ ମାନିନେବେ ସେହିଭଳି ଶ୍ରଦ୍ଧାଳୁ, ବିଶ୍ୱାସୀ ଭକ୍ତମାନଙ୍କ କରକମଳରେ ସାଦରେ ଅର୍ପଣ କରୁଛି ଗ୍ରନ୍ଥର ଏହି ଷଷ୍ଠ ଖଣ୍ଡକୁ ଅନ୍ୟମାନଙ୍କ ହୃଦୟରେ ସେଇ ଦୁର୍ଲ୍ଲଭ ପ୍ରେମ ରସକୁ ବିତରଣ କରିବା ଲକ୍ଷ୍ୟରେ ।

ଅଧମ ଲେଖକ

# ଭୂମିକା

ପଞ୍ଚମ ଖଣ୍ଡ ଭାଗବତରେ ଦଶମ ସ୍କନ୍ଧରେ ଶ୍ରୀକୃଷ୍ଣଙ୍କ ଗୋପୀ ଗୋପୀନାଥ ଲୀଳା ବର୍ଣ୍ଣନା ପରେ ପରେ ଭାଗବତଙ୍କ ସମାପ୍ତ ହୋଇଯିବା କଥା । ତଥାପି ଏକାଦଶ ସ୍କନ୍ଧରେ ଶୁକଦେବ ଗୋସ୍ୱାମୀ କୃଷ୍ଣତତ୍ତ୍ୱ ଓ ପଞ୍ଚମୁକ୍ତି ସବିସ୍ତାର ବର୍ଣ୍ଣନା କରିବା ସହିତ ଦ୍ୱାଦଶ ସ୍କନ୍ଧରେ ଦୁଇ ଆଶ୍ରୟ (ସଗୁଣ ସାକାର ଭଗବାନ ଏବଂ ନିର୍ଗୁଣ ନିରାକାର ଓଁକାର) ବର୍ଣ୍ଣନା କରିବାକୁ ଆଦୌ ଭୁଲି ନାହାନ୍ତି । ସେ ବିଷୟରେ ଜ୍ଞାନ ପ୍ରେମର ମଧୁର ମେଣ୍ଟା ଲଢ଼େଇ ଶ୍ରୀପାଦ ଶ୍ରୀଧର ସ୍ୱାମୀ ଏବଂ ପୁଷ୍ଟିମାର୍ଗର ପ୍ରତିଷ୍ଠାପକ ଆଚାର୍ଯ୍ୟ ଶ୍ରୀବଲ୍ଲଭଙ୍କ ମଧ୍ୟରେ  ମଧ୍ୟ ହୋଇଛି । ଶ୍ରୀଧରଙ୍କ ଇଷ୍ଟ ଶ୍ରୀନୃସିଂହ ନାରାୟଣ । ରାଧାକୃଷ୍ଣ ନୁହନ୍ତି । ସେ କିନ୍ତୁ ସାଧନା ଆରମ୍ଭ କରିଛନ୍ତି ଶ୍ରୀପାଦ ଆଦି ଶଙ୍କରଙ୍କ ଜ୍ଞାନ ମାର୍ଗରୁ । ପହଞ୍ଚିଛନ୍ତି ଜ୍ଞାନ, ସମାଧି, ନବଧା ବୈଧୀ ଭକ୍ତିର ପାଚେରୀ ଡେ଼ଇଁ ଗୋପୀ ପ୍ରେମରେ । ତାଙ୍କ ମତରେ ଯେ କୃଷ୍ଣ ପ୍ରେମ ସ୍ୱାଦ ଚାଖିଲାଣି ପାଞ୍ଚ ମୁକ୍ତି ତା ପାଇଁ ତୁଛା ଅବାନ୍ତର ପ୍ରସଙ୍ଗ । ସେଇ ଭକ୍ତି ମାର୍ଗରେ ଯାଇଥିବା ଅତିବଡ଼ି ଜଗନ୍ନାଥ ଦାସ ମଧ୍ୟ ଦ୍ୱାଦଶ ସ୍କନ୍ଧ ବର୍ଣ୍ଣିତ ଦୁଇ ଆଶ୍ରୟର ଓଡ଼ିଆ ଭାଗବତରେ ଆଦୌ ବର୍ଣ୍ଣନା ମଧ୍ୟ କରି ନାହାନ୍ତି । କାରଣ ସଗୁଣ ସାକାର ଭଗବାନଙ୍କ ପ୍ରେମ ନିକଟରେ ନିର୍ଗୁଣ ନିରାକାର ସାଧନାର ବ୍ରହ୍ମ ସମାଧି କଥା କଅଣ କହିବା ସାଲୋକ୍ୟାଦି ପାଞ୍ଚମୁକ୍ତିର ଲୋଭ ମଧ୍ୟ ବର୍ଜନୀୟ ।

ବାସ୍ତବତା ଦୃଷ୍ଟିରୁ ବିଚାର କଲେ ବୃନ୍ଦାବନ ଧାମର ପୂଜନୀୟ ଓଡ଼ିଆ ବାବା ଏବଂ ତାଙ୍କର ବିନୀତ ଶିଷ୍ୟ ସ୍ୱାମୀ ଅଖଣ୍ଡ ଆନନ୍ଦ ସ୍ୱରସ୍ୱତୀଙ୍କ ମତରେ ଅତ୍ୟନ୍ତ ଉଚ୍ଚ ଅଧିକାରୀ ଯଥା ଧ୍ରୁବ, ପ୍ରହ୍ଲାଦ, ମୀରା, ତୁକାରାମ, ନରସିଂହ ମେହେଟାଙ୍କ ସଦୃଶ କୋଟିଜନ୍ମର ଅର୍ଜିତ ସୁକୃତ ଫଳରେ ସେମାନେ ସ୍ୱତଃ ସଗୁଣ ସାକାର ଭଗବାନ କୃଷ୍ଣ ପ୍ରେମରେ ସାଧନା ଆରମ୍ଭରୁ କୃଷ୍ଣ ଶରଣାଗତିକୁ ଆଦରି ନିଅନ୍ତି ଓ ନିଜେ କରୁଥିବା ପୁରୁଷାର୍ଥକୁ ମଧ୍ୟ ଶ୍ରୀରାଧା ଗୋବିନ୍ଦଙ୍କ ଅହୈତୁକୀ କୃପା ବୋଲି ବିନା ତର୍କରେ

ମାନୁଥାଆନ୍ତି । ଏ ବିଷୟରେ ସେମାନଙ୍କର କେବେ ବି କିଛି ଶଙ୍କା ଉପୁଜେ ନାହିଁ । ଅନ୍ୟ କାହାରି ଶଙ୍କା ସମାଧାନ କରିବାକୁ ମଧ୍ୟ ସେମାନେ ଏଡ଼େଇ ଯାଆନ୍ତି । ଅନ୍ୟ ପକ୍ଷରେ ନିର୍ଗୁଣ ନିରାକାର ବ୍ରହ୍ମ ବା ଓଁକାର ବ୍ରହ୍ମଙ୍କୁ ଆଶ୍ରୟ କରିଥିବା ଅପେକ୍ଷାକୃତ ଅଳ୍ପ ବିଶ୍ୱାସୀ, ଅଳ୍ପ ଶ୍ରଦ୍ଧାଳୁ କିନ୍ତୁ ବିଶେଷ ମେଧାଯୁକ୍ତ, ବିଚାରଣଶୀଳ, ବିବେକୀ ତର୍କ ପ୍ରଧାନ ଜ୍ଞାନପଥ ଅବଲମ୍ବନ କରୁଥିବା ସାଧକ(ଯେଉଁମାନଙ୍କ ଶ୍ରଦ୍ଧା ବିଶ୍ୱାସ ଦୁର୍ବଳ) ସେଭଳି ଜ୍ଞାନ ମିଶ୍ରା ଭକ୍ତି ସାଧନାରତ ମସ୍ତିଷ୍କ ପ୍ରଧାନ ଏବଂ ବିଚାରଣଶୀଳ ହୋଇଥିବାରୁ ଧୀରେ ଧୀରେ ଭକ୍ତି କରି ପୁରୁଷାର୍ଥର ବନ୍ଧନରୁ ମୁକୁଳିଥାଆନ୍ତି ବୈଷ୍ଣବ ସେବା ଅଭିମୁଖୀ ହୋଇ । ତେଣୁ ସିନା ସେମାନଙ୍କର ଶରଣାଗତିରେ ବିଳମ୍ବ ହୁଏ ବୋଲି ଭଗବାନ ଗୀତାଗ୍ରନ୍ଥରେ ଶୁଣାଇଥିଲେ ବହୁନା ଜନ୍ମନାଂ ଅନ୍ତେ ଜ୍ଞାନବାନ ମାଂ ପ୍ରପଦ୍ୟନ୍ତେ ।

ଅତଏବ ଶେଷ ନିଷ୍କର୍ଷ ହେଲା ସକାମ ଜ୍ଞାନମାର୍ଗୀ ସାଧକ ପାଇଁ ବ୍ରହ୍ମ ଜ୍ଞାନର ଫଳ ମହାବୈକୁଣ୍ଠର ସାଯୁଜ୍ୟ ମୁକ୍ତି ହୋଇପାରେ । ପ୍ରେମ ବି ହୋଇପାରେ । ପୁଣି ଭକ୍ତିମାର୍ଗରେ ସକାମ ଭକ୍ତର ସାଧନା ନବଧା ବୈଧୀ ଭକ୍ତିରୁ ଆରମ୍ଭ ହୋଇ ବୈକୁଣ୍ଠର ସାଲୋକ୍ୟାଦି ଚାରି ମୁକ୍ତି ଦେଇପାରନ୍ତି । ସେମାନଙ୍କର ଜୀବନ ଅବଶ୍ୟ କୃତାର୍ଥ ହୁଏ । ଅନ୍ୟ ଯେଉଁ ସ୍ୱଳ୍ପ ସଂଖ୍ୟକ ନିଷ୍କାମଭକ୍ତ ମାନେ ଏହି ଚାରିମୁକ୍ତିଙ୍କର ପରାଙ୍ମୁକ୍ତ ହୁଅନ୍ତି ସେମାନେ କିନ୍ତୁ ଦୁର୍ଲ୍ଲଭ କୃଷ୍ଣପ୍ରେମ ବୈଷ୍ଣବ ସେବା ସ୍ତରକୁ ଉଠି ଜୀବନର ସର୍ବୋଚ୍ଚ ଲକ୍ଷ୍ୟ ପ୍ରାପ୍ତ ହୁଅନ୍ତି । ସୁତରାଂ ଶ୍ରୀମତ୍ ଭାଗବତ ଗ୍ରନ୍ଥଙ୍କର ରାଜମାର୍ଗ ଅଳ୍ପ ଜ୍ଞାନୀ, ଅଳ୍ପ ବୈରାଗ୍ୟଯୁକ୍ତ ଏବଂ ଅଳ୍ପ ସଂସାର ଆସକ୍ତ ସମସ୍ତ ସାଧକମାନଙ୍କ ନିମିତ୍ତ ସଦା ଉନ୍ମୁକ୍ତ । କାହା ପାଇଁ ଏହା ନିଷିଦ୍ଧ ନୁହେଁ ବରଂ ସବୁ ପ୍ରକାରେ ଆଦରଣୀୟ । ପରମ ବିଷୟୀ ଲୋକ ଯଦି ପୂର୍ବଜନ୍ମ ସୁକୃତରୁ ଭାଗବତ ଆଶ୍ରୟୀ ଲୋକଙ୍କର ସଂପର୍କରେ ଆସନ୍ତି ସେମାନେ ମଧ୍ୟ ଏହି ମାର୍ଗରେ ଫାଇଦା ଉଠାଇ ପାରନ୍ତି ଯାହା ଅତି ବିସ୍ତୃତ ରୂପରେ ବର୍ଣ୍ଣିତ ହୋଇଛି ଏହି ଲେଖକଙ୍କର ବୃନ୍ଦାବନ ଧାମ ମାହାତ୍ମ୍ୟ ନାମକ ସ୍ୱତନ୍ତ୍ର ଗ୍ରନ୍ଥରେ ।

ଭକ୍ତ ଭକ୍ତି ଗୁରୁ ଏବଂ ଭଗବାନଙ୍କର ଜୟ ହେଉ

ପରିବେଷକ

**ଅପଣ୍ଡିତ ଦାମୋଦର ବଳୀୟାରସିଂହ**

# ଦୈନିକ ପ୍ରାର୍ଥନା

ଆଚାର୍ଯ୍ୟଂ ମାଂ ବିଜାନୀୟାନ୍ ନ-ଅବମନ୍ୟେତ କର୍ହିଚିତ୍ ।
ନ ମର୍ତ୍ତ୍ୟ ବୁଦ୍ଧ୍ୟା-ଅସୂୟେତ ସର୍ବ ଦେବମୟୋ ଗୁରୁଃ ॥

ଭା-୧୧-୧୭-୨୭

ହେ ପରମ ପ୍ରିୟତମ ପୂର୍ଣ୍ଣତମ ଶ୍ରୀକୃଷ୍ଣ, ତୁମ୍‌ସେ ବିମୁଖ ହୋନେ କେ କାରଣ ଅନାଦି କାଲ ସେ ହମ୍‌ନେ ଅନନ୍ତ-ଅନନ୍ତ ଦୁଃଖ ପାୟେ ଏବଂ ପା ରହେ ହେଁ । ପାପ କରତେ କରତେ ଅନ୍ତଃକରଣ ଇତ୍‌ନା ମଲିନ୍ ହୋ ଚୁକା ହେ କି ରସିକୋଁ ଦ୍ୱାରା ୟହ ଜାନ୍‌ନେ ପରଭୀ କି ତୁମ୍ ଅପନି ଭୁଜାଓଁ କୋ ପସାରେ ଅପନି ବାତ୍ସଲ୍ୟମୟୀ ଦୃଷ୍ଟି ସେ ହମାରି ପ୍ରତୀକ୍ଷା କର୍ ରହେ ହୋ ତୁହ୍ମାରୀ ଶରଣ ମେଁ ନହିଁ ଆ ପାତା ।

ହେ ଅଶରଣ ଶରଣ, ତୁହ୍ମାରୀ କୃପା କେ ବିନା ତୁହ୍ମେ କୋଇ ଜାନ୍ ଭି ତୋ ନହିଁ ସକ୍‌ତା । ଐସି ସ୍ଥିତି ମେଁ ହେ ଅକାରଣ କରୁଣ ପତିତପାବନ ଶ୍ରୀକୃଷ୍ଣ, ତୁମ ଅପନି ଅହୈତୁକୀ କୃପା ସେ ହୀ ହମ୍‌କୋ ଅପନା ଲୋ ।

ହେ କରୁଣା ସାଗର, ହମ୍ ଭୁକ୍ତି ମୁକ୍ତି ଆଦି କୁଛ ଭି ନହିଁ ଚାହତେ । ହମେଁ ତୋ କେବଲ ତୁହ୍ମାରେ ନିଷ୍କାମ ଭକ୍ତି କୀ ହି ଏକମାତ୍ର ଚାହ ହୈ ।

ହେ ନାଥ୍ ଅପନି ବିରଦ (ପ୍ରତିଜ୍ଞା) କୀ ଔର ଦେଖକର ଇସ୍ ଅଧମକୋ ନିରାଶ ନ କରୋ ।

ହେ ଜୀବନ ଧନ୍, ଅବ୍ ବହୁତ ହୋ ଚୁକା, ଅବ୍ ତୋ ତୁହ୍ମାରେ ପ୍ରେମ କେ ବିନା ୟହ ଜୀବନ ମୃତ୍ୟୁ ସେ ଭୀ ଅଧିକ ଭୟାନକ ହୈ । ଅତଏବ

ପ୍ରେମ ଭୀକ୍ଷାଂ ଦେହି, ପ୍ରେମ ଭୀକ୍ଷାଂ ଦେହି, ପ୍ରେମ ଭୀକ୍ଷାଂ ହି ଦେହି ।

ବୋଲିଏ-

ସାକେତ ବିହାରୀ ଶ୍ରୀ ରାଘବେନ୍ଦ୍ର ସରକାର କୀ ଜୟ ।

ବୃନ୍ଦାବନ ବିହାରୀ ଶ୍ରୀ ଯାଦବେନ୍ଦ୍ର ସରକାର କୀ ଜୟ ।

ଶ୍ରୀମଦ୍ ସଦ୍‌ଗୁରୁ ସରକାର କୀ ଜୟ ।

-o-

# ସୂଚୀପତ୍ର

# ୨୪ଶ ନକ୍ଷତ୍ର - ଶତଭିଷା

# ଏକାଦଶ ସ୍କନ୍ଧଃ

## (ଅଧ୍ୟାୟ-୩୧, ଶ୍ଳୋକ-୧୩୬୭)

### ଲକ୍ଷଣ - ମୁକ୍ତି

### ପ୍ରକରଣ - ୩୭ ସାଲୋକ୍ୟ ମୁକ୍ତି (ଅଧ୍ୟାୟ ୧ମ - ୬ଷ୍ଠ)

## ଅଥ ୧ମ ଅଧ୍ୟାୟଃ

### (ଯଦୁବଂଶୀମାନଙ୍କୁ ଋଷିମାନଙ୍କ ଅଭିଶାପ)

ପ୍ରଶ୍ନ-୧. ଭକ୍ତକୁ ପ୍ରେମ ଦାନ ଶ୍ରୀକୃଷ୍ଣଙ୍କ ଧରା ଅବତରଣର ମୁଖ୍ୟ କାରଣ ଏବଂ ଦୁଷ୍ଟଦଳନ, ଧର୍ମ ସଂସ୍ଥାପନ ଆଦି ଗୌଣ କାରଣ । ନନ୍ଦ ଗୋକୁଳରେ ବାଲ୍ୟ, କୈଶୋର ଅବସ୍ଥାରେ ସେ ଅନେକ ଦୁଷ୍ଟଦଳନ (ଦୈତ୍ୟବଧଂ) ନିଜେ ଓ ଆଉ କେତେକ ବଳରାମଜୀଙ୍କ ସହିତ (ସରାମୋ) କଲେ । ଯଦୁଂଶୀମାନଙ୍କୁ ଧରି ଦ୍ୱାରକାରେ ଥିବାବେଳେ ପୃଥିବୀରୁ ପାପ ଭାର ହ୍ରାସ କରିବାକୁ ସେ ପୁଣି କି·କି ଅଭିନବ ଉପାୟ କଲେ ?

**ଶ୍ରୀ ଶୁକ ଉବାଚ**

**କୃତ୍ୱା ଦୈତ୍ୟ ବଧଂ କୃଷ୍ଣଃ ସରାମୋ ଯଦୁଭିଃ ବୃତଃ ।**
**ଭୂବୋଽବତାରୟତ୍ ଭାରଂ ଜବିଷ୍ଠଂ ଜନୟନ୍ କଳିମ୍ ।।୧।।**

ଉ. ପ୍ରଥମେ କୁରୁକ୍ଷେତ୍ରର ବିଶାଳ ପଡିଆରେ କୁରୁପାଣ୍ଡବମାନଙ୍କ ମଧ୍ୟରେ ଏକ ମହାସମର କରାଇବା ଲକ୍ଷ୍ୟରେ ହିଂସାପୂର୍ଣ୍ଣ (ଜବିଷ୍ଠଂ) କଳହର ଆୟୋଜନ କରାଇ ଦେଲେ । ସେତେବେଳେ ପୃଥିବୀର ସମସ୍ତ ରାଜା ମହାରାଜା ଧର୍ମପକ୍ଷ କିମ୍ବା ଅଧର୍ମ ପକ୍ଷରେ ମିଶି ଯୁଦ୍ଧ କଲେ ସୈନ୍ୟସାମନ୍ତ ଧରି । ସହଜରେ ଗୋଟିଏ ସ୍ଥାନରେ ଯୁଦ୍ଧ କରାଇ ଏକାଥରକେ ଅବଶିଷ୍ଟ ସକଳ ଦୁଷ୍ଟ ସଂହାର କରାଇପାରିଲେ ।

ପ୍ରଶ୍ନ-୨. ଭଗବାନ ଯାହା କରିବାକୁ ଇଚ୍ଛା କରନ୍ତି ସେ ସବୁ ତାଙ୍କ ଶକ୍ତି ଯୋଗମାୟା ତାଙ୍କ ମନ ଜାଣି କରି ଦିଅନ୍ତି । ତେଣୁ ତାଙ୍କ ନାମ ସତ୍ୟ ସଂକଳ୍ପ । ଶ୍ରୀକୃଷ୍ଣଙ୍କର ଅବତାର କାଳ ଏବେ ଶହେ ପଚିଶ ବର୍ଷ ହେଲାଣି । ଭଗବାନ (ବିଭୁଃ) ନିଶ୍ଚୟ କଲେ (ବ୍ୟବସିତୋ)ଏବେ ସ୍ୱଧାମ ଫେରିଯିବାକୁ । ସେତେବେଳେ ବ୍ରାହ୍ମଣମାନଙ୍କ ଅଭିଯୋଗ ଛଳରେ (ବ୍ୟାଜେନ) ନିଜ ବଂଶ ନିପାତ କରିବା (ସଂଜହ୍ରେ) କାରଣ କଅଣ ?

**ଏବଂ ବ୍ୟବସିତୋ ରାଜନ୍ ସତ୍ୟସଂକଳ୍ପ ଈଶ୍ୱରଃ ।**
**ଶାପ ବ୍ୟାଜେନ ବିପ୍ରାଣାଂ ସଂଜହ୍ରେ ସ୍ୱକୁଳଂ ବିଭୁଃ ||୫||**

ଉ. ଯଦୁପତି ଶ୍ରୀକୃଷ୍ଣ ଭାବିଲେ ଗୋଡ଼ରେ ବୁଡିଥିବା କଣ୍ଟାକୁ କାଢିବାକୁ କଣ୍ଟା ଯୋଗାଡ କଲି । କଣ୍ଟା ବାହାର କରାଗଲା ପରେ ଦୁଇଟି ଯାକ କଣ୍ଟାକୁ ନ ଫୋପାଡ଼ିଲେ ବିପଦ । ଯଦୁବଂଶୀମାନେ ଅଜେୟ ହୋଇ ଇନ୍ଦ୍ର ଚନ୍ଦ୍ର ମାନୁନାହାନ୍ତି । ସେମାନଙ୍କୁ ଛାଡି ଏକାକୀ ଗୋଲୋକ ଚାଲିଗଲେ ନିଶ୍ଚୟ ଏମାନେ ପୁଣି ପୃଥିବୀର ମୁଣ୍ଡ ବ୍ୟଥାର କାରଣ ହେବେ । ଏହା ହିଁ ସ୍ୱକୁଳ ନାଶ କରିବା ଇଚ୍ଛାର କାରଣ ।

ପ୍ରଶ୍ନ -୩. ଅଧିକାଂଶ ଯଦୁବଂଶୀ ଭଗବାନଙ୍କ ପୁତ୍ର, ପୌତ୍ର ଓ ପ୍ରପୌତ୍ର ଥିଲେ । ସମସ୍ତେ ଭଗବାନଙ୍କ ସଦୃଶ ବ୍ରାହ୍ମଣ ସେବକ (ବ୍ରହ୍ମଣ୍ୟାନାଂ), ବଦାନ୍ୟ, ସଦା ସର୍ବଦା ଗୁରୁ, ଗୁରୁଜନ, ବୃଦ୍ଧ ସେବାକାରୀ ଥିଲେ । ଏଭଳି ପରିସ୍ଥିତିରେ ସେମାନେ କ'ଣ ପାଇଁ ବ୍ରହ୍ମଶାପର ଶରବ୍ୟ ହେଲେ ?

**ରାଜା ଉବାଚ**

**ବ୍ରହ୍ମଣ୍ୟାନାଂ ବଦାନ୍ୟାନାଂ ନିତ୍ୟଂ ବୃଦ୍ଧ - ଉପସେବିନାମ୍ ।**
**ବିପ୍ରଶାପଃ କଥଂ ଅଭୂତ୍ ବୃଷ୍ଣୀନାଂ କୃଷ୍ଣଚେତସାମ୍ ||୮||**

ଉ. ସେମାନେ ଅବଶ୍ୟ ଶ୍ରୀକୃଷ୍ଣଙ୍କୁ ମାନୁଥିଲେ । ସମସ୍ତେ କୃଷ୍ଣଗତ ପ୍ରାଣ ଥିଲେ । ତଥାପି ରାଜାଙ୍କ ମନରେ ସଂଶୟ ହୋଇଛି ଏ ବିପରୀତ କ୍ରିୟା ସମ୍ଭବ ହେଲା କିଭଳି ?

ପ୍ରଶ୍ନ -୪. ଶୁକଦେବଜୀ ରାଜାଙ୍କ ସଂଶୟ ମୋଚନ କରିବାକୁ ଯାଇ କିହଲେ ଯେ ଏକଦା ବିଶ୍ୱାମିତ୍ର ଅସିତ, କଣ୍ୱ, ଦୁର୍ବାସା, ଭୃଗୁ, ଅଙ୍ଗିରା, କଶ୍ୟପ ଓ ବଶିଷ୍ଠ ଆଦି ଅନେକ ମୁନି ଋଷି ପିଣ୍ଡାରକ ତୀର୍ଥକୁ ଯାଉଥାନ୍ତି ତୀର୍ଥ ଯାତ୍ରାରେ । ସେମାନେ ଦ୍ୱାରକା

ନଗରୀରେ ଏକ ବୃକ୍ଷମୂଳେ ବିଶ୍ରାମ ନେଉଥାଆନ୍ତି । ଯଦୁବଂଶୀ ବାଳକମାନଙ୍କ ଉତ୍ପାତ ଆରମ୍ଭ ହେଲା । ସେମାନେ ଜାମ୍ବବତୀ ପୁତ୍ର ଶାମ୍ବଙ୍କୁ ନାରୀ ବେଶରେ ସଜାଇ ତାଙ୍କ ପେଟରେ କପଡ଼ା ବୁଜୁଳାଟିଏ ଲୁଚାଇ ଯଦୁବଂଶୀମାନେ କୌତୁକ କରିବାକୁ ସେଠାରେ ପହଞ୍ଚିଗଲେ । ଥଟ୍ଟା କରିବା ଭଙ୍ଗିରେ ବ୍ରାହ୍ମଣମାନଙ୍କୁ ସେମାନେ କି ପ୍ରଶ୍ନ କରିଥିଲେ ?

**ଶ୍ରୀଶୁକ ଉବାଚ**

**ତେ ବେଷୟିତ୍ୱା ସ୍ତ୍ରୀ ବେଷୈଃ ଶାମ୍ବଂ ଜାମ୍ବବତୀ ସୁତମ୍ ।**
**ଏଷା ପୃଛତି ବୋ ବିପ୍ରା ଅନ୍ତର୍ବତ୍‌ନୀ ଅସିତ – ଈକ୍ଷଣା ॥୧୪॥**

ଉ. ସେମାନେ ଶାମ୍ବକୁ ଦେଖାଇ କହିଲେ, ''ହେ ବିପ୍ରଗଣ, ଆପଣମାନେ ତ୍ରିକାଳଦର୍ଶୀ ଋଷି । ଏ ଶ୍ୟାମନେତ୍ରୀ (ଅସିତ – ଈକ୍ଷଣା) ସୁନ୍ଦରୀ ଏବେ ଗର୍ଭବତୀ (ଅନ୍ତର୍ବତ୍‌ନୀ) ହୋଇଛି । ଏହାର ଗର୍ଭରୁ ପୁତ୍ର ଜନ୍ମ ହେବ ନା କନ୍ୟା ?''

ପ୍ରଶ୍ନ- ୫. ଋଷିମାନେ ବାସ୍ତବରେ ତ୍ରିକାଳଦର୍ଶୀ ଥିଲେ । ପେଟରୁ କ'ଣ ଜନ୍ମ ହେବ ଓ ତା ଆଗକୁ କ'ଣ ଘଟିବାକୁ ଯାଉଛି ସେକଥା ମଧ୍ୟ ଜାଣିଥିଲେ । ଅତ୍ୟନ୍ତ କ୍ରୋଧରେ (କୁପିତାଃ) ସେମାନେ କି ଭବିଷ୍ୟତବାଣୀ ଶୁଣାଇଲେ ଯଦୁବଂଶୀ ଦୁଷ୍ଟ ବାଳକ ଓ ଯୁବକମାନଙ୍କୁ ?

**ଏବଂ ପ୍ରଲବ୍‌ଧା ମୁନୟଃ ତାନ୍ ଉଚୁଃ କୁପିତା ନୃପ ।**
**ଜନୟିଷ୍ୟତି ବୋ ମନ୍ଦା ମୁଷଳଂ କୁଳ ନାଶନମ୍ ॥୧୬॥**

ଉ. ସେମାନଙ୍କୁ ଧୋକା ଦେଉଥିବା ଜାଣି (ପ୍ରଲବ୍‌ଧା) କହିଲେ, ''ହେ ମୂର୍ଖ ଗଣ (ମନ୍ଦା), ଏହା ପେଟରୁ ଲୁହାର ମୁଷଳଟିଏ ଜନ୍ମ ହେବ ଯାହାକି ତୁମ ବଂଶନାଶର କାରଣ ହେବ ।''

ପ୍ରଶ୍ନ – ୬. ଭୟଙ୍କର ଅଭିଶାପ ପାଇ ପିଲାମାନେ ଡରିଗଲେ । ସେମାନେ ଭଗବାନଙ୍କଠାରୁ ଜାଣିଥିଲେ ଯେ ବ୍ରାହ୍ମଣ ବାକ୍ୟ ବଜ୍ରସମାନ ଅକାଟ୍ୟ । ସଙ୍ଗେ ସଙ୍ଗେ ବସ୍ତ୍ର ଫିଟେଇ ଦେଖିଲେ ସତକୁ ସତ ମୁଷଳଟିଏ ବାହାରିଲା । ସମସ୍ତେ ମୁଷଳ ଧରି ପହଞ୍ଚିଲେ ରାଜା ଉଗ୍ରସେନଙ୍କ ରାଜ ସଭାରେ । ଆମୂଳ ଚୂଳ ବର୍ଣ୍ଣନା କଲେ ସବୁ କଥା । ରାଜା ସଙ୍ଗେ ସଙ୍ଗେ ଲୋକ ଲଗାଇ ମୁଷଳକୁ ପଥରରେ ଘଷି ଘଷି ଚୂର୍ଣ୍ଣ କରିଦେଲେ । ଶେଷକୁ ଖଣ୍ଡେ ସାନ ଲୁହା ରହିଗଲା । ସେ ଖଣ୍ଡକୁ ଦ୍ୱାରକା ନିକଟସ୍ଥ ସମୁଦ୍ର ଜଳରେ ଭସାଇଦେଲେ ।

ଯୋଗମାୟାଙ୍କର ବିଧାନ ବିଚିତ୍ର । ସେହି କ୍ଷୁଦ୍ର ଲୁହା ଖଣ୍ଡିକ ମାଛଟିଏ ଗିଳି ପକାଇଲା। ଲୌହ ଚୂର୍ଣ୍ଣ ସବୁ କୂଳରେ ଲାଗି ତୀକ୍ଷ୍ଣ କଣ୍ଟାଯୁକ୍ତ ଏରକା ବୃକ୍ଷର ଜଙ୍ଗଲ ଉତ୍ପନ୍ନ ହେଲା । ସେ ମାଛଟିକୁ ଜଣେ ଧୀବର ଧରିଲା । ଜରା ନାମକ ଜଣେ ଶବର ମାଛଟିକୁ କିଣି ନେଲା । ପେଟରୁ ବାହାରିଥିବା ଲୁହାକୁ ଏକ ଶର ମୁନରେ ଖଞ୍ଜିଦେଲା । ଶ୍ରୀକୃଷ୍ଣ ସର୍ବାନ୍ତର୍ଯ୍ୟାମୀ ଭଗବାନ ଓ ସର୍ବ ଶକ୍ତିମାନ ମଧ୍ୟ । ବିପ୍ରଶାପକୁ ଖଣ୍ଡନ କରିବାକୁ କି ଉପାୟ କଲେ ?

**ଭଗବାନ୍ ଜ୍ଞାତ ସର୍ବ-ଅର୍ଥ ଈଶ୍ୱରୋଽପି ତତ୍ ଅନ୍ୟଥା ।**
**କର୍ତ୍ତୁଂ ନ-ଐଚ୍ଛତ୍ ବିପ୍ରଶାପଂ କାଳରୂପୀ - ଅନ୍ୱମୋଦତ ॥୨୪॥**

ଉ. ଶ୍ରୀକୃଷ୍ଣ ସବୁ ଜାଣିଲେ (ଜ୍ଞାତ ସର୍ବ - ଅର୍ଥ) ଅବଶ୍ୟ । ବିଚାର କଲେ ବିପ୍ରଶାପ ହିଁ କାଳ ରୂପେ ଆସିଛି । ସେ ସ୍ୱୟଂ ବ୍ରାହ୍ମଣ ସେବକ । ସୁତରାଂ ସେ ସେମାନଙ୍କ ବାକ୍ୟକୁ କାଟିବାକୁ କୌଣସି ଉପାୟ ନ କରି ବରଂ ଅନୁମୋଦନ କଲେ ।

# ଅଥ ୨ୟ ଅଧ୍ୟାୟଃ

## (ବିଦେହ ରାଜା ନିମି ଓ ଋଷଭ ପୁତ୍ର ନବ ଯୋଗୀଶ୍ୱରଙ୍କ କଥା)

ପ୍ରଶ୍ନ- ୭. ଦ୍ୱାରକାଧୀଶଙ୍କ ପ୍ରତ୍ୟକ୍ଷ ସଂରକ୍ଷଣରେ ଦ୍ୱାରକାନଗରୀ ସେତେବେଳେ ଅମାପ ସୁଖ ସମୃଦ୍ଧିରେ ଭରି ଉଠିଥିଲା । ଶ୍ରୀକୃଷ୍ଣଙ୍କ ପ୍ରତ୍ୟକ୍ଷ ସମ୍ପର୍କରେ ଆସିବା ଲାଳସାରେ ଦେବର୍ଷି ନାରଦ ଅନେକ ଦିନ (ଅଭୀକ୍ଷ୍ଣଂ) ଧରି କେମିତି ରହିଗଲେ (ଅବାତ୍ସିତ୍) (କାରଣ ସେ ପୂର୍ବରୁ ଦକ୍ଷଙ୍କ ଦ୍ୱାରା ଅଭିଶପ୍ତ ହୋଇଥିଲେ କୌଣସି ସ୍ଥାନରେ ଗୃହସ୍ଥାଶ୍ରମ କରି ରହିଲେ ମାୟା କବଳରେ ସେ ପଡ଼ିବେ ।) ?

**ଶ୍ରୀଶୁକ ଉବାଚ**

**ଗୋବିନ୍ଦ ଭୁଜ ଗୁପ୍ତାୟାଂ ଦ୍ୱାରବତ୍ୟାଂ କୁରୁଦ୍‌ବହ ।**
**ଅବାତ୍ସିତ୍ ନାରଦୋଽଭୀକ୍ଷ୍ଣଂ କୃଷ୍ଣ - ଉପାସନ ଲାଳସଃ ॥୧॥**

ଉ. ନାରଦ ବିଲ୍‌କୁଲ୍ ଜାଣିଥିଲେ ଅଭିଶାପ କଥା । ତଥାପି ମାୟା କେମିତି ଭଗବାନଙ୍କ ସାନ୍ନିଧ୍ୟରେ ରହୁଥିବା ଲୋକପାଖକୁ ଯିବ ଯେ ତାକୁ ଆକ୍ରମଣ କରିବ ! !

ସେଥିପାଇଁ ସେ ବର୍ଷ ବର୍ଷ ଧରି ସେଠାରେ ନିର୍ଭୟରେ ଡେରା ପକାଇ ରହୁଥାଆନ୍ତି ।

ପ୍ରଶ୍ନ - ୮. ସ୍ୱର୍ଗରାଜ୍ୟର ଦେବୀ ଦେବତାମାନେ ଅମର ବୋଲି ଲୋକେ କହନ୍ତି । ସେମାନେ ସର୍ବଦା ଭୋଗୀ ଐଶ୍ୱର୍ଯ୍ୟ ଲୋଭୀ । ଅନେକ ଦାନ, ଯଜ୍ଞାଦି ପୁଣ୍ୟ କରି ଲୋକେ ଦେବତା ହୁଅନ୍ତି । ପୁଣ୍ୟ ସରିଗଲେ ପୁଣି ଏହି ମର୍ତ୍ତ୍ୟଲୋକକୁ ଫେରିବାକୁ ହେବ ସେମାନଙ୍କୁ । ସୁତରାଂ ସେମାନେ ଶ୍ରୀମନ୍ ନାରାୟଣଙ୍କ ଉପାସନା କରିଥାନ୍ତି ଦୈବାତ୍ ସାଧୁ ସଙ୍ଗ ପ୍ରାପ୍ତ ହୋଇପାରିବେ । ଏକାଦଶ ଇନ୍ଦ୍ରିୟଯୁକ୍ତ କେଉଁ ଜୀବ ତେବେ ଶ୍ରୀ ହରିଙ୍କ ଚରଣ କମଳ ଉପାସନା ନ କଲେ ଚଳିବ ?

**କୋନୁ ରାଜନ୍ ଇନ୍ଦ୍ରିୟବାନ୍ ମୁକୁନ୍ଦ ଚରଣ - ଅମ୍ବୁଜମ୍ ।**
**ନ ଭଜେତ୍ ସର୍ବତୋ ମୃତ୍ୟୁଃ ଉପାସ୍ୟଂ ଅମର - ଉତ୍ତମୈଃ ॥୨॥**

ଉ. କେହି ଜଣେ ବି ନୁହେଁ । ବ୍ରହ୍ମା, ଶଙ୍କର, ନାରଦ କେହି ଜଣେ ବି ଉପାସନା ନ କରି ତିଷ୍ଠିପାରିବେ ନାହିଁ । ଶୁକଦେବଜୀ ରୋକ୍ ଠୋକ୍ ଶୁଣାଇଦେଲେ ସମସ୍ତଙ୍କର ମୃତ୍ୟୁଭୟ ଅଛି । ଏପରିକି ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କର ମଧ୍ୟ (ବ୍ରହ୍ମଣୋଽପି ଭୟଂ ମତ୍ତଃ ଦ୍ୱିପରାର୍ଦ୍ଧ ପର-ଆୟୁଷଃ) ମୃତ୍ୟୁ ଭୟ ରହେ । ହୋଇପାରନ୍ତି ସେ କୋଟି କୋଟି ବର୍ଷର ଦୀର୍ଘାୟୁ ସାଧକ । ମୃତ୍ୟୁ ଭୟ କିନ୍ତୁ ଛାଡିନି ତାଙ୍କୁ ।

ପ୍ରଶ୍ନ-୯ .ଦିନକର କଥା (ଏକଦା) ଦେବର୍ଷି ନାରଦ ଦ୍ୱାରିକାରେ ବସୁଦେବଙ୍କ ମହଲରେ ପହଞ୍ଚିଲେ । ତାଙ୍କୁ ଅଭ୍ୟାଗତ ଭାବରେ ପାଇ ବସୁଦେବ କ'ଣ ସବୁ କଲେ ?

**ତଂ ଏକଦା ତୁ ଦେବର୍ଷିଂ ବସୁଦେବ ଗୃହ - ଆଗତମ୍ ।**
**ଅର୍ଚ୍ଚିତ ସୁଖଂ ଆସୀନଂ ଅଭିବାଦ୍ୟ - ଇଦଂ ଅବ୍ରବୀତ୍ ॥୩॥**

ଉ. ସଙ୍ଗେ ସଙ୍ଗେ ତାଙ୍କୁ ନିଜ ମହଲକୁ ପାଛୋଟି ନେଲେ । ସ୍ୱାଗତ ଭାଷଣ କଲେ । ଯଥାଯୋଗ୍ୟ ଆସନରେ ବସାଇଲେ ଓ ପୂଜନ ବି କଲେ ।

ପ୍ରଶ୍ନ-୧୦. ଉତ୍ତମ ଶ୍ଳୋକ ଦ୍ୱାରା ଯାହାଙ୍କ ସ୍ତୁତି କରାଯାଏ ସେ ଭଗବାନ ବା ଉତ୍ତମ ଶ୍ଳୋକ । ତାଙ୍କ ଭକ୍ତ (ବର୍ତ୍ମନାଂ) କିମ୍ବା ନିଜ ପୂର୍ବ ପୁରୁଷ (ପିତ୍ରୋଃ)ଙ୍କୁ ଅର୍ଚ୍ଚନ ବନ୍ଦନ ଇତ୍ୟାଦି କଲେ ଅନେକ ପୁଣ୍ୟ (ସ୍ୱସ୍ତୟେ) ଲାଭ ହୋଇଥାଏ । ଏ ସବୁ ଜାଣିଥିବା ବେଦଜ୍ଞ ବସୁଦେବ ଦେବର୍ଷିଙ୍କୁ କ'ଣ ସବୁ କହିଲେ ?

## ବସୁଦେବ ଉବାଚ

**ଭଗବନ୍ ଭବତୋ ଯାତ୍ରା ସ୍ୱସ୍ତୟେ ସର୍ବଦେହିନାମ୍ ।**
**କୃପଣାନାଂ ଯଥା ପିତ୍ରୋଃ ଉତ୍ତମ ଶ୍ଳୋକ ବର୍ତ୍ମିନାମ୍ ॥୪॥**

ଉ. ଆଧ୍ୟାତ୍ମ ଶାସ୍ତ୍ରରେ କଞ୍ଜୁଷ ବା ଦୁର୍ବଳ ନୁହେଁ ବରଂ ଆଦୌ ଆତ୍ମଜ୍ଞାନ ନ ଥିବା ଲୋକକୁ କୃପଣ କୁହାଯାଏ । ସାଧୁସନ୍ଥ ମଧ୍ୟରେ ନାରଦଜୀ ଜଣେ ଜଣାଶୁଣା ଆତ୍ମଜ୍ଞାନୀ ସାଧୁ । ତାଙ୍କ ଦର୍ଶନ ପ୍ରାପ୍ତି ଓ ତାଙ୍କର ସେବା ସୁଯୋଗକୁ କିଛି ସାଧାରଣ କଥା ମନେ କରିବା ଅନୁଚିତ । ତାଙ୍କର ଯାତ୍ରା ସର୍ବଦା କୌଣସି ଗୃହସ୍ଥର କଲ୍ୟାଣର (ସ୍ୱସ୍ତୟେ ) କାରଣ ହୋଇଥାଏ ।

ପ୍ରଶ୍ନ - ୧୧. ପୂର୍ବ ପୂର୍ବ ଜନ୍ମମାନଙ୍କରେ କରିଥିବା ପୁଣ୍ୟ ଓ ପାପ କାର୍ଯ୍ୟ ସବୁ ଜୀବର ଭାଗ୍ୟ ପଦବାଚ୍ୟ । ଦେବତାମାନଙ୍କୁ ଜୀବ ପୂଜନ କଲେ ସେମାନେ ସଂଚିତ ଥିବା ପାପ ପୁଣ୍ୟକୁ ଯଥାକ୍ରମେ ଦୁଃଖ ସୁଖ ରୂପରେ ଦିଅନ୍ତି । ନାରଦଙ୍କ ଭଳି ସନ୍ଥମାନଙ୍କୁ (ଅଚ୍ୟୁତ ଆତ୍ମନାଂ) ସେବା ପୂଜା କଲେ ସେ କଅଣ ସବୁ ଦେଇପାରିବେ ?

**ଭୂତାନାଂ ଦେବ ଚରିତଂ ଦୁଃଖାୟ ଚ ସୁଖାୟ ଚ ।**
**ସୁଖାୟ - ଏବ ହି ସାଧୂନାଂ ତ୍ୱା ଦୃଶାଂ ଅଚ୍ୟୁତ - ଆତ୍ମନାମ୍ ॥୫॥**

ଉ. ଦୋକାନୀ ପଇସା ପାଇଲେ ବାଣ, ଛୁରୀ, ଦିଆସିଲି ଆଦି ଯାହା ମାଗିଲେ ପିଲାକୁ ଦେଇଦେବ । ପିଲା ତେଣିକି ସେଥିରେ ଯାହା କରୁଛି କରୁ । ଜଣେ ସାଧୁକୁ ପଇସା ଦେଇ ଏ ଭଳି କିଛି ଚିଜ ମାଗିଲେ ସେ ଦେବେ ନାହିଁ । ଦେବତାମାନେ ଦୋକାନୀ ଭଳି । ପ୍ରସନ୍ନ ହେଲେ ସୁଖ ଦୁଃଖ ଉଭୟ ଦିଅନ୍ତି । ସାଧୁ କିନ୍ତୁ କେବଳ କଲ୍ୟାଣକାରୀ ଜିନିଷ ଦିଅନ୍ତି । ସେଇଥି ପାଇଁ ସିନା ଚଉଦ ଭୁବନରେ ସନ୍ଥ ନାରଦଜୀଙ୍କର ଅବାଧ ପ୍ରବେଶ । କଂସ ଦରବାର ହେଉ କି କୈଳାସ ପତିଙ୍କ ଦରବାର ହେଉ ।

ପ୍ରଶ୍ନ-୧୨. ସାଧୁମାନେ କାହିଁକି କେବଳ କଲ୍ୟାଣକାରୀ ଚିଜ ଦିଅନ୍ତି ?

**ଭଜନ୍ତି ଯେ ଯଥା ଦେବାନ୍ ଦେବା-ଅପି ତଥା-ଏବ ତାନ୍ ।**
**ଛାୟା-ଇବ କର୍ମ ସଚିବାଃ ସାଧବୋ ଦୀନ ବତ୍ସଳାଃ ॥୬॥**

ଉ. କାୟାକୁ ଛାୟା ଜଗିବା ଭଳି ଦେବତାମାନେ । ଜୀବ ଭାଗ୍ୟରେ ଯାହା ସଂଚିତ ଅଛି ତାହା ଦେଇପକାନ୍ତି ସରକାରୀ କଳର ସେକ୍ରେଟାରୀ ବ୍ୟାଙ୍କବାଲା ବା ଦୋକାନୀ ଭଳି । ମାତ୍ର ସାଧୁମାନେ ଅକିଂଚନ ସାଧକ ପ୍ରତି ଅତ୍ୟନ୍ତ ଦୟାର୍ଦ୍ରଚିତ୍ତ ।

ଭଗବାନଙ୍କ ପ୍ରତ୍ୟକ୍ଷ କ୍ଷମତାପ୍ରାପ୍ତ ପ୍ରତିନିଧି । ଭକ୍ତ ନିରାଶ୍ରୟ ହୋଇ ଠାକୁରଙ୍କ ଶରଣାଗତି ସ୍ୱୀକାର କଲେ ନିଶ୍ଚୟ ଦୁର୍ଲ୍ଲଭ ଦ୍ରବ୍ୟ ଦେଇ ଦେବେ ସେମାନେ ।

ପ୍ରଶ୍ନ - ୧୩. ସଂସାରରେ ସବୁ କିଛି ଭୟଯୁକ୍ତ । ଧନ, ଯୌବନ, ପ୍ରତିପତ୍ତି ସିଦ୍ଧି ଯାହା ବି ହେଉ । ବସୁଦେବଜୀ ଦେବର୍ଷି ନାରଦଙ୍କୁ କେଉଁ ଦୁର୍ଲ୍ଲଭ ଦ୍ରବ୍ୟ ପ୍ରାର୍ଥନା (ପୃଚ୍ଛାମୋ) କଲେ ?

**ବ୍ରହ୍ମନ୍ ତଥା-ଅପି ପୃଚ୍ଛାମୋ ଧର୍ମାନ୍ ଭାଗବତାନ୍ ତବ ।**
**ଯାନ୍ ଶ୍ରୁତ୍ୱା ଶ୍ରଦ୍ଧୟା ମର୍ତ୍ତ୍ୟୋ ମୁଚ୍ୟତେ ସର୍ବତୋ ଭୟାତ୍ ॥୭॥**

ଉ. ସେ ଭାଗବତ୍ ଧର୍ମ କିସ ବୋଲି ବିନମ୍ର ପ୍ରଶ୍ନଟିଏ କଲେ । ଯେଉଁ ଭାଗବତ ଧର୍ମ ସନ୍ଥ ବୈଷ୍ଣବ ମୁଖରୁ ଶ୍ରବଣ କରି ମନନ କଲେ ମନୁଷ୍ୟ ଜରା, ବ୍ୟାଧି ଓ ମୃତ୍ୟୁ ଭୟରୁ ମଧ୍ୟ ମୁକ୍ତ ହୋଇପାରେ ।

ପ୍ରଶ୍ନ-୧୪. ବସୁଦେବଙ୍କର ପୂର୍ବ ଦୁଇ ଜନ୍ମର ତପସ୍ୟା ଓ ଭଗବାନଙ୍କ ବରଦାନ ସବୁ ତାଙ୍କର ମନେ ଥାଏ । ତାଙ୍କର ପୃଷ୍ଣି ଜନ୍ମରେ ଭଗବାନ ପୃଷ୍ଣିଗର୍ଭ ଓ ପର ଜନ୍ମରେ କଶ୍ୟପ ହୋଇ ବାମନ ଅବତାର ହୋଇଥିବା ସେ ଜାଣନ୍ତି । ଏବେ ଭଗବାନଙ୍କୁ ମୁକ୍ତି ନ ମାଗି ପୁତ୍ର ପ୍ରାପ୍ତି କର (ପ୍ରଜା-ଅର୍ଥେ) ମାଗିବା କାରଣ କାହିଁକି ପଚାରୁଛନ୍ତି ସାଧୁ ନାରଦଜୀଙ୍କୁ ?

**ଅହଂ କିଲ ପୁରା-ଅନନ୍ତଂ ପ୍ରଜା-ଅର୍ଥେ ଭୁବି ମୁକ୍ତିଦମ୍ ।**
**ଅପୂଜୟନ୍ ନ ମୋକ୍ଷାୟ ମୋହିତ ଦେବ ମାୟୟା ॥୮॥**

ଉ. ବସୁଦେବ ଭାବୁଛନ୍ତି ବୋଧହୁଏ ଭଗବାନଙ୍କ ମାୟାରେ ସେ ବୁଦ୍ଧି ବଣା ହୋଇ ଯାଇଛନ୍ତି । ତାଙ୍କୁ ତିନି ତିନି ଜନ୍ମ ପୁତ୍ର ରୂପରେ ପାଇ କ୍ଷତିରେ ପଡିଗଲେ କି ଆଉ !!! ଅତଏବ ମୁକ୍ତିର ସ୍ୱରୂପ ଜାଣିବା ତାଙ୍କର ଲକ୍ଷ୍ୟ ଥାଏ ।

ପ୍ରଶ୍ନ - ୧୫. ଭଗବାନଙ୍କ ସହିତ ଏତେ ଦୀର୍ଘକାଳ ରହି ମଧ୍ୟ ବସୁଦେବ ନିଜକୁ ସଂସାର ବନ୍ଧନରେ ପଡ଼ିଥିବା କଥା କହୁଛନ୍ତି । ନାରଦଙ୍କୁ ସୁବ୍ରତ ବୋଲି ସମ୍ବୋଧନ କରୁଛନ୍ତି । ଆତ୍ମଜ୍ଞାନ ସମ୍ବନ୍ଧୀୟ କେଉଁ ପ୍ରଶ୍ନ ପଚାରିଲେ ବସୁଦେବ ?

**ଯଥା ବିଚିତ୍ର ବ୍ୟସନାନ୍ ଭବଭିଃ ବିଶ୍ୱତୋ ଭୟାତ୍ ।**
**ମୁଚ୍ୟେମ ହି-ଅଞ୍ଜସା-ଏବ-ଅଦ୍ଧା ତଥା ନଃ ଶାଧି ସୁବ୍ରତ ॥୯॥**

ଉ. ଜଣେ ଜୀବ ସଂସାରରେ ଜନ୍ମ ହେବା (ବିଚିତ୍ର ବ୍ୟସନାନ୍) ଭୟଙ୍କର

ବ୍ୟାପାର ବୋଲି କହୁଛନ୍ତି । ନାରଦଙ୍କୁ ଉପଦେଶ ଦେବାକୁ (ଶାଧି) ଅନୁରୋଧ କରୁଛନ୍ତି ଯେ କ'ଣ କଲେ ସଂସାର ଜଞ୍ଜାଳରୁ ସହଜରେ (ଅଞ୍ଜସା) ସେ ସମ୍ପୂର୍ଣ୍ଣ (ଅଦ୍ଧା) ମୁକ୍ତ ହୋଇପାରିବେ ।

ପ୍ରଶ୍ନ-୧୬. ଦେବର୍ଷି ନାରଦ ଅନ୍ୟ ଧର୍ମ କିଛି ନ କହି ସନାତନ ଭାଗବତ ଧର୍ମଙ୍କର କେଉଁ ମାହାତ୍ମ୍ୟ ସବୁ ଉଲ୍ଲେଖ କରି ବସୁଦେବଙ୍କୁ ତାଙ୍କ ଅଡୁଆ ପ୍ରଶ୍ନର ଉତ୍ତର ଦେଇ କୃତାର୍ଥ କରିଥିଲେ ?

## ନାରଦ ଉବାଚ

**ଶ୍ରୁତୋଽନୁପଠିତୋ ଧ୍ୟାତ ଆଦୃତୋ ବା-ଅନୁମୋଦିତଃ ।**
**ସଦ୍ୟଃ ପୁନାତି ସତ୍ ଧର୍ମୋ ଦେବ ବିଶ୍ୱଦ୍ରୁହୋଽପି ହି ॥୧୨॥**

ଉ. କେବଳ (ହି) ଏହି ଶୁଦ୍ଧଭକ୍ତି ମୂଳକ ଭାଗବତ ଧର୍ମ ମନୁଷ୍ୟ ମନକୁ ପବିତ୍ର (ପୁନାତି) କରିପାରିବ ଶୁଣୁ ଶୁଣୁ (ଶ୍ରୁତୋ), ପଢୁ ପଢୁ, ଧ୍ୟାନ କରୁ କରୁ, ଆଦର କରୁ କରୁ ବା ଅନ୍ୟ କାହାକୁ ପଢିବାକୁ ଅନୁମୋଦନ କରୁ କରୁ । ଏହି ଫଳ ତାଙ୍କୁ ମିଳିବାକୁ ଆଦୌ ଡେରି ହୁଏନା । ବରଂ ତତ୍‌କାଳ (ସଦ୍ୟଃ) ମିଳିଥାଏ ସାଧକକୁ ।

ପ୍ରଶ୍ନ - ୧୭. କେବଳ ଭାଗବତ ଧର୍ମ ଶୁଣିବାକୁ ଆଗ୍ରହ କଲେ ବୋଲି ଦେବର୍ଷି ନାରଦ କାହିଁକି ବସୁଦେବଙ୍କୁ ସେ ତାଙ୍କର ଅଶେଷ କଲ୍ୟାଣ କରିଛନ୍ତି ବୋଲି କହିଲେ ?

**ତ୍ୱୟା ପରମ କଲ୍ୟାଣଃ ପୁଣ୍ୟ ଶ୍ରବଣ କୀର୍ତ୍ତନଃ ।**
**ସ୍ମାରିତୋ ଭଗବାନ୍ ଅଦ୍ୟ ଦେବୋ ନାରାୟଣୋ ମମ ॥୧୩॥**

ଉ. ଯେଉଁ ଦେବତାଙ୍କର ନାମ ସ୍ମରଣ, କୀର୍ତ୍ତନ କଲେ ଜୀବକୁ ଅଶେଷ ପୁଣ୍ୟ ପ୍ରାପ୍ତି ହୁଏ ସେହି ନାରାୟଣଙ୍କ ଗୁଣୀକୀର୍ତ୍ତନ କରିବାକୁ ସୁଯୋଗ ମିଳିଗଲା ବୋଲି । ନାରଦଜୀଙ୍କ ଇଷ୍ଟ ନାରାୟଣ । ତାଙ୍କ ଇଷ୍ଟ ସ୍ମରଣ କରାଇ ଦେଇ ବସୁଦେବ ଯେ ଅନେକ ଉପକାର (ପରମ କଲ୍ୟାଣଃ)କରିଛନ୍ତି ।

ପ୍ରଶ୍ନ-୧୮. କବି ହରି ଆଦି ନବ ଯୋଗେନ୍ଦ୍ରଙ୍କର ଅଲୌକିକ ପ୍ରତିଭାର ପରିଚୟ ଦେବା ପାଇଁ ସେମାନଙ୍କର ପିତା, ପିତାମହ ଓ ପ୍ରପିତାମହ ଆଦି ସପ୍ତପୁରୁଷଙ୍କ ପରିଚୟ ନାରଦ କିପରି ଶବ୍ଦରେ ଦେଲେ ?

**ପ୍ରିୟବ୍ରତ ନାମ ସୁତୋ ମନୋଃ ସ୍ୱାୟମ୍ଭୁବସ୍ୟ ଯଃ ।**
**ତସ୍ୟ - ଆଗ୍ନୀଧ୍ରଃ ତତଃ ନାଭିଃ ଋଷଭଃ ତତ୍ସୁତଃ ସ୍ମୃତଃ ॥୧୫॥**

ଉ. ସ୍ୱାୟମ୍ଭୁବ ମନ୍ୱନ୍ତରରେ ଭଗବାନ ନାରାୟଣଙ୍କ ପୁତ୍ର ବ୍ରହ୍ମା । ବ୍ରହ୍ମାଙ୍କ ପୁତ୍ର ସ୍ୱାୟମ୍ଭୁବ ମନୁ । ମନୁଙ୍କ ପୁତ୍ର ପ୍ରିୟବ୍ରତ । ପ୍ରିୟବ୍ରତଙ୍କ ପୁତ୍ର ଆଗ୍ନୀଧ୍ର । ଆଗ୍ନୀଧ୍ରଙ୍କ ପୁତ୍ର ନାଭି । ନାଭିଙ୍କ ପୁତ୍ର ହେଲେ ମହାରାଜା ଋଷଭ ଦେବ ।

ପ୍ରଶ୍ନ-୧୯. ରାଜା ଶ୍ରେଷ୍ଠ ଋଷଭଙ୍କୁ ବାସୁଦେବ ନାରାୟଣଙ୍କ ଅବତାର କୁହାଯାଏ । ମୋକ୍ଷଧର୍ମ ବା ମୁକ୍ତିର ଲକ୍ଷଣ ଉପାୟ ଆଦି ବୁଝାଇବା ପାଇଁ ତାଙ୍କଠାରୁ କିଏ କିଏ ପୁତ୍ରରୂପରେ ଜନ୍ମ ନେଇଥିଲେ ?

**ତଂ ଆହୁଃ ବାସୁଦେବ-ଅଂଶଂ ମୋକ୍ଷ ଧର୍ମ ବିବକ୍ଷୟା ।**
**ଅବତୀର୍ଣ୍ଣଂ ସୁତ ଶତଂ ତସ୍ୟ-ଆଡୀତ୍ ବ୍ରହ୍ମପାରଗମ୍ ॥୧୬॥**

ଉ. ଶହେ ପୁତ୍ର ହେଲେ ରାଜା ଋଷଭଙ୍କର । ସେମାନେ ସମସ୍ତେ ବେଦଜ୍ଞ (ବ୍ରହ୍ମପାରଗମ୍ ) ବିଶ୍ୱ ବିଖ୍ୟାତ ଧୂରୀଣ ବିଦ୍ୱାନ୍ ଥିଲେ ।

ପ୍ରଶ୍ନ-୨୦. ବହୁ ସଂଖ୍ୟକ ସନ୍ତାନର ଜନକ ହୋଇଥିବାରୁ ଭାରତ ଇତିହାସ ତାଙ୍କୁ ମନେ ରଖିଛି କି ?

**ତେଷାଂ ବୈ ଭରତୋ ଜ୍ୟେଷ୍ଠୋ ନାରାୟଣ ପରାୟଣଃ ।**
**ବିଖ୍ୟାତଂ ବର୍ଷଂ ଏତତ୍ ଯତ୍ ନାମ୍ନା ଭାରତଂ ଅଦ୍ଭୁତମ୍ ॥୧୭॥**

ଉ. ବିଲ୍‌କୁଲ୍ ନୁହେଁ । ବରଂ ଏକ ସ୍ୱନାମ ଧନ୍ୟ ପୁତ୍ର ଭରତଙ୍କୁ ସଂସାରକୁ ଦେଇଥିବାରୁ ସେ ହେଲେ ଆମର ଚିରସ୍ମରଣୀୟ । ସେତେବେଳେ ସୃଷ୍ଟିର ଆରମ୍ଭ ସମୟ । ପ୍ରିୟବ୍ରତ ରାଜାଙ୍କ ଦ୍ୱାରା ପୃଥିବୀକୁ ନଅ ଭାଗ କରାଯାଇଥାଏ । ଋଷଭ ତାଙ୍କର ନଅ ପୁଅଙ୍କୁ ନବଖଣ୍ଡ ମେଦିନୀରେ ଜଣେ ଜଣେ ରାଜା କରାଇଲେ । ଏକାଅଶୀ ପୁଅ ଯଜ୍ଞ ବିଶେଷଜ୍ଞ ହୋଇ ବୈଦିକ ଯଜ୍ଞ ବିଧିର ବହୁଳ ପ୍ରଚାର କରି ବୁଲିଲେ । ବାକୀ ନଅ ପୁଅ ହେଲେ ନବ ଯୋଗୀନ୍ଦ୍ର । ଜ୍ୟେଷ୍ଠ ପୁତ୍ରଙ୍କ ନାମ ସେ ଭରତ ରଖିଥିଲେ । ସେହି ନାରାୟଣଙ୍କର ଭକ୍ତ ପୁତ୍ର ଏଭଳି ଜଣେ ବିଖ୍ୟାତ ରାଜା ହେଲେ ଯେ ପୂର୍ବରୁ ଥିବା ଏ ଦେଶର ନାମ ଅଜନାଭ, ବ୍ରହ୍ମାବର୍ତ୍ତ ଆଦି ବଦଳି ଯାଇ ଭରତଙ୍କ ନାମ ଅନୁସାରେ ଭାରତ ହୋଇଗଲା । ଭା ଅର୍ଥ ଜ୍ଞାନ ବା ଭକ୍ତି । ସେହିଦିନ ଠାରୁ ଏ ଦେଶ ପୃଥିବୀରେ ଭକ୍ତି ଓ ଜ୍ଞାନର ରାଜଧାନୀ ହୋଇ ରହିଛି ଆଜିଯାଏ ।

ପ୍ରଶ୍ନ-୨୧: ଦେବର୍ଷି ନାରଦ ଦେଖିଲେ ପ୍ରଶ୍ନକର୍ତ୍ତା ଜଣେ ସାମାନ୍ୟ ମନୁଷ୍ୟ ନୁହନ୍ତି । ଭଗବାନଙ୍କ ପିତା । ସୁତରାଂ ମନରୁ କିଛି କହିଲେ ତାହା ତାଙ୍କର ଗ୍ରହଣଯୋଗ୍ୟ ହୋଇନପାରେ । ନାରଦଜୀ ପୂର୍ବରୁ ଏହି ଭାଗବତ ଧର୍ମ ବିଷୟରେ ବିଦେହ ରାଜା ନିମି ଓ ଋଷଭଙ୍କର ନବ ଯୋଗୀନ୍ଦ୍ର ପୁତ୍ର ମଧ୍ୟରେ ହୋଇଥିବା ଆଲୋଚନାକୁ ଅବିକଳ ଶ୍ରବଣ କରାଇଦେଲେ । ଏହି ଭାରତ ଭୂମିରେ ଥରେ ରାଜା ନିମି ଭଗବତ ପ୍ରସନ୍ନତା ନିମିତ୍ତ ଏକ ବୈଦିକ ଯଜ୍ଞାନୁଷ୍ଠାନ କରୁଥିଲେ । ନବ ଯୋଗେଶ୍ୱରମାନେ ବିନା ଡ଼ାକରାରେ ସେଠାରେ ରାଜାଙ୍କୁ କୃପା କରିବାକୁ ଆକାଶ ମାର୍ଗରୁ ଓହ୍ଲେଇ ଯଜ୍ଞଶାଳାରେ ଉପସ୍ଥିତ ହେଲେ । ସେମାନଙ୍କ ଅଲୌକିକ ଜ୍ୟୋତି ଦର୍ଶନ କରି ରାଜା ସେମାନଙ୍କୁ କିଭଳି ଆଦର ସତ୍କାର କଲେ ?

**ତାନ୍ ଦୃଷ୍ଟ୍ୱା ସୂର୍ଯ୍ୟ ସଂକାଶାନ୍ ମହାଭାଗବତାନ୍ ନୃପ ।**
**ଯଜମାନୋଽଗ୍ନୟୋ ବିପ୍ରାଃ ସର୍ବ ଏବ-ଉପତସ୍ଥିରେ ।।୨୫।।**

ଉ. ସେ ନଅଜଣ ହରିଭକ୍ତଙ୍କୁ (ମହାଭାଗବତାନ୍) ଦର୍ଶନ କରୁ କରୁ ଯଜମାନ (ନିମି), ଯଜ୍ଞକୁଣ୍ଡର ଅଗ୍ନିଦେବତା ସହିତ ଉପସ୍ଥିତ ସମସ୍ତ ପୁରୋହିତ ଓ ଦର୍ଶକ ଗଣ ଦଣ୍ଡାୟମାନ ହୋଇ (ଉପତସ୍ଥିରେ) ସମ୍ମାନ ଜଣାଇଲେ । ରାଜା ସେମାନଙ୍କ ପାଇଁ ପାଦ୍ୟ, ଅର୍ଘ୍ୟ, ଆଚମନୀୟ, ଆସନ ଇତ୍ୟାଦିର ଯଥାଯୋଗ୍ୟ ବ୍ୟବସ୍ଥା କଲେ ।

ପ୍ରଶ୍ନ-୨୨: ସୂର୍ଯ୍ୟବଂଶୀ ରାଜା ଇକ୍ଷ୍ୱାକୁ ତନୟ ରାଜା ନିମି ଅତ୍ୟନ୍ତ ବିନମ୍ର ଭାବରେ ମୁନିମାନଙ୍କର ସ୍ତୁତି କଲେ । ସେମାନେ ଭଗବାନଙ୍କର ପାର୍ଷଦ ଅଟନ୍ତି ବୋଲି କହି ତାଙ୍କ ଦର୍ଶନ ଅତ୍ୟନ୍ତ ଦୁର୍ଲଭ ବୋଲି କାହିଁକି କହିଲେ ?

ବିଦେହ ଉବାଚ

**ଦୁର୍ଲଭୋ ମାନୁଷୋ ଦେହୋ ଦେହିନାଂ କ୍ଷଣ ଭଙ୍ଗୁରଃ ।**
**ତତ୍ର-ଅପି ଦୁର୍ଲ୍ଲଭଂ ମନ୍ୟେ ବୈକୁଣ୍ଠ ପ୍ରିୟ ଦର୍ଶନମ୍ ।।୨୯।।**

ଉ. ଉଦାତ୍ତ କଣ୍ଠରେ ରାଜା ଘୋଷଣା କଲେ ଯେ ମନୁଷ୍ୟ ଜୀବନ ସହଜେ ଦୁର୍ଲ୍ଲଭ କିନ୍ତୁ ଭଗବାନଙ୍କ ଭକ୍ତ (ବୈକୁଣ୍ଠ ପ୍ରିୟ) ଦର୍ଶନ ତାହାଠାରୁ ଆହୁରି ଦୁର୍ଲ୍ଲଭ ସଂସାରରେ ବିଶେଷତଃ ବିଷୟ ଭୋଗୀ ରାଜା ଓ ରାଜନ୍ୟବର୍ଗଙ୍କ ପାଇଁ । କାରଣ ସେଇ ମୁନିମାନେ ଅତ୍ୟନ୍ତ ଉଚ୍ଚକୋଟିର ସନ୍ଥଥିଲେ ।

ପ୍ରଶ୍ନ-୨୩: ବର୍ଣ୍ଣ ଧର୍ମ, ଆଶ୍ରମ ଧର୍ମ, ରାଜ ଧର୍ମ, ଗୁରୁ ଧର୍ମ, ନାରୀ ଧର୍ମ

ଆଦି ଏତେ ସବୁ ଧର୍ମ ଥାଉ ଥାଉ ସେତେବେଳେ ରାଜା କାହିଁକି ଭାଗବତ ଧର୍ମ ଶ୍ରବଣ କରିବାକୁ ଆଗ୍ରହ ପ୍ରକାଶ କଲେ ?

**ଧର୍ମାନ୍ ଭାଗବତାନ୍ ବ୍ରୂତ ଯଦି ନଃ ଶ୍ରୁତୟେ କ୍ଷମମ୍ ।**
**ଯୈଃ ପ୍ରସନ୍ନଃ ପ୍ରପନ୍ନାୟ ଦାସ୍ୟତି-ଆତ୍ମାନଂ ଅପି-ଅଜଃ ॥୩୧॥**

ଉ. ରାଜା ଜାଣିଥିଲେ ଯେ ଅନ୍ୟ ସବୁ ଧର୍ମ ଆଚରଣ କରି ଜୀବ ସୁଖ ସମୃଦ୍ଧି ଅବଶ୍ୟ ପ୍ରାପ୍ତ ହେବ । ସେ ସବୁ କର୍ମର ପୁଣ୍ୟ ଫଳରେ ପୁଣି ବାନ୍ଧି ହେବ ମାନବ ଜନ୍ମରେ ହେଉ ବା ଦେବତା ଜନ୍ମରେ ହେଉ କିନ୍ତୁ ଭଗବାନଙ୍କୁ ନ ପାଇ ଅଶାନ୍ତ, ଅତୃପ୍ତ ଅସହାୟ ହେବ ହିଁ ହେବ । ଅଥଚ ଏହି ଭାଗବତ ଧର୍ମକୁ ସନ୍ଥ ମୁଖରୁ ଶ୍ରବଣ କରି ଆଚରଣ କଲେ ଶରଣାଗତକୁ (ପ୍ରପନ୍ନାୟ) ଭଗବାନ ଅଜନ୍ମା (ଅଜଃ) ନାରାୟଣ ପ୍ରସନ୍ନ ହୋଇ ନିଜକୁ (ଆତ୍ମାନଂ) ଦେଇଦେବେ (ଦାସ୍ୟତି) ।

ପ୍ରଶ୍ନ-୨୪ : ପରମ ରହସ୍ୟମୟ ଗୁପ୍ତ ଭାଗବତ ବୁଝାଇବା ଲକ୍ଷ୍ୟରେ ପ୍ରଥମ ଯୋଗେଶ୍ୱର କବି ଏହାର ନାମକରଣର ତାତ୍ପର୍ଯ୍ୟ କିପରି ବୁଝାଇଲେ ?

କବିଃ ଉବାଚ

**ଯେ ବୈ ଭଗବତା ପ୍ରୋକ୍ତା ଉପାୟା ହି-ଆତ୍ମ ଲବ୍ଧୟେ ।**
**ଅଞ୍ଜଃ ପୁଂସାଂ ଅବିଦୁଷାଂ ବିଦ୍ଧି ଭାଗବତାନ୍ ହି ତାନ୍ ॥୩୪॥**

ଉ. ନିଜକୁ ଦେହ ଭାବି ମନୁଷ୍ୟ ମାୟାରେ ପଡ଼ି ହରବର ହୁଏ । ନିଜର ଆତ୍ମାକୁ ଉପଲବ୍ଧି କରିବାକୁ ଭଗବାନ ନାରାୟଣ ସ୍ୱୟଂ ଉପାୟ ତିନୋଟି(କର୍ମ, ଜ୍ଞାନ ଓ ଭକ୍ତି) କହିଛନ୍ତି । ସହଜରେ (ଅଞ୍ଜଃ) ଜଣେ ସାଧାରଣ ଜୀବ ଅପଣ୍ଡିତ(ଅବିଦୁଷାଂ) ହେଲେ ବି ଯାହାକୁ ବୁଝିପାରିବ ତାହାରି ନାମ ଭାଗବତ ଧର୍ମ ବା ଭକ୍ତି ଧର୍ମ ବୋଲି କବି ରାଜାଙ୍କୁ କହିଲେ ।

ପ୍ରଶ୍ନ-୨୫: ବହୁ ପୂର୍ବରୁ ଷଟ୍ ଦର୍ଶନରେ ମଧ ଆତ୍ମ ଉପଲବ୍ଧିର ଛଅ ପ୍ରକାର ମାର୍ଗ ବତେଇ ଦେଇଛନ୍ତି ଛଅ ଜଣ ମହାନ ଋଷି । ଅନେକ ଅନେକ ସାଧକ ଏବେ ମଧ ସେ ମାର୍ଗରେ ଯାଉଛନ୍ତି । ତଥାପି ଏ ଭକ୍ତି ମାର୍ଗରେ ଭଗବାନଙ୍କୁ ଖୋଜିଲେ କିଛି ବିଶେଷ ଲାଭ ହୁଏ କି ?

**ଯାନ୍ ଆସ୍ଥାୟ ନରୋ ରାଜନ୍ ନ ପ୍ରମାଦ୍ୟେତ କର୍ହିଚିତ୍ ।**
**ଧାବନ୍ ନିମୀଲ୍ୟ ବା ନେତ୍ରେ ନସ୍ଖଲେତ୍ ନ ପତେତ୍ ଇହ ॥୩୫॥**

ଉ. ଜଣେ ସାଧକ ଋଷି ପ୍ରଦର୍ଶିତ ଅନ୍ୟ ମାର୍ଗରେ ସାଧନ କଲେ ପତନର ସମ୍ଭାବନା (ପ୍ରମାଦ୍ୟେତ) ଥାଏ । ମାତ୍ର ସ୍ୱୟଂ ଭଗବତ୍ ପ୍ରଦର୍ଶିତ ଏହି ମାର୍ଗରେ ସାଧନା କଲେ ପାଦ ଖସିଯିବାର ବା ପଡ଼ିଯିବାର ଆଦୌ ସମ୍ଭାବନା ନଥାଏ । ତାହା ପୁଣି ଆଖି ବୁଜି ଧାଇଁଲେ (ଧାବନ୍ ନିର୍ମୀଲ୍ୟ ବା ନେତ୍ରେ) ମଧ୍ୟ । ଏ ସାଧନାଟି ପୁଣି ଏହି ମର୍ତ୍ତ୍ୟଲୋକରେ (ଇହ) କରାଯାଇପାରେ । ସ୍ୱର୍ଗ, ମହ, ଜନ, ତପ ଲୋକ ଆଦିରେ କରିହୁଏ ନାହିଁ । ସେ ସବୁ ଲୋକ କେବଳ ପୁଣ୍ୟଫଳ ଭୋଗ ପାଇଁ ଉଦ୍ଦିଷ୍ଟ । ନୂତନ ସାଧନା କରିବା ପାଇଁ ନୁହେଁ ।

ପ୍ରଶ୍ନ-୨୬: ସଂକ୍ଷେପରେ ଏହି ସରଳ ଭାଗବତ ଧର୍ମର ସାଧନାର ସ୍ୱରୂପ କଅଣ ?

**କାୟେନ ବାଚା ମନସା-ଇନ୍ଦ୍ରିୟୈଃ ବା**
**ବୁଦ୍ଧ୍ୟା-ଆତ୍ମନା ବା -ଅନୁସୃତ ସ୍ୱଭାବାତ୍ ।**
**କରୋତି ଯତ୍ ଯତ୍ ସକଳଂ ପରସ୍ମୈ**
**ନାରାୟଣାୟ-ଇତି ସମର୍ପୟେତ୍ ତତ୍ ||୩୬||**

ଉ. ମନୁଷ୍ୟ ମୁକ୍ତି ସାଧନା କରେ ନିଜ ଦେହ, ବାଣୀ, ମନ, ଇନ୍ଦ୍ରିୟ, ବୁଦ୍ଧି, ଅହଂକାର (ଆତ୍ମନା) ବା ପୂର୍ବ ଜନ୍ମର ସଂସ୍କାର, ଭାଗ୍ୟ, ଦୈବ, ପ୍ରକୃତି(ସ୍ୱଭାବାତ୍) ଦ୍ୱାରା । ଏ ସବୁତକ କର୍ମ ସେ ନିଜ ଦେହ ଗୃହ ସୁଖ ପ୍ରାପ୍ତି ଉଦ୍ଦେଶ୍ୟରେ କଲେ କର୍ତ୍ତୃତ୍ୱ, ଭୋକ୍ତୃତ୍ୱ ଅହଂକାର ରହେ । ସେ ପାପ ପୁଣ୍ୟ ଉଭୟ ପୁଣି କରିବସେ । ବନ୍ଧନରେ ପଡ଼େ । ଅନ୍ୟ ପକ୍ଷରେ ସେ ସେଇ କର୍ମ ସବୁଁକୁ ଓ କର୍ମ ଫଳ ସବୁକୁ ପରମାତ୍ମାଙ୍କୁ ପ୍ରସନ୍ନ କରିବାକୁ (ପରସ୍ମୈ) ତାଙ୍କୁ ସମର୍ପଣ କରି କଲେ (ସମର୍ପୟେତ୍ ତତ୍)) ସେ କର୍ମଫଳ ସବୁ ଦିବ୍ୟ ଭକ୍ତିରେ ପରିଣତ ହୋଇଯାଏ । ଏହାହିଁ ଭକ୍ତିଧର୍ମର ଅସଲି ଗୁପ୍ତ କଥା । ସଂସାରରେ ଭଗବାନ ଦୁର୍ଲ୍ଲଭ ନୁହନ୍ତି ବରଂ ଭକ୍ତ ଦୁର୍ଲ୍ଲଭ ।

ପ୍ରଶ୍ନ-୨୭: ମର୍ତ୍ତ୍ୟ ଲୋକରେ ଜୀବ ମାତ୍ରକେ ଜରା, ବ୍ୟାଧି ଓ ମୃତ୍ୟୁ ଭୟ କବଳିତ । ଏହି ଭାଗବତ ଧର୍ମ କ'ଣ ଜୀବକୁ ସଂପୂର୍ଣ୍ଣ ଅଭୟ ଦେଇ ପାରିବ ?

**ଭୟଂ ଦ୍ୱିତୀୟ -ଅଭିନିବେଶତଃ ସ୍ୟାତ୍**
**ଈଶାତ୍ ଅପେତସ୍ୟ ବିପର୍ଯ୍ୟୟୋଽସ୍ମୃତିଃ ।**
**ତତ୍ମାୟୟା-ଅତୋ ବୁଧ ଆଭଜେତ୍ ତଂ**
**ଭକ୍ତ୍ୟା-ଏକୟା-ଈଶଂ ଗୁରୁ ଦେବତା-ଆତ୍ମା ||୩୭||**

ଉ. ଏ ଶ୍ଳୋକରେ ରୋଗ ବୋଲି କୁହାଯାଇଛି ଭବ ଭୟକୁ । ଦେହକୁ ମୁଁ ଓ ବୁଦ୍ଧି, ମନ, ଚିତ୍ତ, ଘର, ସଂସାର, ପୁତ୍ର, କନ୍ୟା, ପତି, ପତ୍ନୀଙ୍କୁ ମୋର ଭାବିବାରୁ ଏ ଭୟ ଆମକୁ ଡ଼ରାଉ (ଅଭିନିବେଶତଃ) ଅଛି । ଯାହାର ଅନ୍ୟ ନାମ ମାୟାର ଆକ୍ରମଣ । ଭଗବାନଙ୍କ ବିମୁଖତା ହିଁ ଭବ ରୋଗର କାରଣ । ଭଗବତ ବିସ୍ମୃତି ଏ ରୋଗର ଲକ୍ଷଣ । ସାଧୁ, ସନ୍ଥ ଓ ସଦ୍‌ଗୁରୁ କମ୍ପାଉଣ୍ଡର, ନର୍ସ ଓ ବୈଦ୍ୟ । ଗୁରୁଙ୍କ ନିର୍ଦ୍ଦେଶିତ ପଥରେ ହରିଭଜନ କରିବାକୁ ଏଠାରେ ଔଷଧ ବୋଲି ବର୍ଣ୍ଣନା କରାଯାଇଛି ।

ପ୍ରଶ୍ନ-୨୮: ଜ୍ଞାନୀମାନଙ୍କ ମତରେ ପରମାତ୍ମା ଅଜନ୍ମା, ଅଶରୀରୀ । ଭକ୍ତି ମାର୍ଗରେ ଚାଲୁଥିବା ସାଧକ କିଭଳି ଓ କାହାର ଭଜନ କରିବ ତେବେ ?

**ଖଂ ବାୟୁଂ ଅଗ୍ନିଂ ସଲିଳଂ ମହୀଂଚ**
**ଜ୍ୟୋତିଂଷି ସତ୍ତ୍ୱାନି ଦିଶୋ ଦ୍ରୁମ-ଆଦୀନ୍ ।**
**ସରିତ୍ ସମୁଦ୍ରାନ୍ ଚ ହରେଃ ଶରୀରଂ**
**ଯତ୍ କିଂଚ ଭୂତଂ ପ୍ରଣମେତ୍ ଅନନ୍ୟଃ ॥୪୧॥**

ଉ. ଜ୍ଞାନୀମାନଙ୍କର କେବଳ ଅଦ୍ୱୈତ ମତ । ସାଧନା ଆରମ୍ଭରେ ଦୃଶ୍ୟମାନ ଆକାଶ (ଖଂ), ବାୟୁ, ଅଗ୍ନି, ଜଳ, ପୃଥିବୀ, ମହକାଶର ଗ୍ରହତାରାକାଦି, ସକଳ ଚର ଅଚର ଜୀବର ଅନ୍ତଃକରଣ (ସତ୍ତ୍ୱାନି), ଦଶ ଦିଗ, ନଦୀ, ପର୍ବ ଓ ସାଗର କିଛି ଭଗବାନଙ୍କର ଶରୀର ବୋଲି ଧାରଣାରେ ଆଣିବାକୁ ହୁଏ । ସବୁ କିଛିକୁ ଭଗବତ ଜ୍ଞାନରେ ମନେ ମନେ ପ୍ରଣାମ କରିବାକୁ ଦରକାର ପଡ଼େ । ଭକ୍ତ ପାଇଁ କିନ୍ତୁ ଭାବନାରେ ଅଦ୍ୱୈତ ସହିତ କାର୍ଯ୍ୟରେ ବା ବ୍ୟବହାରରେ ଦ୍ୱୈତ ରଖିବାକୁ ହୁଏ ।

ପ୍ରଶ୍ନ-୨୯: ଭକ୍ତ ଶରଣାଗତ ହୋଇ (ପ୍ରପଦ୍ୟମାନସ୍ୟ) ଭକ୍ତି ସାଧନା କରି ସାରିଲେ କ'ଣ ଜ୍ଞାନ ଓ ବୈରାଗ୍ୟ ସାଧନା ପୁଣି କରିବ କି ?

**ଭକ୍ତିଃ ପରେଶ-ଅନୁଭବୋ ବିରକ୍ତିଃ**
**ଅନ୍ୟ-ଅତ୍ର ଚ-ଏଷ ତ୍ରିକ ଏକକାଳଃ ।**
**ପ୍ରପଦ୍ୟମାନସ୍ୟ ଯଥା-ଅଶ୍ନତଃ ସ୍ୟୁଃ**
**ତୁଷ୍ଟିଃ କ୍ଷୁତ୍ ଅପାୟୋଽନୁଘାସମ୍ ॥୪୨॥**

ଉ. ନା, ନା ଭକ୍ତକୁ ସେପରି ଅଲଗା ଅଲଗା ସାଧନା କରିବାକୁ ପଡ଼େ ନାହିଁ । ଠିକ୍ ଯେଉଁଭଳି କ୍ଷୁଧାର୍ତ୍ତ ଲୋକ ଭୋଜନର ପ୍ରତି ଗ୍ରାସ (ଗୁଣ୍ଡା)ରେ କ୍ଷୁଧା

ନିବୃତ୍ତି (ପ୍ରାଣମୟ କୋଷରେ କ୍ଷୁଧା ଶାନ୍ତି), ଦେହରେ ଇନ୍ଦ୍ରିୟ ବଳ ପ୍ରାପ୍ତି (ପୁଷ୍ଟିଃ) ସହିତ ମନରେ ସନ୍ତୋଷ (ତୁଷ୍ଟିଃ) ଏକ ସଙ୍ଗରେ ହେଉଥାଏ, ସେହିଭଳି ଭକ୍ତି ସହିତ ବ୍ରହ୍ମ ଅନୁଭବ (ପରେଶାନୁଭବ) ଓ ସଂସାର ବୈରାଗ୍ୟ ଏକ ସଙ୍ଗରେ ହୋଇଚାଲେ ।

ପ୍ରଶ୍ନ-୩୦ : ପ୍ରଥମ ପ୍ରଶ୍ନର ଉତ୍ତର ପ୍ରାପ୍ତହେବା ପରେ ରାଜା ଦ୍ୱିତୀୟ ପ୍ରଶ୍ନରେ ଭକ୍ତର ଲକ୍ଷଣ ପଚାରିଲେ । ଭକ୍ତଙ୍କୁ ଉତ୍ତମ, ମଧ୍ୟମ ଓ କନିଷ୍ଠ ତିନି ଭାଗରେ ବିଭକ୍ତ କରାଯାଏ । ଉତ୍ତମ ଭକ୍ତର କି କି ଲକ୍ଷଣ ସବୁ ଦ୍ୱିତୀୟ ଯୋଗୀଶ୍ୱର ହରି କହିଲେ ?

ହରିଃ ଉବାଚ

**ସର୍ବଭୂତେଷୁ ଯଃ ପଶ୍ୟେତ୍ ଭଗବତ୍ ଭାବଂ ଆତ୍ମନଃ ।**
**ଭୂତାନି ଭଗବତି-ଆତ୍ମନି ଏଷ ଭାଗବତ-ଉତ୍ତମଃ ॥୪୫॥**

ଉ. ନିଜର ଆତ୍ମାଙ୍କୁ ସକଳ ସ୍ଥାବର ଜଙ୍ଗମ ପ୍ରାଣୀ ମଧ୍ୟରେ ଅନୁଭବ କରିବା ସାଥେ ସାଥେ ସମସ୍ତ ପ୍ରାଣୀ ସେଇ ଏକ ପରମେଶ୍ୱରଙ୍କ ଦେହରେ ଥିବାର ଅନୁଭବ କରିବା ଉତ୍ତମ ଭକ୍ତର ଲକ୍ଷଣ । ଦୃଷ୍ଟି ଯାହାର ସମ ବା ପ୍ରେମମୟ ସେଇ ତ ଉତ୍ତମ ହରିଭକ୍ତ ।

ପ୍ରଶ୍ନ-୩୧ : ମଧ୍ୟମ ଭାଗବତ ବା ଭକ୍ତ ଲକ୍ଷଣ ତେବେ କ'ଣ ?

**ଈଶ୍ୱରେ ତତ୍ ଅଧୀନେଷୁ ବାଲିଶେଷୁ ଦ୍ୱିଷତ୍ସୁ ଚ ।**
**ପ୍ରେମ ମୈତ୍ରୀ କୃପା-ଉପେକ୍ଷା ଯଃ କରୋତି ସ ମଧ୍ୟମଃ ॥୪୬॥**

ଉ. ଯେଉଁ ଭକ୍ତ ଈଶ୍ୱରଙ୍କୁ ପ୍ରେମ କରେ, ଅନ୍ୟ ଈଶ୍ୱର ଭକ୍ତଙ୍କୁ ମୈତ୍ରୀ ଦୃଷ୍ଟିରେ ଦେଖେ, ଅଭକ୍ତକୁ (ବାଲିଶେଷୁ) କୃପା ଦୃଷ୍ଟିରେ ଦେଖେ ଓ ବିଷ୍ଣୁ ବୈଷ୍ଣବ ଦ୍ୱେଷୀକୁ ଉପେକ୍ଷା (ଉଦାସୀନ) ଦୃଷ୍ଟିରେ ଦେଖେ ସେ ମଧ୍ୟମ ଶ୍ରେଣୀର ଭକ୍ତ । କେବଳ ଜ୍ଞାନ ଦୃଷ୍ଟି ଥିବା ପ୍ରେମ ଦୃଷ୍ଟି ନଥିବା ସାଧକ ମଧ୍ୟମ ଶ୍ରେଣୀର ଭକ୍ତ ।

ପ୍ରଶ୍ନ-୩୨ : ପ୍ରାକୃତ, ନବୀନ ବା ଅଧମ ଭକ୍ତକୁ ଜଣେ ଚିହ୍ନିବ କିପରି ?

**ଅର୍ଚ୍ଚାୟାଂ-ଏବ ହରୟେ ପୂଜାଂ ଯଃ ଶ୍ରଦ୍ଧୟା-ଈହତେ ।**
**ନ ତତ୍ ଭକ୍ତେଷୁ ଚ-ଅନ୍ୟେଷୁ ସ ଭକ୍ତଃ ପ୍ରାକୃତଃ ସ୍ମୃତଃ ॥୪୭॥**

ଉ. ଯେଉଁ ଭକ୍ତ କେବଳ ଶାଳଗ୍ରାମ, ଶିବ ଲିଙ୍ଗ ବା ଠାକୁରଙ୍କ ମୂର୍ତ୍ତି ଶ୍ରଦ୍ଧା ସହିତ ପୂଜା କରନ୍ତି କିନ୍ତୁ ବିଷ୍ଣୁ ଭକ୍ତ ବୈଷ୍ଣବ ବା ଅନ୍ୟ ସାଧୁ ସନ୍ଥଙ୍କର ଆଦର କରନ୍ତି ନାହିଁ, ସେ ଅଧମ ଭକ୍ତ । ଯାହାଙ୍କର ଦୃଷ୍ଟି କେବଳ ଦ୍ୱୈତବାଦ ଆଧାରିତ ଓ ଅଦ୍ୱୈତ

ଅନୁଭବରୁ ଯେ ବଞ୍ଚିତ ସେ ନିଶ୍ଚୟ ପ୍ରାକୃତ ବା ଅପରିପକ୍ୱ ଭକ୍ତ ।

ପ୍ରଶ୍ନ-୩୩: ସାପକୁ ବାପକୁ ଏକ ଦୃଷ୍ଟିରେ ଦେଖିଲେ ଭକ୍ତ ବିଚରା ସଂସାରରେ ଚଳିବ କେମିତି ବା ଅନ୍ନ ବ୍ୟଞ୍ଜନକୁ ବ୍ରହ୍ମ ବୋଲି ଭାବି ବସିଲେ ଖାନ ପାନ କରିବ କେମିତି ?

**ଗୃହିତ୍ୱା-ଅପି-ଇନ୍ଦ୍ରିୟୈଃ ଅର୍ଥାନ୍ ଯୋ ନ ଦ୍ୱେଷ୍ଟି ନ ହୃଷ୍ୟତି ।**
**ବିଷ୍ଣୋଃ ମାୟାଂ ଇଦଂ ପଶ୍ୟନ୍ ସ ବୈ ଭାଗବତ-ଉତ୍ତମଃ ॥୪୮॥**

ଉ. ନା ନା ସେଭଳି ବ୍ୟବହାର କରିବାକୁ ଭାଗବତ ଆଦୌ କହୁନାହାନ୍ତି । **ଅଦ୍ୱୈତଂ ତ୍ରିଷୁ ଲୋକେଷୁ ନ ଅଦ୍ୱୈତଂ ଗୁରୁଣା ସହ । ଭାବ ଅଦ୍ୱୈତଂ ସଦା କୁର୍ଯ୍ୟାତ୍ କାର୍ଯ୍ୟ ଅଦ୍ୱୈତଂ ନ କର୍ହିଚିତ୍ ।** କାମିନୀ କାଞ୍ଚନକୁ ଦ୍ୱେଷ କରିବାକୁ ଓ ବାଘ ସିଂହଙ୍କୁ ଖାଦ୍ୟ ଖୁଆଇବାକୁ ଆଗଭର ହେବାକୁ (ହୃଷ୍ୟତି) ଏଠାରେ କୁହାଯାଇନାହିଁ । ବରଂ ଏ ଚାରି ଚିଜ ମାୟାଙ୍କର ରୂପବୋଲି ବୁଝିବାକୁ ହେବ ବିଷ୍ଣୁ ଭକ୍ତକୁ ।

କଦଳୀଟିଏ ଭକ୍ତ ଖାଇ ଖୋଜିଥାଏ ଛେଳି କି ଗାଈ ଭଗବାନଙ୍କୁ ଚୋପାଟିକୁ ଖୁଆଇ ଦେବାକୁ । ଅନ୍ନକୁ ସିଦ୍ଧ କରିସାରି ଭକ୍ତ ଖୋଜେ ପେଜ, ତୋରାଣିକୁ ଗାଈ କିମ୍ବା ଷଣ୍ଢ ଭଗବାନଙ୍କୁ ଦେବ ବୋଲି । ମନୁଷ୍ୟ ତାର ଦୁଇ ହାତର ପ୍ରୟୋଗରେ ମଧ ବିଷମତା ରଖେ । ଖାଇବା ବେଳେ ଦକ୍ଷିଣ ହସ୍ତ ଓ ଶୌଚ ହେବାକୁ, ନାକ ସଫା କରିବାକୁ ସେ ବାମ ହସ୍ତ ବ୍ୟବହାର କରେ ନାହିଁକି ?

ପ୍ରଶ୍ନ-୩୪: ଭାବନାରେ ଅଦ୍ୱୈତ ଓ କାର୍ଯ୍ୟରେ ଦ୍ୱୈତ ଭାବରେ ସାଧନା କଲେ ଭକ୍ତର କ'ଣ ସଂପୂର୍ଣ୍ଣ ଦେହ ଭାବ କଟିଯିବ ଓ ଆତ୍ମଭାବ ଜାଗ୍ରତ ହୋଇପାରିବ ?

**ନ ଯସ୍ୟ ଜନ୍ମ କର୍ମଭ୍ୟାଂ ନ ବର୍ଣ୍ଣ-ଆଶ୍ରମ ଜାତିଭିଃ ।**
**ସଜ୍ଜତେଽସ୍ମିନ୍ ଅହଂଭାବୋ ଦେହେ ବୈ ସ ହରେଃ ପ୍ରିୟଃ ॥୫୧॥**

ଉ. ଭାଗବତ ଧର୍ମଙ୍କ ମତରେ ନିଃସନ୍ଦେହ ଭାବରେ ହେବ । ପୁଣି ତାର ଉଚ୍ଚ କୁଳରେ ଜନ୍ମ, ଉପକାର କରିଥିବା କର୍ମ, ଉଚ୍ଚ ବର୍ଣ୍ଣ, ଉଚ୍ଚ ଆଶ୍ରମ, ଉଚ୍ଚ ଜାତି ଆଦି ଭାବରୁ ଉପୁଜୁଥିବା ଅହଂକାର ଜଳି ପୋଡ଼ିଯିବ । ସେ ଶ୍ରୀହରିଙ୍କ ସୁନା ପିଲାଟିଏ (ହରେଃପ୍ରିୟ) ହୋଇଯିବ । ବାସ୍ ସେଇତ ଅସଲି ଭକ୍ତି ଧର୍ମର ମର୍ମ ।

## ଅଥ ୩ୟ ଅଧ୍ୟାୟଃ

### (ମାୟାର ସ୍ୱରୂପ, ମାୟାରୁ ମୁକୁଳିବାର ଉପାୟ, ବ୍ରହ୍ମ ସ୍ୱରୂପ ଓ କର୍ମଯୋଗ ରହସ୍ୟ)

ପ୍ରଶ୍ନ-୩୫: ଭକ୍ତିର ବାଧକ ମାୟାବୋଲି ଏବେ ରାଜା ନିମି ବୁଝିନେଲେ । ଏହି ବିଷ୍ଣୁ ମାୟା ଏତେ ବଳଶାଳୀ ଯେ ବହୁତ ବଡ଼ ଯୋଗୀନ୍ଦ୍ର ମୁନୀନ୍ଦ୍ର ବିଶ୍ୱାମିତ୍ର, ପରାଶରଙ୍କୁ ମଧ ପାଣି ପିଆଇପାରେ । ମାୟାବଦ୍ଧ ଜୀବର ତ୍ରିତାପ ପଞ୍ଚ କ୍ଲେଶ ଦୂରୀଭୂତ ହୁଏ ହରିକଥା ଶ୍ରବଣ କୀର୍ତ୍ତନରେ । ମାୟାର ସ୍ୱରୂପ ବୁଝାଇବାକୁ ଯାଇ ୩ୟ ଯୋଗୀନ୍ଦ୍ର ଅନ୍ତରୀକ୍ଷ କି ଉତ୍ତର ଦେଲେ ?

**ଅନ୍ତରୀକ୍ଷ ଉବାଚ**

**ଏଭିଃ ଭୂତାନି ଭୂତ-ଆତ୍ମା ମହାଭୂତୈଃ ମହାଭୁଜ ।**
**ସସର୍ଜ-ଉଚ୍ଚ-ଅବଚାନି-ଆଦ୍ୟଃ ସ୍ୱ ମାତ୍ରା-ଆତ୍ମ ପ୍ରସିଦ୍ଧୟେ ॥୩॥**

ଉ. ଅନ୍ତରୀକ୍ଷ କହିଲେ, ‘ହେ ରାଜା ନିମି (ମହାଭୁଜ), ପରମେଶ୍ୱର (ଭୂତ-ଆତ୍ମା) ସୃଷ୍ଟି ଆରମ୍ଭରେ (ଆଦ୍ୟଃ) କ୍ଷିତି, ଜଳ, ଅଗ୍ନି, ବାୟୁ ଓ ଆକାଶ ପାଞ୍ଚ ତତ୍ତ୍ୱରେ (ମହାଭୂତୈଃ) ସୃଷ୍ଟି ନିର୍ମାଣ କଲେ (ସସର୍ଜ) । ଦେବତା ଗନ୍ଧର୍ବ ଆଦି ଉଚ୍ଚଯୋନି (ଉଚ୍ଚ), ରାକ୍ଷସ, ଅସୁର ଯୋନି (ଅବଚ) ପୁଣି ନର, ଇତର (ସ୍ଥାବର, ଜଙ୍ଗମ) ଯୋନି ସମସ୍ତଙ୍କ ଦେହ ତିଆରି ହେଲା ମାୟାଙ୍କର କେବଳ ଏହି ପାଞ୍ଚ ତତ୍ତ୍ୱରେ (ମହାଭୂତୈଃ) ।

ଭଗବାନଙ୍କ ସୃଷ୍ଟିର ଉଦ୍ଦେଶ୍ୟ ଥିଲା ସକଳ ଜୀବ ନିଜ ନିଜ ଇନ୍ଦ୍ରିୟ ମାନଙ୍କ ଦ୍ୱାରା ବିଷୟ ଭୋଗ କରିବେ (ସ୍ୱ ମାତ୍ରା ପ୍ରସିଦ୍ଧିୟେ) ଦେହ-ଆତ୍ମ୍ୟ ବୁଦ୍ଧିରେ । ତ୍ରିତାପ, ପଞ୍ଚକ୍ଲେଶରେ ଅସରନ୍ତି ପୀଡ଼ା ପାଇବେ ବିଷୟ ଭୋଗ ଉନ୍ମୁଖ ହୋଇ । ପରେ ଦୁଃଖର କାରଣ ଜିଜ୍ଞାସା କରି ସାଧୁ ବୈଷ୍ଣବଙ୍କ ଶରଣାଗତ ହୋଇ । ଶେଷରେ ତ୍ୟାଗ ବୈରାଗ୍ୟ ମାର୍ଗରେ ଓଲଟ ଦିଗରେ ସାଧନା କରି ମୁକ୍ତିର ସ୍ୱାଦ ଚାଖି ପାରିବେ (ସ୍ୱ ଆତ୍ମ ପ୍ରସିଦ୍ଧୟେ) ।

ଦ୍ରଷ୍ଟା-ଦୃଶ୍ୟ, ଜଡ଼-ଚେତନକୁ ଦୁଇ ଭାଗ କରାଇ ମଝିରେ ଅହଂକାର, ଜୀବ ବା ମୁଁ ହିଁ ସକଳ ପିଣ୍ଡରେ ବିଦ୍ୟମାନ । ଜୀବର ବିଷୟ ଭୋଗ ଆସକ୍ତିର ନାମ ମାୟାର ଆକ୍ରମଣ । ଜନ୍ମ ପରେ ଜନ୍ମ ଅସହ୍ୟ ପୀଡ଼ା ସହେ ଜୀବ । ଜଡ଼ ସଂସାରରେ ସୁଖ ଖୋଜି ଦୁଃଖ ପାଏ । ଦୁଃଖକୁ ସୁଖ ମନେ କରି ଆଶା ଆଶଙ୍କାରେ ବଞ୍ଚି ରହେ । ଏପରି କି ଯୁଗପ୍ରଳୟ, ମନ୍ୱନ୍ତରପ୍ରଳୟ ଓ କଳ୍ପାନ୍ତ ପ୍ରଳୟ ପର୍ଯ୍ୟନ୍ତ ମୋହ ନିଦ୍ରା ଭାଙ୍ଗେନା ବିଚରାର । ଏହା ହିଁ ଦୁର୍ଜୟ ମାୟାର କରାମତି ! !

ପ୍ରଶ୍ନ-୩୬: ସୃଷ୍ଟି ହୁଏ ନାରାୟଣଙ୍କ ମାୟା ଦ୍ୱାରା । ପାଳନ କ୍ରିୟା ଚାଲେ ମାୟା ଦ୍ୱାରା । ପୁଣି ସଂହାର କ୍ରିୟା ମଧ୍ୟ ହୁଏ ମାୟାର ଏହି ଅଚିନ୍ତ୍ୟଶକ୍ତି ଦ୍ୱାରା ଯାହା ଦୁଇ ପ୍ରକାରର । ବିଦ୍ୟାମାୟା ଓ ଅବିଦ୍ୟାମାୟା । ବିଦ୍ୟାମାୟା ଦ୍ୱାରା ଅବିଦ୍ୟମାୟା ହଟାଇବାକୁ ହୁଏ । ଜୀବ କିପରି ଜାଣିପାରେ ଯେ ମୁଁ ଦେହ ନୁହେଁ ଆତ୍ମା ?

ପ୍ରବୁଦ୍ଧ ଉବାଚ

**କର୍ମଣି-ଆରଭମାଣାନାଂ ଦୁଃଖ ହତ୍ୟୈ ସୁଖାୟ ଚ ।**
**ପଶ୍ୟେତ ପାକ ବିପର୍ଯ୍ୟାସଂ ମିଥୁନି ଚାରିଣାଂ ନୃଣାମ୍ ॥୧୮॥**

ଉ. ପରସ୍ପରର ଦେହ ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ପୁରୁଷ ସ୍ତ୍ରୀ ବିବାହ କରନ୍ତି । ଦାମ୍ପତ୍ୟ ସୁଖ (ମିଥୁନି ଚାରିଣାଂ) ଖୋଜି ଦେହ, ଇନ୍ଦ୍ରିୟ ଭୋଗରେ ମାତନ୍ତି । ବଡ଼ ବଡ଼ ଯୋଜନା (ଆରଭମାଣାନାଂ) କରନ୍ତି । ଘୋଡ଼ା ଚଢ଼ିବୁ, ଗାଡ଼ି ଚଢ଼ିବୁ । ଚନ୍ଦ୍ରକୁ ଯିବୁ । ମଉଜ କରିବୁ । ଦୁଃଖକୁ ପିଙ୍ଗି ଦେବୁ । କେବଳ ସୁଖ ସାଉଁଟିବୁ । ହେଲେ ଫଳ ମିଳେ ଓଲଟ (ପାକ ବିପର୍ଯ୍ୟାସଂ) ସୁଖ ଚାହିଁଲେ ମଧ୍ୟ ମିଳେନା । ଯାହା ବା ମିଳେ ସମୁଦ୍ରକୁ ଶଙ୍ଖେ । ଦୁଃଖ ନ ଚାହିଁଲେ ମଧ୍ୟ ମାଡ଼ିଆସେ । ଗୋଟିକର ଅନ୍ତ ନହେଉଣୁ ଆହୁରି ଗୋଟେ ଦୁଃଖ ଜାବୁଡ଼ି ଦୁହିଁଙ୍କୁ ଧରେ । ଶେଷରେ ଜରା, ବ୍ୟାଧି, ମରଣ ଭୟରେ ଉଭୟେ ତ୍ରାହି ତ୍ରାହି ଡ଼ାକନ୍ତି । ଗୁରୁ ଗୋବିନ୍ଦଙ୍କ ଆଶ୍ରୟ ଖୋଜନ୍ତି ।

ପ୍ରଶ୍ନ-୩୭: ଦାମ୍ପତ୍ୟ ଜୀବନରେ ଯେ ସୁଖ ଆଦୌ ମିଳେନା ଏ କଥା ନୁହେଁ । ସୁଖ ତୁଳନାରେ ଦୁଃଖର ମାତ୍ରା କିନ୍ତୁ ଅତ୍ୟନ୍ତ ବେଶୀ । ଦିଲ୍ଲୀର ମୟୂର ସିଂହାସନରେ ବସି, ସୁବର୍ଣ୍ଣ ବାସନରେ ଭୋଜନ କରି ସଂଖ୍ୟାତୀତ ସୁନ୍ଦରୀ ଯୁବତୀ ନାରୀ ଭୋଗରେ ମଧ୍ୟ ମହାମହିମ ଦିଲ୍ଲୀ ସିଂହାସନର ସମ୍ରାଟମାନେ ମଧ୍ୟ ଅଖଣ୍ଡ ସୁଖ ପ୍ରାପ୍ତ ହୋଇପାରିନାହାନ୍ତି । ହୁଅନ୍ତୁ ପଛେ ସେମାନେ ମହାରାଜା ଆଉରେଙ୍ଗଜେବ, ରାଜା ପୁରୁରବା, ଯଯାତି, କିମ୍ବା ସ୍ୱର୍ଗର ରାଜା ଦେବରାଜ ଇନ୍ଦ୍ର । ସେମାନେ ସମସ୍ତେ

ଶେଷରେ ଅଶାନ୍ତ, ଅତୃପ୍ତ, ଅସୁଖୀ ଓ ଅସହାୟ ହୋଇଛନ୍ତି । ଏ ଦୁଃଖ ବ୍ୟାଧିର ଉପଶମ ଲାଗି ପ୍ରବୁଦ୍ଧ କି ଉପାୟ ବତାଇଲେ ରାଜା ନିମିଙ୍କୁ ?

**ତସ୍ମାତ୍ ଗୁରୁଂ ପ୍ରପଦ୍ୟେତ ଜିଜ୍ଞାସୁଃ ଶ୍ରେୟ ଉତ୍ତମମ୍ ।**
**ଶାବ୍ଦେ ପରେ ଚ ନିଷ୍ଣାତଂ ବ୍ରହ୍ମଣି-ଉପଶମଂ ଆଶ୍ରୟମ୍ ॥୨୧॥**

ଉ. ଜଣେ ବେଦଜ୍ଞ ଗୁରୁଙ୍କ ଶରଣଯିବା (ପ୍ରପଦ୍ୟେତ) ଦରକାର । ସେଭଳି ଦୁଃଖର କାରଣ ଜିଜ୍ଞାସା କଲେ ସିନା ସୁଖ ଦୁଃଖରୁ ଅତୀତ ବ୍ରହ୍ମାନନ୍ଦ ଏବଂ ପ୍ରେମାନନ୍ଦ ରୂପୀ କଲ୍ୟାଣକାରୀ (ଶ୍ରେୟଂ ଉତ୍ତମ) ଦିବ୍ୟ ବସ୍ତୁ ପ୍ରାପ୍ତ ହେବ । ସେ ଗୁରୁ କେବଳ ଶାବ୍ଦିକ ବୈଦିକ ଗୁରୁ ହେଲେ ଚଳିବନି । ଜ୍ଞାନୀ ହେବା ସାଥେ ସାଥେ ନିଜେ ବୈଦିକ ମାର୍ଗରେ ଚାଲୁଥିବା (ବ୍ରହ୍ମଣି-ଉପଶମ ଆଶ୍ରୟଂ) ଏକାନ୍ତ ଆବଶ୍ୟକ । ତେବେ ସେ ଶିଷ୍ୟଙ୍କୁ ମାୟା ମୁକ୍ତିର ଠିକଣା ଉପାୟ ବତାଇଦେବେ । ଜୀବର ଇହଲୋକର ଓ ସ୍ୱର୍ଗ ଆଦି ପରଲୋକର ସୁଖ ଭୋଗ ଲାଳସା ସବୁ ଜଳି ପୋଡ଼ି ପାଉଁଶ ହୋଇଯିବ । ସଂସାରୀ ସୁଖ ଆସକ୍ତିରେ ପରା ବୈରାଗ୍ୟ ପ୍ରାପ୍ତ ହେବ ସେ ।

ପ୍ରଶ୍ନ-୩୮: ସାଧକ ଗୁରୁ ଆଶ୍ରୟରେ ରହି ପବିତ୍ରତା, ତପସ୍ୟା, ତ୍ୟାଗ, ବୈରାଗ୍ୟ, ମୌନ, ସ୍ୱାଧ୍ୟାୟ, ସରଳତା, ବ୍ରହ୍ମଚର୍ଯ୍ୟ, ଅହିଂସା, ସର୍ବତ୍ର ବ୍ରହ୍ମ ଦର୍ଶନ, ସନ୍ତୋଷ ଇତ୍ୟାଦି ଶିକ୍ଷା କରିବ କେଉଁଭଳି ସନ୍ଥ ବା ଗ୍ରନ୍ଥ ଆଦିଙ୍କର ଆଶ୍ରୟରେ ?

**ଶ୍ରଦ୍ଧାଂ ଭାଗବତେ ଶାସ୍ତ୍ରେ ଅନିନ୍ଦାଂ ଅନ୍ୟତ୍ର ଚ-ଅପି ହି ।**
**ମନୋ ବାକ୍ କର୍ମ ଦଣ୍ଡଂଚ ସତ୍ୟଂ ଶମ ଦମୌ-ଅପି ॥୨୬॥**

ଉ. ଶ୍ରଦ୍ଧାର ସହିତ ଶ୍ରୀମଦ୍ଭାଗବତ ଗ୍ରନ୍ଥ ଶ୍ରବଣ କରିବ ବୈଷ୍ଣବ ମୁଖରୁ । ନିଜେ ମଧ୍ୟ ପଠନ, ପାଠନ, କୀର୍ତ୍ତନ ମନନ ଆଦି କରିବ । ପୁଣି ଅନ୍ୟମାନେ ପଢୁଥିବା ଅନ୍ୟାନ୍ୟ ଅଧ୍ୟାତ୍ମ ଶାସ୍ତ୍ରମାନଙ୍କର ନିନ୍ଦା କରିବ ନାହିଁ । ସେସବୁ ଅନ୍ୟ ନିମ୍ନ କିମ୍ବା ଉଚ୍ଚ ଅଧିକାରୀଙ୍କ ନିର୍ମିତ, ପ୍ରଣିତ କିମ୍ବା ସେଭଳି ସାଧକଙ୍କ ପାଇଁ ଉଦ୍ଦିଷ୍ଟ ବୋଲି ମନେ କରିବ । ନଚେତ ଅପରାଧ ହେବ । ଶେଷରେ ଅନ୍ତଃ ଇନ୍ଦ୍ରିୟ ଓ ବାହ୍ୟ ଇନ୍ଦ୍ରିୟଙ୍କ ସଂଯମ, ସତ୍ୟ ଭାଷଣ, ମନ ବାଣୀ ଉପରେ ନିୟନ୍ତ୍ରଣ ଆପେ ଆପେ ହୋଇଚାଲିବ । ତେଣିକି ଭକ୍ତର ଜପ, ତପ, ଦାନ, ଦାରା, ସୁତ, ଗୃହ ଏପରିକି ନିଜର ପ୍ରାଣକୁ ଭକ୍ତ ଈଶ୍ୱରଙ୍କର ଭାବି ତାଙ୍କୁ ସମର୍ପଣ କରିଦେବ ।

ପ୍ରଶ୍ନ-୩୯: ଜଣେ ଭକ୍ତ ଆଉ ଜଣେ ଭକ୍ତକୁ ପାଇଲେ ସେମାନେ ନିଜ

ନିଜର ସଂସାର ସୁଖ ଦୁଃଖ କଥା ଆଦୌ ଆଲୋଚନା କରିବେ ନାହିଁ । ବରଂ ହରିଗୁଣ ଶ୍ରବଣ କୀର୍ତ୍ତନରେ ଲାଗିଯିବେ । ତେବେ ସିନା ଉଭୟ ଭକ୍ତଙ୍କର ଅନ୍ତଃକରଣର ପାପ (ଅଘ-ଓଘ) ଜଳିପୋଡ଼ିଯିବ । ନିର୍ମଳ ହେବ । ଜଣେ ନିଜେ ହରି ସ୍ମରଣ କରି (ସ୍ମରନ୍ତଃ) ଅନ୍ୟର ହରି ସ୍ମରଣ କରାଇଦେବ (ସ୍ମାରୟନ୍ତଃ) । ଦୁଇଜଣ ଭକ୍ତ ଭକ୍ତି ବିଷୟରେ ଆଲୋଚନା କଲେ କ'ଣ ମିଳିବ ଦୁହିଁଙ୍କୁ ?

**ସ୍ମରନ୍ତଃ ସ୍ମାରୟନ୍ତଃ ଚ ମିଥୋଽଘ-ଓଘ ହରଂ ହରିମ୍ ।**
**ଭକ୍ତ୍ୟା ସଞ୍ଜାତୟା ଭକ୍ତ୍ୟା ବିଭ୍ରତ୍ ଉତ୍ପୁଲକାଂ ତନୂମ୍ ॥୩୧॥**

ଉ. ଗୋଟିଏ ଜଳନ୍ତା ଦୀପ ପାଖକୁ ଆଉ ଗୋଟିଏ ଜଳନ୍ତା ଦୀପ ଆଣିଲେ କଥାଟି ଠିକ୍ ବୁଝିହେବ । ପ୍ରଥମେ ଦୁଇ ଦୀପ ତଳ ସିନା ଅନ୍ଧାର ଥିଲା । ଏବେ କିନ୍ତୁ ଉଭୟ (ମିଥୋ) ଦୀପ ତଳର ଅନ୍ଧାର ଦୂର ହୋଇଗଲା । ସେହିଭଳି ଉଭୟେ ଭକ୍ତିରେ ଏବେ ମାଲାମାଲ । ଉଭୟଙ୍କ ଦେହରେ ଅଶ୍ରୁ ପୁଲକ ଆଦି ଅଷ୍ଟ ସାତ୍ତ୍ୱିକ ଭାବ ଦେଖାଯିବ । ଉଭୟ ଭକ୍ତ ଦୁସ୍ତର ମାୟା ସାଗରକୁ ଅକ୍ଳେଶରେ ଭାଗବତ ଧର୍ମ ଆଶ୍ରୟରେ ପାର ହୋଇଯିବେ ।

ପ୍ରଶ୍ନ-୪୦: ପଞ୍ଚମ ଯୋଗୀଶ୍ୱର ପିପ୍ଳାୟନଙ୍କୁ କର୍ମଯୋଗୀର ବ୍ରହ୍ମ, ଜ୍ଞାନ ଯୋଗୀର ପରମାତ୍ମା ଓ ଭକ୍ତର ନାରାୟଣ ଭଗବାନଙ୍କ ମଧ୍ୟରୁ କାହାର ଭକ୍ତି କରିବାକୁ ହେବ ବୋଲି କାହିଁକି ପଚାରିଲେ ?

ପିପ୍ଳାୟନ ଉବାଚ

**ଜର୍ହି-ଅବ୍ଜନାଭ ଚରଣ-ଏଷଣୟା-ଉରୁଭକ୍ତ୍ୟା**
**ଚେତୋ ମଳାନି ବିଧମେତ୍ ଗୁଣ କର୍ମଜାନି ।**
**ତସ୍ମିନ୍ ବିଶୁଦ୍ଧ ଉପଲଭ୍ୟତ ଆତ୍ମ ତତ୍ତ୍ୱଂ**
**ସାକ୍ଷାତ୍ ଯଥା-ଅମଳ ଦୃଶୋଃ ସବିତୃ ପ୍ରକାଶଃ ॥୪୦॥**

ଉ. ବହୁତ ଉଚ୍ଚକୋଟିର ସାଧକ ମଧ୍ୟ ବ୍ରହ୍ମ, ପରମାତ୍ମା ଓ ଭଗବାନଙ୍କର ଭେଦ ଓ ଅଭେଦ ଦୁଇ କଥାକୁ ତତ୍ତ୍ୱତଃ ବୁଝି ନପାରି ଅଡୁଆରେ ପଡ଼ନ୍ତି । ସେମାନଙ୍କର ସାଧନ ଅଧା ବାଟରେ ଅଟକି ଯାଏ କିମ୍ବା ଭୁଲ ବାଟରେ ଯିବାର ନଜିର ଅଛି । ଏ ବିଷୟରେ ସଂଶୟ ମୋଚନ କରିବାକୁ ଯାଇ ପିପ୍ଳାୟନ କହିଲେ ଯେ ତତ୍ତ୍ୱ ଗୋଟିଏ କିନ୍ତୁ ନାମ ତିନୋଟି ଓ କାମ ମଧ୍ୟ ତିନି ପ୍ରକାର ଦେଖାନ୍ତି ସେମାନେ ।

ନିର୍ଗୁଣ ନିରାକାର ବ୍ରହ୍ମ ଧାନ କରିବା ସାଧକ ସତ୍‌ଚିତ୍ ଆନନ୍ଦମୟ ବ୍ରହ୍ମଙ୍କୁ ଚିନ୍ତନ ମନନ କରି ଅଦ୍ୱୈତ ସ୍ଥିତିରେ ପହଞ୍ଚିଯାଆନ୍ତି । ଯେହେତୁ ବ୍ରହ୍ମ ସ୍ୱୟଂ ଅକର୍ତ୍ତା ସେ ସାଧକଙ୍କୁ କୃପା କରିପାରନ୍ତି ନାହିଁ । ତେଣୁ ଏଥରକ ସାଧକ ଉଚ୍ଚତର ଆଧ୍ୟାତ୍ମିକ ଗୁରୁଙ୍କ ଶରଣଯାଏ । ସଗୁଣଂ ନିରାକାର ପରମାତ୍ମାଙ୍କ ଲୀଳା, ମନନ ଚିନ୍ତନ କରି ଲୀଳା ପରିକର ହୋଇ ସାଲୋକ୍ୟ ଆଦି ପାଞ୍ଚ ମୁକ୍ତିର ଅଧିକାରୀ ହୁଏ । ଶେଷରେ ଭାଗ୍ୟରେ ଥିଲେ ଆହୁରି ଅଧିକ ଉଚ୍ଚତର ରସିକ ଗୁରୁଙ୍କ ଶରଣାଗତ ହୁଏ । ନିଷ୍କାମ ଭକ୍ତ ସାଧନା କରି ଜୀବନ୍ମୁକ୍ତିର ଅଧିକାରୀ ମଧ୍ୟ ହୋଇପାରେ ।

ମହମବତୀ, ଲଣ୍ଠନ, ଲ୍ୟାମ୍ପ ଆଦି ଆଲୋକରେ କାମ ତ ଚଳିଯାଏ ସଂସାରୀ ଲୋକର । ସୂର୍ଯ୍ୟଙ୍କ ଆଲୋକ ଦର୍ଶନ (ସବିତୃ ପ୍ରକାଶଃ ) କଲାପରେ ସେ ବୁଝିଯାଏ (ଉପଲଭ୍ୟତ ଆତ୍ମତତ୍ତ୍ୱଂ) ଯେ ସୂର୍ଯ୍ୟ ହିଁ ସକଳ ଆଲୋକର, ଶକ୍ତିର ଆଧାର ଅନ୍ୟ ସମସ୍ତେ ତାଙ୍କର ଅଂଶ ବା ଅଂଶର ଅଂଶ କଳା । ନାରାୟଣଙ୍କୁ ଏକାନ୍ତ ଭକ୍ତି କଲେ (ଅବ୍‌ଜନାଭ ଚରଣ-ଏଷଣୟା-ଉରୁଭକ୍ତ୍ୟା) ଭକ୍ତ ମନର ଯାବତୀୟ ମଇଳା (ଚେତୋମଳାନି) ଧୋଇ ହୋଇଯାଏ (ବିଧମେତ୍) ।

ପ୍ରଶ୍ନ-୪୧: କର୍ମ ବିଷୟରେ ମହର୍ଷି ଜୈମିନି କର୍ମମୀମାଂସା ଦର୍ଶନ ଶାସ୍ତ୍ର ଲେଖିଛନ୍ତି । ଷଟ୍ ଦର୍ଶନ ମଧ୍ୟରେ ଏହା ଏକ ଉଚ୍ଚକୋଟୀର ଦର୍ଶନ ଶାସ୍ତ୍ର । କର୍ମଯୋଗ ବିଷୟରେ ସ୍ୱୟଂ ଭଗବାନ କୃଷ୍ଣ ମଧ୍ୟ ସଖା ଅର୍ଜ୍ଜୁନଙ୍କୁ ଏହି କର୍ମ ମାର୍ଗ ଦର୍ଶନ କରାଇଛନ୍ତି । ପୁଣି ଅନ୍ତଃକରଣ ଶୁଦ୍ଧି ବା ମନ ମଇଳା ଧୋଇବାକୁ ବେଦ ଶାସ୍ତ୍ର ମଧ୍ୟରେ ଯଜୁଃ ବେଦ ପ୍ରଣୀତ ହୋଇଛନ୍ତି ।

ସୁତରାଂ ଷଷ୍ଠ ପ୍ରଶ୍ନରେ ରାଜା ନିମି କର୍ମଯୋଗର ରହସ୍ୟ ଜାଣିବାକୁ ଚାହିଁଛନ୍ତି । ପୁଣି କହିଛନ୍ତି ଯେ ସେ ପୂର୍ବେ ଏହି କର୍ମଯୋଗ ବିଷୟକ ପ୍ରଶ୍ନ ନିଜ ପିତା ଇକ୍ଷ୍ୱାକୁଙ୍କ ଉପସ୍ଥିତିରେ ଚତୁଃସନଙ୍କୁ ପଚାରିଥିଲେ ମଧ୍ୟ ସେମାନେ କାହିଁକି ଉତ୍ତର ଦେଲେ ନାହିଁ ?

ଆବିର୍ହୋତ୍ର ଉବାଚ

**କର୍ମ-ଅକର୍ମ ବିକର୍ମ-ଇତି ବେଦବାଦୋ ନ ଲୌକିକଃ ।**
**ବେଦସ୍ୟ ଚ-ଈଶ୍ୱର-ଆତ୍ମତ୍ୱାତ୍ ତତ୍ର ମୁହ୍ୟନ୍ତି ସୂରୟଃ ।**
**ଶିଶୁତ୍ୱାତ୍ ନ ଦତ୍ତଂ ତତ୍ର ବ୍ରହ୍ମପୁତ୍ରୈଃ ତବ-ଉତ୍ତରମ୍ ।।୪୩।।**

ଉ. କର୍ମ, ଅକର୍ମ, ବିକର୍ମର ରହସ୍ୟ ବେଦ ବର୍ଣ୍ଣିତ ବିଷୟ । କୌଣସି ଲୋକର ଲୌକିକ ବୁଦ୍ଧିରେ ତାହାର ନିର୍ଣ୍ଣୟ ଅସମ୍ଭବ । ଭୌତିକ ଜ୍ଞାନରେ ଧୂରୀଣ ପଣ୍ଡିତମାନେ (ସୂରୟଃ) ହଡ଼ବଡ଼େଇ ଯାଆନ୍ତି ଏହାର ପ୍ରକୃତ ରହସ୍ୟ ବୁଝିବାରେ (ମୁ୍ୟହନ୍ତି) । ବେଦ ସ୍ୱୟଂ ପରମ ଇଶ୍ୱରଙ୍କ ଅଙ୍ଗ ସ୍ୱରୂପ । ତାହାର ମର୍ମ କେବଳ ସେଇ ଇଶ୍ୱରଙ୍କୁ ଏକା ଜଣା କିମ୍ବା ସେ ଯାହାକୁ କୃପା କରନ୍ତି ସେ ଜାଣିପାରନ୍ତି ଏ ଗୂଢ଼ ରହସ୍ୟ । ସେତେବେଳେ ରାଜା ନିମି ଗୁରୁ ଆଶ୍ରିତ ନଥିଲେ । ବୟସର ଅପରିପକ୍ୱତା ବିଚାର କରି ବ୍ରହ୍ମାଙ୍କ ଚାରିପୁତ୍ର ସେତେବେଳ ତାଙ୍କୁ କର୍ମ ଯୋଗ ରହସ୍ୟ କହି ନଥିଲେ ।

ପ୍ରଶ୍ନ-୪୨ : ମିଠା ଖାଇ କାହାକୁ ରୋଗ ହୋଇଥିଲେ ପିତା ଔଷଧକୁ (ଅଗଦଂ ଯଥା) ମିଠାରେ ଲୁଚାଇ ରଖି ତାକୁ ଖୁଆଇଲେ ସେ ରୋଗ ଉପଶମ ହୋଇଥାଏ । ଭବରୋଗୀକୁ ଏଠାରେ ମିଠାପ୍ରିୟ (ବାଳାନାଂଅନୁଶାସନଂ) କୁହାଯାଇଛି । ଆସକ୍ତିଯୁକ୍ତ କର୍ମ କରି ମନୁଷ୍ୟ ବନ୍ଧନରେ ପଡ଼େ । ତେବେ ବୈଦିକ ସକାମ କର୍ମ କରିବାକୁ କାହିଁକି ସାଧୁ, ସନ୍ଥ, ଗୁରୁ ନିର୍ଦ୍ଦେଶ ଦିଅନ୍ତି ?

**ପରୋକ୍ଷବାଦୋ ବେଦୋଽୟଂ ବାଳାନାଂ ଅନୁଶାସନମ୍ ।**
**କର୍ମମୋକ୍ଷାୟ କର୍ମାଣି ବିଧତ୍ତେ ହି-ଅଗଦଂ ଯଥା ॥୪୪॥**

ଉ. ଷଷ୍ଠ ଯୋଗେଶ୍ୱର ଆବିହୋତ୍ର କହିଲେ ଯେ ତାହା ହିଁ ପରୋକ୍ଷବାଦ ଶିକ୍ଷା ଦେଉଥିବା ବୈଦିକ ସନ୍ଦେଶ ଜୀବପାଇଁ । ସକାମକର୍ମ କରି ବନ୍ଧନରେ ମନୁଷ୍ୟ ପଡ଼େ ଏ କଥା ଅବଶ୍ୟ ସତ । ସେଇ କର୍ମକୁ ନିଷ୍କାମ ଭାବରେ ବୈଦିକ ନିର୍ଦ୍ଦେଶ ଅନୁସାରେ କଲେ ଆଉ ଅଧିକ ବନ୍ଧନ ତ ହୁଏ ନାହିଁ । ପୁଣି ପଡ଼ିଥିବା ବନ୍ଧନରୁ ମଧ୍ୟ ମୁକ୍ତି ମିଳିଯାଏ ।

ପ୍ରଶ୍ନ-୪୩: ବେଦରେ କର୍ମ ଅର୍ଥ ସକାମ ଯଜ୍ଞ । ଜୈମିନିଙ୍କ କର୍ମର ଅର୍ଥ ମଧ୍ୟ ଠିକ୍ ସେଇଆ । ହେଲେ ଗୀତାଙ୍କ ବର୍ଣ୍ଣିତ ନିଷ୍କାମ କର୍ମ ବନ୍ଧନକାରକ କର୍ମ ନୁହେଁ । ଏହା କର୍ମଯୋଗ । ବେଦ ମର୍ମଜ୍ଞମାନେ ବତାନ୍ତି ବୈଦିକ ସକାମ କର୍ମ କରୁ କରୁ ମନୁଷ୍ୟର ମନ ଶୁଦ୍ଧ ହୋଇ ଶେଷରେ ନିଷ୍କାମ କର୍ମ କରିବାକୁ ସେଇ ଯଜ୍ଞ ପ୍ରେରଣା ଦିଅନ୍ତି । ଯଦି ଜଣେ ବେଦୋକ୍ତ କର୍ମ ଅଜ୍ଞାନତା କିମ୍ବା ଅହଂକାର ଯୋଗୁ ନକରି କର୍ମ ବିମୁଖ ହେବ ତେବେ ତାକୁ କେଉଁ ଫଳ ଭୋଗିବାକୁ ହେବ ?

**ନ-ଆଚରେତ୍ ଯଃ ତୁ ବେଦ-ଉକ୍ତଂ ସ୍ୱୟଂ ଅଜ୍ଞୋଽଜିତ-ଇନ୍ଦ୍ରିୟଃ ।**
**ବିକର୍ମଣା ହି-ଅଧର୍ମେଣ ମୃତ୍ୟୋଃ ମୃତ୍ୟୁଂ ଉପୈତି ସଃ ।।୪୫।।**

ଉ. ଅଜାଣତରେ (ସ୍ୱୟଂ ଅଜ୍ଞୋ) ହେଉ କିମ୍ଵା ଭୌତିକ ସୁଖ ଲାଳସାରେ ହେଉ ଅକର୍ମ (ବନ୍ଧନ କାରକ କର୍ମ) କିମ୍ଵା ନିଷିଦ୍ଧ କର୍ମ (ବିକର୍ମଣା) ଦ୍ୱାରା ମୃତ୍ୟୁ ପରେ ପୁଣି ନିଜ ମୃତ୍ୟୁକୁ ନିମନ୍ତ୍ରଣ କରି ଚାଲୁଥିବ । ୮୪ଲକ୍ଷ ଯୋନି ଭ୍ରମଣ ତାର ବନ୍ଦ ହେବ ନାହିଁ । ମୃତ୍ୟୁଦେବତା ଯମରାଜା ତାକୁ ପୁଣି ଏକ ନରକରୁ ଅନ୍ୟ ନରକକୁ ମାଗଣା ଟିକଟ କାଟି ପଠାଇ ଦେଉଥିବେ ତାର ଅନ୍ତଃକରଣର ଶୁଦ୍ଧି ଲାଗି ।

ପ୍ରଶ୍ନ-୪୪: ଯଦି ବୈଦିକ ସକାମ କର୍ମ ନ କରି ଜଣେ ମନ ନିଜ ଇଛା କର୍ମ କରିବ ସଂସାର ବନ୍ଧନରେ ସେ ପଡ଼ିବ । ପୁଣି ବୈଦିକ ସକାମ କର୍ମ କରି ମଧ୍ୟ ସେଇ ବନ୍ଧନରେ ପଡ଼ିବ ତେବେ ବେଦରେ ଏଭଳି କର୍ମ କରିବାକୁ କାହିଁକି ନିର୍ଦ୍ଦେଶ ଦିଆଯାଇଛି ?

**ବେଦୋକ୍ତଂ ଏବ କୁର୍ବାଣୋ ନିଃସଙ୍ଗୋଽର୍ପିତଂ ଈଶ୍ୱରେ ।**
**ନୈଷ୍କର୍ମ୍ୟାଂ ଲଭତେ ସିଦ୍ଧିଂ ରୋଚନା-ଅର୍ଥା ଫଳଶ୍ରୁତିଃ ।।୪୬।।**

ଉ. ଅତି କମରେ କର୍ମ କରି ଲୋଭନୀୟ ଫଳ ପାଇବାକୁ ଆଗ୍ରହୀ ହେବାକୁ ବେଦ ଏ ବ୍ୟବସ୍ଥା ଖଞ୍ଜିଛନ୍ତି । ନ ହେଲେ ସେ ମନ ଇଛା କର୍ମ କରି ବନ୍ଧନରେ ପଡ଼ିବ କମ୍ଵା ଆଦୌ କର୍ମ ନକରି ଅଳସୁଆ ହୋଇ ବସି ରହିବ । ସେଥିଲାଗି ବେଦଙ୍କର କର୍ମ କରିବାର ପ୍ରୋତ୍ସାହନ ପାଇଁ ଏହା ଏକ ସୁଚିନ୍ତିତ କୌଶଳ । ପିଲାକୁ ଛତା, ଯୋତା, ପାଣିବୋତଲ, ବ୍ୟାଗ୍ ଦେଇ ସ୍କୁଟରରେ ବସାଇ ନନେଲେ ସେ ବିଦ୍ୟାଳୟ ଯିବ କି ? ପାଠ ପଢ଼ିବ କି ? ଆଦୌ ଯିବନି । ଏଇ ସିନା ବେଦଙ୍କର ବୁଦ୍ଧିମାନୀ କାମ ! ! !

ସୁତରାଂ ସକାମ ବୈଦିକ କର୍ମ କରୁ କରୁ ଆପେ ଆପେ ନିଷ୍କାମ କର୍ମ କରିବାରେ ସାଧକ ଆଗ୍ରହ ପ୍ରକାଶ କରିବ । ତେଣିକି ଆତ୍ମଜ୍ଞାନ ପ୍ରାପ୍ତି, ଗୁରୁ ପ୍ରାପ୍ତି, ଈଶ୍ୱର ଶରଣାଗତି ଆଦି ଅକ୍ଳେଶରେ ତାକୁ ମିଳିଯିବ । ଶଙ୍କରଜୀଙ୍କ ପ୍ରଦର୍ଶିତ ତନ୍ତ୍ର ମାର୍ଗରେ ମଧ୍ୟ ଏ ସିଦ୍ଧି ସବୁ ପ୍ରାପ୍ତ ହୋଇପାରେ ସାଧକ ଯଦି ଜଣେ ଉପଯୁକ୍ତ ବୈଷ୍ଣବ ସଦ୍‌ଗୁରୁଙ୍କ ଶରଣାଗତ ହୋଇପାରେ ।

# ଅଥ ୪ର୍ଥ ଅଧ୍ୟାୟଃ

## (ଭଗବାନଙ୍କର ସ୍ୱାଂଶ ଓ ବିଭିନ୍ନାଂଶ ଅବତାର ଲୀଳା ବର୍ଣ୍ଣନ)

ପ୍ରଶ୍ନ-୪୫: ପୂର୍ବ ଅଧ୍ୟାୟରେ କର୍ମଯୋଗ ପ୍ରସଙ୍ଗରେ ରାଜା ନିମି ଶ୍ରବଣ କଲେ ଯେ ଭଗବାନଙ୍କ ରୂପ ଧ୍ୟାନ, ଲୀଳା ସ୍ମରଣ କଲେ କର୍ମ ବନ୍ଧନରୁ ଜୀବକୁ ମୁକ୍ତିମିଳେ । ସେଥିପାଇଁ ଭଗବାନଙ୍କର ଅତୀତ, ବର୍ତ୍ତମାନ ଓ ଭବିଷ୍ୟତରେ ଲୀଳା ଅବତାର ବିଷୟରେ ସେ କଅଣ ସବୁ ଜାଣିବାକୁ ଚାହିଁଲେ ?

ଦ୍ରୁମିଳ ଉବାଚ

**ଯୋ ବା ଅନନ୍ତସ୍ୟ ଗୁଣାନ୍ ଅନନ୍ତାନ୍**
**ଅନୁକ୍ରମିଷ୍ୟତି ସ ତୁ ବାଳବୁଦ୍ଧିଃ ।**
**ରଜାଂସି ଭୂମେଃ ଗଣୟେତ୍ କଥଞ୍ଚିତ୍**
**କାଳେନ ନ-ଏବ-ଅଖିଳ ଶକ୍ତି ଧାମ୍ନଃ ॥୨॥**

ଉ. ସପ୍ତମ ଯୋଗେଶ୍ୱର ଦ୍ରୁମିଳ ରାଜାଙ୍କ ଜିଜ୍ଞାସାକୁ ଶାନ୍ତ କରାଇବା ଲକ୍ଷ୍ୟରେ କହିଲେ, 'ହେ ରାଜନ, ହରି ଅନନ୍ତ, ହରି କଥା ଅନନ୍ତ, ହରି ଲୀଳା ଅନନ୍ତ ଓ ହରିଙ୍କ ଭକ୍ତ ଅନନ୍ତ । କାରଣ ତାଙ୍କର ଗୁଣ ଅନନ୍ତ ପୁଣି ଅବତାର ମଧ ଅନନ୍ତ । ଜଣେ କେହି ଚେଷ୍ଟା କଲେ ପୃଥିବୀର ଧୂଳି କଣାର ସଂଖ୍ୟା ହୁଏତ ଗଣି କହି ଦେଇପାରନ୍ତି କିନ୍ତୁ ଭଗବାନଙ୍କ ଅବତାର ଗଣି କରି କିଏ ଯଦି ଦାବି କରି କହନ୍ତି ମୁଁ କହିପାରିବି ତେବେ ତାଙ୍କୁ ମୁର୍ଖ କୁହାଯିବ କିମ୍ବା ଚପଳମତି ବାଳକ (ବାଳବୁଦ୍ଧିଃ) କୁହାଯିବ ।'

ଦ୍ରୁମିଳ ପୁଣି କହିଲେ ଯେ ଭଗବାନ ନାରାୟଣଙ୍କର ପ୍ରଥମ ଅବତାରକୁ ବିରାଟ କୁହାଯାଏ । କାରଣ ସର୍ବ ପ୍ରଥମେ ସେ ଅଦୃଶ୍ୟ ବା ଅପ୍ରକଟ ଅବସ୍ଥାରୁ ଦୃଶ୍ୟମାନ ହେଲେ । ତାଙ୍କର ପରବର୍ତ୍ତୀ ତିନିଟି ଅବତାର ହେଲା ଗୁଣାବତାର । ସତ୍ତ୍ୱ ଗୁଣରେ ବିଷ୍ଣୁ ରୂପରେ ସୃଷ୍ଟି ରକ୍ଷା କରିବା, ରଜୋଗୁଣୀରେ ବ୍ରହ୍ମା ରୂପରେ ସୃଷ୍ଟି ନିର୍ମାଣ କରିବା ଓ ତମୋଗୁଣରେ ଶିବ ରୂପରେ ସୃଷ୍ଟିକୁ ପ୍ରଳୟ ଦ୍ୱାରା ଅଦୃଶ୍ୟ କରିବା ଭଳି ତିନି ପ୍ରକାର କାମ ହୁଏ ସେ ଅବତାର ମାନଙ୍କରେ । ସେମାନଙ୍କର ନାମ ସେହି

କାମର କ୍ରମ ଅନୁସାରେ ବିଷ୍ଣୁ, ବ୍ରହ୍ମା ଓ ଶଙ୍କର ରଖାଯାଏ ।

ପ୍ରଶ୍ନ-୪୬: ପରେ ପରେ ସୃଷ୍ଟି ପାଳନ ବେଳେ ମାର୍ଗଦର୍ଶନ କରାଇବା ଲାଗି ବିଷ୍ଣୁଙ୍କର ଅନେକ ଅବତାର ଦରକାର ପଡ଼େ । ଦକ୍ଷ ପୁତ୍ରୀ ମୂର୍ତ୍ତି ବିବାହ କରନ୍ତି ଧର୍ମ ଋଷିଙ୍କୁ । ସେମାନଙ୍କ ଠାରୁ ନରନାରାୟଣ ଜନ୍ମ ନେଇ ସଂସାରରେ ଏହି ସରଳ ଭଗବତ ଧର୍ମର ଉପଦେଶ ପ୍ରଦାନ କରନ୍ତି । ନୈଷ୍କର୍ମ୍ୟ କର୍ମର ମୂଳଦୁଆ ପଡ଼େ ସଂସାରରେ । ସେ ଆଦର୍ଶ ତପସ୍ୟା କରନ୍ତେ ଐଶ୍ୱର୍ଯ୍ୟ ଭୋଗୀ ଇନ୍ଦ୍ରଦେବଙ୍କ ଆସନ ଟଳମଳ ହୁଏ । ଇନ୍ଦ୍ର ତାଙ୍କର ଗାଦୀ ରକ୍ଷା କରିବାକୁ ଚାହାନ୍ତି ନର ନାରାୟଣଙ୍କ ତପସ୍ୟା ଭଙ୍ଗ କରିବାକୁ । ଅପ୍‌ସରା ମାନଙ୍କ ସହିତ କାମ ଦେବଙ୍କୁ ପଠାନ୍ତି ନରନାରାୟଣଙ୍କ ତପସ୍ୟା ଭ୍ରଷ୍ଟ ଲାଗି । କନ୍ଦର୍ପ କିନ୍ତୁ ହାରିଯାଆନ୍ତି କାମ ଯୁଦ୍ଧରେ । ଭଗବାନ ଦୟାକରି ଇନ୍ଦ୍ରଙ୍କୁ ସତର୍କ କରାଇବା ଉଦ୍ଦେଶ୍ୟରେ ନିଜ ଉରୁଦେଶରୁ ସୁନ୍ଦରୀ ଉର୍ବଶୀଙ୍କୁ ଉତ୍ପନ୍ନ କରି କାମଦେବଙ୍କ ମାଧ୍ୟମରେ ଉପହାର ପଠାନ୍ତି । ଇନ୍ଦ୍ର ସଭାରେ କାମଦେବଙ୍କ ସହ ଉର୍ବଶୀଙ୍କୁ ଦେଖି ଦେବରାଜ ଇନ୍ଦ୍ରଙ୍କର କି କ୍ରିୟା ପ୍ରତିକ୍ରିୟା ହୁଏ ?

**ଇନ୍ଦ୍ରାୟ-ଆନମ୍ୟ ସଦସି ଶୃଣ୍ୱତାଂ ତ୍ରିଦିବ-ଓକସାମ୍ ।**
**ଊଚୁଃ ନାରୟଣ ବଲଂ ଶକ୍ରଃ ତତ୍ର-ଆସ ବିସ୍ମିତଃ ।।୧୬।।**

ଉ. ସ୍ୱର୍ଗ-ମର୍ତ୍ତ୍ୟ-ପାତାଳ ତିନିଲୋକରେ ଏଭଳି କଠିନ ତପସ୍ୟା ପ୍ରାୟ କେହି କରିନଥାନ୍ତି । କାରଣ ଦେବ-ଦାନବ-ମନୁଷ୍ୟ ପ୍ରାୟ ସମସ୍ତେ କିଛି ନା କିଛି ଭୌତିକ ଐଶ୍ୱର୍ଯ୍ୟ, ସିଦ୍ଧି ପ୍ରାପ୍ତି କିମ୍ୱା ସ୍ୱର୍ଗବାସୀ (ତ୍ରିଦିବ-ଓକସାମ) ଦେବୀଦେବତା ହେବା ଲକ୍ଷ୍ୟରେ ତପସ୍ୟା କରିଥାନ୍ତି । ନର ନାରାୟଣଙ୍କ ନିଷ୍କାମ ତପସ୍ୟା ଦର୍ଶନରେ ସେ କେବଳ ବିସ୍ମିତ ହେଲେ ନାହିଁ ବରଂ ଭୟ ପ୍ରାପ୍ତ ହେଲେ ଓ ଲଜ୍ଜିତ ମଧ୍ୟ ହେଲେ ।

ପ୍ରଶ୍ନ-୪୭: ଯୋଗେଶ୍ୱର ଦ୍ରୁମିଳ ପୁଣି ହଂସ, ଦତ୍ତାତ୍ରେୟ, ଚତୁଃସନ, ଋଷଭ, କୂର୍ମ, ବରାହ, ମତ୍ସ୍ୟ ଓ ହରି ଅବତାର ଲୀଳା ଚରିତ ଶୁଣାଇଲେ । ନୃସିଂହ, ବାମନ, ପର୍ଶୁରାମ ଓ ରାମ ଅବତାର ଲୀଳା କଥା କୀର୍ତ୍ତନ କଲେ । ସେତେବେଳକୁ ତ୍ରେତାଯୁଗ ଚାଲିଥାଏ । ସୁତରାଂ ଭବିଷ୍ୟତରେ ହେବାକୁ ଥିବା କୃଷ୍ଣ, ବଳରାମ, ବୌଦ୍ଧ ଓ କଲ୍‌କୀ ଅବତାର କଥାର ସଂକେତ ମଧ୍ୟ ଦେଲେ । ବକ୍ତା ଦ୍ରୁମିଳ ଅନନ୍ତ ଭଗବାନଙ୍କର ଲୀଳା ବର୍ଣ୍ଣନର ଅନ୍ତ କଲେ କି କି ଶବ୍ଦ ମାଧ୍ୟମରେ ?

**ଏବଂ ବିଧାନି କର୍ମାଣି ଜନ୍ମାନି ଚ ଜଗତ୍ପତେଃ ।**
**ଭୂରୀଣି ଭୂରି ଯଶସୋ ବର୍ଣ୍ଣିତାନି ମହାଭୁଜ ॥୨୩॥**

ଉ. ଦ୍ରୁମିଳ କହିଲେ, 'ହେ ରାଜା ନିମି(ମହାଭୁଜ), ଏହିଭଳି ଅନନ୍ତ ଭଗବାନଙ୍କ ନାମ, ରୂପ, ଲୀଳା ବା ଗୁଣ ମଧ୍ୟ ଅନନ୍ତ । ଏହା ମଧ୍ୟରୁ ଏକ କିମ୍ବା ଏକାଧିକ ଅବତାର ଲୀଳା ଚିନ୍ତନ, କୀର୍ତ୍ତନ କିମ୍ବା ସ୍ମରଣ କରି ଜୀବ ଭବ ବନ୍ଧନରୁ ମୁକ୍ତ ହୁଏ । ତାହା ହିଁ ତ ଭଗବାନଙ୍କର ଅନେକ ଅବତାର ମାନଙ୍କର ଅସଲି କାରଣ ।'

# ଅଥ ୫ମ ଅଧ୍ୟାୟଃ

## (ଭକ୍ତିହୀନ ପୁରୁଷର ଗତି ଓ ଚାରି ଯୁଗରେ ପୂଜା ବିଧି ବର୍ଣ୍ଣନ)

ପ୍ରଶ୍ନ-୪୮ : ଭକ୍ତମାନଙ୍କର ଭକ୍ତିମାର୍ଗର ସାଙ୍ଗୋପାଙ୍ଗ ବର୍ଣ୍ଣନା ବିସ୍ତୃତ ଭାବରେ ରାଜା ନିମି ଶ୍ରବଣ କରି ତେଣିକି ଅଭକ୍ତମାନଙ୍କ ବିଷୟରେ କ'ଣ ସବୁ ଜାଣିବାକୁ ଚାହିଁଲେ ?

ରାଜା ଉବାଚ

**ଭଗବନ୍ତଂ ହରିଂ ପ୍ରାୟୋ ନ ଭଜନ୍ତି ଆତ୍ମବିତ୍ ତମାଃ ।**
**ତେଷାଂ ଅଶାନ୍ତ କାମାନାଂ କା ନିଷ୍ଠା-ଅବିଜିତ-ଆତ୍ମନାମ୍ ॥୧॥**

ଉ. ରାଜା ନିମି ପଚାରିଲେ, "ହେ ଆତ୍ମତତ୍ତ୍ୱବେତ୍ତା ଯୋଗେଶ୍ୱର ଗଣ, ସଂସାରରେ ଦେଖାଯାଏ ଯୁଗେ ଯୁଗେ ଅଭକ୍ତମାନଙ୍କ ସଂଖ୍ୟା ବହୁତ ବେଶୀ । ଭକ୍ତମାନଙ୍କ ସଂଖ୍ୟା ନଗଣ୍ୟ । ପ୍ରାୟତଃ (ପ୍ରାୟୋ) ଇନ୍ଦ୍ରିୟ ଅସଂଯମୀ ଲୋକେ (ଅବିଜିତ-ଆତ୍ମନାଂ) କାମ ଭୋଗରେ ସଦା ଅସନ୍ତୁଷ୍ଟ ରହନ୍ତି । ଅସରନ୍ତି କାମନା ଜାଲରେ ପଡ଼ି ସେମାନେ ଜନ୍ମ ଜନ୍ମାନ୍ତର-ଛଟପଟ ହୁଅନ୍ତି । ହରିଭଜନ ନ କରି (ନ ଭଜନ୍ତି)କି ଦୁର୍ଗତି ହୁଏ ସେମାନଙ୍କର ?

ପ୍ରଶ୍ନ-୪୯ : ଭଗବାନଙ୍କ ଆଦ୍ୟ ଅବତାର ବିରାଟଙ୍କର (ପୁରୁଷସ୍ୟ) ମୁଖରୁ ବ୍ରାହ୍ମଣ, ବାହୁରୁ କ୍ଷତ୍ରିୟ, ଉରୁରୁ ବୈଶ୍ୟ ଓ ପାଦରୁ ଶୁଦ୍ର ଏହି ଚାରି ବର୍ଣ୍ଣ (ଚତ୍ୱାରୋ) ଜାତ ହେଲେ (ଯଜ୍ଞିରେ) । ସେମାନଙ୍କୁ ସମସ୍ତଙ୍କୁ ମୋକ୍ଷ ଲକ୍ଷ୍ୟରେ ପହଞ୍ଚାଇବା ପାଇଁ

ବ୍ରହ୍ମଚାରୀ, ଗୃହସ୍ଥ, ବାନପ୍ରସ୍ଥ ଓ ସନ୍ନ୍ୟାସ ଏହି ଚାରି ଆଶ୍ରମ ମଧ୍ୟ ସେଇ ବିରାଟ ପୁରୁଷଙ୍କ ଠାରୁ ଜନ୍ମନେଲେ । ବ୍ରାହ୍ମଣ ଆଦି ଚାରି ବର୍ଣ୍ଣର ଲୋକେ ମାୟାଙ୍କର କେଉଁ କେଉଁ ଗୁଣକୁ ଆଶ୍ରୟ କରି ପ୍ରକଟ ହେଲେ ?

**ଚମସ ଉବାଚ**

**ମୁଖ ବାହୁ-ଉରୁ ପାଦେଭ୍ୟଃ ପୁରୁଷସ୍ୟ-ଆଶ୍ରମୈଃ ସହ ।**
**ଚତ୍ୱାରୋ ଯଜ୍ଞିରେ ବର୍ଣ୍ଣାଃ ଗୁଣୈଃ ବିପ୍ର-ଆଦୟଃ ପୃଥକ୍ ॥୨॥**

ଉ. ସତ୍ତ୍ୱଗୁଣରେ ବ୍ରାହ୍ମଣ, ସତ୍ତ୍ୱ-ରଜୋ ଗୁଣରେ କ୍ଷତ୍ରିୟ, ରଜୋ-ତମ ଗୁଣରେ ବୈଶ୍ୟ ଓ ତମ ଗୁଣରେ ଶୂଦ୍ର ବର୍ଣ୍ଣର ମାନବମାନେ ଜନ୍ମ ନେଲେ ।

ପ୍ରଶ୍ନ-୫୦: ମୂଳ, ଚେର, ଶାଖା, ପ୍ରଶାଖା, ପତ୍ର, ଫୁଲ, ଫଳ ଆଦି ସମସ୍ତେ ସେଇ ଗୋଟିଏ ବୃକ୍ଷରୁ ଜାତ । ସେମାନେ ସମସ୍ତେ ଅଂଶ କିନ୍ତୁ ବୃକ୍ଷ ଅଂଶୀ ଅଟେ । ଅଂଶ ଯଦି ଅଂଶୀଠାରୁ ନିଜକୁ ପୃଥକ ମାନି ତାର ସେବା ନ କରିବ ତେବେ ସେ ବଞ୍ଚିବ କିପରି ? ଅର୍ଥାତ୍ ମରିଯିବ କିମ୍ବା ତାକୁ ମାରି କାଟି ଅଲଗା କରିଦିଆଯିବ ମାଳି ଦ୍ୱାରା । ଅତଏବ ଚାରି ବର୍ଣ୍ଣର ମନୁଷ୍ୟ ଅଂଶ ସମସ୍ତେ ସେଇ ଏକ ପରମ ଈଶ୍ୱରଙ୍କ (ଅଂଶୀଙ୍କର) ସେବା କରିବାକୁ ବାଧ୍ୟ । ଅଂଶୀଙ୍କ (ଆତ୍ମପ୍ରଭଂ ଈଶ୍ୱରଂ) ସେବାକୁ ହେୟ ମନେ କଲେ (ଅବଜାନନ୍ତି) ସେମାନଙ୍କର କି ଦୂରବସ୍ଥା ହେବ ?

**ଯ ଏଷାଂ ପୁରୁଷଂ ସାକ୍ଷାତ୍ ଆତ୍ମ ପ୍ରଭବଂ ଈଶ୍ୱରଂ ।**
**ନ ଭଜନ୍ତି-ଅବଜାନନ୍ତି ସ୍ଥାନାତ୍ ଭ୍ରଷ୍ଟାଃ ପତନ୍ତି-ଅଧଃ ॥୩॥**

ଉ. ତେବେ ସେଇ ସେଇ ବର୍ଣ୍ଣରୁ ସେମାନଙ୍କର ପତନ ହୋଇଯିବ । ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଶୂଦ୍ର କ୍ରମେ ଉଚ୍ଚତମରୁ ଉଚ୍ଚତର, ଉଚ୍ଚ ବର୍ଣ୍ଣର ବୋଲି ଗଣ୍ୟ ହୁଅନ୍ତି । ସେବା ବିମୁଖ ହେଲେ ପର ପର ଜନ୍ମରେ ସେମାନେ ନୀଚରୁ ନୀଚତର ଜନ୍ମରେ ପୁଣି ଜନ୍ମ ନିଅନ୍ତି । ଫଳରେ ବର୍ଣ୍ଣ ଧର୍ମ ଆଶ୍ରମ ଧର୍ମ ପାଳନ କରିବାରେ ସେମାନେ ଅଧିକ ଅସୁବିଧା, ଦୁଃଖ ଭୋଗିଥାଆନ୍ତି ।

ପ୍ରଶ୍ନ-୫୧: ବେଳେବେଳେ ମନୁଷ୍ୟ ମଧ୍ୟରେ ନୀଚତମ ଶୂଦ୍ରଜନ୍ମ ମଧ୍ୟ ମିଳେନା ସେମାନଙ୍କୁ । ପଶୁ ପକ୍ଷୀ କୀଟ, ପତଙ୍ଗ, ବୃକ୍ଷ ଓ ଲତା ଜନ୍ମ ନେବାକୁ ପଡ଼େ ସେମାନଙ୍କୁ । ରାଜା ଭରତଙ୍କ ମୃଗ ଜନ୍ମ, କୁବେର ପୁତ୍ର ନଳ କୁବେରଙ୍କ ବୃକ୍ଷ ଜନ୍ମ ଓ ରାଜା ନୃଗଙ୍କର ପୋହଳା ଏଣ୍ଡୁଅ ଜନ୍ମ ଏହାର ଦୃଷ୍ଟାନ୍ତ । ସେମାନଙ୍କର ଉଦ୍ଧାର ହେବାର କ'ଣ କିଛି ଉପାୟ ନାହିଁ ?

**ଦୂରେ ହରି କଥାଃ କେଚିତ୍ ଦୂରେ ଚ-ଅଚ୍ୟୁତ କୀର୍ତ୍ତନାଃ ।**
**ସ୍ତ୍ରିୟଃ ଶୂଦ୍ର-ଆଦୟଃ ଚ-ଏବ ତେଽନୁକମ୍ପା ଭବାଦୃଶାମ୍ ॥୪॥**

ଉ. ଅଷ୍ଟମ ଯୋଗୀନ୍ଦ୍ର ଚମସ କହିଲେ, "ହେ ରାଜନ, ନାହିଁ କାହିଁକି ଅଛି । ଆପଣଙ୍କ ଭଳି (ଭବାଦୃଶା) ବୈଷ୍ଣବ ମାନଙ୍କ ସଙ୍ଗରେ ସେମାନେ ହରି କଥାକୁ ଶ୍ରବଣ କୀର୍ତ୍ତନ କରି ଅକ୍ଲେଶରେ ସଂସାର ବନ୍ଧନ ମୁକ୍ତ ହୋଇପାରିବେ ।"

ପ୍ରଶ୍ନ-୫୨ : ସଂସାରରେ ଦେଖାଯାଏ ଯେ ସତ୍ତ୍ୱଗୁଣୀ ଲୋକେ ବ୍ରାହ୍ମଣ କୁଳରେ ଜନ୍ମ ନିଅନ୍ତି । ବେଦ ଅଧ୍ୟୟନ କରନ୍ତି । ବିନା ଗୁରୁ ଆଶ୍ରୟରେ ବେଦର ତାତ୍ପର୍ଯ୍ୟ ନବୁଝି ଅର୍ଥବାଦରେ ମାତନ୍ତି । ଈଶ୍ୱର ଭକ୍ତିଠାରୁ ଦୂରେଇ ଯାଆନ୍ତି । କେହି କେହି ସ୍ୱର୍ଗକୁ ଯିବା କଥା ବେଦ କହିଛନ୍ତି ବୋଲି ଭାବି ସକାମ ଯଜ୍ଞରୁ ଉପରକୁ ଉଠିପାରନ୍ତି ନାହିଁ । ଏହା ସେମାନଙ୍କ ରଜଗୁଣର ପ୍ରାବଲ୍ୟରୁ ହୁଏ । ଏମାନଙ୍କର ସୁଖ ପ୍ରାପ୍ତି ସଂକଳ୍ପ ଭୟାନକ ଭାବରେ ବଢ଼ି ଚାଲେ । ମୋକ୍ଷ କଥା କାହାଠୁ ଶୁଣିଲେ ଏମାନେ ଅକାରଣରେ କ୍ରୋଧରେ ଫଁ ଫଁ ଗର୍ଜନ କରି କି କି ବିପଦରେ ପଡ଼ନ୍ତି ?

**ରଜସା ଘୋର ସଂକଳ୍ପାଃ କାମୁକା ଅହି ମନ୍ୟବଃ ।**
**ଦାମ୍ଭିକା ମାନିନଃ ପାପା ବିହସନ୍ତି-ଅଚ୍ୟୁତ ପ୍ରିୟାନ୍ ॥୭॥**

ଉ. ଦାମ୍ଭିକ, ଅଭିମାନୀ ଅହଂକାରୀ ହୁଅନ୍ତି । ଜାଣି ଜାଣି ପାପଭାଗୀ ହୁଅନ୍ତେ ଶେଷରେ ସବୁଠାରୁ ବଡ଼ ଅପରାଧ ବୈଷ୍ଣବଙ୍କୁ (ଅଚ୍ୟୁତ ପ୍ରିୟାନ୍) ଉପହାସ କରି ଭଗବତ୍ ବିଦ୍ୱେଷୀ ହୋଇଯାଆନ୍ତି ।

ପ୍ରଶ୍ନ-୫୩: ତମୋଗୁଣ ପ୍ରାବଲ୍ୟରେ ମଣିଷ କ୍ରମଶଃ ଅଧିକରୁ ଅଧିକ ଦୋଷ କରିବସେ । ସେମାନେ ସବୁ ପରସ୍ପରକୁ ବଡ଼ ବୋଲି କହନ୍ତି ଓ କୁହାନ୍ତି । ଏଣେ ନିଜ ନିଜର ପତ୍ନୀର କ୍ରୀଡ଼ା ମୃଗ ପାଲଟି ଯାଆନ୍ତି । ବୃଦ୍ଧ ପିତାମାତାଙ୍କର ସେବା କରନ୍ତି ନାହିଁ । ଯଜ୍ଞ କଲେ ଅନ୍ନ ଭୋଜନ ଦିଅନ୍ତି ନାହିଁ । ଜୀବିକା ଅର୍ଜନ ଲାଗି ଅଯଥା ପଶୁବଧ କରି ନିଜ ନିଜର ପାପ ଗଣ୍ଠିଲିର ଆକାର ବଢ଼ାନ୍ତି ।

ଏହି ଖଳ ଲୋକମାନେ ଧନ, ରୂପ, ବିଦ୍ୟା, କୁଳ, ଐଶ୍ୱର୍ଯ୍ୟ ଗର୍ବରେ ଧରାକୁ ସରା ମନେ କରନ୍ତି । ଜାଣି ଜାଣି ନାନା ବୈଷ୍ଣବ ଅପରାଧ କରନ୍ତି । ବେଦମନ୍ତ୍ରର ଅନର୍ଥ କରି ଅର୍ଥାନ୍ତର କରି କିଭଳି ଅବସ୍ଥାରେ ପତିତ ହୁଅନ୍ତି ?

**ଲୋକେ ବ୍ୟବାୟ-ଆମିଷ ମଦ୍ୟ ସେବା**
**ନିତ୍ୟା-ଅସ୍ତୁ ଜନ୍ତୋଃ ନ ହି ତତ୍ର ଚୋଦନା ।**
**ବ୍ୟବସ୍ଥିତିଃ ତେଷୁ ବିବାହ ଯଜ୍ଞ**
**ସୁରା-ଆଗ୍ରହୈଃ ଆସୁ ନିବୃତ୍ତିଃ ଇଷ୍ଟା ॥୧୧॥**

ଉ. ଜନ୍ମଗତ ଅଶୁଭ ସଂସ୍କାର ହେତୁ ଭୌତିକ ଜଗତରେ ବଦ୍ଧଜୀବ ସ୍ୱାଭାବିକ ଭାବରେ ଅବୈଧ ଯୌନାଚାର, ଆମିଷ ଭକ୍ଷଣ ଓ ସୁରା ପାନରୁ ବିରତ ହୋଇପାରେ ନାହିଁ । ସେ ସବୁ ଯଥେଚ୍ଛାଚାର କରିବାକୁ ବେଦମନ୍ତ୍ରମାନେ ଆଦୌ କହିନାହାନ୍ତି । କର୍ମକାଣ୍ଡୀ ବ୍ରାହ୍ମଣମାନେ ଏ କଥାର ଓଲଟ ଅର୍ଥ ବୁଝାଇ ଭ୍ରମିତ କରନ୍ତି ରାଜା, ରାଜନ୍ୟ ବର୍ଗର ଲୋକଙ୍କୁ । କିନ୍ତୁ ଜଣେ ସଦ୍‌ଗୁରୁ କହିପାରନ୍ତି ଏହାର ପ୍ରକୃତ ଅର୍ଥ । ବିବାହ, ଯଜ୍ଞ ଓ ତନ୍ତ୍ରମାର୍ଗୀୟ ଦେବୀ ଦେବତାଙ୍କ ପୂଜା ବିଧାନ ବ୍ୟବସ୍ଥା କରାଯାଇଛି (ଆସୁ) କାମରେ ସଂଯମ, ଆମିଷ ଭକ୍ଷଣରେ ସଂଯମ ଓ ମଦ୍ୟ ପାନରେ ପ୍ରଥମେ ସଂଯମ ଓ ଶେଷରେ ତିନି କଥାରୁ ନିବୃତ୍ତି ଲକ୍ଷ୍ୟପ୍ରାପ୍ତି ପାଇଁ ।

ପ୍ରଶ୍ନ-୫୪: ଅଧର୍ମ ମାର୍ଗରେ ଅର୍ଜିତ ଧନର ଅସଦ୍ ଉପଯୋଗ କରି କେଉଁ କେଉଁ ଭୟଙ୍କର ଦୁଃଖ ଭୋଗନ୍ତି ଲୋକେ ଏହି ବେଦମନ୍ତ୍ରମାନଙ୍କର ଅର୍ଥ ନ ବୁଝି ?

**ଧନଂ ଚ ଧର୍ମ-ଏକଫଳଂ ଯତୋ ବୈ**
**ଜ୍ଞାନଂ ସବିଜ୍ଞାନଂ ଅନୁପ୍ରଶାନ୍ତି ।**
**ଗୃହେଷୁ ଯୁଞ୍ଜନ୍ତି କଳେବରସ୍ୟ**
**ମୃତ୍ୟୁଂ ନ ପଶ୍ୟନ୍ତି ଦୁରନ୍ତବୀର୍ଯ୍ୟମ୍ ॥୧୨॥**

ଉ. ଯେନ ତେନ ପ୍ରକାରେଣ ଧନ ଅର୍ଜନ ନ କରି ଧର୍ମ ମାର୍ଗରେ ଅର୍ଜିତ ଧନକୁ ସତ୍ ଧନ କୁହାଯାଏ । ଏହି ଧନକୁ ସତ୍‌ମାର୍ଗରେ ବିନିଯୋଗ କଲେ ଜୀବକୁ ସେ ଧନ ମୋକ୍ଷ ପର୍ଯ୍ୟନ୍ତ ଟାଣି ନିଏ । ଜୀବନରେ ତତ୍ତ୍ୱଜ୍ଞାନ, ଭକ୍ତି (ସବିଜ୍ଞାନଂ) ଓ ମୁକ୍ତି (ଅନୁପ୍ରଶାନ୍ତି) ମିଳିପାରେ । ବିଷୟ ଲାଳସୀ ଲୋକ ଦେହ ଗୃହ ସଜାଇବାରେ (ଗୃହେଷୁ ଯୁଞ୍ଜନ୍ତି) ଧନକୁ ବିନିଯୋଗ କରିବା ଲୋକ ଜାଣିପାରେନି ଦୁର୍ନିବାରଣୀୟ ମୃତ୍ୟୁ ତାକୁ ଅପେକ୍ଷା କରିଛି ପାପର ଫଳ ଭୋଗ କରାଇବ ବୋଲି ।

ପ୍ରଶ୍ନ-୫୫: ଭୌତିକବାଦୀ ଲୋକ ବର୍ଣ୍ଣଧର୍ମ ଆଶ୍ରମ ଧର୍ମ ଭାଗବତ ଧର୍ମ ବା ବୈଦିକ ଧର୍ମ ପାଳନ କରିବା ଯେ ତାର ସ୍ୱଧର୍ମ ଏକଥା ବୁଝିପାରିନଥାଏ । କେଉଁ

ଭୁଲ ବୁଝାମଣାରେ ପଡ଼ି ହରବର ହୁଏ ବିଚରା ?

**ଯତ୍ ଘ୍ରାଣ ଭକ୍ଷୋ ବିହିତଃ ସୁରାୟାଃ**

**ତଥା ପଶୋଃ ଆଲଭନଂ ନ ହିଂସା ।**

**ଏବଂ ବ୍ୟବାୟଃ ପ୍ରଜୟା ନ ରତ୍ୟା**

**ଇମଂ ବିଶୁଦ୍ଧଂ ନ ବିଦୁଃ ସ୍ୱଧର୍ମମ୍ ॥୧୩॥**

ଉ. ତନ୍ତ୍ର ପୂଜାରେ ନିଜେ ସୁରା ପାନ କରି ପକାଏ ଯଦି ଚ ଏହାକୁ ଭକ୍ଷଣ ନକରି କେବଳ ଶୁଙ୍ଘିବାର ବିଧାନ ତନ୍ତ୍ର ଶାସ୍ତ୍ରରେ ଅଛି । ଯଜ୍ଞରେ ପଶୁକୁ ବଧ ନ କରି କେଳବ ସ୍ପର୍ଶ ଦ୍ୱାରା ଈଶ୍ୱରଙ୍କୁ ସମର୍ପଣ କରିବା କଥା ବର୍ଣ୍ଣିତ । ପତ୍ନୀ ସହିତ ଦେହ ମିଳନର ଅର୍ଥ ଯୌନ ତୃପ୍ତି ପ୍ରାପ୍ତି ନୁହେଁ ବରଂ ସନ୍ତାନ ଉତ୍ପତ୍ତି ଏ ସୁବୁଦ୍ଧି ତା ମୁଣ୍ଡରେ ପଶେ ନାହିଁ । ଏସବୁ ଅପରାଧ କରି ବସେ କୁସଙ୍ଗରେ ପଡ଼ି, କୁବୁଦ୍ଧିର ପ୍ରେରଣାରେ ।

ପ୍ରଶ୍ନ-୫୬: ଅଜ୍ଞାନୀ ଲୋକ ନିଜକୁ ଜ୍ଞାନୀ ସବ୍‌ଜାନତା (ସଦ୍ ଅଭିମାନୀନଃ) ମାନେ । ଖଳ ଲୋକ ନିଜକୁ ସାଧୁ (ଅସନ୍ତଃ) ମନେ କରେ । ମନ ଅପବିତ୍ର ଲୋକ (ସ୍ତବ୍‌ଧାଃ) ପୁଣ୍ୟବାନ ବୋଲି ନିଜକୁ ଭାବି ନେବା ଆଦୌ ବୁଦ୍ଧିମାନର କାମ ନୁହେଁ । ଏଭଳି ତତ୍ତ୍ୱ ଅନଭିଜ୍ଞ (ତୁ ନ-ଏବଂ ବିଦଃ) ଲୋକ ଜୀବ ହତ୍ୟାକରି ଏ ଜନ୍ମରେ ତାର ମାଂସ ଖାଇଲେ ପର ଜନ୍ମରେ କ'ଣ ଦୁର୍ଦ୍ଦଶା ହେବ ତାର ?

**ଯେ ତୁ ନ-ଏବଂ ବିଦୋଽସନ୍ତଃ ସ୍ତବ୍‌ଧାଃ ସଦ୍ ଅଭିମାନିନଃ ।**

**ପଶୂନ୍ ଦ୍ରୁହ୍ୟନ୍ତି ବିଶ୍ରବ୍ଧାଃ ପ୍ରେତ୍ୟ ଖାଦନ୍ତି ତେ ଚ ତାନ୍ ॥୧୪॥**

ଉ. ସଦ୍‌ଗୁରୁ ଅନାଶ୍ରିତ ଏବଂ ଶାସ୍ତ୍ର ବଚନ ଅବିଶ୍ୱାସୀ ଲୋକକୁ ଶ୍ରଦ୍ଧାହୀନ (ବିଶ୍ରବ୍ଧା) କୁହାଯାଏ । ମୃତ୍ୟୁପରେ ପର ଜନ୍ମରେ (ପ୍ରେତ୍ୟ) ସେ ଯେଉଁ ଜୀବମାନଙ୍କୁ ମାରି ଖାଇଥାଏ ସେମାନେ ଓଲଟି ତାକୁ ମାରି ତା ମାଂସ ଖାଇଥାଆନ୍ତି । ଏହା ହିନ୍ଦୁ ଶାସ୍ତ୍ରର ସମଗ୍ର ମନୁଷ୍ୟ ଜାତିକୁ ଚେତାବନୀ ।

ପ୍ରଶ୍ନ-୫୭: ଭୌତିକ ସୁଖ ଖୋଜୁଥିବା ଲୋକ ନିଜକୁ 'ମୁଁ' (ଦେହ) ମାନେ । ଦେହ ସମ୍ବନ୍ଧୀ ପୁତ୍ର, କନ୍ୟା, ପତ୍ନୀ ଆଦିଙ୍କୁ 'ମୋର' ମାନେ । ନିଜ ଇନ୍ଦ୍ରିୟ ଦେହ ସୁଖ ପାଇଁ ଅନ୍ୟର ଦେହକୁ ମାରି ଖାଇଥାଏ । ଏଭଳି ଭୟଙ୍କର ଭୁଲ ବୁଝାମଣା ଜୀବର ହୁଏ କାହିଁକି ?

**ଦ୍ୱିଷନ୍ତଃ ପରକାୟେଷୁ ସ୍ୱ-ଆତ୍ମାନଂ ହରିଂ ଈଶ୍ୱରମ୍ ।**
**ମୃତକେ ସାନୁବନ୍ଧେଽସ୍ମିନ୍ ବଦ୍ଧ ସ୍ନେହାଃ ପତନ୍ତି-ଅଧଃ ॥୧୫॥**

ଉ. କାରଣଟି ସିଧା ସଳଖ ବୁଝାଯାଇପାରେ ଯେ ସେ ଏକଥା ଆଦୌ ମାନିବାକୁ ପ୍ରସ୍ତୁତ ନୁହେଁ ଯେ ଯେଉଁ ପରମେଶ୍ୱର ତା ଦେହ ମଧ୍ୟରେ ଆତ୍ମା ରୂପରେ ରହି ତାର ଦେହର ସୁରକ୍ଷା କରୁଛନ୍ତି ଅନ୍ୟମାନଙ୍କ ଦେହରେ ମଧ୍ୟ ସେହି ଅଖଣ୍ଡ ଅନନ୍ତ ସର୍ବବ୍ୟାପୀ ପରମାତ୍ମା ବିଦ୍ୟମାନ ରହି ତା ଦେହର ସୁରକ୍ଷା କରିବା ଦାୟିତ୍ୱ ନେଇଛନ୍ତି । ସୁତରାଂ ନିଜ ପରଭାବ ଉତ୍ପନ୍ନ ହୁଏ ଅନ୍ତରରେ । ଅତଏବ ଭୁଲ ବୁଝାମଣାର ନିଶ୍ଚିତ ଶିକାର ହୁଏ ସେ ।

ପ୍ରଶ୍ନ-୫୮: ଜୀବ ହତ୍ୟାକରି ତାର ମାଂସ ଭକ୍ଷଣକାରୀ ଲୋକକୁ ଆତ୍ମହତ୍ୟାକାରୀ ବୋଲି (ଆତ୍ମାନଂ ଘାତୟନ୍ତି ତେ) କାହିଁକି ଯୋଗୀନ୍ଦ୍ର ଚମସ ଘୋଷଣା କଲେ ଏ ମହାସତ୍‌ସଙ୍ଗ ଅଧିବେଶନରେ ?

**ଯେ କୈବଲ୍ୟଂ ଅସଂପ୍ରାପ୍ତା ଯେ ଚ-ଅତୀତାଃଚ ମୂଢ଼ତାମ୍ ।**
**ତୈବର୍ଗିକା ହି-ଅକ୍ଷଣିକା ଆତ୍ମାନଂ ଘାତୟନ୍ତି ତେ ॥୧୬॥**

ଉ. ସେ ଭଳି ଲୋକ କେବଳ ଅଜ୍ଞ ନୁହନ୍ତି ଅଜ୍ଞତାର ସୀମା ଟପି ଯାଇଥିବା ନିପଟ ଅଜ୍ଞ । ସେମାନେ ଧର୍ମ, ଅର୍ଥ, କାମ, ତିନି ଲକ୍ଷ୍ୟ ପିଛା କରି (ତ୍ରୈବର୍ଗିକା) ଏତେ ବ୍ୟସ୍ତ ରହନ୍ତି ଯେ ମୋକ୍ଷ (କୈବଲ୍ୟଂ) କଥା ଭାବିବାକୁ କ୍ଷଣେମାତ୍ର ସମୟ ବ୍ୟୟ କରିବାକୁ (ଅକ୍ଷଣିକା) ବେକାର ମନେ କରନ୍ତି । ସୁତରାଂ ପ୍ରବଚକ ମହାଶୟ ତାଙ୍କୁ ପର (ଜୀବ) ହତ୍ୟାକାରୀ ନକହି ବରଂ ଆତ୍ମହତ୍ୟାକାରୀ ବୋଲି କଠୋର ଶବ୍ଦ ବ୍ୟବହାର କରିଛନ୍ତି ।

ପ୍ରଶ୍ନ-୫୯: ଅସ୍ଥାୟୀ ନଶ୍ୱର ଦେହସୁଖ ବା ସ୍ୱର୍ଗସୁଖ ପଛରେ ଦୌଡୁଥିବା ଆତ୍ମହତ୍ୟାକାରୀ ଲୋକେ ସର୍ବଦା ଶାନ୍ତିଠାରୁ ବହୁ ଦୂରେଇ ରହନ୍ତି (ଅଶାନ୍ତାଃ) । ସମଗ୍ର ଜୀବନ କାଳରେ ଘୋର ଦୁଃଖ ମଧ୍ୟ ଭୋଗନ୍ତି (ସୀଦନ୍ତି) । ଜୀବନ ଅବସାନରେ ସେମାନେ କ'ଣ ମନୁଷ୍ୟ ଜନ୍ମର ଲକ୍ଷ୍ୟରୁ ବିଚ୍ୟୁତ ହୋଇ ଯାଆନ୍ତି କି ?

**ଏତେ-ଆତ୍ମହନୋଽଶାନ୍ତା ଅଜ୍ଞାନେ ଜ୍ଞାନ ମାନିନଃ ।**
**ସୀଦନ୍ତି-ଅକୃତ କୃତେନ କାଳଧ୍ୱସ୍ତ ମନୋରଥାଃ ॥୧୭॥**

ଉ. ୮୪ଲକ୍ଷ ଜୀବ ଜନ୍ମ ମଧ୍ୟରେ ମନୁଷ୍ୟ ଜନ୍ମ ଶ୍ରେଷ୍ଠ ଜନ୍ମ । କାରଣ

କେବଳ ଏହି ଜନ୍ମରେ ଭକ୍ତିସାଧନ କରି ସେ ଜୀବନ୍‌ମୁକ୍ତି ବା କୃଷ୍ଣ ପ୍ରେମ ପ୍ରାପ୍ତ ହୋଇପାରିବ । ଅଥଚ ନିଜ ଅଜ୍ଞାନକୁ ଜ୍ଞାନ ମାନିନେଇ ଯୌନ ସମ୍ଭୋଗ, ଜୀବ ବଧ ସୁରା ପାନ କରିବା ଲୋକର ସକଳ ସୁନେଲି କଳ୍ପନାକୁ କାଳରୂପୀ ଈଶ୍ୱର ନିଜେ ଧ୍ୱଂସ କରିଦିଅନ୍ତି (କାଳ ଧ୍ୱସ୍ତ ମନୋରଥାଃ) । ବିଚରା ଯାହା କରିବାକୁ ଜନ୍ମ ହୋଇଥିଲା କରିପାରିଲା ନାହିଁ (ଅକୃତ କୃତେନ) । ସେ ଏବେ ଏକ ଲକ୍ଷ୍ୟଚ୍ୟୁତ ମନୁଷ୍ୟ ବା କକ୍ଷ ଚ୍ୟୁତ ତାରକା ।

ପ୍ରଶ୍ନ-୬୦ : ଲକ୍ଷ୍ୟଚ୍ୟୁତ ମନୁଷ୍ୟର ଜୀବନ ଅବସାନ କାଳରେ କିଭଳି ଚରମ ଦୁର୍ଗତି ହୁଏ ?

**ହିତ୍ୱା-ଅତି-ଆୟାସ ରଚିତା　　ଗୃହ-ଅପତ୍ୟ ସୁହୃତ୍ ଶ୍ରୀୟଃ ।**
**ତମୋ ବିଶନ୍ତି-ଅନିଚ୍ଛନ୍ତୋ　　ବାସୁଦେବ ପରାଙ୍‌ମୁଖା ॥୧୮॥**

ଉ. ଭଗବାନ ବାସୁଦେବଙ୍କର ଶରଣ ପାଇନଥିବା ଲୋକର ନର୍କଗତି (ତମୋବିଶନ୍ତି) ହୁଏ । ଏବେ ଯମ ଦଣ୍ଡ ଭୋଗ କରି ଅନ୍ତଃକରଣ ଶୁଦ୍ଧ କରିବ ବିଚରା । ଯିବାକୁ ଅମଙ୍ଗ ହେଲେ ମଧ୍ୟ (ଅନିଚ୍ଛନ୍ତୋ) ଗଳା ଧକ୍‌କା ଦେଇ ଯମ ଦୂତମାନେ ନାକରେ ଦଉଡ଼ି ଲଗାଇ ଟାଣି ନିଅନ୍ତି ତାକୁ । କେତେ କଷ୍ଟକରି (ଅତି ଆୟସ ରଚିତା) ସାଇତି ଥିବା କୋଠାଘର, ଧନ ସମ୍ପତ୍ତି, ବନ୍ଧୁ, ଗେହ୍ଲାପୁଅ, ଯୁବତୀ ବା ସୁନ୍ଦରୀ ପତ୍ନୀ ଇତ୍ୟାଦିଙ୍କୁ ଛାଡ଼ିବାକୁ ପଡ଼େ (ହିତ୍ୱା) ସେଭଳି ହତଭାଗ୍ୟ ଜୀବକୁ ।

ପ୍ରଶ୍ନ-୬୧ : ବାଧ୍ୟତାମୂଳକ ଭାବରେ ଭକ୍ତି କରିବା ହିଁ ଜୀବପାଇଁ ବୁଦ୍ଧିମାନର କାମବୋଲି ବୁଝିଲେ ରାଜା ନିମି । ତେବେ ସତ୍ୟ, ତ୍ରେତା, ଦ୍ୱାପର ଓ କଳିଯୁଗରେ ଭଗବାନଙ୍କର କି କି ପ୍ରକାରେ ଭିନ୍ନ ଭିନ୍ନ ରୂପରେ ପୂଜା କରାଯାଏ ବୋଲି ଜାଣିବାକୁ ସେ ଚାହିଁଛନ୍ତି । ସତ୍ୟଯୁଗରେ (କୃତେ) ଭଗବାନ ନାରାୟଣ କିଭଳି ପ୍ରକଟ ହୁଅନ୍ତି ?

କରଭାଜନ ଉବାଚ

**କୃତେ ଶୁକ୍ଳଃ ଚତୁର୍ବାହୁଃ　　ଜଟିଳୋ ବକ୍‌କଳ-ଅମ୍ବରଃ ।**
**କୃଷ୍ଣ-ଅଜିନ-ଉପବୀତ-ଅକ୍ଷାନ୍　　ବିଭ୍ରଦ୍ ଦଣ୍ଡ କମଣ୍ଡଳୂଃ ॥୨୧॥**

ଉ. ବର୍ଣ୍ଣ ତାଙ୍କର ଶୁକ୍ଳ । ବାହୁ ଚାରିଟି । ଜଟା ମଣ୍ଡିତ ମସ୍ତକ । ସର୍ବଦା ବକ୍‌କଳ ପରିଧାନ । କୃଷ୍ଣ ମୃଗ ଚର୍ମ ଆସନ । ଯଜ୍ଞ ଉପବୀତ କାନ୍ଧରେ । ରୁଦ୍ରାକ୍ଷ ମାଳା ଏକ ହସ୍ତରେ । ତାଙ୍କର ଅନ୍ୟ ହସ୍ତରେ ଦଣ୍ଡକମଣ୍ଡଳୁ ଶୋଭା ପାଉଥାଏ । ଅନ୍ତଃକରଣ ଶାନ୍ତ, ନୈର୍ବର । ଜୀବ ମାତ୍ରକେ ହିତୈଷୀ ଓ ସର୍ବଦା ସମଦୃଷ୍ଟି ଯୁକ୍ତ ।

ମନୁଷ୍ୟମାନେ ତାଙ୍କ ଆଦର୍ଶରେ ସତ୍ୟଯୁଗରେ ତପସ୍ୟା କରି ଅନ୍ତଃକରଣ ସଂଯମ କରନ୍ତି, ବହିଃ ଇନ୍ଦ୍ରିୟ ସଂଯମ କରନ୍ତି । ମୁକ୍ତି ଲକ୍ଷ୍ୟରେ ଅଗ୍ରସର ହୁଅନ୍ତି ।

ପ୍ରଶ୍ନ-୬୨ : ସତ୍ୟଯୁଗରେ ନାରାୟଣଙ୍କର ଅନେକ ଅବତାର ହୁଏ । ଅବତାର ମାନଙ୍କ ମଧ୍ୟରେ କେଉଁ କେଉଁ ଅବତାର ସବୁ ମୁଖ୍ୟ ?

**ହଂସଃ ସୁପର୍ଣ୍ଣୋ ବୈକୁଣ୍ଠୋ ଧର୍ମୋ ଯୋଗେଶ୍ୱରୋଽମଳଃ ।**
**ଈଶ୍ୱରଃ ପୁରୁଷୋଽବ୍ୟକ୍ତଃ ପରମାତ୍ମା-ଇତି ଗୀୟତେ ॥୨୩॥**

ଉ. ହଂସ, ସୁପର୍ଣ୍ଣ, ବୈକୁଣ୍ଠ, ଧର୍ମ, ଯୋଗେଶ୍ୱର, ଅମଳ, ଈଶ୍ୱର, ପୁରୁଷ, ଅବ୍ୟକ୍ତ ଓ ପରମାତ୍ମା ବୋଲି ଭକ୍ତମାନେ ତାଙ୍କୁ କହିଥାନ୍ତି ।

ପ୍ରଶ୍ନ-୬୩: ତ୍ରେତା ଯୁଗରେ ନାରାୟଣ କିପରି ପ୍ରକଟ ହୋଇଥାନ୍ତି ?

**ତ୍ରେତାୟାଂ ରକ୍ତବର୍ଣ୍ଣୋଽସୌ ଚତୁର୍ବାହୁଃ ତ୍ରିମେଖଳଃ ।**
**ହିରଣ୍ୟକେଶଃ ତ୍ରୟି-ଆତ୍ମା ସ୍ରୁକ୍ ସ୍ରୁବ-ଆଦି-ଉପଲକ୍ଷଣଃ ॥୨୪॥**

ଉ. ସେ ରକ୍ତବର୍ଣ୍ଣ ଧାରଣ କରିଥାଆନ୍ତି । ବାହୁ ଚାରି ଓ ମେଖଳା ତିନି । ସୁନେଲୀ କେଶ । ଋକ୍, ଯଜୁଃ, ସାମ, ତିନି ବେଦଙ୍କର ଆତ୍ମାରୂପୀ ଯଜ୍ଞ ନାରାୟଣଙ୍କୁ ବେଦମନ୍ତ୍ରଦ୍ୱାରା ସ୍ରୁବ୍ ସ୍ରୁଚରେ ଆହୂତି ପ୍ରଦାନ କରି ପୂଜନ କରାଯାଏ ଏହି ଯୁଗରେ ।

ପ୍ରଶ୍ନ-୬୪ : ଯଜ୍ଞ ନାରାୟଣଙ୍କର କେଉଁ କେଉଁ ନାମ ସବୁ ବିଖ୍ୟାତ ହୁଏ ସେ ଯୁଗରେ ?

**ବିଷ୍ଣୁଃ ଯଜ୍ଞଃ ପୃଷ୍ଣିଗର୍ଭଃ ସର୍ବବେଦ ଉରୁକ୍ରମଃ ।**
**ବୃଷାକପିଃ ଜୟନ୍ତଃ ଚ ଉରୁଗାୟ ଇତି-ଈର୍ଯ୍ୟତେ ॥୨୬॥**

ଉ. ନାମ ତାଙ୍କର ରହେ ବିଷ୍ଣୁ, ଯଜ୍ଞ, ପୃଷ୍ଣିଗର୍ଭ, ସର୍ବଦେବ, ଉରୁକ୍ରମ, ବୃଷାକପି, ଜୟନ୍ତ ଓ ଉରୁଗାୟ ।

ପ୍ରଶ୍ନ-୬୫ : ଦ୍ୱାପର ଯୁଗରେ କିଭଳି ନାରାୟଣଙ୍କର ଆରାଧନା କରାଯାଏ ?

**ଦ୍ୱାପରେ ଭଗବାନ୍ ଶ୍ୟାମଃ ପୀତବାସା ନିଜ-ଆୟୁଧଃ ।**
**ଶ୍ରୀବତ୍ସ-ଆଦିଭିଃ ଅଙ୍କୈଃ ଚ ଲକ୍ଷଣୈଃ ଉପଲକ୍ଷିତଃ ॥୨୭॥**

ଉ. ବର୍ଣ୍ଣ ତାଙ୍କର ଶ୍ୟାମ । ବସ୍ତ୍ର ପୀତରଙ୍ଗର । ସେ ଶଙ୍ଖ, ଚକ୍ର, ଗଦା ଓ ପଦ୍ମ ଆୟୁଧ ଯୁକ୍ତ । ବକ୍ଷରେ ଶ୍ରୀବତ୍ସ ଲାଞ୍ଛନ ଇତ୍ୟାଦି ଚିହ୍ନ ଅଳଂକାର ରୂପରେ ସେ ଧାରଣ କରିଥାଆନ୍ତି ।

ପ୍ରଶ୍ନ-୬୬: ସତ୍ୟ ଓ ତ୍ରେତା ଯୁଗରେ ଭଗବାନଙ୍କର ପୂଜା ଯଥାକ୍ରମେ ଗାୟତ୍ରୀ ମନ୍ତ୍ରରେ ଧ୍ୟାନ କରି ଓ ବେଦମନ୍ତ୍ରରେ ଯଜ୍ଞ କରି କରାଯାଏ । ଦ୍ୱାପର ଯୁଗରେ ବେଦ ଓ ତନ୍ତ୍ର ଉଭୟ ମାର୍ଗରେ ଅର୍ଚ୍ଚନା କରିବା ବିଧି । ତେବେ କଳିଯୁଗରେ କେଉଁ ରୂପରେ  କି ବିଧିରେ ତାଙ୍କ ଯଜନ କରାଯାଏ ?

**କୃଷ୍ଣ ବର୍ଣ୍ଣଂ ତ୍ୱିଷା-ଅକୃଷ୍ଣଂ    ସ-ଅଙ୍ଗ-ଉପାଙ୍ଗ-ଅସ୍ତ୍ର ପାର୍ଷଦମ୍ ।**
**ଯଜ୍ଞୈଃ ସଂକୀର୍ତ୍ତନ ପ୍ରାୟୈଃ    ଯଜନ୍ତି ହି ସୁମେଧସଃ ॥୩୨॥**

ଉ. ହରିନାମ ସଂକୀର୍ତ୍ତନ ହିଁ ଅସଲି ଯଜ୍ଞ ଏ ଯୁଗରେ । ଏହି ନାମଯଜ୍ଞକୁ ମୁଖ୍ୟ ଆଧାର କରି (ପ୍ରାୟୈଃ) ମୁଖରେ କୃଷ୍ଣନାମ କହୁଥିବା ଓ ରଙ୍ଗରେ ଗୋରା (ତ୍ୱିଷା-ଅକୃଷ୍ଣଂ) ମହାପୁରୁଷଙ୍କୁ ତାଙ୍କ ସାଥି (ସ-ଅଙ୍ଗ), ସେବକ (ଉପ-ଅଙ୍ଗ), ନାମ ରୂପକ ହତିଆର (ଅସ୍ତ୍ର) ଓ ଉଚ୍ଚତର ଲୋକରୁ ତାଙ୍କ ସହିତ ଆସିଥିବା ପାର୍ଷଦମାନଙ୍କୁ ମଧ୍ୟ ପ୍ରସନ୍ନ କରିହୁଏ । ଏ ନାମ ଯଜ୍ଞର ଅଧିକାରୀ ଅବଶ୍ୟ ସମସ୍ତେ କିନ୍ତୁ ଏ ସାଧନାରେ ରୁଚି ହୁଏ କେବଳ ଶୁଦ୍ଧ ସାତ୍ତ୍ୱିକ ଆହାର ଖାଇ ସତ୍‌ସଙ୍ଗ ଅଭିଳାଷୀ ପ୍ରେମ ମାର୍ଗୀ ପୁଣି ଧର୍ମ, ଅର୍ଥ, କାମ ଆଦି ତିନି ଲକ୍ଷ୍ୟକୁ ତୁଚ୍ଛ ମନେ କରୁଥିବା ହରିଭକ୍ତମାନେ (ସୁମେଧସଃ) । କାରଣ ସେଇମାନଙ୍କର ବୁଦ୍ଧି (ମେଧା) ନିର୍ମଳ । ଅନ୍ୟମାନଙ୍କ ବୁଦ୍ଧି କାମନା ବାସନା କଳୁଷିତ ଓ ଭକ୍ତି ବିମୁଖ । ସେମାନେ ବୈଷ୍ଣବ ଶରଣାଗତ ହେବେ କେମିତି ?

ପ୍ରଶ୍ନ-୬୭: କଳିଯୁଗରେ ସେ ଭଳି ମହାତ୍ମାଙ୍କର ଚରଣ କମଳର ଧ୍ୟାନର କିଛି ବିଶେଷ ମାହାତ୍ମ୍ୟ ଥାଏ କି ?

**ଧ୍ୟେୟଂ ସଦା ପରିଭବଘ୍ନଂ ଅଭୀଷ୍ଟ ଦୋହଂ**
**ତୀର୍ଥ-ଆସ୍ପଦଂ ଶିବ ବିରିଞ୍ଚି ନୁତଂ ଶରଣ୍ୟମ୍ ।**
**ଭୃତ୍ୟ-ଆର୍ତ୍ତିହଂ ପ୍ରଣତପାଳ ଭବାବ୍ଧି ପୋତଂ**
**ବନ୍ଦେ ମହାପୁରୁଷ ତେ ଚରଣ-ଅରବିନ୍ଦମ୍ ॥୩୩॥**

ଉ. ଗୋଟିଏ ଦୁଇଟି ନୁହେଁ ନଅଟି ଚରଣ କମଳ ମାହାତ୍ମ୍ୟ ଏଠାରେ ସୂଚିତ । ୧. ସକଳ ଦେବୀ ଦେବତାଙ୍କର ଧ୍ୟାନ ଯୋଗ୍ୟ । ୨. ଭୌତିକ ଦୁଃଖ ନିବାରକ (ପରିଭବଘ୍ନଂ) । ୩. ଭକ୍ତ ବାଞ୍ଛାକଳ୍ପତରୁ (ଅଭୀଷ୍ଟ ଦୋହଂ) । ୪. ଯାହାଙ୍କ ପାଦ ତୀର୍ଥ ସେବନର ଫଳଦାୟୀ । ୫. ବ୍ରହ୍ମା ଶଙ୍କରଙ୍କର ଧ୍ୟାନଯୋଗ୍ୟ । ୬. ଶରଣ ଯିବା ଯୋଗ୍ୟ  । ୭. ଭକ୍ତ ବିପଦ ଭଞ୍ଜନକାରୀ । ୮. ଶରଣାଗତର ପାଳକ,

ପୋଷଣ ଓ ରକ୍ଷଣ କର୍ତ୍ତା । ୯. ସଂସାର ସାଗର ପାର ହେବା ପାଇଁ ଏକ ନୌକା ସ୍ୱରୂପ ।

ପ୍ରଶ୍ନ-୬୮ : ଯେଉଁ ମହାପୁରୁଷଙ୍କର ଚରଣକମଳର ନଅ ମାହାତ୍ମ୍ୟ ବର୍ଣ୍ଣନା କରାଗଲା ସେ ମହାତ୍ମା ଜଣକ କିଏ କି ?

**ତ୍ୟକ୍ତ୍ୱା ସୁଦୁସ୍ତ୍ୟଜ ସୁର-ଈପ୍ସିତ ରାଜ୍ୟଲକ୍ଷ୍ମୀଂ**
**ଧର୍ମିଷ୍ଠ ଆର୍ଯ୍ୟ ବଚସା ଯତ୍ ଅଗାତ୍ ଅରଣ୍ୟମ୍ ।**
**ମାୟା ମୃଗଂ ଦୟିତୟା-ଈପ୍ସିତଂ ଅନ୍ୱଧାବତ୍**
**ବନ୍ଦେ ମହାପୁରୁଷ ତେ ଚରଣ-ଅରବିନ୍ଦମ୍ ।।୩୪।।**

ଉ. ଏହି ଶ୍ଳୋକରେ ତ୍ରେତୟାର ଶ୍ରୀରାମ, ଦ୍ୱାପରର ଶ୍ରୀକୃଷ୍ଣ ଓ କଳିଯୁଗର ଶ୍ରୀ ଚୈତନ୍ୟଙ୍କୁ ସଙ୍କେତ କରାଯାଇଛି । ଦେବତାମାନଙ୍କ ପକ୍ଷରେ ମଧ୍ୟ ଧନ, ସଂପତ୍ତି, ଐଶ୍ୱର୍ଯ୍ୟ ଭୋଗ ବିଳାସ ଲୋଭ ତ୍ୟାଗ କରିବା ଅସମ୍ଭବ (ଦୁସ୍ତ୍ୟଜ) । ଏମାନେ ସେ ସବୁର ଲୋଭ ଛାଡ଼ିପାରିଛନ୍ତି । ବୈଦିକ ଧର୍ମ ମାର୍ଗରେ (ଧର୍ମିଷ୍ଠ ଆର୍ଯ୍ୟ ବଚସା) ନିଜେ ଚଳି ଅନ୍ୟମାନଙ୍କୁ ଚାଲିବାକୁ ଆଦର୍ଶ ଶିକ୍ଷା ଦେଇଛନ୍ତି । ରାଜ୍ୟ ସୁଖଠାରୁ ବଡ଼ ବନବାସ ସୁଖ ଋଷିମାନଙ୍କ ସତ୍‌ସଙ୍ଗ ଲାଭର ସେ ତିନି ଜଣ ମହାତ୍ମା ଫାଇଦା ଉଠାଇଛନ୍ତି । କେବଳ ଲୋକ ଶିକ୍ଷା ଦେବାକୁ ସଂସାରୀ ସ୍ୱର୍ଣ୍ଣମୃଗ ଶିକାର କରିବା ଭଳି ଅଭିନୟ କରିଛନ୍ତି । ଯାହା ପଛରେ ସେମାନଙ୍କର ସଂସାରୀ ଦ୍ରବ୍ୟ ମୋହ କିମ୍ବା ମୂର୍ଖତା ନ ଥିଲା ।

ପାଠକେ ଟିକିଏ ମସ୍ତିଷ୍କ କସରତ କଲେ ଏହି ଶ୍ଳୋକରେ ଭଗବାନଙ୍କ ସତ୍ୟଯୁଗର ନୃସିଂହ ଅବତାର ଏବଂ ବାମନ ଅବତାରର ଲୀଳା ସମ୍ବନ୍ଧୀୟ ସଂକେତ ଥିବା କଥା ମଧ୍ୟ ବୁଝିପାରିବେ ।

ପ୍ରଶ୍ନ-୬୯ : ସତ୍ୟ ଯୁଗରେ ଧର୍ମ ବୃଷ ଚାରି ପାଦରେ, ତ୍ରେତା ଯୁଗରେ ତିନି ପାଦରେ, ଦ୍ୱାପରରେ ଦୁଇ ପାଦରେ ଓ କଳିଯୁଗରେ ଧର୍ମ ଏକମାତ୍ର ପାଦରେ ରହନ୍ତି । ତେବେ ଅସଲି ଗୁଣୀ ଜ୍ଞାନୀ ଗଣ କଳିଯୁଗର ଏତେ ଉଚ୍ଚ ପ୍ରଶଂସା କାହିଁକି କରନ୍ତି (ସଭାଜୟନ୍ତି) ?

**କଳିଂ ସଭାଜୟନ୍ତି-ଆର୍ଯ୍ୟା ଗୁଣଜ୍ଞାଃ ସାରଭାଗିନଃ ।**
**ଯତ୍ର ସଂକୀର୍ତ୍ତନେନ-ଏବ ସର୍ବସ୍ୱାର୍ଥୋଽଭିଲଭ୍ୟତେ ।।୩୬।।**

ଉ. ତପସ୍ୟା କରିବା, ଯଜ୍ଞ କରିବା ଓ ପୂଜା ପାଠ ଇତ୍ୟାଦି କରିବା କଳିଯୁଗୀ ଲୋକଙ୍କ ବ୍ୟସ୍ତ ବହୁଳ ଜୀବନରେ କାଠିକର ପାଠ । କେବଳ ମୁଖମେଁ ରାମ ହାତମେଁ କାମ ବା କେବଳ ନାମ ସଂକୀର୍ତ୍ତନରେ ମୁକ୍ତି ମିଳୁଥିବାରୁ କଳି ଯୁଗକୁ ଧନ୍ୟ କହିବା ।

ପ୍ରଶ୍ନ-୭୦: ହରି ଭକ୍ତି ସାଧନା ସତ୍ୟ, ତ୍ରେତା, ଦ୍ୱାପର ଆଦି ସବୁ ଯୁଗରେ କରାଯାଏ । ସେ ସବୁ ସାଧକମାନେ ପୁଣି କାହିଁକି କଳିଯୁଗରେ (କଲୌ) ଜନ୍ମହେବା ଇଛା କରନ୍ତି (ଇଛନ୍ତି ସମ୍ଭବମ୍) ?

**କୃତ-ଆଦିଷୁ ପ୍ରଜା ରାଜନ୍ କଲୌ-ଇଛନ୍ତି ସମ୍ଭବମ୍ ।**
**କଲୌ ଖଳୁ ଭବିଷ୍ୟନ୍ତି ନାରାୟଣ ପରାୟଣାଃ ॥୩୮॥**

ଉ. ଭକ୍ତି ସାଧନା ତ ସମସ୍ତେ କରନ୍ତି କିନ୍ତୁ ମୁକ୍ତି ମିଳେନା ସେମାନଙ୍କୁ । କାରଣ ତପସ୍ୟା, ଯଜ୍ଞ, ପୂଜନ ସବୁ ହୁଏ ସକାମ ଭାବରେ । ସଂସାରୀ ଭୋଗ ସାମଗ୍ରୀ ପ୍ରାପ୍ତି ଲକ୍ଷ୍ୟରେ । ଦ୍ରବ୍ୟ ଖୁବ୍ ମିଳେ । ମୁକ୍ତି କାହୁଁ ମିଳିବ ? କିନ୍ତୁ କଳିଯୁଗରେ ନିଷ୍କାମ ଭକ୍ତି ଲୋଭରେ ଆଉ ଭୁକ୍ତି ପଛରେ ନ ଗୋଡ଼ାଇ ମୁକ୍ତି ସାଧନାରେ ଲାଗନ୍ତି ନାରାୟଣ କିମ୍ବା ତାଙ୍କ ସ୍ୱାଂଶ ଅବତାରଙ୍କ ନାମ ସଂକୀର୍ତ୍ତନରେ ନାଚକୁଦ କରି । କଳିଯୁଗ କେବଳ ସିଦ୍ଧିର ଯୁଗ ବା ମୁକ୍ତିର ଯୁଗ । ଅନ୍ୟ ତିନିଯୁଗ ସାଧନାର ଯୁଗ ।

ପ୍ରଶ୍ନ-୭୧: ବେଦ ଭଗବାନ କହନ୍ତି ମନୁଷ୍ୟ ଜନ୍ମ ହେବା ବେଳେ ଦେବରଣ, ଋଷିରଣ, ପିତୃ ରଣ, ଭୂତ ରଣ, ସମାଜରଣ (ଆପ୍ତନୃଣାଂ) ସାଙ୍ଗରେ ଧରି ଜନ୍ମହୁଏ । ଜଣେ ମନୁଷ୍ୟ ସ୍ୱଧର୍ମ ପାଳନ କଲେ ଏ ପଞ୍ଚରଣରୁ ମୁକ୍ତ ହୁଏ । ଯଦି ସେ ସ୍ୱଧର୍ମ ତ୍ୟାଗ କରି (ପରିହୃତ୍ୟ କର୍ତ୍ତମ୍ ) କେବଳ ନାମ ସଂକୀର୍ତ୍ତନରେ ମନ ପ୍ରାଣ ଆହୁତି ଦେବ ତେବେ କ'ଣ ସେ ମହାନ କ୍ଷତି କରି ବସିବନି ନିଜର ?

**ଦେବ-ଋଷି ପିତୃଣାଂ ଭୂତ-ଆପ୍ତ ନୃଣାଂ**
**ନ କିଂକରୋ ନ-ଅୟଂ ଋଣୀ ଚ ରାଜନ୍ ।**
**ସର୍ବ-ଆତ୍ମନା ଯଃ ଶରଣଂ ଶରଣ୍ୟଂ**
**ଗତୋ ମୁକୁନ୍ଦଂ ପରିହୃତ୍ୟ କର୍ତ୍ତମ୍ ॥୪୧॥**

ଉ. ଏ ପଞ୍ଚ ରଣ ପରିଶୋଧ ବ୍ୟବସ୍ଥା ଜଣେ ଭଗବାନଙ୍କର ଅଶରଣାଗତ ସାଧାରଣ ବିଷୟୀ ଜୀବଲାଗି । ଜଣେ ଏକାନ୍ତ ଭଗବତ୍ ଶରଣାଗତ (ଶରଣଂ ଶରଣ୍ୟଂ) ଭକ୍ତ ପାଇଁ ସନାତନ ଭାଗବତ ଧର୍ମରେ ଏ ପଞ୍ଚରଣରୁ ମୁକ୍ତି (ରିବେଟ୍) ବ୍ୟବସ୍ଥା

ଖଞ୍ଜା ହୋଇଛି । ଠିକ୍ ଯେମିତି ଭକ୍ତର ପାପ ଫଳ ଭୋଗର ଠିକା ସ୍ୱୟଂ ନେଇଥାଆନ୍ତି । ସେହି ନ୍ୟାୟରେ ଭକ୍ତର ପଞ୍ଚ ଋଣ ଶୁଝିବା ଠିକା ମଧ୍ୟ ସେ ହାତକୁ ନିଅନ୍ତି ।

ପ୍ରଶ୍ନ-୭୨: ଦେବର୍ଷି ନାରଦ ବସୁଦେବଙ୍କୁ କହିଲେ, "ହେ ଭାଗ୍ୟବାନ ବସୁଦେବ, ନବଯୋଗେନ୍ଦ୍ରଙ୍କଠାରୁ ଭାଗବତ ଧର୍ମକୁ ରାଜା ନିମି ଆମୂଳ ଚୂଳ ଶ୍ରବଣ କଲେ । ଶେଷରେ ସେମାନଙ୍କର ପାଦ ପୂଜା କରି ଭବ୍ୟ ବିଦାୟ ଦେଲେ । ନବଯୋଗେନ୍ଦ୍ର ସମସ୍ତଙ୍କ ଦେଖୁ ଦେଖୁ ଅଦୃଶ୍ୟ ହୋଇଗଲେ । ମିଥିଳା ନରେଶ ନିମି ଶ୍ରଦ୍ଧାଯୁକ୍ତ ହୋଇ ଭାଗବତ ଧର୍ମରେ ଚଳି ସଂସାର ମାୟାବନ୍ଧନରୁ ମୁକ୍ତ ହୋଇଗଲେ । ଆପଣ ସେ ନିମି ରାଜାଙ୍କଠାରୁ ମଧ୍ୟ ଅଧିକ ଭାଗ୍ୟବାନ । ଶ୍ରୀକୃଷ୍ଣଙ୍କୁ ବୈର ଭାବରେ ସ୍ମରଣ କରି ଶିଶୁପାଳ, କଂସ, ପୌଣ୍ଡ୍ରକ, ଶାଲ୍ୱ ଆଦି ସାଯୁଜ୍ୟ ମୁକ୍ତି ପ୍ରାପ୍ତ ହେବା ଆମ୍ଭେମାନେ ଓ ଆପଣ ସ୍ୱଚକ୍ଷୁରେ ଦର୍ଶନ କରିଛେ । ଆପଣ ପ୍ରେମ ଭାବରେ ତିନି ତିନି ଜନ୍ମ ଧରି ଶ୍ରୀକୃଷ୍ଣଙ୍କର ପ୍ରତ୍ୟକ୍ଷ ସେବା, ସ୍ମରଣ ଆଦି କରିଛନ୍ତି ଅବଶ୍ୟ । କିନ୍ତୁ କେବଳ ପୁତ୍ର ଭାବରେ ।" ଦେବର୍ଷି ଶ୍ରୀକୃଷ୍ଣଙ୍କ ଅସଲି ସ୍ୱରୂପ ବର୍ଣ୍ଣନା କରିବା ଲକ୍ଷ୍ୟରେ ତାଙ୍କୁ କି କି ଉପଦେଶ ଦେଲେ ?

ନାରଦ ଉବାଚ

**ମା-ଅପତ୍ୟ ବୁଦ୍ଧିଂ କୃଥାଃ　　କୃଷ୍ଣେ ସର୍ବ-ଆତ୍ମନେ-ଈଶ୍ୱରେ ।**
**ମାୟା ମନୁଷ୍ୟ ଭାବେନ　　ଗୂଢ଼େ-ଐଶ୍ୱର୍ଯ୍ୟେ ପରେଽବ୍ୟୟେ ॥୪୯॥**

ଉ. ଦେବର୍ଷି ସବୁ ରହସ୍ୟ ଖୋଲିଦେଇ କହିଲେ, "ହେ ବସୁଦେବଜୀ, ଶ୍ରୀକୃଷ୍ଣଙ୍କୁ ଆପଣ ସାମାନ୍ୟ ପୁତ୍ର, ଜ୍ଞାନ କରନ୍ତୁ ନାହିଁ (ମା କୃଥା) । ସେ ଆମ ସମସ୍ତ ଆତ୍ମାଙ୍କର ଆତ୍ମା ପରମାତ୍ମା । ବ୍ରହ୍ମା, ଶଙ୍କର ଆଦି ଈଶ୍ୱରଙ୍କର ମଧ୍ୟ ଈଶ୍ୱର ସର୍ବେଶ୍ୱର । ଅଦୃଶ୍ୟ ମାୟାର କଳା ବସ୍ତ୍ରରେ ଘୋଡ଼େଇ ହୋଇ କେବଳ ମନୁଷ୍ୟ ରୂପରେ ଅଭିନୟ କରୁଛନ୍ତି । ସକଳ ଭଗବଦୀୟ ଐଶ୍ୱର୍ଯ୍ୟକୁ ଲୁଚେଇ ରଖିଛନ୍ତି । ଯାହାକୁ ଜ୍ଞାନ ଅହଂକାରରେ ବୁଝିବା ଅସମ୍ଭବ କିନ୍ତୁ ତାଙ୍କର ଶରଣାଗତ ହୋଇଗଲେ ତାଙ୍କ ପ୍ରଦତ୍ତ ଭକ୍ତିରେ ତାଙ୍କୁ ଚିହ୍ନିପାରିବା ବିଲ୍‌କୁଲ୍ ସହଜ ।"

ପ୍ରଶ୍ନ-୭୩: କଂସ ଆଦି ଅସୁରମାନଙ୍କ ଉତ୍‌ପାତ ଅସହ୍ୟ ହେବାରୁ ସ୍ୱୟଂ ବ୍ରହ୍ମଦେବ ଏବଂ ମା'ଧରିତ୍ରୀ, ଇନ୍ଦ୍ରାଦି ଦେବତାଙ୍କ ପ୍ରାର୍ଥନାରେ ଭୂଭାର ହରଣ ଲାଗି ଭଗବାନ ଶ୍ରୀକୃଷ୍ଣ ଆସିଛନ୍ତି । ଏବେ ତାଙ୍କ ଦୁଷ୍ଟ ଦଳନ ସନ୍ଥ ପାଳନ ଓ ଧର୍ମସଂସ୍ଥାପନ ରୂପକ ଅଲୌକିକ ଲୀଳାର ଯଶଗାନ ସ୍ୱର୍ଗ ଆଦି ତିନିଲୋକରେ କୀର୍ତ୍ତିତ ହେଲାଣି ।

ଦେବର୍ଷି ନାରଦଙ୍କ ମୁଖରୁ ଭଗବାନଙ୍କର କୃପା, ଯଶ, ଲୀଳା ଓ ସ୍ୱରୂପ ବର୍ଣ୍ଣନ ଶ୍ରବଣର କି ପ୍ରଭାବ ପଡ଼ିଲା ବସୁଦେବ ଓ ଦେବକୀଙ୍କ ଉପରେ ?

ଶ୍ରୀ ଶୁକ ଉବାଚ

**ଏତଦ୍ ଶ୍ରୁତ୍ୱା ମହାଭାଗୋ ବସୁଦେବୋଽତି ବିସ୍ମିତଃ ।**
**ଦେବକୀ ଚ ମହାଭାଗା ଜହତୁଃ ମୋହଂ ଆତ୍ମନମ୍ ॥୫୧॥**

ଉ. ଭଗବାନଙ୍କର ପିତା ମାତା ଉଭୟେ ଅତ୍ୟନ୍ତ ବିସ୍ମିତ ହେଲେ । ଉଭୟେ ଅଦ୍ୱୟ ଜ୍ଞାନ ତତ୍ତ୍ୱ ବୁଝିପାରି ନିଜ ପୁତ୍ର ମୋହରୁ ନିଜେ ମୁକ୍ତ ହୋଇଗଲେ(ଜହତୁଃ) ଏବେ । ସନ୍ଥ ନାରଦଙ୍କ ମୁଖରୁ ଭାଗବତ ଧର୍ମ ଶ୍ରବଣର ଅଲୌକିକ ଫଳ ପ୍ରାପ୍ତିର ଦୃଷ୍ଟାନ୍ତ ଭବିଷ୍ୟତ କର୍ମ, ଜ୍ଞାନ, ଭକ୍ତି ସାଧକଙ୍କ ନିମନ୍ତେ ଇତିହାସ ହୋଇ ରହିଗଲା । ଯାହା ଶହେ ଚଉଦ ବର୍ଷରେ ଭଗବାନ ନିଜେ ପାରିଲେ ନାହିଁ ତାଙ୍କର ଜଣେ ଭକ୍ତ ନାରଦ ଏକଥା କରିପାରିଲା କେତେ ସହଜରେ । କେଡେ ଆଶ୍ଚର୍ଯ୍ୟ କଥା !

## ଅଥ ୬ଷ୍ଠ ଅଧ୍ୟାୟଃ

### (କୃଷ୍ଣାବତାର ଲକ୍ଷ୍ୟର ପରିସମାପ୍ତି ଓ ଯଦୁବଂଶୀମାନଙ୍କର ପ୍ରଭାସ ଗମନ)

ପ୍ରଶ୍ନ-୭୪: ଦିନକର କଥା । ସୃଷ୍ଟିକର୍ତ୍ତା ବ୍ରହ୍ମା ସାଙ୍ଗରେ ବଶିଷ୍ଠ, ଭୃଗୁ, ନାରଦ ଆଦି ପୁତ୍ର (ଆତ୍ମଜୈଃ), ଇନ୍ଦ୍ର ଆଦି ଦେବଗଣ, ପ୍ରଜାପତି ଗଣ, ଭଗବାନ ଶଙ୍କର, ଆଦିତ୍ୟ, ବସୁଗଣ, ଗନ୍ଧର୍ବ, ଅପସରାଗଣ, ନାଗ, ସିଦ୍ଧ ଚାରଣ ଇତ୍ୟାଦିଙ୍କୁ ଧରି ଦ୍ୱାରକାଧାମରେ ଶ୍ରୀକୃଷ୍ଣଙ୍କୁ କାହିଁକି ଦେଖାକଲେ ?

ଶ୍ରୀ ଶୁକ ଉବାଚ

**ଅଥ ବ୍ରହ୍ମା-ଆତ୍ମଜୈଃ ଦେବୈଃ ପ୍ରଜାଽଈଶୈଃ ଆବୃତୋଽଭ୍ୟଗାତ୍ ।**
**ଭବଃ ଚ ଭୂତ ଭବ୍ୟ-ଈଶୋ ଯଯୌ ଭୂତଗଣୈଃ ବୃତଃ ॥୧॥**

ଉ. ସୃଷ୍ଟିର ଯେଉଁ ସମସ୍ୟାର ସମାଧାନ ଲାଗି ସେମାନେ ଭଗବାନଙ୍କୁ କ୍ଷୀରାବ୍ଧିରେ ପହଞ୍ଚି ଜଗତକୁ ଆସିବାକୁ ପ୍ରାର୍ଥନା କରିଥିଲେ ତାହା ସଂପୂର୍ଣ୍ଣ ହୋଇଯାଇଛି ବୋଲି ବିନମ୍ରଭାବରେ ଜଣାଇଦେବାକୁ ।

ପ୍ରଶ୍ନ-୭୫: ସେତେବେଳେ ଦ୍ୱାରକା ନଗରୀ ଅତ୍ୟନ୍ତ ସମୃଦ୍ଧିଶାଳୀ ଓ ଅଲୌକିକ ଐଶ୍ୱର୍ଯ୍ୟ ବିମଣ୍ଡିତ ହୋଇଥିବା ଦେଖି ସେମାନେ କି ଧାରଣା କଲେ ନିଜ ନିଜ ମନ ମଧ୍ୟରେ ?

**ତସ୍ୟାଂ ବିଭ୍ରାଜମାନାୟାଂ ସମୃଦ୍ଧାୟାଂ ମହା-ଋଦ୍ଧିଭିଃ ।**
**ବ୍ୟଚକ୍ଷତା-ଅବିତୃପ୍ତ-ଅକ୍ଷାଃ କୃଷ୍ଣଂ ଅଦ୍ଭୁତ ଦର୍ଶନମ୍ ॥୫॥**

ଉ. ଏଭଳି ସୁଶୋଭିତ (ବିଭ୍ରାଜମାନାୟାଂ) ନଗରୀ ଦର୍ଶନରେ (ବ୍ୟଚକ୍ଷତା) ସେମାନଙ୍କ ନେତ୍ର ଆଦୌ ତୃପ୍ତି ଅନୁଭବ କରିପାରୁନଥିଲେ । ବିଶେଷତଃ ଶ୍ରୀକୃଷ୍ଣଙ୍କର ଅପରୂପ କୋଟି କନ୍ଦର୍ପ ମୋହନ ରୂପ ମାଧୁରୀ ପାନ ଜନିତ ଆନନ୍ଦକୁ ହାତଛଡ଼ା କରିବାକୁ ସେମାନେ ଆଦୌ ଚାହୁଁ ନଥିଲେ ।

ପ୍ରଶ୍ନ-୭୬: ସକଳ ଦେବଗଣ ସ୍ୱରରେ ସ୍ୱରମିଳାଇ ସେ ସମୟରେ ବେଦମନ୍ତ୍ରରେ ଭଗବାନଙ୍କର ଭବ୍ୟ ସ୍ତୁତିଗାନ କରିଛନ୍ତି । ପ୍ରାର୍ଥନା କରିବା କାଇଦାରେ ଜଣାଇଦେଇଛନ୍ତି ଯେ ଅସୁରଙ୍କ ଉତ୍ପାତଜନିତ ଭୂମିଭାର ଅପନୋଦନ ହୋଇସାରିଛି । ତା ସହିତ ଆଉ କେଉଁ କେଉଁ ମଙ୍ଗଳମୟ ଲୀଳା ପ୍ରଦର୍ଶିତ ହୋଇଛି ବୋଲି ଦେବଗଣ ଶ୍ରୀକୃଷ୍ଣଙ୍କୁ ନିବେଦନ କରିଛନ୍ତି ?

ବ୍ରହ୍ମା ଉବାଚ

**ଧର୍ମଃ ଚ ସ୍ଥାପିତଃ ସତ୍ସୁ ସତ୍ୟସନ୍ଧେଷୁ ବୈ ତ୍ୱୟା ।**
**କୀର୍ତ୍ତିଃ ଚ ଦିକ୍ଷୁ ବିକ୍ଷିପ୍ତା ସର୍ବଲୋକ ମଳ-ଅପହା ॥୨୨॥**

ଉ. ଦୁଷ୍ଟ ଦଳନ ସହିତ ସନ୍ଥପାଳନ (ସତ୍ସୁ ସତ୍ୟସନ୍ଧେଷୁ) ମଧ୍ୟ ସେ କରିଛନ୍ତି । ସେ ସବୁ ଲୀଳା ଏପରି କଲ୍ୟାଣକାରୀ ହୋଇଛି ଯେ ଆସନ୍ତା ଅନେକ ପିଢ଼ିକୁ ମଧ୍ୟ ମାର୍ଗ ଦର୍ଶନ କରାଇବ ଅନେକ ଯୁଗ ଯୁଗାନ୍ତର ଧରି । ସେସବୁ ଅମଳ କୀର୍ତ୍ତି ରାଜି ସେତେବେଳକୁ ତିନିଲୋକରେ (ଦିକ୍ଷୁଃ) ବ୍ୟାପ୍ତ ହୋଇସାରିଲାଣି (ବିକ୍ଷିପ୍ତା) । ସେ ଦିବ୍ୟ କୃଷ୍ଣ ଲୀଳାର ଶ୍ରବଣ କୀର୍ତ୍ତନ ସହ ସ୍ମରଣ କଲେ ଦେବତା, ମାନବ ଓ ଦାନବ ସମସ୍ତଙ୍କର ଅନ୍ତଃକରଣ ମଇଳା ପରିଷ୍କାର ହୋଇଯିବ (ମଳ-ଅପହା) ଓ ସେମାନଙ୍କୁ ଅମୂଲ୍ୟ କୃଷ୍ଣ ଭକ୍ତି ପ୍ରାପ୍ତି ହେବ । ସେମାନେ ଅକ୍ଳେଶରେ ମାୟା ବନ୍ଧନ ବା ଭବ ବନ୍ଧନରୁ ମୁକ୍ତ ହୋଇଯିବେ ।

ପ୍ରଶ୍ନ-୭୭: ଯଦୁବଂଶରେ ଶ୍ରୀକୃଷ୍ଣଙ୍କର ଅବତାର ହେବାର କେତେ ବର୍ଷ

ବିତିସାରିଲାଣି ବୋଲି ସେମାନେ ସଙ୍କେତ କଲେ ?

**ଯଦୁବଂଶେଽବତୀର୍ଣ୍ଣସ୍ୟ ଭବତଃ ପୁରୁଷ-ଉତ୍ତମ ।**
**ଶରତ୍ ଶତଂ ବ୍ୟତୀତାୟ ପଞ୍ଚବିଂଶ-ଅଧିକଂ ପ୍ରଭୋ ॥୨୫॥**

ଉ. କହିଲେ, ''ହେ ପ୍ରଭୋ, ଆପଣଙ୍କ ଅବତାର ନେବା'ର ସମୟ ଶହେ ପଚିଶ ବର୍ଷ ହେଲାଣି । ଆପଣଙ୍କ ଯଦୁବଂଶ ନାଶ (ନିଜ ଲୋକ ଗମନ ବ୍ୟବସ୍ଥା) ଯୋଗମାୟା କରିସାରିଲେଣି । ବର୍ତ୍ତମାନ ଆପଣ ଯଦି ଚାହାନ୍ତି ସ୍ୱଧାମ ଗମନ କରି ପାରନ୍ତି ।''

ପ୍ରଶ୍ନ-୭୮: ସ୍ୱଧାମ ଗମନ ପ୍ରସ୍ତାବ ଶୁଣି ଭଗବାନ ଦେବତାମାନଙ୍କୁ କି ଉତ୍ତର ଦେଲେ ?

ଶ୍ରୀ ଭଗବାନ ଉବାଚ

**ତତ୍ ଇଦଂ ଯାଦବକୁଳଂ ବୀର୍ଯ୍ୟ ଶୌର୍ଯ୍ୟ ଶ୍ରୀୟା-ଉଦ୍ଧତମ୍ ।**
**ଲୋକଂ ଜିଘୃକ୍ଷତ୍ ରୁଦ୍ଧଂ ମେ ବେଲୟା-ଇବ ମହା-ଅର୍ଣ୍ଣବଃ ॥୨୯॥**

ଉ. ଭଗବାନ କହିଲେ, ''ହେ ଦେବଗଣ, ମୁଁ ଜାଣେ ସବୁ କଥା । ମୁଁ ଜନ୍ମ ନେଇଥିବା ଏ ଯାଦବକୁଳରେ ବୀରମାନଙ୍କୁ ଭିନ୍ନ ଭିନ୍ନ ଲୋକମାନଙ୍କରୁ ଅଣାଇ ଦୁର୍ଜ୍ଜୟ ଅସୁର ରାକ୍ଷସଙ୍କୁ ମାରି ପୃଥିବୀର ଭାର ଉଶ୍ୱାସ କରିଛି ଅବଶ୍ୟ । ଏହି ଯାଦବମାନେ ଏବେ ଏତେ ବୀର୍ଯ୍ୟ, ଶୌର୍ଯ୍ୟ, ଐଶ୍ୱର୍ଯ୍ୟରେ ଉଦ୍ଧତ ହୋଇ ଯାଇଛନ୍ତି ଯେ ମୋ ଅବର୍ତ୍ତମାନରେ ଏମାନେ ତିନିଲୋକକୁ ଗ୍ରାସ କରିଯାଇଥାନ୍ତେ (ଜିଘୃକ୍ଷତ୍) । ବେଳାଭୂମି ଯେମିତି ଦୁର୍ବାର ସମୁଦ୍ରକୁ ଅଧିକ ଉତ୍ପାତରୁ ରକ୍ଷା କରିଥାଏ ମୁଁ ଠିକ୍ ସେହି ଭଳି ଏମାନଙ୍କୁ ସମ୍ଭାଳି ରଖିଛି । ମୁଁ ଏମାନଙ୍କୁ ପ୍ରଥମେ ନିଜ ନିଜ ଲୋକକୁ ପଠାଇବି । ତାପରେ ମୁଁ ଗୋଲୋକକୁ ପ୍ରସ୍ଥାନ କରିବି ।''

ପ୍ରଶ୍ନ-୭୯: ବ୍ରହ୍ମା ଆଦି ଦେବଗଣ ଦ୍ୱାରକାରୁ ବିଦାୟ ନେଲେ । ସଙ୍ଗେ ସଙ୍ଗେ ଦ୍ୱାରକାରେ ମହା ମହା ପ୍ରଳୟକାଳୀନ ଉତ୍ପାତମାନ ଦେଖାଗଲା । ଯଦୁବଂଶୀମାନେ ଭୟରେ କମ୍ପମାନ ହୁଅନ୍ତେ ଭଗବାନ ସେମାନଙ୍କୁ କି ଉପଦେଶ ଦେଲେ ?

**ଏତେ ବୈ ସୁ-ମହା-ଉତ୍ପାତା ବ୍ୟୁତିଷ୍ଠନ୍ତି-ଇହ ସର୍ବତଃ ।**
**ଶାପଃ ଚ ନଃ କୁଳସ୍ୟ-ଆସୀଦ୍ ବ୍ରାହ୍ମଣେଭ୍ୟୋ ଦୁରତ୍ୟୟଃ ॥୩୪॥**

ଉ. ଭଗବାନ କହିଲେ, ''ଯଦୁବଂଶକୁ ବ୍ରହ୍ମଶାପ ପଡ଼ିଛି । ତାକୁ ଅଟକେଇବା ନିତାନ୍ତ ଅସମ୍ଭବ (ଦୁରତ୍ୟୟଃ) । ସେଥିପାଇଁ ଚାରିଆଡ଼େ ଏ ସବୁ ଉତ୍ପାତ ଦେଖାଯାଉଛି । ସୁତରାଂ ଏ ସ୍ଥାନ ତ୍ୟାଗ କରି ସମସ୍ତ ଦ୍ୱାରକାବାସୀ ପ୍ରଭାସ ତୀର୍ଥକୁ ଯିବା ଉଚିତ । ସେଠାରେ ବ୍ରାହ୍ମଣମାନଙ୍କୁ ଦାନ ପୁଣ୍ୟ କଲେ କିଛି ଶୁଭ ଫଳ ମିଳିପାରେ । ରିଷ୍ଟ ଖଣ୍ଡନ କରାଯାଇପାରେ । ସେଠାରେ ପୂର୍ବେ ଚନ୍ଦ୍ରଦେବତା ଶିବଙ୍କୁ ତପସ୍ୟାରେ ପ୍ରସନ୍ନ କରି ଅଭିଶାପ ଜନିତ କ୍ଷୟରୋଗରୁ ମୁକ୍ତ ହୋଇଥିଲେ ।''

ପ୍ରଶ୍ନ-୮୦: ଭଗବାନଙ୍କ କଥା ମାନି ଦ୍ୱାରକାବାସୀ ଆବଶ୍ୟକୀୟ ଜିନିଷ ପତ୍ର ଧରି ପ୍ରଭାସ ତୀର୍ଥକୁ ବାହାରିଲେ । ଭଗବାନଙ୍କର ଅତିପ୍ରିୟ ଜ୍ଞାନୀ ଭକ୍ତ ଉଦ୍ଧବଜୀ ଭଗବାନଙ୍କୁ ଏକାନ୍ତ ସ୍ଥାନରେ ଭେଟି କେଉଁ ପ୍ରସ୍ତାବ ନିବେଦନ କରିଥିଲେ ?

**ଉଦ୍ଧବ ଉବାଚ**

**ନ-ଅହଂ ତବ-ଅଙ୍‌ଘ୍ରି କମଳଂ କ୍ଷଣ-ଅର୍ଦ୍ଧଂ ଅପି କେଶବ ।**
**ତ୍ୟକ୍ତୁଂ ସମୁତ୍ସହେ ନାଥ ସ୍ୱଧାମ ନୟ ମାଂ ଅପି ॥୪୩॥**

ଉ. ପ୍ରଭୁ (ନାଥ)ଙ୍କ ଚରଣ କମଳ ଛାଡ଼ି ଉଦ୍ଧବଙ୍କ ପକ୍ଷେ ଅଧା କ୍ଷଣ କାଳ ମଧ୍ୟ ରହିବା (ସମୁତ୍ସହେ) ଅସମ୍ଭବ ହେବ । ସୁତରାଂ ଭଗବାନଙ୍କ ସାଙ୍ଗରେ ଗୋଲୋକ ଯିବାକୁ ସେ ଅନୁରୋଧ କଲେ । ଗୋବିନ୍ଦ ବିରହରେ ଜଣେ ନିଷ୍କାମ ଗୋବିନ୍ଦ ଭକ୍ତ ରହିବ କିପରି ? ବୈଷ୍ଣବୀ ମାୟା ତାକୁ ବିରାଡ଼ି ମୂଷାକୁ ମାଡ଼ି ବସିବା ଭଳି ଆକ୍ରମଣ କରିବ ।

ପ୍ରଶ୍ନ-୮୧: ଭଗବାନ ନିଜର ଅତି ପ୍ରିୟ ସଖା ଉଦ୍ଧବଙ୍କ ବ୍ୟାକୁଳତା ଦେଖି ଆଦୌ ବିଚଳିତ ହେଲେ ନାହିଁ । ଉଦ୍ଧବ ପୁଣି କିପରି ଜଣାଇଦେଲେ ପ୍ରାର୍ଥନା ମାଧ୍ୟମରେ ଯେ ସେ ମାୟାକୁ ଏଯାବତ ତିଳେ ମାତ୍ର ଡ଼ରି ନାହାନ୍ତି ବୋଲି ?

**ତ୍ୱୟା-ଉପଭୁକ୍ତ ସ୍ରକ୍ ଗନ୍ଧ ବାସୋଽଲଂକାର ଚର୍ଚ୍ଚିତାଃ ।**
**ଉଚ୍ଛିଷ୍ଟ ଭୋଜିନୋ ଦାସାଃ ତବ ମାୟା ଜୟେମ ହି ॥୪୬॥**

ଉ. ଉଦ୍ଧବଜୀ ଅତ୍ୟନ୍ତ ନିର୍ଭୀକତାର ସହିତ ଘୋଷଣା କରି କହିଲେ, ''ହେ ଭଗବନ୍, ଆପଣଙ୍କ ପ୍ରସାଦି ଫୁଲମାଳ, ସୁଗନ୍ଧିତ ତୈଳ, ବସ୍ତ୍ର, ଗହଣାରେ ଆମେ ନିଜକୁ ସଜାଇ ଓ ଆପଣଙ୍କ ଉଚ୍ଛିଷ୍ଟକୁ ପ୍ରସାଦ ରୂପରେ ଗ୍ରହଣ କରି ମାୟାକୁ ଅକ୍ଳେଶରେ ଜୟ କରିଛୁ । ଆପଣ ଏହି ଶହେ ପଚିଶ ବର୍ଷରେ କରିଥିବା ଲୀଳା ଏତେ ପବିତ୍ର ଯେ

ସେଇ କଥାକୁ ଆମେ ଜପା ମାଳି କରିଛୁ । ସେଇ ଦିବ୍ୟ ଲୀଳାର ଶ୍ରବଣ କୀର୍ତ୍ତନ କରି କରି ଭବିଷ୍ୟତରେ ମାୟାକୁ ମଧ୍ୟ ଜୟ କରିପାରିବୁ ।''

ଭଗବାନ ଏବେ ବୁଝିଗଲେ ଉଦ୍ଧବଙ୍କର ବାସ୍ତବରେ ବୃନ୍ଦାବନ ତ୍ୟାଗ କରି ଗୋଲୋକ ଯିବାର ଆଦୌ ଇଛା ନାହିଁ । ତାଙ୍କର ମନେ ପଡ଼ିଲା ରାମ ଅବତାର କାଳରେ ଠିକ୍ ଏହିଭଳି ହନୁମାନଜୀ ମଧ୍ୟ ଅଯୋଧ୍ୟା, ଚିତ୍ରକୂଟ, ଭାରତ ବର୍ଷ ତ୍ୟାଗ କରି ସାକେତ ଲୋକ ଯିବାକୁ ଇଛା କରି ନଥିଲେ । ସେତେବେଳ ପ୍ରଭୁ ଶ୍ରୀରାମ କଳିଯୁଗରେ ରାମାୟଣ ଓ ରାମଲୀଳାର ପ୍ରଚାର ପ୍ରସାର ଭାର ତାଙ୍କୁ ହିଁ ଅର୍ପଣ କରିଥିଲେ । ସୁତରାଂ ଭଗବାନ ପରବର୍ତ୍ତୀ ୨୪ ଅଧ୍ୟାୟରେ ଉଦ୍ଧବଜୀଙ୍କୁ ଭାଗବତ ଧର୍ମର ଅତ୍ୟନ୍ତ ଗୂଢ଼ ଉପଦେଶ ପ୍ରଦାନ କଲେ । ତାଙ୍କୁ ଜଣେ ସିଦ୍ଧ ଜ୍ଞାନୀ ଓ ନିଷ୍କାମ ଭକ୍ତ ରୂପରେ ପ୍ରସ୍ତୁତ କଲେ । ନିଜ ଯୋଗ ଶକ୍ତି ବଳରେ ତାଙ୍କୁ ଦୁଇ ଭାଗରେ ବିଭକ୍ତ କଲେ । ଭକ୍ତି ଅଂଶକୁ ସ୍ଥାପନ କଲେ ଗିରିରାଜ ଗୋବର୍ଦ୍ଧନ ପର୍ବତ ମଧ୍ୟରେ ଆଜିର କୁସୁମ ସରୋବର ଠାରେ ଭକ୍ତି ମାର୍ଗର ସାଲୋକ୍ୟ ଆଦି ଚାରିମୁକ୍ତି ସହିତ ଜୀବନ୍ମୁକ୍ତିର ପ୍ରଚାର ପ୍ରସାର ଲାଗି । ଜ୍ଞାନ ଅଂଶକୁ ବଦ୍ରିନାଥ ଧାମରେ ନର-ନାରାୟଣ ପର୍ବତରେ ସ୍ଥାପନ କଲେ ଜ୍ଞାନ ମାର୍ଗରେ ମିଳୁଥିବା ସାଯୁଜ୍ୟ ମୁକ୍ତିର ପ୍ରଚାର ପ୍ରସାର ଲାଗି ।

## ୩୭. ସାଲୋକ୍ୟ ମୁକ୍ତି ପ୍ରକରଣ ସାର

### ଅଧ୍ୟାୟ ୧ମ-୬ଷ୍ଠ

ଦଶ ଲକ୍ଷଣ ବିଶିଷ୍ଟ ଭାଗବତ ମହାଗ୍ରନ୍ଥର ଏକ ମୁଖ୍ୟ ଲକ୍ଷଣ ମୁକ୍ତି, ମୋକ୍ଷ ବା ମୋହର କ୍ଷୟ । ପୂର୍ବରୁ ତୃତୀୟ ସ୍କନ୍ଧର ଶେଷ ଦୁଇ ଅଧ୍ୟାୟରେ କପିଳ ଦେବହୂତି ସମ୍ବାଦରେ କର୍ମଯୋଗୀର ବୈକୁଣ୍ଠ ଲୋକର ମୁକ୍ତି କଥା କୁହାଯାଇଛି । ଯାହାର ପ୍ରକାର ଭେଦ ପିତୃଯାନ ମାର୍ଗ, ଧୂମ୍ରଯାନ ମାର୍ଗ, ଚନ୍ଦ୍ରଯାନ ମାର୍ଗ ପୁଣି ଦେବଯାନ ମାର୍ଗ, ଅର୍ଚ୍ଚି ମାର୍ଗ ସହିତ ବ୍ରହ୍ମଯାନ ମାର୍ଗ ଇତ୍ୟାଦି ବୋଲି ସଂକ୍ଷିପ୍ତ ବର୍ଣ୍ଣନା କରାଯାଇଛି ଯାହା ଶ୍ରୀମତ୍ ଭଗବତ୍ ଗୀତାରେ ମଧ୍ୟ ଆହୁରି ସଂକ୍ଷେପରେ ଆଲୋଚିତ ହୋଇଛି । ଏକ ଶବ୍ଦରେ କହିଲେ ଏହା କ୍ରମ ମୁକ୍ତି ମାର୍ଗ ଯେଉଁଥିରେ ସପ୍ତ ସ୍ୱର୍ଗ ଓ ସପ୍ତ ପାତାଳକୁ

ନେଇ ଗଠିତ ଚତୁର୍ଦ୍ଦଶ ବ୍ରହ୍ମାଣ୍ଡ ମଧ୍ୟରେ ଜୀବର ଯିବା ଆସିବା ଚାଲୁ ରହେ ବ୍ରହ୍ମାଜୀଙ୍କ ଆୟୁଷ ୧୦୮ବର୍ଷ ଶେଷ ହେବା ପର୍ଯ୍ୟନ୍ତ ।

ଏବେ ଏକାଦଶ ସ୍କନ୍ଧରେ ଯେଉଁ ପାଞ୍ଚ ପ୍ରକାର ମୁକ୍ତି କଥା ବର୍ଣ୍ଣିତ ହେବେ ସେମାନେ ପୂର୍ବୋକ୍ତ ମୁକ୍ତିଠାରୁ ବିଲକୁଲ ଅଲଗା । ଏ ପାଞ୍ଚମାର୍ଗ ମଧ୍ୟରୁ ସାଲୋକ୍ୟ, ସାମୀପ୍ୟ, ସାରୁପ୍ୟ ଓ ସାର୍ଷ୍ଟି ମୁକ୍ତି ମହାବୈକୁଣ୍ଠ ମୁକ୍ତି ଭଗବାନ ନାରାୟଣଙ୍କ ଭକ୍ତମାନଙ୍କର । ପଞ୍ଚମ ମୁକ୍ତିଟି ସାଯୁଜ୍ୟ ମୁକ୍ତି ଯାହା ଜ୍ଞାନମାର୍ଗୀ ଭଗବାନ ନାରାୟଣଙ୍କ ଧ୍ୟାନୀ ଉପାସକମାନଙ୍କର । ବୈକୁଣ୍ଠର ଅଧିପତି ଶ୍ରୀହରି ବିଷ୍ଣୁ ଓ ମହାବୈକୁଣ୍ଠର ଅଧିପତି ଶ୍ରୀମନ୍ ନାରାୟଣ ଭକ୍ତମାନଙ୍କର ଏକଥା ସ୍ପଷ୍ଟ ବୁଝିବା ଦରକାର ।

ପ୍ରଥମ ଛଅ ଅଧ୍ୟାୟରେ ସାଲୋକ୍ୟ ମୁକ୍ତିର ଶୁଭାରମ୍ଭ ହୋଇଛି ଯଦୁବଂଶୀ ମାନଙ୍କର ସ୍ୱଧାମ ଗମନ ଲୀଳାକୁ କେନ୍ଦ୍ରକରି । ଦ୍ୱାପର ଯୁଗର ୧୨୫ବର୍ଷର ଶ୍ରୀକୃଷ୍ଣ ଲୀଳାରେ ଚତୁର୍ଦ୍ଦଶ ଭୁବନ ଲୋକର ଅଭିନେତା ଓ ଅଭିନେତ୍ରୀଙ୍କ ସହିତ ମହାବୈକୁଣ୍ଠ ଓ ଗୋଲୋକରୁ ମଧ୍ୟ କିଛି ପରିକର, ପାରିଷଦ ଆସି ଅଭିନୟ କରିଥିଲେ । କ୍ରମେ କ୍ରମେ ସେମାନଙ୍କୁ ନିଜ ନିଜ ଲୋକକୁ ଫେରିବାର ବନ୍ଦୋବସ୍ତ ସ୍ୱୟଂ ଯୋଗମାୟା ସୂଚାରୁ ରୂପେ କରି ସାରିଛନ୍ତି । ଦୁଷ୍ଟ ଦଳନ, ସନ୍ଥ ପାଳନ, ଧର୍ମ ସଂସ୍ଥାପନ ସହିତ ଭକ୍ତଙ୍କୁ ପ୍ରେମ ଦାନ ଲୀଳା ପର୍ବ ୧୦ମ ସ୍କନ୍ଧରେ ପୂର୍ବରୁ ସମାପନ ହୋଇଛି । ଏବେ ୧୧ଶ ସ୍କନ୍ଧ ଆରମ୍ଭରେ ବ୍ରହ୍ମାଜୀ ଦେବୀଦେବତାଙ୍କ ମେଳରେ ଆସି ବିନେ ଠାକୁରଜୀଙ୍କୁ ସ୍ମରଣ କରାଇ ଦେଇଛନ୍ତି ଯେ ଭଗବାନ ଏବେ ଚାହିଁଲେ ସ୍ୱଧାମ ଗୋଲୋକ ଯାଇ ପାରନ୍ତି । ଭଗବାନ ସ୍ମିତ ହାସ୍ୟ କରି ଯଦୁବଂଶୀମାନଙ୍କୁ ପ୍ରଥମେ ନିଜ ନିଜ ଲୋକ ପଠାଇବା ପରେ ପରେ ଗୋଲୋକ ପ୍ରସ୍ଥାନ କରିବା କଥା ଖୋଲି କହିଛନ୍ତି । ଲୀଳା ଆଗକୁ ବଢ଼ି ଚାଲିଛି ।

ବସୁଦେବଜୀ ଭଗବାନଙ୍କ ପିତା ରୂପେ ଅଭିନୟ କରୁଥିଲେ । ବସୁଦେବ ନାରଦ ସମ୍ବାଦକୁ ଆଧାର କରି ୧୧ଶ ସ୍କନ୍ଧ ସାରା ଭକ୍ତି ଓ ମୁକ୍ତି ମଧ୍ୟରେ ତୁଳନାତ୍ମକ ବିଚାର ହୋଇଚି । ନାରଦ ସୁନ୍ଦର ଦୃଷ୍ଟାନ୍ତଟିଏ ଦେଇଛନ୍ତି ନିମି-ନବଯୋଗେଶ୍ୱର ସମ୍ବାଦକୁ ଆଧାର କରି । ସମଗ୍ର ଭାଗବତରେ ବିଷୟ ବସ୍ତୁକୁ ମନ୍ଥନ କରି ୯ପ୍ରଶ୍ନ ନବଯୋଗେଶ୍ୱରଙ୍କ ୯ ଉତ୍ତରରେ ମୁକ୍ତିଠାରୁ ଭକ୍ତିର ଉତ୍କର୍ଷତା ପ୍ରମାଣ କରିଛନ୍ତି । ବସୁଦେବଜୀ ଏ ପର୍ଯ୍ୟନ୍ତ ଭାବୁଥିଲେ ଯେ ଭଗବାନ ନାରାୟଣଙ୍କୁ କଠୋର ତପସ୍ୟାରେ ପ୍ରସନ୍ନ କରି ମୁକ୍ତି ନ ମାଗି ପୁତ୍ର ମାଗିବା ବୋଧେ ତାଙ୍କ ପାଇଁ ଏକ ଅନୁଚିତ ସିଦ୍ଧାନ୍ତ

ଥିଲା । ସେ ସନ୍ଦେହରୁ ବସୁଦେବଜୀ ମୁକ୍ତ ହୋଇ ଏଣିକି ସାଯୁଜ୍ୟ ମୁକ୍ତିକୁ ତୁଚ୍ଛ କରି ବରଂ ସାଲୋକ୍ୟ ମୁକ୍ତିକୁ ଆଦରି ନେବାକୁ ସେ କଟୀବଦ୍ଧ ହୋଇଛନ୍ତି । ଭବିଷ୍ୟତରେ ଚାରିଯୁଗରେ ଭଗବାନଙ୍କର ଯୁଗ ଅନୁରୂପ ଅବତାର ଲୀଳାମାନ ପର୍ଯ୍ୟାୟକ୍ରମେ ଅଭିନୀତ ହେବ । ସେତେବେଳେ ପିତା ବସୁଦେବ ପତ୍ନୀ ଦେବକୀଙ୍କୁ ପୁଣି ସଙ୍ଗରେ ନେଇ ଦିବ୍ୟ ପ୍ରେମ ଆସ୍ୱାଦନର ସୁଯୋଗ ପ୍ରାପ୍ତ ହେବେ ଭାବି ମହା ଆନନ୍ଦରେ ଦେବର୍ଷି ନାରଦଙ୍କୁ ଅଭିନନ୍ଦନ, ବନ୍ଦନ ଓ ନମନ ଆଦି କରି କୃତକୃତ୍ୟ ହୋଇଛନ୍ତି । ଶହେ ଚଉଦ ବର୍ଷ ଭଗବାନଙ୍କ ସହ ଖାଇ ପିଇ ବସି ଉଠି ଯେଉଁ ଶଙ୍କା ଦୂର ହୋଇନଥିଲା କେତେ ସ୍ୱଳ୍ପ ସମୟ ଦେବର୍ଷି ନାରଦଙ୍କ ଭଳି ବୈଷ୍ଣବ ସଙ୍ଗରେ ଆଜି ତାଙ୍କୁ ତାହା ପ୍ରାପ୍ତି ହୋଇଛି ।

ଏହି ପ୍ରକରଣର ଶେଷ ଅଧ୍ୟାୟରେ ଯଦୁ ବଂଶୀମାନେ ଋଷିମାନଙ୍କ ପାଖରେ ଉଦ୍ଦଣ୍ଡତା ପ୍ରକାଶ କରିଛନ୍ତି । ବ୍ରହ୍ମଶାପରେ ଯଦୁବଂଶ ଧ୍ୱଂସ ହେବା ଆଶଙ୍କାରେ ଭୟ କରିଯାଇଛନ୍ତି । ମହାରାଜ ଉଗ୍ରସେନ ଏ କଥା ଜାଣିପାରି ସେ ମୂଷଳକୁ ପଥରରେ ଘଷାଇ ଚୂର୍ଣ୍ଣ କରି ସମୁଦ୍ରରେ ଭସାଇ ଦେଲେ । ସେଇ ଲୌହ ମୂଷଳ ଚୂର୍ଣ୍ଣରୁ ଏବେ ଏରକା ବଣ ଉତ୍ପନ୍ନ ହୋଇଛି । ଠାକୁରଜୀଙ୍କ କଥାମାନି ଯୁଗପ୍ରଳୟ ଉତ୍ପାତ ସଂକେତ ମାନ ଦର୍ଶନ କରି ଯଦୁବଂଶୀମାନେ ପ୍ରଭାସ ଗମନ କରିଛନ୍ତି । ସେ ପବିତ୍ର ତୀର୍ଥରେ ସ୍ନାନ, ଆଚମନ ଇତ୍ୟାଦି କରି ଦାନ ପୁଣ୍ୟ କରି ପ୍ରାୟଶ୍ଚିତ କରିବେ । ରିଷ୍ଟ ଖଣ୍ଡନ କରିବେ । ଯୋଗମାୟାଙ୍କ ଯୋଜନା ଅନୁସାରେ ସକଳ ଯଦୁବଂଶୀ ନଶ୍ୱର ଦେହ ତ୍ୟାଗ କରି ସାଲୋକ୍ୟ ମୁକ୍ତି ପ୍ରାପ୍ତ ହୋଇଛନ୍ତି ।

ସର୍ବଶେଷରେ ଶ୍ରୀକୃଷ୍ଣ ବଳରାମ ମଧ୍ୟ ନିଜ ନିଜ ଲୋକ ଗମନ କରିଛନ୍ତି ନିଜ ନିଜ ପାରିଷଦ ବର୍ଗ ଓ ଲୀଳା ପରିକର ମାନଙ୍କୁ ସଙ୍ଗରେ ଧରି । ପଞ୍ଚ ମୁକ୍ତି ମଧ୍ୟରୁ ପ୍ରଥମ ମୁକ୍ତିର ସାଙ୍ଗୋପାଙ୍ଗୋ ବର୍ଣ୍ଣନା କରି ଭକ୍ତି ମାହାତ୍ମ୍ୟର ଉତ୍କର୍ଷତା ପ୍ରମାଣିତ କରି ସାଲୋକ୍ୟ ପ୍ରକରଣ ବିଶ୍ରାମ ନେଇଛନ୍ତି । ଏଣିକି ପରବର୍ତ୍ତୀ ୬ ଅଧ୍ୟାୟରେ ସାମୀପ୍ୟ ମୁକ୍ତି ପ୍ରକରଣ ବର୍ଣ୍ଣିତ ହେବ ।

## ପ୍ରକରଣ-୩।୮ ସାମୀପ୍ୟ ମୁକ୍ତି (ଅଧ୍ୟାୟ ୭ମ-୧୨ଶ)

### ଅଥ ୭ମ ଅଧ୍ୟାୟଃ

### ଉଦ୍ଧବ-ଶ୍ରୀକୃଷ୍ଣ ସମ୍ବାଦ(ଯଦୁରାଜା-ଦତ୍ତାତ୍ରେୟ ଓ ୮ ଗୁରୁଙ୍କ କଥା)

ପ୍ରଶ୍ନ-୮୨ : ଶହେ ପଚିଶ ବର୍ଷର ଶ୍ରୀକୃଷ୍ଣ ଲୀଳାର ଅନ୍ତିମ ପର୍ଯ୍ୟାୟ ଏବେ ଆରମ୍ଭ ହୋଇଛି । ତାଙ୍କର ଜ୍ଞାନୀ ଭକ୍ତ ପ୍ରିୟ ଉଦ୍ଧବଜୀ ଭଗବାନଙ୍କୁ ଏକାନ୍ତ ସ୍ଥାନକୁ ଡ଼ାକି ନେଇ ତାଙ୍କୁ ପ୍ରଶ୍ନ କରିଛନ୍ତି ଯେ ଭଗବାନଙ୍କର ସ୍ୱଧାମ ବାହୁଡ଼ିଯିବା ଯୋଜନା ନିଶ୍ଚୟ ଅପରିବର୍ତ୍ତନୀୟ । ସେତେବେଳେ ଶ୍ରୀକୃଷ୍ଣ କି ଉତ୍ତର ଦେଲେ ସଖା ଉଦ୍ଧବଙ୍କୁ ?

ଶ୍ରୀ ଭଗବାନ ଉବାଚ

**ଯତ୍ ଆଥ ମାଂ ମହାଭାଗ ତତ୍ ଚିକୀର୍ଷିତଂ ଏବ ମେ ।**
**ବ୍ରହ୍ମା ଭବୋ ଲୋକପାଳାଃ ସ୍ୱଃ ବାସଂ ମେ ଅଭିକାଙ୍କ୍ଷିଣଃ ॥୧॥**

ଉ. ଠାକୁରଜୀ ଉତ୍ତରରେ କହିଲେ, ''ହେ ଭାଗ୍ୟଶାଳୀ ଉଦ୍ଧବଜୀ (ମହାଭାଗ), ତୁମେ ଯାହା କହିଲ (ଯତ୍ ଆଥ), ତାହା ହିଁ ମୋର ଇଚ୍ଛା (ଚିକୀର୍ଷିତଂ) ସୃଷ୍ଟିକର୍ତ୍ତା ବ୍ରହ୍ମା, ସଂହାରକର୍ତ୍ତା ଶିବ (ଭବୋ), ଇନ୍ଦ୍ର ଆଦି ଦିଗପାଳମାନେ ଚାହାନ୍ତି (ଅଭିକାଂଙ୍କ୍ଷିଣଃ) ଯେ କୃଷ୍ଣ ଲୀଳାର ଲକ୍ଷ୍ୟ ପୂର୍ତ୍ତି ହୋଇସାରିଛି । ମୁଁ ଚାହିଁଲେ ଗୋଲୋକ (ସ୍ୱଃ ବାସଂ) ଯାଇପାରେ ।''

ପ୍ରଶ୍ନ-୮୩: ସେତେବେଳକୁ କଳିଯୁଗର ଆଗମନର ସମୟ ହୋଇଯାଇଥାଏ । ସ୍ୱୟଂ ଭଗବାନ ପୃଥିବୀରେ ଥିବାରୁ ସେ ପ୍ରବେଶ କରିପାରୁ ନଥାଏ । ଯେଉଁଦିନ ଭଗବାନ ଗୋଲୋକ ବାହୁଡ଼ିଯିବେ ସେହିଦିନ କଳିଯୁଗ ପୃଥିବୀ ଲୋକରେ ପ୍ରଭାବ ବିସ୍ତାର କରିବ । ସପ୍ତମ ଦିନ କେବଳ ଭଗବାନଙ୍କ ବାସଭବନ ବର୍ତ୍ତମାନର ଜଗତ୍ ମନ୍ଦିର ବା ଦ୍ୱାରକାଧୀଶ ମନ୍ଦିର ବ୍ୟତୀତ ସମଗ୍ର ଦ୍ୱାରକାପୁରୀକୁ କଳିଯୁଗ ଜଳମଗ୍ନ କରାଇଦେବ । ଲୋକମାନେ କଳି ପ୍ରଭାବରେ ପାପ କର୍ମରେ ବୁଡ଼ିବେ । ଏହା ଯୁଗର ପ୍ରଭାବ । ଭଗବାନ ଉପଦେଶ ଦେଇ କହିଲେ, ''ଉଦ୍ଧବ, ତୁମେ ସ୍ଥୁଳ ଦେହରେ ଆଉ ଏଣିକି ରହିବ ନାହିଁ । ମୋ ସହିତ ତୁମକୁ ଯିବା ମଧ ଦରକାର ପଡ଼ିବ ନାହିଁ । ତୁମର କିଛି ତତ୍ତ୍ୱ ଜ୍ଞାନର ଅଭାବ ଏବେ ବି ଅଛି । ଭକ୍ତି ପସରାରେ ଦ୍ୱୈତ ସିନା ଥାଏ ହୃଦୟରେ, କିନ୍ତୁ ଅଦ୍ୱୈତ ଭାବନା ମଧ ମନରେ ଦରକାର ପଡ଼େ ଯାହାର

ଅନ୍ୟନାମ ତତ୍ତ୍ୱଜ୍ଞାନ ।'' ଉଦ୍ଧବଙ୍କୁ ଭଗବାନଙ୍କ ସୃଷ୍ଟି ନ ବଦଳାଇ ବରଂ ନିଜର ଦୃଷ୍ଟି ବଦଳାଇବା ଉଦ୍ଦେଶ୍ୟରେ କ'ଣ କହିଲେ ଭଗବାନ ?

**ତସ୍ମାତ୍ ଯୁକ୍ତ-ଇନ୍ଦ୍ରିୟ ଗ୍ରାମୋ ଯୁକ୍ତ ଚିତ୍ତ ଇଦଂ ଜଗତ୍ ।**
**ଆତ୍ମନିଽଈକ୍ଷସ୍ୱ ବିତତଂ ଆତ୍ମାନଂ ମୟି-ଅଧୀଶ୍ୱରେ ॥୯॥**

ଉ. ଠାକୁରଙ୍କୁ ବୁଦ୍ଧି ଅର୍ପଣ କରିବା କର୍ମଯୋଗ । ମନ ଅର୍ପଣ କରିବା ଧ୍ୟାନ ଯୋଗ । ମନ ବୁଦ୍ଧି ଉଭୟଙ୍କୁ ବା ଚିତ୍ତକୁ ଅର୍ପଣ କରିବା ଜ୍ଞାନ ଯୋଗ । ଅହଂକାରକୁ ଅର୍ପଣ କରିବା ଭକ୍ତିଯୋଗ ଅଟେ । ତତ୍ତ୍ୱଜ୍ଞାନରେ ସାଧକର ଚିତ୍ତ ଭଗବତ ଅର୍ପିତ ହେଲେ ଆଉ ଜଗତ ଦିଶେନା । ତେଣିକି ସମଗ୍ର ସଂସାରରେ ଜଗଦୀଶ୍ୱର ଜଗନ୍ନାଥ ଦିଶନ୍ତି । ଭଗବାନ କହିଲେ, ''ହେ ପ୍ରିୟ ଉଦ୍ଧବ, ଏଭଳି ଦୃଷ୍ଟି ଲାଭ କଲେ, ତୁମ ମନ ମଧ୍ୟରେ (ଆତ୍ମନି) ତୁମେ ଦେଖିବ ଯେ କେବଳ ମୁଁ ଏ ସଂସାରରରେ ଜଡ଼,ଚେତନ, ସ୍ଥାବର ଓ ଜଙ୍ଗମ ରୂପରେ ବିଦ୍ୟମାନ । ଅନ୍ୟ ଶବ୍ଦରେ ତୁମ ମଧ୍ୟରେ ମୁଁ ଅଛି ପୁଣି ମୋ ଭିତରେ ତୁମେ ମଧ୍ୟ ଅଛ ।'' ସଂକ୍ଷେପରେ ଏହା ହିଁ ତତ୍ତ୍ୱଜ୍ଞାନ ଅଟେ ।

ପ୍ରଶ୍ନ-୮୪: ବେଦକୁ ବା ଶ୍ରୁତିକୁ ବିଧି ଶାସ୍ତ୍ର କୁହାଯାଏ । ରାମାୟଣ, ମହାଭାରତ, ଅଷ୍ଟାଦଶ ପୁରାଣ ଆଦିଙ୍କୁ ନିଷେଧ ଶାସ୍ତ୍ର କୁହାଯାଏ । ଆତ୍ମାରାମ ଜ୍ଞାନୀ କିମ୍ବା ଆପ୍ତକାମ ଭକ୍ତ ପାଇଁ ଉଭୟ ଶାସ୍ତ୍ର ପଠନ ବାଧ୍ୟତାମୂଳକ ନୁହନ୍ତି । କାରଣ ସେମାନେ କେବେ ନିଷିଦ୍ଧ କର୍ମ କରି ନଥାନ୍ତି ଏବଂ ବିଧି କର୍ମ ତ୍ୟାଗ କରି ନଥାନ୍ତି । ସେମାନଙ୍କ ପ୍ରଗାଢ଼ ଈଶ୍ୱର ବିଶ୍ୱାସ ଓ ଅବିଚଳ ଗୁରୁ ଭକ୍ତି ସେମାନଙ୍କୁ ସର୍ବଦା କୃଷ୍ଣ ପ୍ରେମରେ ବାନ୍ଧି ରଖିଥାଆନ୍ତି ଯାହା ଫଳରେ ସେମାନଙ୍କ ଭୌତିକ ଆସକ୍ତି ଜାଲରେ ପତନ ଆଦୌ ସମ୍ଭବ ହୁଏ ନାହିଁ । ଏକଥା ଶୁଣିବା ପରେ ମହାଜ୍ଞାନୀ ଉଦ୍ଧବ ନିଜ କଲ୍ୟାଣ ନିମିତ୍ତ (ନିଃଶ୍ରେୟସାୟ) ଭଗବାନଙ୍କଠାରୁ ଆଉ କେଉଁ ତତ୍ତ୍ୱଜ୍ଞାନର ଆକାର ପ୍ରକାର ଜାଣିବାକୁ ଚାହିଁଛନ୍ତି ?

ଉଦ୍ଧବ ଉବାଚ

**ଯୋଗ-ଈଶ ଯୋଗ ବିନ୍ୟାସ ଯୋଗ-ଆତ୍ମନ୍ ଯୋଗ ସମ୍ଭବ ।**
**ନିଃଶ୍ରେୟସାୟ ମେ ପ୍ରୋକ୍ତଃ ତ୍ୟାଗଃ ସନ୍ନ୍ୟାସ ଲକ୍ଷଣଃ ॥୧୪॥**

ଉ. ଯୋଗଫଳ ଦାତା (ଯୋଗେଶ), ଅଯୋଗ୍ୟ ଏବଂ ଅପଦାର୍ଥଙ୍କୁ ମଧ୍ୟ କୃପା କରି ଯୋଗଫଳ ଦେବା ଅଧିକାରୀ (ଯୋଗବିନ୍ୟାସ), ଯୋଗ ଦ୍ୱାରା ପ୍ରାପ୍ତବ୍ୟ (ଯୋଗାତ୍ମନ୍) ଓ ସକଳ ଯୋଗ ଶକ୍ତିର ଉତ୍ସ ବା ଉଦ୍‌ଗମ ସ୍ଥଳ (ଯୋଗ ସମ୍ଭବ) ବୋଲି ଭଗବାନଙ୍କୁ ସମ୍ବୋଧନ କରି କର୍ମଯୋଗର ସାର ତ୍ୟାଗ ଓ ଜ୍ଞାନ ଯୋଗର

ସାର ସନ୍ନ୍ୟାସର ବିସ୍ତୃତ ବ୍ୟାଖ୍ୟା ବୁଝିବାକୁ ଇଚ୍ଛା ପ୍ରକଟ କରିଛନ୍ତି ।

ପ୍ରଶ୍ନ-୮୫: ଶହେ ପଚିଶ ବର୍ଷର ସଂସାର ଜଞ୍ଜାଳରେ ପ୍ରାପ୍ତ ତିକ୍ତ ଅନୁଭୂତିରୁ ଉଦ୍ଧବଜୀ ଜାଣି ପାରିଛନ୍ତି ଯେ ମନର କାମନା ବାସନା ତ୍ୟାଗ କରିବା କେତେ ଦୁଷ୍କର । ଇନ୍ଦ୍ରିୟମାନଙ୍କ ପ୍ରିୟ ଭୌତିକ ସୁଖ ଭୋଗ ଲାଳସାକୁ ଦମନ କରିବା ଅତୀବ କଠିନ । ମନୁଷ୍ୟ, ଅସୁର, ଦେବତା, ଦଶ ଦିଗପାଳ ଓ ବ୍ରହ୍ମା ଆଦି ମଧ ଭୋଗ-ସଂଗ୍ରହ ଆସକ୍ତିକୁ ତ୍ୟାଗ କରିବାରେ ଅସମର୍ଥ ବୋଲି ଉଦ୍ଧବ ପ୍ରକାଶ କରନ୍ତେ ଭଗବାନ ଏହାର କି ଉତ୍ତର ଦେଲେ ?

ଶ୍ରୀ ଭଗବାନ ଉବାଚ

**ପ୍ରାୟେଣ ମନୁଜା ଲୋକେ ଲୋକ ତତ୍ତ୍ୱ ବିଚକ୍ଷଣାଃ ।**
**ସମୁଦ୍ଧରନ୍ତି ହି-ଆତ୍ମାନଂ ଆତ୍ମନା-ଏବ-ଅଶୁଭ-ଆଶୟାତ୍॥୧୯॥**

ଉ. ସାଧାରଣତଃ (ପ୍ରାୟତଃ) ଭୌତିକ ସଂସାର ବିଷୟରେ ବିଶେଷଜ୍ଞ ପଣ୍ଡିତ ମାନେ (ବିଚକ୍ଷଣାଃ) ସଂସାରର ବା ସ୍ୱର୍ଗର ନଶ୍ୱର ବା କ୍ଷଣିକ ସୁଖରେ ବିରକ୍ତ ହୋଇ ପାପ-ପୁଣ୍ୟ ଉପରକୁ ଉଠିବାକୁ ଚେଷ୍ଟା କରନ୍ତି । ଅଦୃଶ୍ୟ ଆତ୍ମାଙ୍କର ଜ୍ଞାନ-ବିଜ୍ଞାନ ତତ୍ତ୍ୱ ଜାଣିବାକୁ ପ୍ରତ୍ୟକ୍ଷ, ଅନୁମାନ (ତର୍କ ଆଧାରିତ) ପ୍ରମାଣିତ ଆଧାରକୁ ତ୍ୟାଗ କରନ୍ତି । ବୈଦିକ ପନ୍ଥାରେ ଚାଲୁଥିବା ଶ୍ରୋତ୍ରୀୟ ବ୍ରହ୍ମନିଷ୍ଠ ଗୁରୁଙ୍କୁ ଖୋଜନ୍ତି । ଭଗବାନଙ୍କ କୃପାରୁ ସେମାନେ ଗୁରୁ ପ୍ରାପ୍ତ ହୁଅନ୍ତି ମଧ ।

ପ୍ରଶ୍ନ-୮୬: ଏକପାଦ, ଦ୍ୱିପାଦ, ତ୍ରିପାଦ, ଚତୁଷ୍ପାଦ, ବହୁପାଦ ବା ଅପାଦ ପ୍ରାଣୀ ମଧରେ କେବଳ ଦ୍ୱିପାଦ ବିଶିଷ୍ଟ ପ୍ରାଣୀ ମନୁଷ୍ୟ ନିଜ ଦଶ ଇନ୍ଦ୍ରିୟ ମନ ବୁଦ୍ଧିକୁ ସଦୁପଯୋଗ କରିପାରେ । ତତ୍ତ୍ୱଜ୍ଞାନୀ ଗୁରୁ ପ୍ରାପ୍ତିର କେଉଁ ଐତିହାସିକ ଦୃଷ୍ଟାନ୍ତକୁ ଭଗବାନ ଉଦ୍ଧବଙ୍କ ସମ୍ମୁଖରେ ଉପସ୍ଥାନ କଲେ ?

**ଅବଧୂତଂ ଦ୍ୱିଜଂ କଶ୍ଚିତ୍ ଚରନ୍ତଂ ଅକୁତୋ ଭୟମ୍ ।**
**କବିଂ ନିରୀକ୍ଷ ତରୁଣଂ ଯଦୁଃ ପପ୍ରଚ୍ଛ ଧର୍ମବିତ୍ ॥୨୫॥**

ଉ. ଚନ୍ଦ୍ରବଂଶୀ ରାଜା ନହୂଷଙ୍କ ପୁତ୍ର ଯଯାତି । ଯଯାତିଙ୍କ ପାଞ୍ଚ ପୁତ୍ର ମଧରୁ ଜଣକର ନାମ ଯଦୁ । ସେ ଯଯାତିଙ୍କ ଅନ୍ତେ ରାଜା ହୋଇଥିଲେ ସମଗ୍ର ଭାରତବର୍ଷର । ସେ ଜଣେ ମହାନ ଧର୍ମଜ୍ଞ ସମ୍ରାଟ ଭାବରେ ବିଖ୍ୟାତ ହୋଇଥିଲେ । ଦିନେ ତାଙ୍କର ଆଧାତ୍ମିକ ସୌଭାଗ୍ୟର ଉଦୟ ହେଲା । ସେ ସମ୍ମୁଖରେ ଦେଖିଲେ ଜଣେ ଅବଧୂତ ବ୍ରାହ୍ମଣ । ବୟସରେ ଯୁବକ । ସେ ବ୍ରହ୍ମବିତ୍ ବା ବେଦ ବେତ୍ତା (କବି) ବୋଲି ସଂସାରର ଦୁଃଖ ଜଞ୍ଜାଳ ଭୟରେ ମଧ ବେପରବାୟ ହୋଇ ଦିବ୍ୟ ଆନନ୍ଦରେ ତାଙ୍କ ରାଜ୍ୟରେ ବିଚରଣ କରୁଛନ୍ତି । ତାଙ୍କ ମନରେ ଦୁଃଖ କଷ୍ଟର ଲବଲେଶ ମାତ୍ର ନାହିଁ ।

ପ୍ରଶ୍ନ-୮୭: ଯଦୁରାଜା କୌତୁହଳରେ ତାଙ୍କ ପାଖକୁ ଯାଇଛନ୍ତି । ତାଙ୍କୁ ଭୋଗ ସଂଗ୍ରହ ସୁଖ ଲାଳସାରେ ବିରକ୍ତ ହୋଇ ମଧ୍ୟ ଅଫୁରନ୍ତ ଆନନ୍ଦରେ ଜୀବନ କାଟୁଥିବା ରହସ୍ୟ ବିଷୟରେ ବିନମ୍ର ଜିଜ୍ଞାସା କରିଛନ୍ତି । ଦତ୍ତାତ୍ରେୟ ଭଗବାନ ପ୍ରଶ୍ନକର୍ତ୍ତାଙ୍କ ଅନ୍ତରର ଶ୍ରଦ୍ଧା ଓ ସମର୍ପଣ ଭାବ ବୁଝିପାରି ଅତ୍ୟନ୍ତ ଆନନ୍ଦିତ ହୋଇ ରାଜାଙ୍କୁ ନିଜର ସଂସାର ବନ୍ଧନରୁ ମୁକ୍ତି ଓ ଦିବ୍ୟ ଆନନ୍ଦ ପ୍ରାପ୍ତିର କାରଣ କ'ଣ ବୋଲି ଉତ୍ତର ଦେଇଛନ୍ତି ?

ବ୍ରାହ୍ମଣ ଉବାଚ

**ପୃଥିବୀ ବାୟୁଃ ଆକାଶଂ ଆପୋଽଗ୍ନିଃ ଚନ୍ଦ୍ରମା ରବିଃ ।**
**କପୋତୋଽଜଗରଃ ସିନ୍ଧୁଃ ପତଙ୍ଗୋ ମଧୁକୃତ୍ ଗଜଃ ॥୩୩॥**

ଉ. ବ୍ରହ୍ମଜ୍ଞାନୀ ଦତ୍ତାତ୍ରେୟ କହିଛନ୍ତି, "ମୁଁ ଚବିଶ ଜଣ ଗୁରୁ କରିଛି । ସେମାନଙ୍କ ମଧ୍ୟରୁ ପୃଥିବୀ, ବାୟୁ, ଆକାଶ, ଜଳ, ଅଗ୍ନି, ଚନ୍ଦ୍ର, ସୂର୍ଯ୍ୟ, କପୋତ, ଅଜଗର, ସମୁଦ୍ର, ପତଙ୍ଗ, ମହୁମାଛି ଓ ହାତୀ ତେରଜଣ । ଏମାନଙ୍କଠାରୁ ତତ୍ତ୍ୱଜ୍ଞାନ ପ୍ରାପ୍ତ ହୋଇଛି । ଏମାନେ ସମସ୍ତେ ମୋର ଗୁରୁ । ପୃଥିବୀ ଠାରୁ ପରୋପକାର, ପୃଥିବୀର ଅନ୍ୟ ରୂପ ପର୍ବତ ଓ ବୃକ୍ଷଙ୍କ ଠାରୁ ସହିଷ୍ଣୁତା ଶିକ୍ଷା କରିଛି । ବାୟୁ ଠାରୁ ଗନ୍ଧର ଅସଙ୍ଗତା, ଆକାଶ ଠାରୁ ନିର୍ଲିପ୍ତତା ଓ ଅଗ୍ନିଙ୍କ ଠାରୁ ସର୍ବଭକ୍ଷ ହୋଇ ମଧ୍ୟ ପବିତ୍ର ରହିପାରିବା କୌଶଳ ଶିକ୍ଷା କରିଛି । ଚନ୍ଦ୍ରଙ୍କ ଠାରୁ ଚନ୍ଦ୍ରକଳାର କ୍ଷୟ ବୃଦ୍ଧିରେ ଚନ୍ଦ୍ରଙ୍କର କ୍ଷୟବୃଦ୍ଧି ନ ହେବା ଦେଖି ଜୀବର ଦେହର ପରିବର୍ତ୍ତନରେ ଆତ୍ମା ପରିବର୍ତ୍ତନ ରହିତ ହେବା ଶିକ୍ଷା କଲି । ସୂର୍ଯ୍ୟଙ୍କ ଠାରୁ ନିଷ୍କାମ କର୍ମ ଯୋଗର ବିଶେଷ ଶିକ୍ଷା ପ୍ରାପ୍ତ ହୋଇଛି ।"

ପ୍ରଶ୍ନ-୮୮: ପ୍ରଥମରୁ ସାତଜଣ ଗୁରୁଙ୍କ କଥା ଦତ୍ତାତ୍ରେୟ ସଂକ୍ଷେପରେ କହିଲେ । ଅଷ୍ଟମ ଗୁରୁ କପୋତ କଥାକୁ ବିସ୍ତାରିତ ଭାବରେ କହିବାର କାରଣ କଅଣ ହୋଇପାରେ ?

**ନ-ଅତିସ୍ନେହଃ ପ୍ରସଙ୍ଗୋ ବା କର୍ତ୍ତବ୍ୟଃ କ୍ୱ-ଅପି କେନଚିତ୍ ।**
**କୁର୍ବନ୍ ବିନ୍ଦେତ ସନ୍ତାପଂ କପୋତ ଇବ ଦୀନ ଧୀଃ ॥୫୨॥**

ଉ. ଦତ୍ତାତ୍ରେୟଜୀ କହିଲେ, "ମନୁଷ୍ୟ ଏକ ସାମାଜିକ ପ୍ରାଣୀ । ନିଜ ବ୍ୟତୀତ ପରିବାର, ସମାଜ, ଦେଶ ବିଶ୍ୱପ୍ରତି ମଧ୍ୟ ତାର କିଛି କର୍ତ୍ତବ୍ୟ ଅଛି । ନିଜକୁ ଦେହ ଭାବନା କରି ଦେହକୁ ମୁଁ ଭାବି ବା ମୋର ଭାବି ସଂସାର ଆସକ୍ତି ରୂପକ ମାୟା ଜାଲରେ ପଡ଼େ । ଦେହ, ଗୃହ, ପରିବାର ଓ ସଂସାରକୁ ମୋର ଭାବି ଆସକ୍ତ ହୋଇପଡ଼େ । ଏହି ଆସକ୍ତି ପୁଣି ସୀମା ଡ଼େଇଁଲେ (ଅତି ସ୍ନେହଃ) ବିଚରାର ନିଜର

ବୁଦ୍ଧି ହଜିଯାଏ (ଦୀନ ଧା୧) । ବିବେକ ଥାଇ ମଧ୍ୟ କିଛି କାମରେ ଆସେନା (ଦୀନ ଧା୪) ।

ମନୁଷ୍ୟର ଅତିରିକ୍ତ ସଂସାର ଆସକ୍ତିର ଘୋର ଦୁଷ୍ପରିଣାମକୁ ବୁଝାଇ ଦେବା ପାଇଁ ସେ ଏକ ସୁନ୍ଦର ଦୃଷ୍ଟାନ୍ତ ବାଢ଼ିଛନ୍ତି । ଏକ ବୃକ୍ଷରେ କପୋତ କପୋତୀ ଦମ୍ପତି ନୀଡ଼ ରଚନା କରି ରହିଥାଆନ୍ତି । କେତେ ବର୍ଷ ବିତିଗଲା । ଆଗ୍ରହରେ ପରସ୍ପରର ଇଛା ପୂରଣ କରୁଥିଲେ ଦୁହେଁ । ପ୍ରଗାଢ଼ ସ୍ନେହ ବନ୍ଧନ ଗଢ଼ି ଉଠିଲା ଉଭୟଙ୍କ ମନରେ ଦେହ ଆସକ୍ତିକୁ କେନ୍ଦ୍ର କରି । ଏକତ୍ର ଶଯ୍ୟା, ଆସନ, ବୁଲଚାଲ, ଭୋଜନ, ଖେଳ ଇତ୍ୟାଦିରେ ପରସ୍ପରର ମନ ସଂପୂର୍ଣ୍ଣ ବିମୋହିତ । କପୋତୀ ପ୍ରଥମ ଗର୍ଭ ଧାରଣ କଲା । ପ୍ରସବ ସମୟ ଆସନ୍ତେ ଅଣ୍ଡା ଦେଲା ନୀଡ଼ରେ । ଅଣ୍ଡା ଫୁଟି କେତୋଟି ଛୁଆ ହେଲେ । ଦୁହେଁ ମିଶି ଆନନ୍ଦରେ ଛୁଆମାନଙ୍କର ପାଳନ ପୋଷଣ କରୁଥାଆନ୍ତି । ସେମାନଙ୍କ ସ୍ପର୍ଶ, ଆଲିଙ୍ଗନ, ଚେଁ ଚେଁ ଶବ୍ଦ ଟୁକୁ ଟୁକୁ ଚାଲି ଆଦି ଦେଖି ବିଷ୍ଣୁମାୟାରେ ସଂପୂର୍ଣ୍ଣ ଛନ୍ଦି ହୋଇଗଲେ କପୋତ ଓ କପୋତୀ ।

ପ୍ରଶ୍ନ-୮୯ : ଦିନେ କପୋତ କପୋତୀ ଦୁହେଁ ଛୁଆମାନଙ୍କ ପାଇଁ ଆହାର ସଂଗ୍ରହ ପାଇଁ ଦୂରକୁ ଯାଇଥାଆନ୍ତି । ସନ୍ତାନମାନେ ବସାରେ ଥିଲେ । ସେ ଦିନ ଶିକାରୀ ଜଣେ ଆସି ଜାଲ ବସାଇ ତଣ୍ଡୁଳ ବୁଣି ଲୁଚି ଲୁଚି ଛକି ବସିଲା । ଅଜ୍ଞାନ ଶିଶୁ ଶାବକ ଦାନା ଲୋଭରେ ତଳକୁ ଆସିଲେ । ଜାଲରେ ଛନ୍ଦି ହୋଇ ବନ୍ଧନରେ ପଡ଼ିଗଲେ । କପୋତୀ ନୀଡ଼କୁ ଫେରି ଦେଖିଲା ପିଲାମାନଙ୍କ ଦୁରବସ୍ଥା । ବଞ୍ଚିବାର ଆଶା ସୁଦୂର ପରାହତ । ବିଚାରୀ ସନ୍ତାନ ମୋହରେ ପଡ଼ି ନିଜ ଜୀବନକୁ ଧିକ୍କାର କଲା । ନିଜେ ଜାଣି ଜାଣି ଜାଲରେ ପଡ଼ିଲା । ପରେ ପରେ କପୋତ ମଧ୍ୟ ଆସି ଦେଖିଲା ପ୍ରିୟ ସନ୍ତାନମାନଙ୍କ ସହିତ ଗୃହିଣୀ ମଧ୍ୟ ମରଣମୁଖରେ ପଡ଼ିଛି । ସେ ମଧ୍ୟ ଭାବିଲା ତାର ସର୍ବସ୍ୱ ଯାଉଛି । ଆଉ ଜୀବନ ରଖି କି ଲାଭ ? ଶେଷରେ ଦୁଃଖରେ ଅତ୍ୟନ୍ତ ପରିବାର ଆସକ୍ତି ହେତୁ ସେ ମଧ୍ୟ ଜାଣି ଜାଣି ଜାଲରେ ପଡ଼ିଗଲା । ଶିକାରୀ ମହା ଆନନ୍ଦରେ ସମସ୍ତଙ୍କୁ ବାନ୍ଧି ଗୃହକୁ ଚାଲିଲା । ସଂସାରକୁ ଏକ ମହାନ୍ ଶିକ୍ଷା ମିଳିଲା ପତ୍ନୀ, ସନ୍ତାନ, ପରିବାର ପ୍ରତି ଅତି ସ୍ନେହ ମଧ୍ୟ ଏକ ମହାନ ବିପଦର କାରଣ ।

ଦୃଷ୍ଟାନ୍ତର ମର୍ମ ମନୁଷ୍ୟ ମଧ୍ୟ ସନ୍ତାନ ପତ୍ନୀ ଇତ୍ୟାଦିଙ୍କୁ ସ୍ନେହ କରିବା ଉଚିତ କିନ୍ତୁ ତାର ନିଜର ଲକ୍ଷ୍ୟ ଯେ ଭଗବତ୍ ପ୍ରାପ୍ତି ଏକଥା ଭୁଲିଯିବା ଅନୁଚିତ ବୋଲି କି ଶବ୍ଦରେ ଦତ୍ତାତ୍ରେୟ ଯଦୁରାଜାଙ୍କୁ ସତ୍ ଉପଦେଶ ଦେଲେ ?

**ଯଃ ପ୍ରାପ୍ୟ ମାନୁଷଂ ଲୋକଂ ମୁକ୍ତି ଦ୍ୱାରଂ ଅପାବୃତ୍ତମ୍ ।**
**ଗୃହେଷୁ ଖଗବତ୍ ସକ୍ତଃ ତଂ ଆରୂଢ଼ ଚ୍ୟୁତଂ ବିଦୁଃ ।।୭୪।।**

ଉ. ମନୁଷ୍ୟ ଏ କଥା ଆଦୌ ଭୁଲିବା କଥା ନୁହେଁ ଯେ ବହୁ ଜନ୍ମର କଠିନ ସାଧନା ପରେ ଭଗବାନ କୃପା କରି ଜୀବକୁ ମନୁଷ୍ୟ ଶରୀର ଦେଇଥାନ୍ତି ସଂସାର ବନ୍ଧନରୁ ମୁକ୍ତି ଲାଗି । ପ୍ରତ୍ୟେକ ଜୀବ ପାଇଁ ମୁକ୍ତି ନିମିତ୍ତ ମନୁଷ୍ୟ ଜନ୍ମ ଏକ ଖୋଲା ଦ୍ୱାର ଅଟେ (ମୁକ୍ତି ଦ୍ୱାରଂ ଅପାବୃତ୍ତଂ) । କପୋତ ପକ୍ଷୀ ସଦୃଶ ସଂସାର ଆସକ୍ତି ହେତୁ ଦେହକୁ ମରଣ ମୁହଁକୁ ଠେଲି ଦେବା କେଉଁ ବୁଦ୍ଧିମାନର କାର୍ଯ୍ୟ ? ମନୁଷ୍ୟର ବିବେକ କି କାମ ଦେଲା ଏଠାରେ ? ସୁତରାଂ ତାର ଜନ୍ମ ମଧ ନିନ୍ଦନୀୟ ପ୍ରମାଣିତ ହେଲା (ଆରୂଢ଼ ଚ୍ୟୁତଂ) । ସେ ଉପରକୁ ଉଠିଥିଲା କେବଳ ପଡ଼ିବା ଲାଗି ସିନା । ମନୁଷ୍ୟ ଜାତି ଲାଗି ଏହା ଏକ ଅମୂଲ୍ୟ ତତ୍ତ୍ୱଜ୍ଞାନ ଯାହାକୁ ଉଦ୍ଧବଜୀ ମନଧ୍ୟାନ ଦେଇ ଶ୍ରବଣ କରୁଥିଲେ ।

## ଅଥ ୮ମ ଅଧ୍ୟାୟଃ

### (ଅଜଗରଠାରୁ ପିଙ୍ଗଳା ପର୍ଯ୍ୟନ୍ତ ନଅଗୁରୁଙ୍କ କଥା)

ପ୍ରଶ୍ନ-୯୦: ତତ୍ତ୍ୱଜ୍ଞାନୀ ଦତ୍ତାତ୍ରେୟ କହିଲେ ଯେ ଅଷ୍ଟମ ଗୁରୁ ଅଜଗର ସର୍ପଠାରୁ ସେ ଶିକ୍ଷା କରିଛନ୍ତି ସଂସାରରେ ସୁଖ ଖୋଜିବୁଲିବା ନିପଟ ମୂର୍ଖତାର ନିଦର୍ଶନ । ପ୍ରାରବ୍ଧର ସୁଖ ଦୁଃଖ ଉଭୟ ମଧ ଜୀବର ବହୁତ କାମରେ ଆସେ । ସୁତରାଂ ସେ କେତେବେଳେ ସ୍ୱାଦିଷ୍ଟ, କେତେବେଳେ ସ୍ୱାଦହୀନ ବହୁତ, ଅଳ୍ପ ସ୍ୱୟଂ ପ୍ରାପ୍ତ ଭୋଜନରେ ସନ୍ତୁଷ୍ଟ ରହନ୍ତି । ନବମ ଗୁରୁ ରୂପରେ ଅଜଗର ସର୍ପଗୁରୁଙ୍କ ମାନ୍ୟତା ଦେଇ ସେ ଦଶମ ଗୁରୁ ରୂପରେ ସମୁଦ୍ରକୁ କାହିଁକି ସ୍ୱୀକାର କଲେ ?

**ମୁନିଃ ପ୍ରସନ୍ନ ଗମ୍ଭୀରୋ ଦୁର୍ବିଗାହ୍ୟୋ ଦୁରତ୍ୟୟଃ ।**
**ଅନନ୍ତପାରୋ ହି-ଅକ୍ଷୋଭ୍ୟଃ ସ୍ତିମିତ-ଉଦଃ ଇବ-ଅର୍ଣ୍ଣବ ।।୫।।**

ଉତ୍ତର. ଜଣେ ସନ୍ନ୍ୟାସୀ ନିଜର ବାହ୍ୟ ଆଚରଣରେ ସୁଖୀ ଏବଂ ସଦା ସନ୍ତୁଷ୍ଟ ରହନ୍ତି ମାତ୍ର ଭିତରେ ଅତ୍ୟନ୍ତ ଗମ୍ଭୀର ଏବଂ ଭାବୁକ ଥାଆନ୍ତି । କାରଣ ତାଙ୍କର ଜ୍ଞାନ ସମୁଦ୍ର ଭଳି ଅଗାଧ ଏବଂ ଅସୀମ (ଦୁରତ୍ୟୟଃ) ଯାହା ଆଦୌ କ୍ଷୋଭିତ ବା ଚଞ୍ଚଳ ହୁଏନାହିଁ ।

ସମୁଦ୍ରକୁ ସେ ଜଣେ ଗୁରୁ ରୂପେ ଗ୍ରହଣ କରିଛନ୍ତି ସଦା ଗମ୍ଭୀର ରହିବା ଗୁଣ ଶିକ୍ଷା କରି । କିଛି ବସ୍ତୁ ପ୍ରାପ୍ତିରେ ଫୁଲି ନ ଉଠିବା ବା କିଛି ଅପ୍ରାପ୍ତିରେ ସଂକୁଚିତ

ହୋଇନଯିବା ଭଳି ବର୍ଷା ଜଳରେ ସମୁଦ୍ରର ଜଳ ସ୍ତର ଉପରକୁ ଉଠି ନଥାଏ କିମ୍ବା ଗ୍ରୀଷ୍ମକାଳରେ ଜଳସ୍ତର ମଧ୍ୟ ତଳକୁ ଖସି ନଥାଏ । ଗୋଟିଏ ସାମାନ୍ୟ ପତଙ୍ଗ ଠାରୁ ସେ ଶିକ୍ଷା କଲେ ଚକ୍ଷୁ ଇନ୍ଦ୍ରିୟର ସଂଯମ । ମହୁମାଛିକୁ ଗୁରୁ କଲେ ବହୁତ ଗୃହରୁ ଅଳ୍ପ ଅଳ୍ପ ଭିକ୍ଷା ଅନ୍ନ ଗ୍ରହଣ କରିବା କାଇଦା ।

ପ୍ରଶ୍ନ-୯୧: ପତଙ୍ଗ ଠାରୁ ଦର୍ଶନ ଇନ୍ଦ୍ରିୟ ଶିକ୍ଷା କରି ଦତ୍ତାତ୍ରେୟଜୀ ମଧୁମକ୍ଷିକାକୁ ମଧ୍ୟ ଗୁରୁପଦରେ ବରଣ କରିଥିଲେ । ମଧୁ ମକ୍ଷିକା ଅଳ୍ପ ଅଳ୍ପ ମଧୁ ସଂଗ୍ରହ କରେ ବେଶୀ ପୁଷ୍ପରୁ । ସେହିଭଳି ସନ୍ନ୍ୟାସୀ ଏକାଧିକ ଗୃହସ୍ଥଙ୍କ ଗୃହରୁ ଭିକ୍ଷା କରିବା ଉଚିତ । ହସ୍ତୀ ଏବଂ ବନ୍ୟ ପଶୁ । ସେ କେଉଁ ଗୁଣକୁ ଶିକ୍ଷା କରିବାକୁ ହସ୍ତୀକୁ ମଧ୍ୟ ଗୁରୁ କଲେ ?

**ପଦା-ଅପି ଯୁବତୀଂ ଭିକ୍ଷୁଃ ନ ସ୍ପୃଶେତ୍ ଦାରବୀଂ ଅପି ।**
**ସ୍ପୃଶନ୍ କରୀ-ଇବ ବଧ୍ୟେତ୍ କରିଣ୍ୟା ଅଙ୍ଗ ସଙ୍ଗତଃ ॥୧୩॥**

ଉତ୍ତର: ଜଙ୍ଗଲରେ ହାତୀ ଖେଦାରେ ମିଥ୍ୟା ମାଈ ହାତ ପ୍ରଲୋଭନରେ ପଡ଼ି ଜଙ୍ଗଲୀ ହାତୀ ଖାଲରେ ପଡ଼ି ଧରାଯାଏ । ପ୍ରମାଦର ବାରଣ ତାର ସ୍ପର୍ଶ ଇନ୍ଦ୍ରିୟର ଅସଂଯମ । ସୁତରାଂ ସନ୍ନ୍ୟାସୀ (ଭିକ୍ଷୁଃ) ଜୀବନ୍ତ ନାରୀ ଦେହର ସ୍ପର୍ଶ ତ ଦୂରର କଥା କାଠ ତିଆରି ଯୁବତୀ ମୂର୍ତ୍ତିର ପାଦ ସ୍ପର୍ଶ କରିବା ଅନୁଚିତ୍ । ସେ କାମଜୟୀ ବୋଲି ଦମ୍ଭ କରି ନାରୀ ସ୍ପର୍ଶ କରିବାକୁ ବାଜି ମାରିବନି । ସେପରି କଲେ ହୁଏତ ହାତରୁ ଯିବ । ପୁଣି ପଣତରୁ ବି ଯିବ ।

ଶବର ଜାତିର ଲୋକେ ମହୁଫେଣାରୁ ମହୁ ସଂଗ୍ରହ କରନ୍ତି ବହୁ କଷ୍ଟରେ । ବୃକ୍ଷର ଡ଼ାଳ କାଟି, ଫେଣାରେ ଅଗ୍ନି ସଂଯୋଗ କରି ପୁଣି ମହୁମାଛିଙ୍କୁ ନିର୍ଦ୍ଦୟରେ ହତ୍ୟା କରି ସଂଗୃହୀତ ମହୁକୁ ନିଜେ ନ ଖାଇ କିଛି ପଇସା ପାଇବା ପାଇଁ ତାକୁ ବିକ୍ରୀ କରି ଦିଅନ୍ତି । ମନୁଷ୍ୟ ବହୁ କଷ୍ଟ ଲବ୍ଧ ଧନକୁ ସଂଗ୍ରହ ଅବଶ୍ୟ କରେ କିନ୍ତୁ ବେଳେ ବେଳେ ନିଜେ ଭୋଗ କରିପାରେନା କିମ୍ବା ଧନକୁ ଦାନ ଧର୍ମ କରି ପୁଣ୍ୟ ଅର୍ଜନ କରିପାରେନା । ଦତ୍ତାତ୍ରେୟଙ୍କ ମତରେ ଏହା ନିଶ୍ଚୟ ମନୁଷ୍ୟର ମୂର୍ଖତା ଅଟେ । ତାଙ୍କ ପାଇଁ ମଧୁ ସଂଗ୍ରହକାରୀ ଶବର ମଧ୍ୟ ଗୁରୁ ପଦବାଚ୍ୟ ।

ପ୍ରଶ୍ନ-୯୨: ବଣର ହରିଣ ଓ ଜଳ ମଧ୍ୟସ୍ଥିତ ମୀନ ମାଛ ମଧ୍ୟ ତାଙ୍କର ଗୁରୁ । ହରିଣ ନିଜ ଶ୍ରବଣ ଇନ୍ଦ୍ରିୟ ସଂଯମ କରି ନପାରି ମୃତ୍ୟୁ ମୁଖରେ ପଡ଼େ । ମୀନ ମାଛ ମଧ୍ୟ ରସନା ଇନ୍ଦ୍ରିୟ ସଂଯମ ଅଭାବରୁ ଥୋପ ଗିଳି ପ୍ରିୟ ପ୍ରାଣକୁ ହରାଇବସେ । ବିଦେହ ନଗର ବାସିନୀ ପିଙ୍ଗଳା ବେଶ୍ୟାଠାରୁ ଦତ୍ତାତ୍ରେୟ କି ତତ୍ତ୍ୱଜ୍ଞାନ ପ୍ରାପ୍ତ ହେଲେ ବୋଲି ରାଜାଙ୍କୁ କହିଲେ ଅତ୍ୟନ୍ତ ବିସ୍ତାରିତ ଭାବରେ ?

ବ୍ରାହ୍ମଣ ଉବାଚ

**ପିଙ୍ଗଳା ନାମ ବେଶ୍ୟା-ଆସୀତ୍ ବିଦେହ ନଗରେ ପୁରା ।**
**ତସ୍ୟା ମେ ଶିକ୍ଷିତଂ କିଞ୍ଚିତ୍ ନିବୋଧ ନୃପ ନନ୍ଦନ ॥୨୨॥**

ଉ. ଏଠାରେ ଅନେକ ଦିନ ପୂର୍ବେ (ପୁରା) ପ୍ରାପ୍ତ ଏକ ମହାନ ଶିକ୍ଷାକୁ ମସ୍ତିଷ୍କରେ ଧାରଣ କରିବା ନିମିତ୍ତ (ନିବୋଧ) ଅବଧୂତଜୀ ଯଯାତି ପୁତ୍ର ଯଦୁଙ୍କୁ କହିଛନ୍ତି ।

ପିଙ୍ଗଳା ନାମକ ବାରବଧୂ ରାତିରେ ଥରେ ଗ୍ରାହକ ମନଲୋଭା ବେଶଭୂଷା ଧାରଣ କରି ତା ଗୃହ ଦ୍ୱାରରେ ଧନ ପ୍ରାପ୍ତି ଆଶାରେ ଜଗି ବସିଲା । ନିଜର ସୁନ୍ଦର ମାନବ ଦେହକୁ କିଛି ଧନ ପ୍ରାପ୍ତି ଆଶାରେ ବିନିଯୋଗ କରିବା ଉଦ୍ଦେଶ୍ୟ ଥିଲା ତାର । ଗ୍ରାହକମାନେ ଅନେକ ଆସିଲେ । ତାକୁ ଦେଖି ଫେରିଗଲେ । ସେ କିନ୍ତୁ ଆଶା ବାନ୍ଧି ବସିଥାଏ । ଅନେକ ସମୟ ବିତିଗଲା । ସମୟ ଏବେ ନିଶାର୍ଦ୍ଧ ହେଲା । ଦେହ ବଦଳରେ ଧନ ରୋଜଗାର ଆଶା ଏବେ ମଉଳିବାକୁ ବସିଲା । ପିଙ୍ଗଳାର ସୌଭାଗ୍ୟ ଦାଣ୍ଡ ଦ୍ୱାରକୁ ଘର ଯାଉଣୁ ଆସୁଣୁ ତା ପାଦରେ ଲାଗିଲା ତା ଗୃହ ବାରଣ୍ଡାରେ ପଡ଼ିଥିବା ଜଣେ ସାଧୁ ମହାତ୍ମା (ଦତ୍ତାତ୍ରେୟଜୀ)ଙ୍କର ପବିତ୍ର ଚରଣ ରଜ ।

ପ୍ରଶ୍ନ-୯୩: ସାଧୁ ମହାତ୍ମାଙ୍କ ପାଦର ରଜକଣ ସ୍ପର୍ଶରେ ପତିତା ପିଙ୍ଗଳାର ମସ୍ତିଷ୍କରେ କି ପରିବର୍ତ୍ତନ ଘଟିଲା ?

**ତସ୍ୟା ବିତ୍ତ-ଆଶୟା ଶୁଷ୍ୟତ୍ ବକ୍ତ୍ରାୟା ଦୀନ ଚେତସଃ ।**
**ନିର୍ବେଦଃ ପରମୋ ଜଜ୍ଞେ ଚିନ୍ତା ହେତୁ ସୁଖ-ଆବହଃ ॥୨୭॥**

ଉ. ଧନ ପ୍ରାପ୍ତିର ଆଶା ମଉଳି ଯାଆନ୍ତେ ତାର ଚିତ୍ତ (ଚେତସଃ) ଗଭୀର ନିରାଶା ଓ ଦୁଃଖରେ ଭରିଗଲା । ପିଙ୍ଗଳାର ସୁନ୍ଦର ମୁଖ ମଣ୍ଡଳ ଝାଉଁଳି ପଡ଼ିଲା । ସକଳ ଭୌତିକ ଚିନ୍ତା ଉଭେଇଗଲା । ମନରେ ଅନନ୍ତ ସୁଖର କାରଣ ପରା ବୈରାଗ୍ୟର (ନିର୍ବେଦଃ) ଜନ୍ମ ହେଲା (ଜଜ୍ଞେ) । ପିଙ୍ଗଳାର ଏହି ଅଦ୍ଭୁତ ପରିବର୍ତ୍ତନର ଏକମାତ୍ର କାରଣ କେବଳ ସେଇ ସାଧୁଙ୍କ ଚରଣ ରଜ ସ୍ପର୍ଶ ।

ପ୍ରଶ୍ନ-୯୪: ସ୍ଥାୟୀ ଶରୀର ସଂସାର ବୈରାଗ୍ୟ ମନରେ ଉଦୟ ହୁଅନ୍ତେ ପିଙ୍ଗଳା ମନେ ମନେ କ'ଣ ଭାବିଲା ?

ପିଙ୍ଗଳା ଉବାଚ

**ଅହୋ ମେ ମୋହ ବିତତିଂ ପଶ୍ୟତ-ଅବିଜିତ-ଆତ୍ମନଃ ।**
**ଯା କାନ୍ତାତ୍ ଅସତଃ କାମଂ କାମୟେ ଯେନ ବାଳିଶା ॥୩୦॥**

ଉ. ନିଜକୁ ନିଜେ ଧିକ୍କାର କରି ପିଙ୍ଗଳା କହିଲା, "ଦେଖତ (ପଶ୍ୟତ) ମୋ ନିଜ ମନ ଇନ୍ଦ୍ରିୟ ଲାଳସାରେ ଅସଂଯତ ହୋଇଥିବାରୁ (ଅବିଜିତ ଆତ୍ମନଃ) ମୁଁ

କିଭଳି ଶରୀର ସଂସାର ମୋହରେ ପଡ଼ିଗଲି । ମୂର୍ଖଙ୍କ ଭଳି (ବାଳିଶା) ମୁକ୍ତିର ଦ୍ୱାର ମନୁଷ୍ୟ ଦେହକୁ ଛାର ବିଷୟ ସୁଖ ଭୋଗରେ ଲଗାଇବାକୁ ବସିଥିଲି ।''

ପ୍ରଶ୍ନ-୯୫: ପିଙ୍ଗଳା ଏବେ ତାର ଦିବ୍ୟ ଚେତନା ପ୍ରାପ୍ତ ହୋଇ ତା ନିଜ ଦେହରେ ଘଟ ଘଟବାସୀ ପରମାତ୍ମା ଭଗବାନଙ୍କୁ ଆବିଷ୍କାର କଲା । ପଶ୍ଚାତ୍‌ତାପ କଲା ତାର ଦେହ ଭୋଗ ଲାଳସା କଥା ଅନ୍ତର୍ଯ୍ୟାମୀ ଭଗବାନ ଜାଣି କେତେ ଦୁଃଖ କରିନଥିବେ । ଭଗବାନଙ୍କୁ ନ ଚାହିଁ ଇନ୍ଦ୍ରିୟ ଲାଳସା ଚରିତାର୍ଥ କରିବାକୁ ଧାଇଁ ସେ ଆଜି ଅପଦସ୍ତ ହୋଇଛି । ସେଭଳି ଅବସ୍ଥାରେ ପିଙ୍ଗଳା ଭଗବାନଙ୍କୁ କିଭଳି ପ୍ରସନ୍ନ କରିବ ବୋଲି ସଂକଳ୍ପ କଲା ?

**ସୁହୃତ୍ ଶ୍ରେଷ୍ଠତମୋ ନାଥ ଆତ୍ମା ଚ-ଅୟଂ ଶରୀରିଣାମ୍ ।**
**ତଂ ବିକ୍ରୀୟାତ୍ ଆତ୍ମନା-ଏବ-ଅହଂ ରମେଽନେନ ଯଥା ରମା ||୩୫||**

ଉ. ପରମାତ୍ମା ହିଁ ସକଳ ଜୀବଙ୍କର ସ୍ୱାମୀ (ନାଥ), ପ୍ରିୟତମ ଓ ଅସଲି ବନ୍ଧୁ ହିତୈଷୀ (ସୁହୃତ) । ପୁଣି ସମସ୍ତ ଜୀବଙ୍କର ଆତ୍ମାଙ୍କର ଆତ୍ମା ପରମାତ୍ମା । ମା'ମହାଲକ୍ଷ୍ମୀ (ରମା) ମହାବୈକୁଣ୍ଠରେ ରହି ନିଜପ୍ରଭୁ ନାରାୟଣଙ୍କର ସେବା କରୁଥାନ୍ତି । ସଂକଳ୍ପ କଲା ଯେ ଠିକ୍ ସେହିଭଳି ସେ ନିଜ ହୃଦୟ କନ୍ଦରରେ ବିଦ୍ୟମାନ ଭଗବାନ କୃଷ୍ଣଙ୍କର ମାନସିକ ସେବା କରି ଏଣିକି ନିତ୍ୟ ପ୍ରତି ତାଙ୍କର ସ୍ମରଣ କରି

ପ୍ରଶ୍ନ-୯୬: ପ୍ରକୃତ ରହସ୍ୟ ଜାଣି ନପାରି ଅବିନଶ୍ୱର ଭଗବାନଙ୍କର ସେବା ନକରି ଜୀବ ଭ୍ରମରେ ସଂସାରର ନଶ୍ୱର ବସ୍ତୁ ଓ ବ୍ୟକ୍ତିର ସେବା ଲାଳସା କରୁଛି । ଫଳରେ ସେମାନଙ୍କ ଠାରୁ ସ୍ଥାୟୀ ସୁଖ ଖୋଜୁଛି ଜନ୍ମ ଜନ୍ମାନ୍ତର କିନ୍ତୁ ଅଶେଷ ଦୁଃଖରେ ସଢୁଛି । ହୃଦୟରେ ଉତ୍ପନ୍ନ ହୋଇଥିବା ଶରୀର ସଂସାରର ସ୍ଥାୟୀ ବୈରାଗ୍ୟ (ନିର୍ବେଦୋ) ତା'ର କିଛି ଉପକାରରେ ଲାଗିପାରିବ ବୋଲି ସେ ମନେ କଲା କି ?

**ନୂନଂ ମେ ଭଗବାନ୍ ପ୍ରୀତୋ ବିଷ୍ଣୁଃ କେନାପି କର୍ମଣା ।**
**ନିର୍ବେଦୋଽୟଂ ଦୁରାଶୟା ଯତ୍‌ମେ ଜାତଃ ସୁଖ-ଆବହାଃ ||୩୬||**

ଉ. ପିଙ୍ଗଳା ଭାବିଲା ନିଶ୍ଚିତ ରୂପ (ନୂନଂ) କୌଣସି ପୂର୍ବ ଜନ୍ମରେ କୃତ ପୁଣ୍ୟ କର୍ମର ଫଳ ତାକୁ ଆଜି ପ୍ରାପ୍ତ ହୋଇଛି । ସେ ଅଦୌ ହତଭାଗିନୀ ନୁହେଁ ଏ ସଂସାରରେ । ବରଂ ଶ୍ରୀବିଷ୍ଣୁ କୃପା ପ୍ରାପ୍ତ ଅତ୍ୟନ୍ତ ସୌଭାଗ୍ୟଶାଳିନୀ ଏକ ବିଷ୍ଣୁ ଭକ୍ତ । ସଂସାରର ସକଳ ଐଶ୍ୱର୍ଯ୍ୟ ବିଷୟ ଭୋଗ ଲାଳସା ତା'ପାଇଁ ଆଜି ନିଚ୍ଛକ ଦୁରାଶା ମାତ୍ର ।

ପ୍ରଶ୍ନ-୯୭: ବିଗତ ଜୀବନର କୃତ ପାପକର୍ମ ମାନଙ୍କର ପଶ୍ଚାତ୍‌ତାପରେ ପିଙ୍ଗଳା ଦଗ୍‌ଧ ହେଲା । ବୈରାଗ୍ୟ କୁଠାରରେ ସମସ୍ତ ସଂସାର ଭୋଗ ସଂଗ୍ରହ ଆଶାକୁ ସେ କାହିଁକି କାଟି ପକାଇବାର ନିଷ୍ପତ୍ତି ନେଲା ?

**ସଂସାର କୂପେ ପତିତଂ ବିଷୟୈଃ मुଷିତ-ଈକ୍ଷଣମ୍ ।**
**ଗ୍ରସ୍ତଂ କାଳ-ଅହିନା-ଆତ୍ମାନଂ କୋଽନ୍ୟଃ ତ୍ରାତୁଂ ଅଧୀଶ୍ୱରଃ ॥୪୧॥**

ଉ. ସେ ସଂପୂର୍ଣ୍ଣ ରୂପେ ବୁଝିଗଲା ଯେ ବିଷୟ ବାସନା ଦୃଷ୍ଟି (ମୁଷିତ) ହେତୁ ମନୁଷ୍ୟ ଭୌତିକ ଜଗତର ଆକର୍ଷଣ ରୂପୀ କୂପରେ ପତିତ ହେଉଛି । ଜରା, ବ୍ୟାଧି ଓ ମୃତ୍ୟୁ ଭୟ ରୂପକ କାଳ ସର୍ପ କବଳରେ ସେ ପଡୁଛି । ତ୍ରାହି ତ୍ରାହି ଡ଼ାକୁଛି । ସଦ୍‌ଗୁରୁ ବୈଷ୍ଣବଙ୍କ କୃପା ମାଧମରେ ସ୍ୱୟଂ ଭଗବାନ (ଅଧୀଶ୍ୱର) କେବଳ ତାକୁ ରକ୍ଷା କରିବାରେ (ତ୍ରାତୁଂ) ସମର୍ଥ । ଅନ୍ୟ କାହାରି ଆଶ୍ରୟ ଏଥିରେ କିଛି କାମ ଦିଏନା ।

ପ୍ରଶ୍ନ-୯୮: ପିଙ୍ଗଳାର ହରି ଭଜନ ସଂକଳ୍ପ ସଂସାରୀ ବାସନାକୁ ଧ୍ୱସ୍ତ କରିଦେଲା (ସଂଛିଦ୍ୟ) । ସେ ସୁଖ ନିଦ୍ରାରେ ଶୟନ କଲା (ସୁଖଂ ସୁଷ୍ୱାପ) । ସଂସାରକୁ କେଉଁ ମହାନ ଶିକ୍ଷା ମିଳିଲା ପିଙ୍ଗଳାର ଦାର୍ଶନିକ ଅନୁଭବରୁ ?

ବ୍ରାହ୍ମଣ ଉବାଚ

**ଆଶା ହି ପରମଂ ଦୁଃଖଂ ନୈରାଶ୍ୟଂ ପରମଂ ସୁଖମ୍ ।**
**ଯଥା ସଂଛିଦ୍ୟ କାନ୍ତ-ଆଶଂ ସୁଖଂ ସୁଷ୍ୱାପ ପିଙ୍ଗଳା ॥୪୪॥**

ଉ. ଦେହକୁ ସଂସାର ସେବାରେ ଲଗାଇ ସୁଖ ପ୍ରାପ୍ତିର ଆଶା କେବଳ ଏକ ନିର୍ବୋଧତା ବରଂ ମିଳିଥିବା ଶରୀର ସଂସାର ସଂପତ୍ତିକୁ ହରି ଭଜନରେ ଲଗାଇବା ବୁଦ୍ଧିର ସଦୁପଯୋଗ, ସମୟର ସଦୁପଯୋଗ ଓ ସଂପତ୍ତିର ସଦୁପଯୋଗ । ତେଣୁ ସିନା ସେ ମହାନ୍ ସନ୍ଥ ଦତ୍ତାତ୍ରେୟଙ୍କ ଗୁରୁ ହେଲା ! !

## ଅଥ ୯ମ ଅଧ୍ୟାୟଃ

### (କୁରର ପକ୍ଷୀଠାରୁ ପେଶ ସକୃତ କୀଟ ପର୍ଯ୍ୟନ୍ତ ସାତଗୁରୁଙ୍କ କଥା)

ପ୍ରଶ୍ନ-୯୯: ହସ୍ତୀ ପର୍ଯ୍ୟନ୍ତ ତେର ଜଣ ଗୁରୁଙ୍କ ଶିକ୍ଷା କଥା କହି ସାରି ପୁଣି କେଉଁ କେଉଁ ଏଗାର ଜଣ ଗୁରୁଙ୍କ ଶିକ୍ଷା କଥା କହିଲେ ତତ୍ତ୍ୱଜ୍ଞାନୀ ଦତ୍ତ ଭଗବାନ ?

ବ୍ରାହ୍ମଣ ଉବାଚ

**ମଧୁହା ହରିଣୋ ମୀନଃ ପିଙ୍ଗଳା କୁରରୋଽର୍ଭକଃ ।**
**କୁମାରୀ ଶରକୃତ୍ ସର୍ପ ଊର୍ଣ୍ଣନାଭିଃ ସୁପେଶକୃତ୍ ॥୪॥**

ଉ. ମହୁ ସଂଗ୍ରହକାରୀ, ହରିଣ, ମୀନ, ପିଙ୍ଗଳା ବେଶ୍ୟା, କୁରର ଚଢ଼େଇ,

ବାଳକ, କୁମାରୀ, ଶର ପ୍ରସ୍ତୁତ କାରୀ ଶିକାରୀ, ସର୍ପ, ବୁଢ଼ୀଆଣି କୀଟ ଓ ବିରୁଡ଼ି ବା ଭ୍ରମରୀ କୀଟ ଏଇ ଏଗାର ଜଣ ମଧ୍ୟ ତାଙ୍କର ଗୁରୁ ।

ପ୍ରଶ୍ନ-୧୦୦: ମାଂସ ଭକ୍ଷୀ ବାଜପକ୍ଷୀ (କୁରର) ଥଣ୍ଟରେ ମାଂସ ଟୁକୁଡ଼ା ଧରିଥିବାରୁ ତା ପଛରେ ଅନେକ ପକ୍ଷୀ ତାକୁ ଜୀବନରେ ମାରି ଖାଦ୍ୟ ଛଡ଼େଇବାକୁ ବସିଥିଲେ । ମାଂସ ଟୁକୁଡ଼ାକୁ ସେ ବିରକ୍ତିରେ ତଳେ ଫିଙ୍ଗି ଦେବାରୁ ତାର ପ୍ରାଣ ରହିଗଲା । ସାମାନ୍ୟ ଚିଜର ଲୋଭ ଛାଡ଼ି ନ ପାରି ହିଂସ୍ର ପଶୁ ଓ ହିଂସ୍ର ମନୁଷ୍ୟର ଈର୍ଷାର ଶିକାର ହୁଏ ନିରୀହ ମଣିଷ । ସେ ଈର୍ଷାର କାରଣକୁ ଜାଣି ତାକୁ ତୁରନ୍ତ ତ୍ୟାଗ କରିଦେଇ ହରି ଭଜନ କଲେ ଶାନ୍ତି ମଧ୍ୟ ପାଇପାରେ ।

ଅଜ୍ଞାନ ବାଳକଠାରୁ ମାନ ଅପମାନକୁ ପରବାୟ ନକରି ନିଜ ଆନନ୍ଦରେ ବ୍ୟସ୍ତ ରହିବା ସେ ଶିକ୍ଷା କରିଥିଲେ । ସେ କହି ବୁଲିଲେ ଏ ସଂସାରରେ ପରମ ଆନନ୍ଦରେ ମଗ୍ନ କେବଳ ଦୁଇ ଜଣ । ଜଣେ ଅବୋଧ ସରଳ ବାଳକ ଓ ଆର ଜଣକ ବିଷ୍ଣୁ ଭକ୍ତ ବୈଷ୍ଣବ ।

ସଂସାର ଆସକ୍ତି ତ୍ୟାଗ କପୋତଠାରୁ ଓ ଶରୀର ଆସକ୍ତି ତ୍ୟାଗ ପିଙ୍ଗଳାଠାରୁ ଶିକ୍ଷା କରି ସାରି ଜ୍ଞାନ ବୈରାଗ୍ୟ ମାର୍ଗରେ ସାଧନ କରିବା ପ୍ରଣାଳୀ ସେ କାହାଠାରୁ କିପରି ଶିକ୍ଷା କଲେ ବୋଲି କହିଥିଲେ ?

ବ୍ରାହ୍ମଣ ଉବାଚ

**କ୍ୱଚିତ୍ କୁମାରୀ ତୁ-ଆତ୍ମାନଂ ବୃଣାନାନ୍ ଗୃହଂ ଆଗତାନ୍ ।**
**ସ୍ୱୟଂ ତାନ୍ ଅର୍ହୟାମାସ କ୍ୱ-ଅପି ଯାତେଷୁ ବନ୍ଧୁଷୁ ॥୫॥**

ଉ. ଏ ମହାନ ଶିକ୍ଷା ସେ ପାଇଛନ୍ତି ଜଣେ ବିବାହ ଯୋଗ୍ୟା କୁମାରୀ କନ୍ୟାର ସାଧନାରୁ ନିସଂଗତାର ମନ୍ତ୍ର ରୂପେ । ଦିନେ ସେ କୁମାରୀ କନ୍ୟା ଏକାକୀ ଘରେ ଥାଏ । ବିବାହ ପ୍ରସ୍ତାବ ନେଇ କେତେଜଣ ଭଦ୍ରଲୋକ ଆସିଲେ ତା ଘରକୁ ବୋହୂ ଦେଖିବାକୁ । ସେ ସେମାନଙ୍କୁ ସମୁଚିତ ସତ୍କାର କଲା । ଘରେ ଆସନରେ ବସାଇଲା । ଏବେ ସେମାନଙ୍କ ପାଇଁ ଭୋଜନ ପ୍ରସ୍ତୁତ କରିବ । ଘରେ ଚାଉଳ ଦାନାଟିଏ ନଥାଏ । ସେ ଧାନ କୁଟିବାକୁ ଆରମ୍ଭ କଲା ମୂଷଳରେ । ପିନ୍ଧିଥିବା ଚୂଡ଼ି ଶବ୍ଦ କଲା । ଅତିଥିମାନେ କାଳେ ଭାବିବେ ଏମାନେ ଏତେ ଦରିଦ୍ର ଯେ ୟାଙ୍କ ଘରେ ଚାଉଳ ନାହିଁ । ଧାନ କୁଟି ଚାଉଳ ବାହାର କଲେ ସିନା ରନ୍ଧନ ବ୍ୟବସ୍ଥା ହେବ । ଏ କଥା ଲୁଚାଇବାକୁ ଯାଇ ବିଚାରୀ ଦୁଇ ଦୁଇ ପଟ କଙ୍କଣ ବା ଚୂଡ଼ି ଦୁଇ ହାତରେ ରଖି ବାକି ସବୁ ଭାଙ୍ଗି ପକାଇଲା । ଦୁଇ ପଟ ଚୂଡ଼ି ରହିଲେ ମଧ୍ୟ ମୂଷଳ ପାହାରରେ ଆୱାଜ ହେଲା । ଏଥର ପୁଣି ଦୁଇହାତରୁ ପଟେ ପଟେ ଚୂଡ଼ିଭାଙ୍ଗି ଦେଲା । ଆଉ ଏଣିକି ଶବ୍ଦ ହେଲା ନାହିଁ । ସେ ଖୁସିରେ କାମରେ ଲାଗିଗଲା ।

ପ୍ରଶ୍ନ-୧୦୧ : ଦତ୍ତାତ୍ରେୟଜୀ କୁମାରୀର କଙ୍କଣ ସଂଖ୍ୟା ହିସାବରୁ କେଉଁ ଶିକ୍ଷା ଗ୍ରହଣ କଲେ ?

**ବାସୋ ବହୂନା କଲହୋ ଭବେତ୍ ବାର୍ତ୍ତା ଦ୍ୱୟୋଃ ଅପି ।**
**ଏକ ଏବ ବସେତ୍ ତସ୍ମାତ୍ କୁମାର୍ଯ୍ୟା ଇବ କଙ୍କଣଃ ।।୧୦।।**

ଉ. ଗୋଟିଏ ସ୍ଥାନରେ ଅନେକ ଲୋକ ରହିଲେ କଳି ଝଗଡ଼ା ହେବ ହିଁ ହେବ । ଦୁଇ ଜଣ ରହିଲେ ମଧ୍ୟ ଗପସପ ହେବା ନିଶ୍ଚିତ । ଅତଏବ ଜ୍ଞାନଯୋଗର ଈଶ୍ୱରୀୟ ସାଧନା କରିବାକୁ ହେଲେ ନିଃସଙ୍ଗତା ବା ଏକାନ୍ତ ବାସ ଭଲ କାମ ଦିଏ ।

ଭକ୍ତି ଯୋଗରେ କିନ୍ତୁ ଏ ସାଧନାର ବିପରୀତ କାର୍ଯ୍ୟ କରିବାକୁ ହୁଏ । ଇଷ୍ଟ ଗୋଷ୍ଠି ଆଦି ବହୁ ଭକ୍ତ ଅଭକ୍ତ ଏକାଠି ମିଳି ଶ୍ରବଣ, କୀର୍ତ୍ତନ, ଅଭିନୟ ଆଦିରେ ଭକ୍ତି ରସ ଅଧିକ ପରିପୁଷ୍ଟ ହୋଇଥାଏ ।

ପ୍ରଶ୍ନ-୧୦୨ : ଶର ମୁନିଆ କରୁଥିବା ଇଷୁକାର ବା ବାଣକାର ଠାରୁ ମନର ଏକାଗ୍ରତା ଓ ସର୍ପଠାରୁ ଗୃହ ଆସକ୍ତି ଶୂନ୍ୟତା ଶିକ୍ଷା କଲେ ଦତ୍ତାତ୍ରେୟଜୀ । ନିଜେ ଘର ତିଆରି କରେ ନା ସର୍ପ । ଅନ୍ୟର ତିଆରି ଘରେ କିଛି କିଛି ଦିନ କଟାଇ ଜୀବନ କଟାଏ ବିନା ଗୃହ ଆସକ୍ତିରେ ଖୁସିରେ ।

ଉର୍ଣ୍ଣନାଭ ବା ବୁଢ଼ିଆଣୀ କୀଟ ନିଜ ପେଟରୁ ଲାଳୁଆ ସୂତା ବାହାର କରି ଜାଲବୁଣେ । ସେଥିରେ ଶିକାର ଧରେ ଓ ଖେଳେ । ଦରକାର ପଡ଼ିଲେ ସେ ସେଇ ଜାଲର ସୂତା ସବୁ ପୁଣି ନିଜ ପେଟ ଭିତରକୁ ଟାଣିନିଏ । ସାଇତି ରଖେ ପୁଣି ଥରେ ଜାଲ ବୁଣିବା ନିମିତ୍ତ । ଏହାହିଁ ତ ଭଗବାନଙ୍କର ସୃଷ୍ଟି ପାଳନ ସଂହାରର ଅସଲି ରହସ୍ୟ । ଭଗବାନ ନିଜ ମଧ୍ୟରୁ ଏ ଦୃଶ୍ୟମାନ ଜଗତ ସୂର୍ଯ୍ୟ, ଚନ୍ଦ୍ର, ତାରା ଆଦିକୁ ସେହିଭଳି ପ୍ରକଟ ଅପ୍ରକଟ କରୁଛନ୍ତି । ଏ ମୂଲ୍ୟବାନ ରହସ୍ୟ ଖୋଲିଗଲା ସାମାନ୍ୟ ବୁଢ଼ିଆଣୀ କୀଟର ଜାଲବୁଣା କାରବାର ଦେଖି । ପେଶସ୍କାରୀ କୀଟ ବା ବିରୁଡ଼ିଠାରୁ କି ଶିକ୍ଷା ପ୍ରାପ୍ତ କରିଥିଲେ ତତ୍ତ୍ୱଜ୍ଞାନୀ ଅବଧୂତଜୀ ।

**କୀଟ ପେଶସ୍କୃତଂ ଧ୍ୟାୟନ୍ କୁଡ଼୍ୟାଂ ତେନ ପ୍ରବେଶିତଃ ।**
**ଯାତି ତତ୍ ସ ଆତ୍ମତାଂରାଜନ୍ ପୂର୍ବ ରୂପଂ ଅସନ୍ତ୍ୟଜନ୍ ।।୨୩।।**

ଉ. ବିରୁଡ଼ିଟିଏ ଗୋଟିଏ ଶାଗ ପୋକକୁ ଧରି ଆଣି ନିଜ ତିଆରି ମାଟି ଘରେ ଜବରଦସ୍ତି ବନ୍ଦ କରିଦିଏ । ତାକୁ ଦ୍ୱାର ରୁଦ୍ଧ କରିଦିଏ । ବିଚରା ପୋକଟି ନିଜର ମରଣ ଭୟରେ ସେଇ ବିରୁଡ଼ିର ରୂପକୁ ନିରନ୍ତର ଚିନ୍ତନ କରେ । ଶାସ୍ତ୍ର କୁହନ୍ତି ସେ ଶାଗ ପୋକଟି ନ ମରି ତନ୍ମୟତା ପୂର୍ଣ୍ଣ ନିରନ୍ତର ବିରୁଡ଼ି ରୂପ ଧ୍ୟାନ ହେତୁ ତାର

ଦେହ ବଦଳାଇ ବିରୁଡ଼ି ଛୁଆ ରୂପ ଧାରଣ କରିଥାଏ । ଅତଏବ ମନୁଷ୍ୟ ଯଦି ମୃତ୍ୟୁର ବହୁ ପୂର୍ବରୁ ଭଗବତ ରୂପ ଧ୍ୟାନରେ ତନ୍ମୟ ହେବ ତେବେ ତାକୁ ମଧ୍ୟ ଧ୍ୟେୟ ରୂପ ପ୍ରାପ୍ତି ଅବଶ୍ୟ ଘଟିବ ହିଁ ଘଟିବ ।

ସର୍ବଶେଷରେ ଦତ୍ତାତ୍ରେୟଜୀ ରାଜା ଯଦୁଙ୍କୁ ନିଜ ଦେହକୁ ମଧ୍ୟ ଗୁରୁ ବୋଲି ସ୍ୱୀକାର କରିଥିବା କଥା କହିଛନ୍ତି । ଏ ମନୁଷ୍ୟ ଦେହଟି ପାଇଥିବାରୁ ସେ ସିନା ଏସବୁ ଜ୍ଞାନ ବୈରାଗ୍ୟ ଭକ୍ତି କଥା ଚିନ୍ତନ କରିପାରିଲେ । ହାତୀ ସିଂହ ଇନ୍ଦ୍ର ଆଦି ଦେବତାଙ୍କୁ କେବେ ବି ଏ ସୁଯୋଗ ମିଳେନା । ବିଷୟ ଭୋଗ ସୁବିଧା ତ ସବୁ ଜନ୍ମରେ ମିଳିବ ମାତ୍ର ଈଶ୍ୱରୀୟ ସାଧନା କେବଳ ଏହି ମନୁଷ୍ୟ ଦେହରେ ସମ୍ଭବ । ରାଜା ଯଦୁଙ୍କ ସାଧନା ଏଣିକି ଗୁଳାରେ ଚାଲିଲା । ତତ୍ତ୍ୱଜ୍ଞାନ ପ୍ରାପ୍ତି ହୋଇ ତାଙ୍କ ଜୀବନ ଧନ୍ୟ ଅତି ଧନ୍ୟ ହୋଇପାରିଥିଲା ।

ସମଗ୍ର ସଂସାର ଜାଣିଲା ଏ ବିଶ୍ୱର ପ୍ରତ୍ୟେକ ବସ୍ତୁ, ବ୍ୟକ୍ତି ଓ ପରିସ୍ଥିତି ଆଦି ସମସ୍ତେ ଗୋଟିଏ ଗୋଟିଏ ଗୁରୁ ପଦବାଚ୍ୟ । ଜଣେ ତତ୍ତ୍ୱଜ୍ଞାନୀ ସମସ୍ତଙ୍କଠାରୁ କିଛି କିଛି ଶିଖିପାରେ । ଅଥଚ ଅହଂକାରୀ ଲୋକକୁ ଜଣେ ହେଲେ ଗୁରୁ ମିଳି ନଥାନ୍ତି । ଦୃଷ୍ଟାନ୍ତ–ଦୁର୍ଯୋଧନ, କଂସ ଆଦି । ଜ୍ଞାନୀ ଓ ଭକ୍ତପାଇଁ ଏ ସମଗ୍ର ବିଶ୍ୱ ଏକ ବିଦ୍ୟାଳୟ ।

# ଅଥ ୧୦ମ ଅଧ୍ୟାୟଃ

## (ସକଳ ସଂସାରୀ ସୁଖ ଓ ସ୍ୱର୍ଗ ସୁଖର ତୁଚ୍ଛତା ବର୍ଣ୍ଣନ)

ପ୍ରଶ୍ନ–୧୦୩: ପୂର୍ବବର୍ତ୍ତୀ ତିନି ଅଧ୍ୟାୟରେ ସ୍ୱଧର୍ମ ତ୍ୟାଗୀ ଦତ୍ତାତ୍ରେୟ ତତ୍ତ୍ୱଜ୍ଞାନ ମାଧ୍ୟମରେ ଏକଥା ବୁଝାଇଦେଲେ ଯେ ବିନା ସଂସାର ବୈରାଗ୍ୟରେ ସବୁ ସାଧନା ଅସାର ବେକାର । ଯଦୁ ରାଜା କିଛି ସାମାନ୍ୟ ଲୋକ ନଥିଲେ । ସେ ଧର୍ମଜ୍ଞ ଥିଲେ ବୋଲି ସିନା ଗୁରୁଙ୍କୁ ଚିହ୍ନିପାରିଲେ । ସଂସାରରେ କାଳେ କାଳେ ସ୍ୱଧର୍ମ ପାଳନ କାରୀ ଓ ସ୍ୱଧର୍ମ ତ୍ୟାଗୀ ଉଭୟେ ଥାଆନ୍ତି । ସେମାନଙ୍କ ସଙ୍ଗ ଲାଭ ହେଲେ ଭୌତିକବାଦୀ ଲୋକେ ମଧ୍ୟ ଜାଣିପାରନ୍ତି ଇହଲୋକର ସକଳ ସୁଖ ନଶ୍ୱର କ୍ଷଣଭଙ୍ଗୁର । କାରଣ ସବୁ ଦ୍ରବ୍ୟ, ବ୍ୟକ୍ତି ଓ ଅବସ୍ଥା କ୍ଷଣସ୍ଥାୟୀ । ନିଜକୁ ସୁଖୀ ମନେ କରୁଥିବା ଲୋକ ମଧ୍ୟ ଦିନେ ନା ଦିନେ ଜାଣିପାରେ ଯେ ସେ ମଧ୍ୟ ଦୁଃଖୀ । ଧନ, ଜୀବନ, ଯୌବନ ଏ ସବୁ ବିଜୁଳି ପ୍ରକାଶ । ଅସ୍ଥାୟୀ ଓ ଅସତ୍ୟ । ମୃତ୍ୟୁ ନିଶ୍ଚୟ ସତ୍ୟ । ସେହି ଦିନଠାରୁ ଜଣେ ଜୀବର ଅଧ୍ୟାତ୍ମ ଜୀବନ ଆରମ୍ଭ ହେଲା ବୋଲି ଆମେ କିପରି କହିବା ?

ଶ୍ରୀ ଭଗବାନ ଉବାଚ

**ଯମାନ୍ ଅଭୀକ୍ଷ୍ଣଂ ସେବେତ          ନିୟମାନ୍ ମତ୍ପରଃ କ୍ୱଚିତ୍ ।**
**ସତ୍ ଅଭିଜ୍ଞଂ ଗୁରୁଂ ଶାନ୍ତଂ          ଉପାସୀତ ମତ୍ ଆତ୍ମକମ୍ ।।୫।।**

ଉ. ଭଗବାନ କହିଲେ, ''ସେଭଳି ସାଧକ ନିଶ୍ଚୟ ଶ୍ରୋତ୍ରୀୟ ବ୍ରହ୍ମନିଷ୍ଠ ଓ ପ୍ରଶାନ୍ତ ଆତ୍ମା ଗୁରୁଙ୍କ ସେବାରେ ନିଜ ତନ, ମନ ଓ ଧନ ଲଗାଇଦେବେ । ଗୁରୁଙ୍କୁ ଈଶ୍ୱର ବୋଲି ଭାବନା କରିବ (ମତ୍ ଆତ୍ମକଂ) । ଏଭଳି ଲୋକଙ୍କ ସଂଖ୍ୟା ହୁଏତ ତୁମେ ନଗଣ୍ୟ (କ୍ୱଚିତ) କହିପାର ଉଦ୍ଧବ । ସେ ଯମ, ନିୟମ, ଆସନ, ପ୍ରାଣାୟାମ, ପ୍ରତ୍ୟାହାର ଆଦି ସାଧନାରେ ଲାଗିଯିବ । ଏଣିକି ସେ ମୋର ଭକ୍ତ (ମତ୍ପରଃ) ବୋଲାଇବ ।

ମୋ ଭକ୍ତ ଜାଣିପାରେ ଯେ ତାର ଜାୟା, ଅପତ୍ୟ, ଗୃହ, ସ୍ୱଜନ ଧନ ଇତ୍ୟାଦି ସବୁ କେବଳ ଭଗବାନ ଓ ଭଗବାନଙ୍କ ଭକ୍ତ ସେବାରେ ଲଗାଇବା ଦାୟିତ୍ୱ ତାକୁ ଦିଆଯାଇଛି ମାତ୍ର । ଉପଭୋଗ କରି ଇନ୍ଦ୍ରିୟ ସୁଖ ପାଇବା ପାଇଁ ନୁହେଁ । ସଦ୍‌ଗୁରୁ ଜାଣନ୍ତି ଶିଷ୍ୟର ଅଧିକାରୀତ୍ୱ ବା ପାତ୍ରତା । ବୁଝେଇ ଦିଅନ୍ତି ତାକୁ ନଶ୍ୱର ଦେହ ମଧ୍ୟରେ ଅବିନଶ୍ୱର ଆତ୍ମା ବିଦ୍ୟମାନ । ଆତ୍ମା ଦେହରେ ଥାଇ ଦେହଠାରୁ ପୃଥକ୍ । ଠିକ୍ ସେମିତି କାଠ ମଧ୍ୟରେ ଅଗ୍ନି ଅଦୃଶ୍ୟ ହୋଇ ଯେମିତି ରହିପାରନ୍ତି । ସୁବିଧା ପାଇଲେ ସେଇ କାଠକୁ  ଜଳାଇ ସ୍ୱୟଂ ଶାନ୍ତ ହୋଇଯାଆନ୍ତି । ଅନ୍ୟ ଏକ ଦୃଷ୍ଟାନ୍ତ ନିଆଯାଇପାରେ । ଦୀପରେ ସଳିତା ତେଲକୁ ଜଳାଏ ଅଗ୍ନିର ସଂଯୋଗରେ । ଶେଷରେ ନିଜେ ମଧ୍ୟ ସଳିତା ଜଳି ଜଳି ଅଦୃଶ୍ୟ ହୁଏ । ସେହି ନ୍ୟାୟରେ ସଚ୍ଚିଦାନନ୍ଦମୟ ଆତ୍ମା ଜଡ଼ ଦେହରେ ପ୍ରବେଶ କରି ବଦ୍ଧ ଜୀବ ବା ବିଷୟ ଲୋଲୁପ ଜୀବ ଅନ୍ତରରେ ସୁପ୍ତ, ମୁମୁକ୍ଷୁ ଅନ୍ତରରେ ଓ ଜାଗ୍ରତ ମୁକ୍ତ ଜୀବ ଅନ୍ତରରେ ସକ୍ରୀୟ ଜ୍ୱଳନ୍ତ ହୋଇ ରହିପାରିବେ ।''

ପ୍ରଶ୍ନ-୧୦୪: ଜଣେ ଅଧ୍ୟାତ୍ମବାଦୀ ହୃଦୟରେ ଥରେ ଆତ୍ମା ଅନୁଭବ ହେଲେ ସାଧକର ବିଷୟ ଭୋଗ ତୃଷ୍ଣା ଜଳି ପୋଡ଼ିଯାଏ । ପାପ ପୁଣ୍ୟ ଗଣ୍ଠିଲି ମଧ୍ୟ ଜଳିଯାଏ । ସଦ୍‌ଗୁରୁଙ୍କ କୃପାରୁ ତାର ସତ୍ତ୍ୱଗୁଣ ପ୍ରଥମେ ରଜତମୋ ଗୁଣକୁ ଜଳେଇ ଦିଏ । ଶେଷରେ ଦିବ୍ୟ ଆତ୍ମାଙ୍କ କୃପାରୁ ଅବଶିଷ୍ଟ ସତ୍ତ୍ୱଗୁଣ ମଧ୍ୟ ନଷ୍ଟ ହୋଇଯାଏ । ଅନ୍ୟ ପକ୍ଷରେ ଭୌତିକବାଦୀ ନିଜକୁ କର୍ତ୍ତା ଭୋକ୍ତା ମାନି ବିଷୟ ସୁଖକୁ ସତ୍ୟମାନେ । ସୁତରାଂ ଜନ୍ମ-ମରଣ-ଜରା-ବ୍ୟାଧି ମୃତ୍ୟୁକୁ ସତ୍ୟ ମଣିବାକୁ ବାଧହୁଏ । ଜନ୍ମମରଣ ଚକ୍ର ବନ୍ଦ ହୁଏନା ତାର । କି ଅବସ୍ଥାରେ ପଡ଼ି ସେ ଗୁରୁଙ୍କ ଶରଣ ଖୋଜେ ଓ ଆତ୍ମାନୁସନ୍ଧାନ କରେ ?

**ତତ୍ର-ଅପି କର୍ମଣାଂ କର୍ତ୍ତୁଃ ଅସ୍ୱାତନ୍ତ୍ୟଂ ଚ ଲକ୍ଷ୍ୟତେ ।**
**ଭୋକ୍ତୁଃ ଚ ଦୁଃଖ ସୁଖୟୋଃ କ୍ୱ-ନୁ-ଅର୍ଥଃ ବିବଶଂ ଭଜେତ୍ ॥ ୧୭॥**

ଉ. ବିଷୟୀ ଜୀବ ମାନେ ଯେ ସେ କର୍ମ କରିବାରେ ନିଶ୍ଚୟ ସ୍ୱତନ୍ତ୍ର । ଅଥଚ ଫଳ ଭୋଗିବାରେ ସେ ପରତନ୍ତ୍ର । ସୁଖ ପ୍ରାପ୍ତି ପାଇଁ କର୍ମ କଲେ ମଧ୍ୟ ସୁଖ ମିଳୁନି । ପୁଣି ଦୁଃଖ କମିବା ପରିବର୍ତ୍ତେ ବଢ଼ିଯାଉଛି । ବେଳେ ବେଳେ ସୁଖ ପ୍ରାପ୍ତି ଲାଗି କର୍ମ ନକଲେ ମଧ୍ୟ ସୁଖ ମିଳିଯାଉଛି । ସେଥିଲାଗି ସେ ନିଶ୍ଚିତ ହୁଏ ଯେ କର୍ମଫଳ ଦାତା ନିଶ୍ଚୟ ଜଣେ ଆଉ କିଏ ଅଛି (କ୍ୱ ନୁ-ଅର୍ଥଃ) । ଅତଏବ ପରିସ୍ଥିତିରେ ପଡ଼ି ବାଧ୍ୟ ହୁଏ ହରି ଭଜନ କରିବାକୁ (ବିବଶଂ ଭଜେତ୍) ।

ପ୍ରଶ୍ନ-୧୦୫: ସଂସାରରେ ମୂର୍ଖମାନେ କେବଳ ଦୁଃଖ ଭୋଗନ୍ତି ଏକଥା ନୁହେଁ ବରଂ ଅତି ବିଦ୍ୱାନ୍ ଏପରିକି ବେଦଜ୍ଞ ଲୋକଙ୍କୁ ମଧ୍ୟ ଦୁଃଖ ଭୋଗିବାକୁ ପଡ଼େ । ଅଥଚ ଜଣେ ମୁର୍ଖ ମଧ୍ୟ ସୁଖରେ ରହିପାରେ । ଆଧୁନିକ ବିଜ୍ଞାନର କାରିଗରୀ କୌଶଳର ବିକାଶ ଦ୍ୱାରା ଯେ ଅନନ୍ତ ନିରବଚ୍ଛିନ୍ନ ସୁଖ ମିଳିଯିବ ଏହା କେବଳ ବୃଥା ଅହଂକାର କିଛି ଭୌତିକବାଦୀ ଲୋକଙ୍କର । ଯଦି ବା ମଣିଷ ଜାଣିପାରିବ ବୁଦ୍ଧି ବଳରେ ସୁଖ କେମିତି ମିଳେ ଦୁଃଖ କେମିତି ହଟିଯାଏ ତଥାପି ଜରା, ବ୍ୟାଧି ଓ ମରଣକୁ ଡ଼ରିବ ସେ । କେବଳ ଈଶ୍ୱର ଶରଣାଗତିରେ ଏ ତିନି ଟିଜର ଭୟ କଟିପାରିବ । ଏକଥା ଅନେକ ସାଧୁ ସନ୍ଥ ତାଙ୍କ ଜୀବନରେ ପ୍ରମାଣ କରି ଦେଖାଇ ଅଛନ୍ତି । ଅତଏବ ମରଣ ଯଦି ସତ୍ୟ ଭୌତିକ ସୁଖ ଆଶାକୁ ଜାବୁଡ଼ି ବସିବା କେଉଁ ବୁଦ୍ଧିମାନର କାମ ? ଫାଶୀ ଆସାମୀକୁ (ବଧ୍ୟସ୍ୟ ଇବ) ରସଗୋଲା ସ୍ୱାଦ ସୁଖ ଦେଇପାରେ କି(ନ ତୁଷ୍ଟିଦଃ) ?

**କୋ ନୁ-ଅର୍ଥଃ ସୁଖୟତି-ଏନଂ କାମୋ ବା ମୃତ୍ୟୁଃ ଅନ୍ତିକେ ।**
**ଆଘାତଂ ନୀୟମାନସ୍ୟ ବଧ୍ୟସ୍ୟ-ଇବ ନ ତୁଷ୍ଟିଦଃ ॥୨୦॥**

ଉ. ପଠାଣ ଛେଳିକୁ ହାଣକୁ ନେବା ବେଳେ (ଆଘାତଂ ନୀୟମାନସ୍ୟ) ଛେଳି ସିନା ଜାଣିପାରୁନି । ମଣିଷ ଜାଣିଲେ ଡ଼ରିବ ନାହିଁ କି ? ମୃତ୍ୟୁ ମୁଣ୍ଡ ଉପରେ ବସିଥିବା ଜାଣିଲେ (ମୃତ୍ୟୁଃ ଅନ୍ତିକେ) ମନୁଷ୍ୟ ସତର୍କ ହୋଇଯିବ । ବେଳ ଥାଉ ଥାଉ ବନ୍ଧ ବାନ୍ଧିବ । ଭୌତିକ ସୁଖ ଭୋଗ ଲାଳସା ଛାଡ଼ି ସେ ଆଧ୍ୟାତ୍ମ ସୁଖ ସାଇତିବାକୁ ଗୁରୁଙ୍କ ଶରଣ ପଶିବାରେ ବାଧ ହେବ ହିଁ ହେବ ।

ପ୍ରଶ୍ନ-୧୦୬: ଇହଲୋକରେ ମନୁଷ୍ୟର ଆୟୁଷ ଦେବଲୋକ ଆୟୁଷ ତୁଳନାରେ ବହୁତ କମ୍ । ମର୍ତ୍ତ୍ୟଲୋକ ସୁଖକୁ ଦୃଷ୍ଟ ସୁଖ ଓ ପରଲୋକର ସ୍ୱର୍ଗସୁଖକୁ ଶ୍ରୁତ ସୁଖ କୁହାଯାଏ । ମୃତ୍ୟୁ ଲୋକରେ କଳିଯୁଗରେ ମନୁଷ୍ୟର ଆୟୁଷ ଶହେ ବର୍ଷ ।

ସ୍ୱର୍ଗଲୋକରେ ଇନ୍ଦ୍ର ଆଦି ଦେବତାଙ୍କ ଆୟୁଷ ଏକ ମନ୍ୱନ୍ତର ଅର୍ଥାତ୍ ତିରିଶ କୋଟି ପଞ୍ଚାବନ ଲକ୍ଷ ବର୍ଷରୁ କିଛି ଅଧିକ । କଠ ଉପନିଷଦରେ ସ୍ୱର୍ଗରୁ ଯିବାର ଯଜ୍ଞ ବିଧି ବର୍ଣ୍ଣିତ ହୋଇଛି ନଚିକେତାଙ୍କ ଦ୍ୱାରା । ସ୍ୱର୍ଗ ସୁଖରେ କେଉଁ କେଉଁ ପ୍ରଲୋଭନ ସବୁ ଖଞ୍ଜାଯାଇଛି ଭୌତିକ୍‌ବାଦୀ ଲୋକ ନିମିତ୍ତ ?

**ସ୍ତ୍ରିଭିଃ କାମଗ ଯାନେନ କିଙ୍କିଣୀ ଜାଲ ମାଲିନା ।**
**କ୍ରୀଡ଼ନ୍ ନ ବେଦ-ଆତ୍ମପାତଂ ସୁରା କ୍ରୀଡ଼େଷୁ ନିର୍ବୃତଃ ॥୨୯॥**

ଉ. ସ୍ୱର୍ଗରେ କଳ୍ପ ବୃକ୍ଷ, ଚିନ୍ତାମଣି ପ୍ରସ୍ତର ନିର୍ମିତ ବାସ ଭବନ ଓ କାମଧେନୁର ବନ୍ଦୋବସ୍ତ କରାଯାଇଛି ସକଳ ଭୌତିକ ଇଚ୍ଛିତ ବସ୍ତୁ ପ୍ରାପ୍ତି ଲାଗି । ଖାଇବାକୁ ସୁସ୍ୱାଦୁ ଖାଦ୍ୟ ମିଳିବ । ପିନ୍ଧିବାକୁ ମନ ଲାଗି ବସ୍ତ୍ର ଅଳଙ୍କାର ମିଳିବ । ଭୋଗ କରିବାକୁ ସୁନ୍ଦରୀ ରମଣୀ ଓ ସୁନ୍ଦର ପୁରୁଷ ମିଳିଯିବେ । ଆକାଶ ଭ୍ରମଣ ଲାଗି ବିନା ଇନ୍ଧନରେ ଇଚ୍ଛା ଅନୁସାରେ ଚାଲୁଥିବା (କାମଗ ଯାନ) ଯାନ ମିଳିବ । ରମଣୀମାନେ ପୁରୁଷର ମନୋରଞ୍ଜନ ଲାଗି ନିଜ ଅଣ୍ଟାରେ କଟୀ ଘୁଙ୍ଗୁର ଓ ପାଦରେ ମଧୁର ଶବ୍ଦ ଝଙ୍କାର କରୁଥିବା (କିଙ୍କୀଣି ଜାଲ ମାଳିନା) ନୂପୁର ପିନ୍ଧିଥିବେ ତଥାପି ଗୋଟିଏ କଥା ବିଚରା ଦେବତାଙ୍କୁ ବିଚଳିତ କରୁଥିବ । ପ୍ରମୋଦ ଉଦ୍ୟାନର ସବୁ ସୁଖ ଦିନେ ନା ଦିନେ ଶେଷ ହୋଇଯିବ । ପୁଣି ଥରେ ଦିନେ ନା ଦିନେ ଏହି ମର୍ତ୍ତ୍ୟଲୋକରେ ତାର ପତନ (ଆତ୍ମପାତ) ହେବ । ଏ କଥାଟି ସୁଖ ଭୋଗରେ ମାତି ସେ ଆଦୌ ମନେ ପକାଇ ପାରିବ ନାହିଁ (କ୍ରୀଡ଼ନ୍ ନ ବେଦ) । ଜାଣି ପାରୁଥିଲେ ସିନା ସେଥିରୁ ବିରତ ହୋଇ (ନିବୃତ୍ତ) ହରି ଭଜନ କରିପାରନ୍ତା ।

ପ୍ରଶ୍ନ-୧୦୭: ଦେବତାମାନଙ୍କର ଯଦି ଏକ ମନ୍ୱନ୍ତର ବ୍ୟାପୀ ଏତେ ଦୀର୍ଘ ଆୟୁଷ । ଆଖି ବୁଜି ସେ ସୁଖ ସବୁ ଭୋଗ କରିଗଲେ ଅସୁବିଧା କେଉଁଠି ?

**ଲୋକାନାଂ ଲୋକପାଳାନାଂ ମଦ୍‌ଭୟଂ କଳ୍ପଜୀବିନାମ୍ ।**
**ବ୍ରହ୍ମଣୋଽପି ଭୟଂ ମତ୍ତୋ ଦ୍ୱିପରାର୍ଦ୍ଧ ପର-ଆୟୁଷଃ ॥୩୦॥**

ଉ. ଭଗବାନ କହିଲେ, ''ହେ ଉଦ୍ଧବଜୀ, ଦେବତାଙ୍କ ଆୟୁଷ ଏକ ମନ୍ୱନ୍ତର । ତାଙ୍କଠାରୁ ବେଶୀ ଆୟୁଷ ଲୋକପାଳମାନଙ୍କର ପୁରା ଏକ କଳ୍ପାନ୍ତ ବା ଚଉଦ ମନ୍ୱନ୍ତରକାଳ । ତାହାଠାରୁ ବେଶୀ ଆୟୁଷ ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କର (ବ୍ରହ୍ମଣୋଽପି) । ତାଙ୍କ ଆୟୁଷ କଳ୍ପ କଳ୍ପ ହୋଇ ଦିନ, ମାସ, ବର୍ଷ ଗଣନାରେ ଶହେ ଆଠ ବର୍ଷ (ଦ୍ୱିପରାର୍ଦ୍ଧ) । ତଥାପି ମଧ୍ୟ ବ୍ରହ୍ମାଙ୍କର ମରଣଭୟ ଅଛି ।''

ଯାହାର ମରଣ ଭୟ ଅଛି ସେ ସ୍ୱର୍ଗ ସୁଖର କି ଆନନ୍ଦ ପାଇବ ? ଅର୍ଥାତ୍ ତା ପାଇଁ ସବୁ ସୁଖ ତୁଚ୍ଛ ମାତ୍ର । ସୁଦୀର୍ଘ ଆୟୁଷ ଅଳଙ୍କାର ନୁହେଁ ତୁଚ୍ଛ କାଇଁଚ ମାଳି ।

ପ୍ରଶ୍ନ-୧୦୮ : ଜୀବର କୃତ କର୍ମ ଫଳରୁ ପରବର୍ତ୍ତୀ ଦେହ ଉତ୍ପନ୍ନ ହୁଏ । ସେଇ ଦେହରୁ ପୁଣି ନୂତନ କର୍ମ ସୃଷ୍ଟି ହେଉଥାଏ । ଜୀବ ପାପ-ପୁଣ୍ୟ କର୍ମ କରି ଫଳ ରୂପରେ ଦୁଃଖ-ସୁଖ ଭୋଗିବାକୁ ବାଧ ହୁଏ । ଜଣେ ବୈଦିକ ଧର୍ମ ପାଳନକାରୀ ହେଲେ ମଧ୍ୟ ସକାମ କର୍ମ କରି କରି ବିଷୟ ଭୋଗରେ ମାତିଲେ ସେ ଦଣ୍ଡ ଭୋଗିବାକୁ ଜନ୍ମ-ମରଣ ଚକ୍ରରେ ଘୂରିବାକୁ ବାଧ । ଈଶ୍ୱରଙ୍କୁ ଆଶ୍ରୟ ନକରି ଗୁରୁ ନିର୍ଦ୍ଦେଶିତ ସାଧନା ନକଲେ ତାର ମରଣ ଭୟ ଆଦୌ ଘୁଞ୍ଚିବ ନାହିଁ । ସେ ଭଳି ଭୌତିକବାଦୀ ଲୋକ ପରମେଶ୍ୱରଙ୍କୁ ଆଶ୍ରୟ ନକରି କି କି ନାମରେ ଭଗବାନଙ୍କ ଅବସ୍ଥିତିକୁ ବାଧ ବାଧକତାରେ ସ୍ୱୀକାର କରେ ?

**କାଳ ଆତ୍ମା-ଆଗମୋ ଲୋକଃ   ସ୍ୱଭାବୋ ଧର୍ମ ଏବ ଚ ।**
**ଇତି ମାଂ ବହୁଧା ପ୍ରାହୁଃ   ଗୁଣ ବ୍ୟତିକରେ ସତି ।।୩୪।।**

ଉ. ସେ ଯେ ଆତ୍ମା ସଂପୂର୍ଣ୍ଣ ଗୁଣାତୀତ ବା ନିର୍ଗୁଣ ସେକଥା ଆଦୌ ଜାଣିପାରେନା । ସୁତରାଂ ଭଗବାନଙ୍କୁ କାଳ, ଆତ୍ମା, ବେଦ(ଆଗମୋ), ବୈକୁଣ୍ଠ(ଲୋକଃ) ଓ ପ୍ରକୃତି(ସ୍ୱଭାବୋ) ଧର୍ମ ଇତ୍ୟାଦି ନାମରେ ସେ ସ୍ୱୀକାର କରୁଥାଏ । ଅନେକ ପ୍ରକାର ଶାନ୍ତ୍ୱନା ଦିଏ ନିଜ ମନକୁ ଏହି ମୁକ୍ତି ଓ ବନ୍ଧନର ରହସ୍ୟ ବୁଝି ନପାରି ।

ସଂକ୍ଷେପରେ ଭଗବାନଙ୍କର ଆଶ୍ରୟ ମାନିନେବା ହିଁ ସଂସାର ମୁକ୍ତି ଓ ନ ମାନିବା ହିଁ ସଂସାର ବନ୍ଧନ । ଭଗବାନ ପରିଷ୍କାର ବୁଝାଇ ଦେଲେ ଯେ ବାସ ଏତିକି ବୁଝିଲେ ଉଦ୍ଧବ ତତ୍ତ୍ୱଜ୍ଞାନୀ ହୋଇଯିବେ ।

**ଇତି ଶ୍ରୀମତ୍ ଭାଗବତେ ମହାମୁନି କୃତେ ମହାପୁରାଣେ ବୈୟାସିକ୍ୟାଂ**
**ଅଷ୍ଟାଦଶ ସାହସ୍ର୍ୟାଂ ପାରମହଂସ୍ୟାଂ ସଂହିତାୟାଂ ଏକାଦଶ ସ୍କନ୍ଧେ**
**ଦଶମୋଽଧ୍ୟାୟଃ ।**
**।।ହରିଃ ଓଁ ତତ୍ସତ୍ ।।**
**ଶ୍ରୀକୃଷ୍ଣାର୍ପଣଂ ଅସ୍ତୁ**

## ୨୫ଶ ନକ୍ଷତ୍ର - ପୂର୍ବଭାଦ୍ରା

## ଅଥ ୧୧ଶ ଅଧ୍ୟାୟଃ

### (ବଦ୍ଧଜୀବ ମୁକ୍ତଜୀବ ଲକ୍ଷଣ ଓ ଭକ୍ତ ଭାଗବତ ଲକ୍ଷଣ)

ପ୍ରଶ୍ନ-୧ : ଜୀବ ଅବିଦ୍ୟାଯୁକ୍ତ ହେଲେ ବନ୍ଧନଯୁକ୍ତ ପୁଣି ସେଇ ଜୀବ ଗୁରୁ ଆଶ୍ରୟରେ ସାଧନା କରି ବିଦ୍ୟାଯୁକ୍ତ ହେଲେ ବନ୍ଧନ ମୁକ୍ତ ହୁଏ । ଭଗବାନ ତ ସ୍ୱୟଂ ଭଗବାନ ସୁତରାଂ ସେ ନିଶ୍ଚୟ ନିତ୍ୟ ମୁକ୍ତ ହୋଇଥିବେ ?

ଶ୍ରୀ ଭଗବାନ ଉବାଚ

**ବଦ୍ଧୋ ମୁକ୍ତ ଇତି ବ୍ୟାଖ୍ୟା ଗୁଣତୋ ମେ ନ ବସ୍ତୁତଃ ।**
**ଗୁଣସ୍ୟ ମାୟାମୂଳତ୍ୱାତ୍ ନ ମେ ମୋକ୍ଷୋ ନ ବନ୍ଧନମ୍ ।।୧।।**

ଉ. ନା ନା କଦାପି ତା ସମ୍ଭବ ନୁହେଁ(ନ ବସ୍ତୁତଃ) । ଭଗବାନଙ୍କ ପାଇଁ ଏ ବନ୍ଧନ, ମୁକ୍ତି ଦୁଇ ଅବସ୍ଥାର ନିୟମ ପ୍ରଯୁଜ୍ୟ ନୁହେଁ । ବନ୍ଧନ କିମ୍ବା ମୁକ୍ତିର ସତ୍ତ୍ୱ, ରଜ, ତମୋ ଗୁଣ ତ୍ରୟରୁ ବିଚାର କରାଯାଏ (ମାୟା ମୂଳତ୍ୱାତ୍) କେବଳ ଜୀବ ପାଇଁ । ତିନି ଗୁଣ ମାୟାର କାର୍ଯ୍ୟ । ଜୀବ ଭଳି ମାୟା ମଧ ଭଗବାନଙ୍କର ଏକ ଶକ୍ତି ପୁଣି ତାଙ୍କ ଅଧୀନସ୍ଥ ଶକ୍ତି । ତେଣୁ ମାୟାର ନିଜସ୍ୱ ଶକ୍ତି କାହିଁ ଯେ ସେ ଭଗବାନଙ୍କୁ ବନ୍ଧନ କି ମୁକ୍ତ କରିପାରିବ ? ଅର୍ଥାତ୍ ଆଦୌ କରିପାରିବ ନାହିଁ ।

ପ୍ରଶ୍ନ-୨ : ଜୀବର ବନ୍ଧନ ହେତୁ ଶୋକ, ମୋହ, ସୁଖ, ଦୁଃଖ ପୁରାତନ ଦେହ ତ୍ୟାଗ ଓ ନୂତନ ଦେହ ଧାରଣ ଯଦି ଏହି ତ୍ରିଗୁଣାତ୍ମିକା ମାୟାଙ୍କର କାର୍ଯ୍ୟ ତେବେ ଜନ୍ମ-ମରଣ ଚକ୍ରରେ (ସଂସୃତି) ଘୂର୍ଣ୍ଣନ ଜଡ଼ଦେହର ବା ଚେତନ ଆତ୍ମାଙ୍କର ନହୋଇ ଏସବୁ କାର୍ଯ୍ୟ ହୁଏ କାହାର ?

**ଶୋକ ମୋହୌ ସୁଖଂ ଦୁଃଖଂ ଦେହାପତ୍ତିଃ ଚ ମାୟୟା ।**
**ସ୍ୱପ୍ନୋ ଯଥା-ଆତ୍ମନଃ ଖ୍ୟାତିଃ ସଂସୃତିଃ ନ ତୁ ବାସ୍ତବୀ ।।୨।।**

ଉ. ପ୍ରକୃତପକ୍ଷେ (ବାସ୍ତବୀ) ଜନ୍ମମରଣ (ସଂସୃତି) ମଧ କେବଳ ଅବିଦ୍ୟା ଜନିତ ଭ୍ରମ ମାତ୍ର । ସ୍ୱପ୍ନ ଥିବା ପର୍ଯ୍ୟନ୍ତ ସ୍ୱପ୍ନ ଦେଖୁଥିବା ଜୀବ ପାଇଁ ତାହା ସେତିକି ସତ୍ୟ ସ୍ୱପ୍ନରୁ ଉଠିଲେ ଜାଗ୍ରତ ଜଗତ ତା ପାଇଁ ଯେତିକି ମାତ୍ରାରେ ସତ୍ୟ ବୋଧହୁଏ । ଜାଗ୍ରତ ଅବସ୍ଥାରେ ଶୋକମୋହ ଅନୁଭବ ଓ ସ୍ୱପ୍ନରେ ସୁଖ ଦୁଃଖର ଅନୁଭବ ତାର ମନ କେବଳ ଅନୁଭବ କରିଥାଏ । ଆତ୍ମା କରି ନଥାଏ ।

ପ୍ରଶ୍ନ-୩: ବିଦ୍ୟା ଓ ଅବିଦ୍ୟା ମଧ୍ୟରୁ ତେବେ ଗୋଟିଏ ସତ୍ୟ ଓ ଅନ୍ୟଟି ମିଥ୍ୟା ହୋଇଥିବ ନିଶ୍ଚୟ ?

**ବିଦ୍ୟା-ଅବିଦ୍ୟେ ମମ ତନୂ ବିଦ୍ଧି-ଉଦ୍ଧବ ଶରୀରିଣାମ୍ ।**
**ମୋକ୍ଷବନ୍ଧକରୀ ଆଦ୍ୟେ ମାୟୟା ମେ ବିନିର୍ମିତେ ।।୩।।**

ଉ. ନା ନା କଥାଟା ଠିକ୍ ସେପରି ବୁଝିବା (ବିଦ୍ଧି) ଅନୁଚିତ । ଜୀବର କଲ୍ୟାଣ ନିମିତ୍ତ ସ୍ୱୟଂ ଭଗବାନ ବହୁତ ଭାବିଚିନ୍ତି ବିଦ୍ୟା ଓ ଅବିଦ୍ୟା ଉଭୟଙ୍କୁ ସୃଷ୍ଟି କରିଛନ୍ତି ସୃଷ୍ଟି ପୂର୍ବରୁ (ଆଦ୍ୟେ) ତାଙ୍କ ଅନିର୍ବଚନୀୟ/ଅବୋଧ/ମାୟାକୁ ସୃଷ୍ଟି କରି । ତ୍ରିଗୁଣାତ୍ମିକା ମାୟା ଅବିଦ୍ୟା ବଳରେ ସୃଷ୍ଟି ସର୍ଜନା ହେଉଛି, ସୃଷ୍ଟି ପାଳନ ହେଉଛି ପୁଣି ସୃଷ୍ଟି ସଂହାର କ୍ରିୟା ମଧ୍ୟ ହେଉଛି । ପୁଣି ବିଦ୍ୟାବଳରେ ସୃଷ୍ଟି ରହସ୍ୟ ଜୀବ ଭଗବାନଙ୍କ ଶରଣାଗତ ହେଉଛି, ମାୟାମୁକ୍ତ ଅବିଦ୍ୟା ମୁକ୍ତ ହେଉଛି । ଦିବ୍ୟଆନନ୍ଦ ପ୍ରାପ୍ତ ହେଉଛି ।

ପ୍ରଶ୍ନ-୪: ବନ୍ଧନ ଓ ମୁକ୍ତି ଯେ ମାୟାର ଅଚିନ୍ତନୀୟ କାରସାଦୀ ତାକୁ କେଉଁ ଦୃଷ୍ଟାନ୍ତ ମାଧ୍ୟମରେ ଉଦ୍ଧବଜୀଙ୍କ ସମ୍ମୁଖରେ ଉପସ୍ଥାପନ କଲେ ମାୟାପତି ଶ୍ରୀକୃଷ୍ଣ ?

**ସୁପର୍ଣ୍ଣୌ-ଏତୌ ସଦୃଶୌ ସଖାୟୌ**
**ଯଦୃଚ୍ଛୟା-ଏତୌ କୃତନୀଡ଼ୌ ଚ ବୃକ୍ଷେ ।**
**ଏକଃ ତୟୋଃ ଖାଦତି ପିପ୍ପଲାତ୍ ନ**
**ଅନ୍ୟୋ ନିରନ୍ନୋଽପି ବଳେନ ଭୂୟାତ୍ ।।୬।।**

ଉ. ଜୀବ ଓ ବ୍ରହ୍ମ ଉଭୟେ ସତ୍ ଚିତ୍ ଆନନ୍ଦମୟ (ସଦୃଶୌ) । ଜଣେ ମାୟାଧୀନ କିମ୍ବା ମାୟାତୀତ ହେଲା ବେଳେ ଅଉ ଜଣେ ମାୟାଧୀଶ । ସଂସାର ଏକ ନଶ୍ୱର ଅଶ୍ୱତ୍ଥ ବୃକ୍ଷ (ପିପ୍ପଳ) ହେଲେ ମାନବ ଦେହ ମଧ୍ୟ ଏକ କ୍ଷଣସ୍ଥାୟୀ ବୃକ୍ଷ । ତାର ହୃଦୟରେ ଜୀବ ପରମ ଦୁଇଟି ପକ୍ଷୀ (ସୁପର୍ଣ୍ଣୌ) ବସା ବାନ୍ଧି ରହିଥାଆନ୍ତି । ଜୀବ ପକ୍ଷୀ ସଂସାରି କର୍ମ କରି ନିଜକୁ କର୍ତ୍ତା ଭାବେ । ଫଳ ଭୋଗିବାକୁ ଦାବି କରେ (ବଳେନ ଭୂୟାତ୍) । ସୁଖ ଦୁଃଖ ଦୁଇ ପ୍ରକାର ଫଳ ଭୋଗ କରି ନିଜ କୃତ କର୍ମର କର୍ମଫଳ ଭୋଗେ । ପରମାତ୍ମା ରୂପକ ଅନ୍ୟ ପକ୍ଷୀଟି କିନ୍ତୁ ସାକ୍ଷୀ ରୂପରେ ସେହି ଦେହ ବୃକ୍ଷରେ ସଦାସର୍ବଦା ଅବସ୍ଥାନ କରେ ମାତ୍ର । ସୁଖ ଦୁଃଖ କିଛି ଭୋଗ କରିବାକୁ ପଡ଼େ ନା ତାକୁ । କାରଣ ସେ ସ୍ୱୟଂ ଅକର୍ତ୍ତା ।

ପ୍ରଶ୍ନ-୫ : ଜୀବାତ୍ମା ଓ ପରମାତ୍ମା ଉଭୟେ ସ୍ୱରୂପତଃ ଏକ, ନିତ୍ୟ ସଖା ପୁଣି ଏକ ବୃକ୍ଷରେ ରହନ୍ତି । ଜୀବାତ୍ମା ଅନାଦି କାଳରୁ ବଦ୍ଧ ଓ ପରମାତ୍ମା ନିତ୍ୟମୁକ୍ତ ହେବାର ରହସ୍ୟ ତେବେ କଅଣ ?

**ଆତ୍ମାନଂ ଅନ୍ୟଂ ଚ ସ ବେଦ ବିଦ୍ୱାନ୍**
**ଅପିପ୍ପଳାଦୋ ନ ତୁ ପିପ୍ପଳାଦଃ ।**
**ଯୋଽବିଦ୍ୟୟାଯୁକ୍ ସ ତୁ ନିତ୍ୟବଦ୍ଧୋ**
**ବିଦ୍ୟାମୟୋ ଯଃ ସ ତୁ ନିତ୍ୟମୁକ୍ତଃ ॥୭॥**

ଉ. ବିଷୟ ସୁଖ ଲାଳସାରେ କର୍ମ ନକରି ଫଳ ନ ଖାଉଥିବା ପରମାତ୍ମା ପକ୍ଷୀ ନିଜକୁ ଜାଣନ୍ତି ଓ ଅନ୍ୟ ପକ୍ଷୀକୁ ମଧ୍ୟ ଜାଣନ୍ତି ବୋଲି ସେ ବିଦ୍ୟାମୟ । ଅତଏବ ସେ ନିତ୍ୟମୁକ୍ତ । ଅନ୍ୟ ପକ୍ଷରେ ସୁଖ ଲାଳସାରେ ବିଷୟୀ ଜୀବାତ୍ମା କର୍ମ କରି ଫଳ ଖାଉଥିବା ଜୀବ ନିଜକୁ ଜାଣେନା ଓ ଅନ୍ୟ ପକ୍ଷୀ ପରମାତ୍ମାଙ୍କୁ ମଧ୍ୟ ଜାଣେନା । ସେଥିପାଇଁ ସେ ଅବିଦ୍ୟାଯୁକ୍ତ ଏବଂ ନିତ୍ୟ ବଦ୍ଧ ଭାବରେ ଜଣାଶୁଣା ।

ଜଣେ ସାଧୁଙ୍କ ଦେହରେ ମୁଁ ଆତ୍ମା ବୋଲି ଅନୁଭବ କରୁଥିବା ପକ୍ଷୀ ଦେହରେ ଥାଇ ମଧ୍ୟ ଦେହଠାରୁ ଭିନ୍ନ ବୋଲି ଜାଣିଥାଏ । କାରଣ ସେ ସ୍ୱପ୍ନରୁ ଉଠିଥିବା ଜଣେ ଜାଗ୍ରତ ଜୀବାତ୍ମା । ଦେହକୁ ମୁଁ ଭାବୁଥିବା ବିଷୟୀ ଜୀବ ବିଦେହୀ ଆତ୍ମା ହୋଇ ମଧ୍ୟ ନିଜକୁ ଦେହଠାରୁ ଅଭିନ୍ନ ମାନିବସେ । କାରଣ ସେ ସ୍ୱପ୍ନ ଦେଖୁଥିବା ଗୋଟିଏ ବିଷୟୀ ଜୀବାତ୍ମା ।

ପ୍ରଶ୍ନ-୬: ଜୀବର ପୂର୍ବ ପୂର୍ବ ଜନ୍ମମାନଙ୍କର କୃତକର୍ମର ଫଳକୁ ପ୍ରାରବ୍ଧ, ଦୈବ, ପ୍ରକୃତି ବା ସ୍ୱଭାବ ବୋଲି କୁହାଯାଏ । ଏସବୁ କର୍ମ ଓ କର୍ମଫଳ ତ୍ରିଗୁଣମୟୀ ଅତଏବ ମାୟାଯୁକ୍ତ । ଜୀବର ଦେହ ମାୟା ନିର୍ମିତ ଏହି କାରଣରୁ । ପୁଣି ନୂତନ ଦେହରେ କର୍ମର ପ୍ରବୃତ୍ତି ମଧ୍ୟ ହୁଏ ଏହି ମାୟା ହେତୁ । ଜୀବ ଅବିଦ୍ୟା ଆଚ୍ଛନ୍ନ ହେତୁ ନିଜକୁ ଦେହ ମାନେ ଓ କର୍ମର କର୍ତ୍ତା ପଣିଆ ଓ ଭୋକ୍ତା ପଣିଆ ଜାହିର କରି ବନ୍ଧନରେ ପଡ଼େ । ଜୀବର ଶରୀର ଜୀବର ଅଧୀନ ନୁହେଁ ବରଂ ତାର କର୍ମଫଳ (ଦୈବ )ଅଧୀନ । ଦେହ ଯଦି ଜଡ଼ ଓ ଆତ୍ମା ପୁଣି ଅକର୍ତ୍ତା ତେବେ ଅସଲି କର୍ତ୍ତା ଭୋକ୍ତା କିଏ ?

**ଦୈବ-ଅଧୀନେ ଶରୀରେଽସ୍ମିନ ଗୁଣଭାବ୍ୟେନ କର୍ମଣା ।**
**ବର୍ତ୍ତମାନୋଽବୁଧଃ ତତ୍ର କର୍ତ୍ତା-ଅସ୍ମି-ଇତି ନିବଦ୍ଧ୍ୟତେ ॥୧୦॥**

ଉ. ଗୁଣରୁ ଦେହ ତିଆରି ହୁଏ । ପୁଣି ସେଇ ଦେହଦ୍ୱାରା କର୍ମ କରାଯାଇ ଗୁଣ ସଂଗୃହୀତ ହେଉଥାଏ ଜନ୍ମ ଜନ୍ମ ଧରି । ଜଡ଼ ଦେହକୁ ଚେତନ ଆତ୍ମାକୁ ସଂଯୋଗ କରୁଥିବା ସୂକ୍ଷ୍ମ ଶରୀର ମନ, ବୁଦ୍ଧି, ଚିତ୍ତ ଓ ଅହଂକାର ନିଜକୁ କର୍ତ୍ତା ଭୋକ୍ତା ମାନି ସୁଖ ଦୁଃଖ ଭୋଗନ୍ତି । ଏହି ରହସ୍ୟକୁ ଯେ ଜାଣେ ସେ ବିଦ୍ୱାନ୍ ଓ ଯେ ନ ଜାଣେ ସେ ବିଷୟୀ ଅବିଦ୍ୱାନ (ଅବୁଧ) ।

ପ୍ରଶ୍ନ-୭: ବଦ୍ଧ ଜୀବଟିଏ ମୁକ୍ତ ହେବା ପାଇଁ ମନୁଷ୍ୟ ଦେହଟିଏ ପାଏ । ସୁତରାଂ ଦେହରେ ରହିବାକୁ ସେ ବାଧ । ତେବେ ଜୀବ ନିଜକୁ ମୁକ୍ତ କରିବ କି ଉପାୟରେ ?

**ଯସ୍ୟ ସ୍ୟୁଃ ବୀତସଂକଳ୍ପାଃ ପ୍ରାଣ-ଇନ୍ଦ୍ରିୟ ମନୋ ଧିୟାମ୍ ।**
**ବୃତ୍ତୟଃ ସ ବିନିର୍ମୁକ୍ତୋ ଦେହସ୍ଥୋଽପି ହି ତଦ୍‌ଗୁଣୈଃ ॥୧୪॥**

ଉ. ଯାହାର ପ୍ରାଣ, ଇନ୍ଦ୍ରିୟ, ମନ, ବୁଦ୍ଧି ଭୌତିକ ଲାଭ ବା ବିଷୟ ସୁଖ ଇଚ୍ଛାରୁ ମୁକ୍ତ ସେ ଜୀବ ଦେହରେ ଥାଇ ମଧ୍ୟ ସଦା ମୁକ୍ତ ଅଟେ ।

ପ୍ରଶ୍ନ-୮: ମୁକ୍ତ ପୁରୁଷକୁ କାହିଁକି ସମଦର୍ଶୀ (ସମଦୃଙ୍) ମୁନି କୁହାଯାଏ ?

**ନ ସ୍ତୁବୀତ ନ ନିନ୍ଦେତ କୁର୍ବତଃ ସାଧୁ-ଅସାଧୁ ବା ।**
**ବଦତୋ ଗୁଣ ଦୋଷାଭ୍ୟାଂ ବର୍ଜିତଃ ସମଦୃଙ୍ ମୁନିଃ ॥୧୬॥**

ଉ. ଯେଉଁ ସାଧକ ନିଜେ ଖୁସିହେବା ପାଇଁ ଅନ୍ୟର ଭଲ କର୍ମର ପ୍ରଶଂସା କରେ ନାହିଁ । ପୁଣି ମନ୍ଦ କର୍ମର ନିନ୍ଦା ମଧ୍ୟ କରେ ନାହିଁ, ଅନ୍ୟ କାହାରି ଦୋଷ ଗୁଣ ଆଲୋଚନା ନକରି ମୌନ ରହେ ସେ ହିଁ କେବଳ ମୁନି ପଦବାଚ୍ୟ ।

ପ୍ରଶ୍ନ-୯: କେଉଁଭଳି ମୁନିଙ୍କୁ ଆତ୍ମାରାମ ବୋଲି କୁହାଯାଏ ?

**ନ କୁର୍ଯ୍ୟାତ୍ ନ ବଦେତ୍ କିଞ୍ଚିତ୍ ନ ଧ୍ୟାୟେତ୍ ସାଧୁ-ଅସାଧୁ ବା ।**
**ଆତ୍ମାରାମୋଽନୟା ବୃତ୍ତ୍ୟା ବିଚରେତ୍ ଜଡ଼ବତ୍ ମୁନିଃ ॥୧୭॥**

ଉ. ଭୌତିକ ସଂସାର ସୁଖ ଲାଳସା ତ୍ୟାଗ କରିଥିବା ଲୋକ ମୁନି । ଏବେ ଗୁଣାତୀତ ହୋଇ ନିଜର ଶରୀର ରକ୍ଷଣ ସୁଖ ତ୍ୟାଗ କରି ସେ ମୁନି ପୁଣି ନିଷ୍କ୍ରିୟ ହୋଇଯାଏ । ସେ ଯେ ପାପ-ପୁଣ୍ୟ ଉଭୟ କାର୍ଯ୍ୟ କରେ ନାହିଁ, ନିଜ ସୁଖରେ

କାହାକୁ କିଛି ବି କହେ ନାହିଁ, ମନରେ କିଛି ବି ସଂସାର ଧ୍ୟାନ ମଧ୍ୟ କରେ ନାହିଁ ମୂର୍ଖ (ଜଡ଼) ଭଳି ଉଦାସୀନ ଭାବରେ ବୁଲୁଥାଏ ସେ ଆତ୍ମାରାମ ମୁନି । ସେ କେବଳ ସଂସାରରେ ପରମେଶ୍ୱରଙ୍କର କୃପା ପ୍ରାପ୍ତିର ଅଧିକାରୀ ପୁଣି ଅନ୍ୟ ସତ୍‌ପାତ୍ରରେ ଈଶ୍ୱରୀୟ କୃପା ପ୍ରଦାନ କରିବାର ଅଧିକାରୀ । କୌଣସି ବ୍ରହ୍ମଜ୍ଞାନ ଆଲୋଚନା ସଭାରେ ସେଭଳି ଆତ୍ମାରାମ ମୁନି ଉପସ୍ଥିତ ଥିଲେ ମଧ୍ୟ ତର୍କରେ ଭାଗ ନନେଇ ନୀରବ ରହିବାକୁ ପସନ୍ଦ କରନ୍ତି ।

ପ୍ରଶ୍ନ-୧୦: ବେଦକୁ ଶବ୍ଦ ବ୍ରହ୍ମ କୁହାଯାଏ । ବେଦ ଜ୍ଞାନ ହାସଲ କରିଥିବା ଲୋକ (ଶବ୍ଦବ୍ରହ୍ମଣି ନିଷ୍ଣାତୋ) ଯଦି ଆତ୍ମାରାମ ମୁନି ହୋଇଗଲେ ସେ ପରମେଶ୍ୱରଙ୍କ ସୃଷ୍ଟିରେ କଅଣ ଜଣେ ବନ୍ଦନୀୟ ପୁରୁଷ କି ?

**ଶବ୍ଦ ବ୍ରହ୍ମଣି ନିଷ୍ଣାତୋ ନ ନିଷ୍ଣାୟାତ୍ ପରେ ଯଦି ।**
**ଶ୍ରମଃ ତସ୍ୟ ଶ୍ରମଫଳୋ ହି-ଅଧେନୁଂ ଇବ ରକ୍ଷତଃ ॥୧୮॥**

ଉ. ବିଲକୁଲ ବନ୍ଦନୀୟ ନୁହନ୍ତି । ନିନ୍ଦନୀୟ ଅବଶ୍ୟ ନୁହନ୍ତି । ଯଦି ଈଶ୍ୱରଙ୍କଠାରେ ଭକ୍ତି ନହେଲା (ନ ନିଷ୍ଣାୟାତ୍ ପରେ) ତାଙ୍କର ସେ ଶାବ୍ଦିକ ଜ୍ଞାନ ଲାଭ କାଣି କଉଡ଼ିକୁ ଯୋଗ୍ୟ ନୁହେଁ । ନା ସେ ଲୋକ ନିଜେ ଉଦ୍ଧାର ହୋଇପାରିବ ନା ଆଉ କାହାରି ଉଦ୍ଧାର ହେବାରେ ସହାୟକ ହେବ । ଦୁଗ୍ଧ ଦେଉନଥିବା ଗାଈ (ଅଧେନୁଂ) ପାଳି ଗୋପାଳ ଯେମିତି ଦୁଗ୍ଧ ଟିକିଏ ନ ପାଇ ହରବର ହୁଏ ଠିକ୍ ସେଇ ଅବସ୍ଥା ହୁଏ ଭକ୍ତିହୀନ ଆତ୍ମାରାମ ମୁନି ଜ୍ଞାନୀ ସାଧକଙ୍କର ।

ପ୍ରଶ୍ନ-୧୧: ସ୍ୱର୍ଗ ସୁଖ ପଛରେ ନ ଧାଇଁ କର୍ମକାଣ୍ଡକୁ ତ୍ୟାଗ କରି ଶୁଷ୍କ ଜ୍ଞାନ କାଣ୍ଡ ପଛରେ ଧାଇଁବା ସାଧକକୁ କ'ଣ ସତରେ ଦୁଃଖୀ ବୋଲି କୁହାଯିବ କି ?

**ଗାଂ ଦୁଗ୍ଧ ଦୋହାଂ ଅସତୀଂ ଚ ଭାର୍ଯ୍ୟାଂ**
**ଦେହଂ ପରାଧୀନଂ ଅସତ୍ ପ୍ରଜାଂ ଚ ।**
**ବିତ୍ତଂ ତୁ-ଅତୀର୍ଥକୃତଂ ଅଙ୍ଗ ବାଚଂ**
**ହୀନାଂ ମୟା ରକ୍ଷତି ଦୁଃଖ ଦୁଃଖୀ ॥୧୯॥**

ଉ. ଭଗବାନ କହିଲେ,'' ହେ'ପ୍ରିୟ ଉଦ୍ଧବ (ଅଙ୍ଗ) ! ଦୁଧ ଦେଉନଥିବା ଗାଈ ପାଳୁଥିବା ଗୋପାଳ, ଚରିତ୍ରହୀନା ପତ୍ନୀର ପତି, ପରଘରେ ଗୋତି ଖଟୁଥିବା ଶ୍ରମିକ, ଆଦେଶ ମାନୁନଥିବା ଅବିନୀତ ସନ୍ତାନର ପିତାମାତା, ତୀର୍ଥଯାତ୍ରା ଆଦିରେ

ଧନ ବ୍ୟୟ କରୁନଥିବା ଧନୀଲୋକ, ହରି ନାମ, ଲୀଳା, ଗୁଣ ଆଦି କରାଯାଉନଥିବା କଥା କହୁଥିବା ବକ୍ତା ଏ ଛଅ ପ୍ରକାରର ମନୁଷ୍ୟ ସଂସାରରେ କେବଳ ଦୁଃଖୀ ନୁହନ୍ତି ବରଂ ସକଳ ଦୁଃଖୀମାନଙ୍କ ମଧ୍ୟରେ ମହାଦୁଃଖୀ (ଦୁଃଖ ଦୁଃଖୀ) । ଠିକ୍ ଚାଉଳ ପାଇବା ପାଇଁ ଚଷୁ କୁଟିବା ଭଳି ଏ  ଅତ୍ୟନ୍ତ କଷ୍ଟକର ଜ୍ଞାନମାର୍ଗର ପ୍ରୟାସ ।''

ପ୍ରଶ୍ନ-୧୨ : ଯେଉଁ ପୁସ୍ତକରେ ଭଗବାନଙ୍କର ନାମ, ଗୁଣ, ଲୀଳା, ମାହାତ୍ମ୍ୟ ଆଦିର ବର୍ଣ୍ଣନା ନାହିଁ ସେ ସବୁ ମନୁଷ୍ୟର ଅପାଠ୍ୟ ଓ ଅଶ୍ରବଣୀୟ ମଧ୍ୟ । ସେ ସବୁ ମନୁଷ୍ୟର ଅହଂକାର ନାଶ ନ କରି ବରଂ ଅହଂକାର ବୃଦ୍ଧିର କାରଣ ହେବେ ।

ମନୁଷ୍ୟ ତାର ଅହଂକାର ତ୍ୟାଗ ପାଇଁ କି ମାର୍ଗ ବାଛିନେଲେ ତାର କଲ୍ୟାଣ ହୋଇପାରିବ ?

**ଏବଂ ଜିଜ୍ଞାସୟା-ଅପୋହ୍ୟ          ନାନାତ୍ୱ ଭ୍ରମଂ ଆତ୍ମନି ।**
**ଉପାରମେତ ବିରଜଂ          ମନୋ ମୟି-ଅର୍ପ୍ୟ ସର୍ବଗେ ।।୨୧।।**

ଉ. ସଦ୍‌ଗୁଣ ସଂଗ୍ରହ କରି ସାଧକ ରଜତମ ଗୁଣରୁ ମୁକ୍ତ ହୁଏ (ଅପୋହ୍ୟ) । ସତ୍‌ସଙ୍ଗ ସଦ୍‌ଗୁରୁ ଆଶ୍ରୟରେ ହରି ଭଜନ ନକଲେ ସେଇ ଜ୍ଞାନ ତାକୁ ଅହଂକାରରେ ବୁଡ଼େଇ ଦେବ । ସୁତରାଂ ମନକୁ ଓ ବୁଦ୍ଧି ଉଭୟଙ୍କୁ ସର୍ବବ୍ୟାପକ ଈଶ୍ୱରଙ୍କୁ(ସର୍ବଗେ) ସମର୍ପଣ କରିବା (ଉପାରମେତ ବିରଜଂ) ଅସଲି ସାଧନା ଅଟେ ଯାହା ପାଇଁ ଲୋଡ଼ା ସଂପୂର୍ଣ୍ଣ ସଂସାର ବୈରାଗ୍ୟ ସହିତ ସଦ୍‌ଗୁରୁ ଶରଣାଗତି ।

ପ୍ରଶ୍ନ-୧୩: ସଂସାର ଆସକ୍ତ ମନୁଷ୍ୟ ପକ୍ଷେ ଅନ୍ୟ କାହାକୁ ନିଜର ମନ ବୁଦ୍ଧି ସମର୍ପଣ କରିବା ଅସମ୍ଭବ କଥା । ଏଥିଲାଗି ଅସମର୍ଥ (ଯଦି-ଅନୀଶଃ) ସାଧକ ତେବେ କ'ଣ କରିବା ଉଚିତ ?

**ଯଦି-ଅନୀଶୋ ଧାରୟିତୁଂ          ମନୋ ବ୍ରହ୍ମଣି ନିଶ୍ଚଳମ୍ ।**
**ମୟି ସର୍ବାଣି କର୍ମାଣି          ନିରପେକ୍ଷଃ ସମାଚର ।।୨୨।।**

ଉ. କର୍ମଫଳ ଆସକ୍ତିକୁ ଅପେକ୍ଷା ନରଖି(ନିରପେକ୍ଷଃ) ସାଧକ ସଂସାରର ସକଳ ଶାରୀରିକ ଓ ସଂସାରିକ କର୍ମ କରିଗଲେ ପାଇଟି ଛିଣ୍ଡିବ । ଏହା ହିଁ ଗୀତା ବର୍ଣ୍ଣିତ ନିଷ୍କାମ ସରଳ କର୍ମଯୋଗ ମାର୍ଗ ।

ପ୍ରଶ୍ନ-୧୪: ଯେଉଁ ସାଧକ ଅତି ବିରକ୍ତ ନୁହେଁ କିମ୍ବା ଅତି ସଂସାର ଆସକ୍ତ ନୁହେଁ ତା ପାଇଁ କଲ୍ୟାଣକାରୀ ମାର୍ଗ କିସ ?

**ଶ୍ରଦ୍ଧାଳୁଃ ମତ୍‌କଥାଃ ଶୃଣ୍ୱନ୍ ସୁଭଦ୍ରା ଲୋକ ପାବନୀଃ ।**
**ଗାୟନ୍ ଅନୁସ୍ମରନ୍ କର୍ମ ଜନ୍ମ ଚ-ଅଭିନୟନ୍ ମୁହୁଃ ॥୨୩॥**

ଉ. ଏଭଳି ସାଧକଙ୍କ ସଂଖ୍ୟା ଭାରତ ଜନ୍ମିତ ମନୁଷ୍ୟମାନଙ୍କ ମଧ୍ୟରେ ବହୁତ ବେଶୀ ଦେଖାଯାଆନ୍ତି । ସେମାନେ ଶ୍ରଦ୍ଧାମୁକ୍ତ ହୋଇ ସତ୍‌ସଙ୍ଗ କରନ୍ତି ବୈଷ୍ଣବ ଗୁରୁଙ୍କ ନିର୍ଦ୍ଦେଶରେ । ହରି କଥା ହରିନାମ, ହରିଲୀଳା ନିତ୍ୟ ପ୍ରତିଦିନ ବାରମ୍ୱାର ଶ୍ରବଣ, କୀର୍ତ୍ତନ, ଅଭିନୟ ଆଦି କରି ସକଳ ସାଂସାରିକ ଓ ଶାରୀରିକ କର୍ମ କରି ସେମାନେ ଭକ୍ତ ଭାବରେ ଗୃହସ୍ଥାଶ୍ରମରେ ମହା ଆନନ୍ଦରେ ଦିନ କାଟନ୍ତି ।

ପ୍ରଶ୍ନ-୧୫: ବଣ ଜଙ୍ଗଲରେ କଷ୍ଟକର ଜୀବନ ନ ବିତେଇ ଏ ସରଳ ଭକ୍ତିମାର୍ଗରେ ସେମାନେ କେଉଁ କେଉଁ ଲକ୍ଷ୍ୟ ପ୍ରାପ୍ତ ହୋଇପାରିବେ ?

**ମଦର୍ଥେ ଧର୍ମ କାମ-ଅର୍ଥାନ୍ ଆଚରନ୍ ମତ୍ ଅପାଶ୍ରୟଃ ।**
**ଲଭତେ ନିଶ୍ଚଳାଂ ଭକ୍ତିଂ ମୟି-ଉଦ୍ଧବ ସନାତନେ ॥୨୪॥**

ଉ. ଠାକୁରଜୀ ସିଧା ସଳଖ ଘୋଷଣା କରି କହିଲେ, ''ହେ ଉଦ୍ଧବ, ଗୁରୁଙ୍କୁ ଭଗବାନ (ମୁଁ ବୋଲି) ମାନି ମୋ ଆଶ୍ରୟରେ ରହି ମୋତେ ଧର୍ମ, ଅର୍ଥ, କାମ ଆଦି କର୍ମ ଓ କର୍ମ ଫଳକୁ ଅର୍ପଣ କଲେ ମୋଠାରେ ଐକାନ୍ତିକ (ନିଶ୍ଚଳାଂ) ଭକ୍ତି ଲାଭ କରନ୍ତି ଯାହାକୁ ବୈଦିକ ଶାସ୍ତ୍ରରେ ଭାଗବତ ଧର୍ମ (ସନାତନେ) କୁହାଯାଇଛି ।

ସେଭଳି ସାଧକମାନେ ଅତି ସହଜରେ (ସଂପୂର୍ଣ୍ଣ ଅହଂକାର ମୁକ୍ତ ହୋଇ) ମୋ ଚରଣ କମଳ, ମୋ କୃପା, ମୋ ପ୍ରତି ନିଷ୍କାମ ପ୍ରେମ ସବୁ କିଛି ପ୍ରାପ୍ତ ହୁଅନ୍ତି । ଏସବୁ କେବଳ ସତ୍‌ସଙ୍ଗ ଓ ସଦ୍‌ଗୁରୁଙ୍କ କମାଲ ।''

ପ୍ରଶ୍ନ-୧୬: ଯେଉଁ ସାଧୁ ସଙ୍ଗରୁ ଭଗବତ କୃପା ପ୍ରାପ୍ତି ହୁଏ ସେଭଳି ସାଧୁଙ୍କୁ କି କି ଲକ୍ଷଣ ଦେଖି ଚିହ୍ନି ହୁଏ ?

**କୃପାଳୁଃ ଅକୃତ ଦ୍ରୋହଃ ତିତିକ୍ଷୁଃ ସର୍ବଦେହିନାମ୍ ।**
**ସତ୍ୟସାରୋଽନବଦ୍ୟ-ଆତ୍ମା ସମଃ ସର୍ବ-ଉପକାରକଃ ॥୨୯॥**

ଉ. ଦୟାର୍ଦ୍ରଚିତ୍ତ, କାୟ ମନୋବାକ୍ୟରେ ଅନ୍ୟକୁ କଷ୍ଟ ଦେଉନଥିବା, ଜୀବମାତ୍ରକେ ଦୋଷ କଲେ କ୍ଷମା (ତିତିକ୍ଷୁଃ) କରିବା, ସତ୍ୟକୁ ହୃଦୟରେ ଧାରଣ କରିଥିବା, ରାଗ-ଦ୍ୱେଷ ବିହୀନ (ଅନବଦ୍ୟ ଆତ୍ମା), ନିଜର ସୁଖ-ଦୁଃଖ ଉଭୟରେ ସମାନ (ସମଃ) ଭାବନା କରିବା, ଅନ୍ୟର କଲ୍ୟାଣ କରିବା ବ୍ରତ ଧାରଣ କରିଥିବା ଇତ୍ୟାଦି ଜଣେ ଭାଗବତ ଭକ୍ତର ଲକ୍ଷଣ ।

ପ୍ରଶ୍ନ-୧୭: ଏତେ ଗୁଡ଼ିଏ ଭକ୍ତ ଲକ୍ଷଣ ମଧ୍ୟରୁ କେଉଁ କେଉଁ ଲକ୍ଷଣ ଦେଖିଲେ ଜଣେ ସର୍ବଶ୍ରେଷ୍ଠ ଭକ୍ତ ବୋଲି ସାଧକ ଚିହ୍ନିପାରିବ ?

**ଜ୍ଞାତ୍ୱା-ଅଜ୍ଞାତ୍ୱା-ଅଥ ଯେ ବୈ ମାଂ ଯାବାନ୍ ଯଃ ଚ-ଅସ୍ମି ଯାଦୃଶଃ ।**
**ଭଜନ୍ତି-ଅନନ୍ୟ ଭାବେନ୍ ତେ ମେ ଭକ୍ତତମା ମତାଃ ॥୩୩॥**

ଉ. ମୋ ପରମାତ୍ମା ସ୍ୱରୂପକୁ ତତ୍ତ୍ୱତଃ ଜାଣୁ ଅଥବା ନ ଜାଣୁ, ମୁଁ କଅଣ (ଯାବାନ୍), ମୁଁ କିଏ (ଯଃ·ଚ ଅସ୍ମି), ମୁଁ କିଭଳି (ଯାଦୃଶଃ) ଏସବୁ ପ୍ରଶ୍ନରେ ଧନ୍ଦି ନ ହୋଇ ଗୋପୀମାନଙ୍କ ଭଳି ମୋର ନିରନ୍ତର, ନିଷ୍କାମ, ଅନନ୍ୟ ଭଜନରେ ଯେ ଲାଗିଯାଏ ସେ ମୋର ଭକ୍ତଶ୍ରେଷ୍ଠ ବୋଲି ଭଗବାନ ଖୋଲି କହିଦେଲେ ।

ପ୍ରଶ୍ନ-୧୮: ଭକ୍ତର ନବଧା ଭକ୍ତି, ସେ ଅଙ୍ଗ ଭକ୍ତିମାନଙ୍କ ମଧ୍ୟରେ କେଉଁ କେଉଁ ବିଶେଷ ଭକ୍ତି ଅଙ୍ଗ ସେବନରେ ଶ୍ରୀକୃଷ୍ଣ ଅଧିକ ପ୍ରସନ୍ନ ହୁଅନ୍ତି ?

**ମତ୍‌କଥା ଶ୍ରବଣେ ଶ୍ରଦ୍ଧା ମତ୍ ଅନୁଧ୍ୟାନଂ ଉଦ୍ଧବ ।**
**ସର୍ବଲାଭ-ଉପହରଣଂ ଦାସ୍ୟେନ-ଆତ୍ମ ନିବେଦନମ୍ ॥୩୫॥**

ଉ. ହରି ଲୀଳା ମାହାତ୍ମ୍ୟ କଥା ଶ୍ରବଣରେ ରୁଚି, ଦିବ୍ୟ ରୂପ ଧ୍ୟାନ, ପାଇଥିବା ଅତି ପ୍ରିୟ ବସ୍ତୁ, ବ୍ୟକ୍ତି ଓ ପରିସ୍ଥିତିକୁ ହରିଙ୍କ ସେବାରେ ଲଗାଇ ଦେଇ ଦାସାନୁଦାସ ଭଳି କୃଷ୍ଣ ଓ କୃଷ୍ଣଭକ୍ତଙ୍କ ସେବା କଲେ ଶୀଘ୍ରାତିଶୀଘ୍ର ଶ୍ରୀହରି ପ୍ରସନ୍ନ ହୁଅନ୍ତି ।

ପ୍ରଶ୍ନ-୧୯: ଜଣେ ଶ୍ରୀକୃଷ୍ଣ ଭକ୍ତ କେଉଁ କେଉଁ ରୂପରେ ଭଗବାନଙ୍କ ସେବା କରିବା ଉଚିତ ?

**ସୂର୍ଯ୍ୟୋଽଗ୍ନିଃ ବ୍ରାହ୍ମଣୋ ଗାବୋ ବୈଷ୍ଣବଃ ଖଂ ମରୁତ୍ ଜଳମ୍ ।**
**ଭୂଃ ଆତ୍ମା ସର୍ବଭୂତାନି ଭଦ୍ର ପୂଜା ପଦାନି ମେ ॥୪୨॥**

ଉ. ବୈଷ୍ଣବମାନଙ୍କର ମୁଖ୍ୟ ପୂଜାସ୍ଥାନ ଏଗାରଟି ହେଲେ ସୂର୍ଯ୍ୟଦେବତା, ଅଗ୍ନିଦେବତା, ବ୍ରାହ୍ମଣ ଦେବତା, ଗୋମାତା, ବୈଷ୍ଣବ ଦେବତା, ଆକାଶ, ବାୟୁ, ଜଳ, ପୃଥିବୀ ମାତା, ସକଳ ଜୀବ ଆତ୍ମା ଓ ଭଗବତ ଚରଣ କମଳ ।

ପ୍ରଶ୍ନ-୨୦: ପୂଜା ସ୍ଥୁଳ ଭାବରେ ହେଉ ବା ମାନସିକ ଭାବରେ ହେଉ ଜଣେ ବୈଷ୍ଣବକୁ କାହାର ରୂପ ଧ୍ୟାନ କରିବାକୁ ହେବ ?

**ଧିଷ୍ୟେଷୁ-ଇତି-ଏଷୁ ମଦ୍‌ରୂପଂ ଶଙ୍ଖଚକ୍ର ଗଦା-ଅମ୍ବୁଜୈଃ ।**
**ଯୁକ୍ତଂ ଚତୁର୍ଭୁଜଂ ଶାନ୍ତଂ ଧ୍ୟାୟନ୍ ଅର୍ଚ୍ଚେତ୍ ସମାହିତଃ ॥୪୬॥**

ଉ. ମନକୁ ସ୍ଥିର କରି (ସମାହିତଃ), ଶଙ୍ଖ ଚକ୍ର ଗଦା ପଦ୍ମ ଧାରୀ ଶାନ୍ତାକାର ଭୁଜଗଶୟନ ପରମାତ୍ମା ଶ୍ରୀମତ୍ ନାରାୟଣ ରୂପକୁ ଧ୍ୟାନ କରିବା ଉଚିତ ।

ପ୍ରଶ୍ନ-୨୧ : ପୂଜା, ଧ୍ୟାନ, ଶ୍ରବଣ, କୀର୍ତ୍ତନ, ଜପ, ତୀର୍ଥ ସେବନ ଇତ୍ୟାଦି ଠାରୁ ଅନ୍ୟ କିଛି ଅବଶ୍ୟ କରଣୀୟ ନିୟମ ଭକ୍ତି ସାଧନ ନିମିତ୍ତ ଲାଗୁହୁଏ କି ?

**ପ୍ରାୟେଣ ଭକ୍ତି ଯୋଗେନ ସତ୍‌ସଙ୍ଗେନ ବିନା-ଉଦ୍ଧବ ।**
**ନ-ଉପାୟୋ ବିଦ୍ୟେତ ସମ୍ୟକ୍ ପ୍ରାୟଣଂ ହି ସତାଂ ଅହମ୍ ।।୪୮।।**

ଉ. ବିଲକୁଲ ଲାଗୁ ହୁଏ । ସତ୍‌ସଙ୍ଗ ବା ବୈଷ୍ଣବ ସଙ୍ଗ ସହିତ ଅନ୍ୟ ଯାହା କିଛି ଭକ୍ତି ସାଧନା କରାଯିବା ବିଧି । ନଚେତ ସବୁ ସାଧନା ମନ ମାନି, ଅହଂକାର ଯୁକ୍ତ, ଉତ୍ପାତ ବୋଲି ଭଗବାନ ବିଚାର କରିଥାନ୍ତି ।

# ଅଥ ୧୨ଶ ଅଧ୍ୟାୟଃ

## (ଜ୍ଞାନ, ବୈରାଗ୍ୟ ଠାରୁ ଅଧିକ ମହାନ୍ ସାଧୁସଙ୍ଗ ପ୍ରାପ୍ତି)

ପ୍ରଶ୍ନ-୨୨ : ବୈଦିକ ସାହିତ୍ୟରେ କର୍ମ ସାଧନ ହେଲେ ଜ୍ଞାନ ସାଧ୍ୟ । ଜ୍ଞାନ ସାଧନ ହେଲେ ବୈରାଗ୍ୟ ସାଧ୍ୟ । ଜ୍ଞାନ ବୈରାଗ୍ୟ ସାଧକକୁ ମୁକ୍ତିର ମାର୍ଗ ଦର୍ଶନ କରାନ୍ତି । ଜ୍ଞାନ ବୈରାଗ୍ୟଠାରୁ ପୁଣି କେଉଁ କଥାକୁ ଭଗବାନ ଉଦ୍ଧବଙ୍କୁ ବଡ଼ ବୋଲି କହିଲେ ?

ଶ୍ରୀ ଭଗବାନ ଉବାଚ

**ନ ରୋଧୟତି ମାଂ ଯୋଗୋ ନ ସାଂଖ୍ୟଂ ଧର୍ମ ଏବ ଚ ।**
**ନ ସ୍ୱାଧ୍ୟାୟଃ ତପଃ ତ୍ୟାଗୋ ନ-ଇଷ୍ଟା ପୂର୍ତ୍ତଂ ନ ଦକ୍ଷିଣା ।।୧।।**

ଉ. ଭଗବାନ କହିଲେ, ''ହେ ଉଦ୍ଧବ, ଅଷ୍ଟାଙ୍ଗ ଯୋଗ ସାଧନା, କପିଳ ମୁନିଙ୍କ ସାଂଖ୍ୟ ଜ୍ଞାନ, ବେଦବର୍ଣ୍ଣିତ ସ୍ୱଧର୍ମ ପାଳନ ବିଧି ଆଚରଣ, ବେଦ ଅଧ୍ୟୟନ, କଠିନ ତପସ୍ୟା, ଦାନ ଧର୍ମ (ତ୍ୟାଗୋ), କୂଅ, ପୋଖରୀ ଖୋଳାଇବା, ଧର୍ମଶାଳା ଆଦି ନିର୍ମାଣ (ଇଷ୍ଟା ପୂର୍ତ୍ତଂ), ବଡ଼ ବଡ଼ ଯଜ୍ଞ କରି ପ୍ରଚୁର ଦକ୍ଷିଣା ଦେବା ଆଦି ମୋତେ ବଶୀଭୂତ କରି ପାରନ୍ତି ନାହିଁ (ନ ରୋଧୟତି ମାଂ) ।''

ପ୍ରଶ୍ନ-୨୩: ତେବେ ତୀର୍ଥ ସେବନ, ବ୍ରତ ଆଚରଣ, ଯମ ନିୟମ ପାଳନ ଦ୍ୱାରା ଠାକୁରଜୀ ନିଶ୍ଚୟ ବଶୀଭୂତ ହୋଇପାରୁଥିବେ ?

**ବ୍ରତାନି ଯଜ୍ଞଃ ଛନ୍ଦାଂସି ତୀର୍ଥାନି ନିୟମା ଯମାଃ ।**
**ଯଥା-ଅବରୁନ୍ଧେ ସତ୍‌ସଙ୍ଗଃ ସର୍ବସଙ୍ଗ-ଅପହୋ ହି ମାମ୍ ॥୨॥**

ଉ. ନା ନା ତା ମଧ୍ୟ ଠିକ୍ ନୁହେଁ । ଅଶ୍ୱମେଧ, ବାଜପେୟ ଯଜ୍ଞ ଅନୁଷ୍ଠାନ ଓ ବେଦ ପଠନ (ଛନ୍ଦାଂସି) ଇତ୍ୟାଦି ମଧ୍ୟ ମୋତେ ପ୍ରସନ୍ନ କରିପାରନ୍ତି ନାହିଁ ସାଧୁ ସଙ୍ଗ ମୋତେ ଯେଭଳି ବଶୀକରଣ କରିପାରେ । କାରଣ ଦେବ ଦୁର୍ଲ୍ଲଭବୈଷ୍ଣବ ସଙ୍ଗ (ସତ୍‌ସଙ୍ଗଃ) ସାଧକର ସକଳ ସଂସାର ଆସକ୍ତିମାନଙ୍କୁ ସମୂଳେ ବିନାଶ କରିଥାଏ (ସର୍ବ ସଙ୍ଗ-ଅପହୋ) ।

ପ୍ରଶ୍ନ-୨୪: ସେଭଳି କିଛି ଆଖିଦୃଶିଆ ସାଧନା ନ ଥାଇ କେବଳ ସାଧୁସଙ୍ଗ ଦ୍ୱାରା ଭଗବତ ଚରଣ କମଳ କିଏ କେଉଁଠି ପ୍ରାପ୍ତ ହେବା (ମତ୍‌ପଦଂ ପ୍ରାପ୍ତା) ଦୃଷ୍ଟାନ୍ତ ଅଛି କି ?

**ବହବୋ ମତ୍‌ପଦଂ ପ୍ରାପ୍ତାଃ ତ୍ୱାଷ୍ଟ୍ରା କାୟାଧବ-ଆଦୟଃ ।**
**ବୃଷପର୍ବା ବଳିଃ ବାଣୋ ମୟଃ ଚ-ଅଥ ବିଭୀଷଣଃ ॥୫॥**

ଉ. ନିଶ୍ଚୟ ଅଛି । ପୁଣି ଅନେକ ସଂଖ୍ୟାରେ (ବହବଃ) । ତ୍ୱଷ୍ଟାପୁତ୍ର ବୃତ୍ରାସୁର ପୂର୍ବ ଜନ୍ମରେ ଚିତ୍ରକେତୁ ଗନ୍ଧର୍ବ ହୋଇ ନାରଦଜୀଙ୍କ ସଙ୍ଗ ପ୍ରାପ୍ତ, କୟାଧୁଙ୍କ ପୁତ୍ର (କୟାଧବ) ପ୍ରହ୍ଲାଦ ମାଆ ପେଟରେ ଥାଇ ନାରଦଜୀଙ୍କ ହରିକଥା ଶ୍ରବଣ କରିବା ସୁଯୋଗ ପ୍ରାପ୍ତ, ବୃଷପର୍ବା ଅସୁର ଜଣେ ବୈଷ୍ଣବ ମୁନିଙ୍କ ସାନିଧ ପ୍ରାପ୍ତ, ରାଜା ବଳି ପିତା ବିରୋଚନ ଓ ପିତାମହ ପ୍ରହ୍ଲାଦଙ୍କ ସତ୍‌ସଙ୍ଗ ପ୍ରାପ୍ତ, ବାଣାସୁର ପିତା ବଳି ଓ ଗୁରୁ ଶଙ୍କର ଭଗବାନଙ୍କ ସଙ୍ଗପ୍ରାପ୍ତ, ମୟ ଦୈତ୍ୟ ପାଣ୍ଡବମାନଙ୍କ ସଙ୍ଗପ୍ରାପ୍ତ ଓ ଅସୁର ବଂଶଜ ବିଭୀଷଣ ମଧ୍ୟ ରାମଭକ୍ତ ହନୁମାନଜୀଙ୍କ ସତ୍‌ସଙ୍ଗପ୍ରାପ୍ତ ହୋଇ ହରିକୃପା ଲାଭ କରିଛନ୍ତି ।

ପ୍ରଶ୍ନ-୨୫: ଦୈତ୍ୟ ଦାନବଙ୍କ ବ୍ୟତୀତ କଅଣ କେହି କେହି ପଶୁପକ୍ଷୀ ମନୁଷ୍ୟମାନେ ଏଭଳି ସତ୍‌ସଙ୍ଗ ପ୍ରାପ୍ତିରେ ରାମପ୍ରେମ କୃଷ୍ଣପ୍ରେମ ପ୍ରାପ୍ତ ହେବାର ଦୃଷ୍ଟାନ୍ତ ଅଛି କି ?

**ସୁଗ୍ରୀବୋ ହନୁମାନ୍ ଋକ୍ଷୋ ଗଜୋ ଗୃଧ୍ରୋ ବଣିକ୍‌ପଥଃ ।**
**ବ୍ୟାଧଃ କୁବ୍‌ଜା ବ୍ରଜେ ଗୋପ୍ୟୋ ଯଜ୍ଞପତ୍ନ୍ୟଃ ତଥା-ଅପରେ ॥୬॥**

ଉ. ମର୍କଟ ଶରୀରରେ ସୁଗ୍ରୀବ, ହନୁମାନ ଭଲ୍ଲୁକ ଦେହରେ ଜାମ୍ବବାନ୍ ହସ୍ତୀ ଦେହରେ ଗଜେନ୍ଦ୍ର, ପକ୍ଷୀ ଶରୀରେ ଜଟାୟୁ ମନୁଷ୍ୟ ଦେହରେ ତୁଳାଧାରବୈଶ୍ୟ (ବଣିକପଥଃ), ଧର୍ମ ବ୍ୟାଧ, କୁବ୍‌ଜା, ମଥୁରାର ଯାଜ୍ଞିକ ବ୍ରାହ୍ମଣଙ୍କ ପତ୍ନୀମାନେ ଓ ସର୍ବୋପରି ବ୍ରଜଗୋପାଙ୍ଗନାଙ୍କର ନିର୍ମଳ ହରିପ୍ରେମ ପ୍ରାପ୍ତିର ସମସ୍ତେ ଗୋଟିଏ ଗୋଟିଏ କୀର୍ତ୍ତିମାନ ଦୃଷ୍ଟାନ୍ତ ।

ପ୍ରଶ୍ନ-୨୬: ପୂର୍ବଶ୍ଳୋକରେ ବର୍ଣ୍ଣିତ କୃଷ୍ଣପ୍ରେମୀମାନେ ସଦ୍‌ଗୁରୁ ବରଣ କରିଥିବେ, ଜପ, ତପ, ବ୍ରତ ଓ ବେଦ ଅଧ୍ୟୟନ ଆଦି କିଛି ନା କିଛି କରିଥିବେ ନିଶ୍ଚୟ ?

**ତେ ନ-ଅଧିତ ଶ୍ରୁତିଗଣା ନ-ଉପାସିତ ମହତ୍‌ତମାଃ ।**
**ଅବ୍ରତ-ଅତପ୍ତ ତପସଃ ମତ୍‌ସଙ୍ଗାତ୍ ମାଂ ଉପାଗତାଃ ॥୭॥**

ଉ. କୌଣସି ଗୋଟିଏ ହେଲେ କଷ୍ଟକର ସାଧନା ଜୀବନରେ କରି ନାହାନ୍ତି ସେମାନେ । ସଦ୍‌ଗୁରୁ ମଧ୍ୟ ବରଣ କରିପାରିନାହାନ୍ତି (ନ-ଉପାସିତ ମହତ୍‌ତମାଃ) । କେବଳ ମୋ ସଙ୍ଗ କିମ୍ବା ମୋ ଭକ୍ତସଙ୍ଗ କରି ସେମାନେ ମୋର ଶରଣାଗତ ହୋଇଗଲେ (ମାଂ ଉପାଗତାଃ) । ତାହା ହିଁ ରାଗାନୁଗା ଭକ୍ତିର ଚାବିକାଠି ।

ପ୍ରଶ୍ନ-୨୭: ଉପରୋକ୍ତ ସକଳ ଶ୍ରୀକୃଷ୍ଣପ୍ରେମ ପ୍ରାପ୍ତ ଭକ୍ତଗଣଙ୍କ ମଧ୍ୟରେ ଅଧିକ ସୌଭାଗ୍ୟର ଅଧିକାରୀ କିଏ କିଏ ?

**କେବଳେନ ହି ଭାବେନ ଗୋପ୍ୟୋଗାବଃ ନଗା ମୃଗାଃ ।**
**ଯେଽନ୍ୟେ ମୂଢ଼ଧିୟୋ ନାଗାଃ ସିଦ୍ଧା ମାଂ ଈୟୁଃ ଅଞ୍ଜସା ॥୮॥**

ଉ. ସାନ୍ଦିପନୀ ମୁନି, ଗର୍ଗ ଆଚାର୍ଯ୍ୟ, ଶାଣ୍ଡିଲ୍ୟ ଆଦି ବେଦଜ୍ଞାନର ଅଧିକାରୀ ଥିଲେ । ମୁର୍ଖ (ମୂଢ଼ ଧିୟୋ) ନଥିଲେ । ସେମାନଙ୍କ କଥା ପଚାରେ କିଏ ? ଆଙ୍ଗୁଠି ଟିପ ମଡ଼ାଉଥିବା ଗୋପୀମାନେ, ବୃନ୍ଦାବନର ଗାଈ, ଗୋରୁ, ଅର୍ଜୁନ ବୃକ୍ଷ କିମ୍ବା ଗୋବର୍ଦ୍ଧନ ପର୍ବତ (ନଗା), ବଣ ହରିଣ, ବୃକ୍ଷ, ଲତା, ଗୁଳ୍ମ, ଯମୁନା ନଦୀ ଏମାନେ ସମସ୍ତେ କେତେ ସହଜରେ (ଅଞ୍ଜସା) ଦିବ୍ୟକୃଷ୍ଣ ପ୍ରେମ ପ୍ରାପ୍ତ ହେଲେ (ଈୟୁଃ) ସେଇତ ସବୁ ଅସଲି ଉଦାହରଣ ।

ଅନେକ କାଳ ଧରି ଅନେକ ଜନ୍ମ କଠିନ ଜପତପ କରି ମଧ୍ୟ ମୁନି ଋଷିମାନେ ଖୁବ୍ ହେଲେ ମୁକ୍ତି ସିନା ପାଇ ପାରନ୍ତି ହେଲେ ଦିବ୍ୟ କୃଷ୍ଣପ୍ରେମ ବୋଲି କିଛି

ଅଲୌକିକ ସାଧ ଚିଜ ଅଛି ବୋଲି ଟେର ପାଇପାରନ୍ତି ନାହିଁ । ଏହି ଦେବ ଦୁର୍ଲ୍ଲଭ କୃଷ୍ଣ ପ୍ରେମ ପାଇଥିବାରୁ ଗୋପ ଲଳନାମାନଙ୍କୁ କୃଷ୍ଣ ମିଳନରେ କଳ୍ପଟିଏ ମଧ୍ୟ କ୍ଷଣକ ଭଳି ଲାଗୁଥିଲା ଓ କୃଷ୍ଣ ବିରହରେ କ୍ଷଣଟିଏ ମଧ୍ୟ କଳ୍ପ ଭଳି ବୋଧ ହେଉଥିଲା । ସମସ୍ତଙ୍କ ଅଲକ୍ଷ୍ୟରେ ସେମାନେ ମୁନିମାନଙ୍କ ଭଳି ସଦା ଜୀବନ୍ତ ସମାଧିରେ ଅବସ୍ଥାନ କରୁଥିଲେ ଯାହାର ନାମ ନିର୍ବିକଳ୍ପ ସମାଧି । ଠିକ୍ ସେଇଭଳି ଯେଉଁ ଭଳି ନଦୀମାନେ ନିଜର ନାମ ରୂପ ପରିଚୟ ହଜାଇ ଦେଇ ସମୁଦ୍ରରେ ମିଶି ପରମ ଆନନ୍ଦରେ ଆତ୍ମହରା ହୁଅନ୍ତି ।

ପ୍ରଶ୍ନ-୨୮: କୃଷ୍ଣଙ୍କର କେଉଁ ସ୍ୱରୂପ ଦର୍ଶନ କରି ଗୋପାଙ୍ଗନା ଗଣ ଓ ବ୍ରଜଧାମର ଲତା, ବଣ, ପଶୁପକ୍ଷୀ, ନଦୀ ପର୍ବତ ସବୁ ଭଗବାନଙ୍କୁ ନିଜର ଅହଂକାର ସମର୍ପଣ କରି ଶରଣାଗତ ହୋଇଗଲେ ?

**ମତ୍‌କାମା ରମଣଂ ଜାରଂ ଅସ୍ୱରୂପବିଦୋଽବଲାଃ ।**
**ବ୍ରହ୍ମଂ ମାଂ ପରମଂ ପ୍ରାପୁଃ ସଙ୍ଗାତ୍ ଶତ ସହସ୍ରଶଃ ।।୧୩।।**

ଉ. ବ୍ରହ୍ମ, ପରମାତ୍ମା ବା ଭଗବାନ ଏ ମଧ୍ୟରୁ କୌଣସି ଗୋଟିକୁ ସେମାନେ ଜାଣିପାରିନଥିଲେ (ଅସ୍ୱରୂପ ବିଦୋ) । ପରସ୍ପରର ସଙ୍ଗ କରି ଭଗବାନଙ୍କ ଦିବ୍ୟ ରୂପ, ଗୁଣ, ଲୀଳା ଶ୍ରବଣ କୀର୍ତ୍ତନ କରି କରି ତାଙ୍କ କୃପା ଏବଂ ପ୍ରେମ କାମନା କଲେ । ସମସ୍ତେ ପାଇଲେ ମଧ୍ୟ । ସଂଖ୍ୟାରେ ସେମାନେ ଦଶ ପଚାଶ ନୁହନ୍ତି ବରଂ ହଜାର ହଜାର ନୁହେଁ ଅସଂଖ୍ୟ ଜୀବ ।

ପ୍ରଶ୍ନ-୨୯: ଶ୍ରୁତିଶାସ୍ତ୍ର ବିଧି(ଚୋଦନା) ଜଣାନ୍ତି । ସ୍ମୃତି ଶାସ୍ତ୍ର ନିଷେଧ (ପ୍ରତିଚୋଦନା) ବତାନ୍ତି । ଯାହାକୁ ପଣ୍ଡିତମାନେ ପ୍ରବୃତ୍ତି ପରାୟଣ ଓ ନିବୃତ୍ତି ପରାୟଣ ଶାସ୍ତ୍ର ନିର୍ଦ୍ଦେଶ ଆଖ୍ୟା ଦିଅନ୍ତି । ଉଭୟ ମଧ୍ୟରୁ କେଉଁଟିକୁ ଆଦରି ନେବାକୁ ଠାକୁରଜୀ ଉଦ୍ଧବଙ୍କୁ ଆଜ୍ଞା ଦେଲେ ?

**ତସ୍ମାତ୍ ତ୍ୱଂ ଉଦ୍ଧବ-ଉତ୍ସୃଜ୍ୟ ଚୋଦନାଂ ପ୍ରତିଚୋଦନାମ୍ ।**
**ପ୍ରବୃତ୍ତଂ ଚ ନିବୃତ୍ତଂ ଚ ଶ୍ରୋତବ୍ୟଂ ଶ୍ରୁତଂ ଏବ ଚ ।।୧୪।।**

ଉ. କୌଣସିଟିକୁ ନୁହେଁ । ବରଂ କହିଲେ ଉଭୟ ନିର୍ଦ୍ଦେଶର ଉପରକୁ ଉଠିବାକୁ । ଭଗବାନ କହିଲେ, ''ହେ ଉଦ୍ଧବ, ଏପର୍ଯ୍ୟନ୍ତ ଯାହା ସବୁ ସଂସାରି ସୁଖ ବିଷୟରେ ପଢିଛ ଶୁଣିଛ ବା ଅନୁଭବ କରିଛ, ଭବିଷ୍ୟତରେ ବି ଯାହା କିଛି

ଲୋଭନୀୟ ଇନ୍ଦ୍ରିୟ ଆକର୍ଷଣକାରୀ, ସ୍ୱର୍ଗ ସୁଖ, ସିଦ୍ଧି, ସୁଖ ଆଦି ବିଷୟରେ ଶୁଣିବ ସେ ସବୁର ଆସକ୍ତିକୁ ପରିହାର କରିବା ଉଚିତ ।''

ପ୍ରଶ୍ନ-୩୦ : ପ୍ରବୃତ୍ତି ନିବୃତ୍ତି ଉଭୟ ମାର୍ଗର ସୁଖ ଲାଳସା ତ୍ୟାଗ କରି ସାଧକ ମରି ନ ଯାଇ କ'ଣ କରିବ ତେବେ ?

**ମାଂ ଏକଂ ଏବଂ ଶରଣଂ ଆତ୍ମାନଂ ସର୍ବ ଦେହିନାମ୍ ।**
**ଯାହି ସର୍ବ-ଆତ୍ମ ଭାବେନ ମୟା ସ୍ୟା ହି-ଅକୁତୋଭୟଃ ॥୧୫॥**

ଉ. ସିଧା ସଳଖ ଉତ୍ତର ହେଲା ସାଧକ ଶ୍ରୀକୃଷ୍ଣଙ୍କ ସଂପୂର୍ଣ୍ଣ ଶରଣାଗତ ହେବ । ପ୍ରବୃତ୍ତି ମାର୍ଗୀଶାସ୍ତ୍ର କେବଳ ସ୍ୱର୍ଗ ସୁଖ ଲାଳସୀ କର୍ମକାଣ୍ଡୀ ପାଇଁ । ନିବୃତ୍ତି ମାର୍ଗୀ ଶାସ୍ତ୍ର କେବଳ ମୁକ୍ତି ସୁଖ ଲାଳସୀ ଜ୍ଞାନକାଣ୍ଡୀ ପାଇଁ । ଜଣେ ନବୀନ ସାଧକ ଲାଗି ଉଭୟେ ନିଶ୍ଚିତ ରୂପେ ଉପଯୋଗୀ । ଭବିଷ୍ୟତରେ ସେମାନେ ସାଧକକୁ ଶରଣାଗତ କରାଇବେ । ଭାଗବତ ଧର୍ମ ପାଳନକାରୀ ଭକ୍ତ କିନ୍ତୁ ପୂର୍ବରୁ ଶ୍ରୀହରିଙ୍କ ଶରଣାଗତ । ଭାଗବତ ଭଗବାନ କହନ୍ତି, ''ମୁଁ ତାର ହାତ ଧରେ । ଅଭୟ ଦିଏ(ଅକୁତୋ ଭୟଃ) । ସେ ମୋ ଭିତରେ ସମସ୍ତଙ୍କୁ ଦେଖେ ଓ ସମସ୍ତ ପ୍ରାଣୀଙ୍କ ମଧ୍ୟରେ କେବଳ ମୋତେ ହିଁ ଦେଖେ । ସେ ମୋ ଦୃଷ୍ଟିରୁ ଖସି ପାରେନା କି ମୁଁ ତାକୁ ଲୁଚି ରହିପାରେ ନା । ସୁତରାଂ ସେ ମୋର ଅନନ୍ୟ ଶରଣାଗତି ସ୍ୱୀକାର କରିବା ଉଚିତ ।''

ପ୍ରଶ୍ନ-୩୧ : ପ୍ରଥମେ ଭଗବାନ ଉଦ୍ଧବଙ୍କୁ ବୈଦିକ ଧର୍ମ ଆଶ୍ରୟରେ ପ୍ରବୃତ୍ତିମାର୍ଗୀ କର୍ମ ମିଶ୍ରା ଭକ୍ତି କଥା କହିଥିଲେ । ପରେ ପରେ ନିବୃତ୍ତି ମାର୍ଗୀ ଜ୍ଞାନ ମିଶ୍ରା ଭକ୍ତି କହିଲେ । ଶେଷରେ କର୍ମ-ଜ୍ଞାନ ନିରପେକ୍ଷ ଭାଗବତ ଭକ୍ତି କଥା କହିଲେ । ଉଦ୍ଧବଙ୍କ ମସ୍ତିଷ୍କ ଗୋଳମାଳ ହୋଇଗଲା । ସେ ବିନୟର ସହିତ ପ୍ରଶ୍ନ କଲେ ଭକ୍ତିରୁ ଜ୍ଞାନକୁ ବାଦଦେବାକୁ କାହିଁକି କହୁଛନ୍ତି ବୋଲି । ଠାକୁରଜୀ କି ଦୃଷ୍ଟାନ୍ତ ଦେଇ ଅଡୁଆ ସୂତାରୁ ଖିଅ କାଢ଼ିଲେ ?

**ଯସ୍ମିନ୍ ଇଦଂ ପ୍ରୋତଂ ଅଶେଷଂ ଓତଂ**
**ପଟୋ ଯଥା ତନ୍ତୁ ବିତାନ ସଂସ୍ଥଃ ।**
**ଯ ଏଷ ସଂସାର ତରୁଃ ପୁରାଣଃ**
**କର୍ମ-ଆତ୍ମକଃ ପୁଷ୍ପ ଫଳେ ପ୍ରସୂତେ ॥୨୧॥**

ଉ. ଖଣ୍ଡିଏ ବସ୍ତ୍ରରେ ଲମ୍ବାରେ ବୁଣା ସୂତାକୁ ଓତ କୁହାଯାଏ । ଚଉଡ଼ା ଦିଗରେ ବୁଣା ସୂତାକୁ ପ୍ରୋତ କୁହାଯାଏ । ଉଭୟ ସୂତା ମିଶିଲେ ବସ୍ତ୍ର ହୁଏ । ଦୁଇ ପ୍ରକାର ସୂତା ବ୍ୟତୀତ ବସ୍ତ୍ରରେ ଅନ୍ୟ କିଛି ନଥାଏ । ଠିକ୍ ସେଇଭଳି ଏ ସୃଷ୍ଟିର ସମସ୍ତ ଦୃଶ୍ୟମାନ ପଞ୍ଚଭୂତ ନିର୍ମିତ ବସ୍ତୁ ମଧ୍ୟରେ ଭଗବାନଙ୍କର ଆତ୍ମସ୍ୱରୂପ ଗୋପନୀୟ ଭାବରେ ଲୁଚି ରହିଛନ୍ତି । କାଠରେ ଅଗ୍ନି, ଜଳରେ ସ୍ୱାଦ, ସୂର୍ଯ୍ୟଙ୍କ ଦେହରେ କିରଣ ରହିଥିବା ଭଳି । କର୍ମ, ଜ୍ଞାନ, ବୈରାଗ୍ୟ ସମସ୍ତଙ୍କୁ ଭକ୍ତି ମହାରାଣୀ ନିଜ ମଧ୍ୟରେ ଲୁଚାଇ ରଖିଥାଆନ୍ତି । ବିଷୟୀ ଜୀବ ଏକଥା ସହଜରେ ବୁଝିପାରେ ନାହିଁ ।

ପ୍ରଶ୍ନ-୩୨ : ଏ ଦୃଶ୍ୟମାନ ଜଗତ ଏକ ବୃକ୍ଷ । ଜୀବ ଦେହ ଏହି ଜଗତ ବୃକ୍ଷର ବୀଜ ଅଟେ । ଦେହ ନାଶ ହେବା ପୂର୍ବରୁ ଶୁଭ ଅଶୁଭ କର୍ମ କରି ପାପ-ପୁଣ୍ୟ ଫଳକୁ ସାଇତି ରଖେ ପରବର୍ତ୍ତୀ ଦେହ ନିର୍ମାଣ ଲାଗି । ଏ ରହସ୍ୟକୁ ବୁଝିବା ବିଶ୍ଳେଷଣ ମାର୍ଗ (ତତ୍ତ୍ୱଜ୍ଞାନ) । ଏହା ବୁଝିସାରିଲା ପରେ ସଂଶ୍ଳେଷଣ (ଭକ୍ତି) ପଦ୍ଧତିରେ ସେ ଈଶ୍ୱରଙ୍କୁ ଭକ୍ତି ନ କରି ରହିପାରେ ନାହିଁ । ସେ ଭକ୍ତିରୁ ଜ୍ଞାନକୁ ବାଦ୍‌ଦେବାକୁ ଉଦ୍ଧବଙ୍କୁ କହିଲେ କି ?

**ଏବଂ ଗୁରୁ-ଉପାସନୟା-ଏକ ଭକ୍ତ୍ୟା**

**ବିଦ୍ୟା କୁଠାରେଣ ଶିତେନ ଧୀରଃ ।**

**ବିବୃଶ୍ଚ୍ୟ ଜୀବ-ଆଶୟଂ ଅପ୍ରମତ୍ତଃ**

**ସଂପଦ୍ୟ ଚ-ଆତ୍ମାନଂ ଅଥ ତ୍ୟଜ-ଅସ୍ତ୍ରମ୍ ॥୨୪॥**

ଉ. ସେ କଥା ଆଦୌ କହିନାହାନ୍ତି । ଗୋପୀମାନେ କ'ଣ କୃଷ୍ଣ ତତ୍ତ୍ୱଜ୍ଞାନ ଶୂନ୍ୟା ଥିଲେ କି ? ସେମାନେ ସଂପୂର୍ଣ୍ଣ ବେଦଜ୍ଞାନୀ ଥିଲେ । ଉଦ୍ଧବଙ୍କ ଭଳି ସେମାନେ କିନ୍ତୁ କଦାପି ଜ୍ଞାନର ଅହଂକାରୀ ନଥିଲେ । ଉଦ୍ଧବ କୃଷ୍ଣଙ୍କୁ ଜାଣିଥିଲେ ବୋଲି ଜାଣିଥିଲେ । ସେଇତ ଜ୍ଞାନର ଡ଼ିଣ୍ଡିମ ବା ଅହଂକାର । ଗୋପୀମାନଙ୍କ ସତସଙ୍ଗ ହେତୁ ସେ ସିନା ଜ୍ଞାନ ଅହଂକାରରୁ ମୁକ୍ତ ହୋଇ ତତ୍ତ୍ୱଜ୍ଞାନୀ ବୋଲାଇଲେ । ଭକ୍ତି ମଧ୍ୟରେ ଜ୍ଞାନ ଗୁପ୍ତ ରହୁ ଏହା ଭଗବାନଙ୍କ ଇଚ୍ଛା ।

ଶିକ୍ଷାଗୁରୁ, ମନ୍ତ୍ରଗୁରୁ (ଦୀକ୍ଷା ଗୁରୁ)ଙ୍କ ଠାରୁ କୃଷ୍ଣ ତତ୍ତ୍ୱବେତ୍ତା ଗୁରୁଙ୍କ ଭୂମିକା ବାସ୍ତବରେ ଶରଣାଗତି ପାଇଁ ବେଶୀ ଦରକାର ପଡ଼େ । ଅତଏବ ବିବେକୀ ସାଧକ (ଧୀର) ସାବଧାନ (ଅପ୍ରମତ୍ତଃ) ହୋଇ ବୈଷ୍ଣବ ଗୁରୁଙ୍କ ଠାରୁ ଅସଲି ବୈରାଗ୍ୟ ଶିକ୍ଷା

କରି ନିଜର ଅନ୍ତଃକରଣ ପରିଷ୍କାର କରିବ (ବିବୃଣ୍ୟ ଜୀବ-ଆଶୟଂ) । ସେଇ ପରା ବୈରାଗ୍ୟ ତା ପାଇଁ ଧାରୁଆ (ଶିତେନ) କୁହ୍ଲାଡ଼ି, ବା କୁରାଢ଼ି ଭଳି କାମ ଦେବ । ସଂସାର ଆସକ୍ତି ତ୍ୟାଗ କଲେ ସଂସାର ତା ପାଇଁ କୃଷ୍ଣ ଓ କୃଷ୍ଣ ପ୍ରେମମୟ ଦିଶିବ । ସେ ଅକର୍ମା ନ ହେବାକୁ ନକଲି ବୈରାଗ୍ୟରୁ ଦୂରରେ ରହି ସଂସାର ସେବାରେ ତନମନ ଧନକୁ ଆନନ୍ଦରେ ଲଗାଇ ଦେବ (ତ୍ୟଜ ଅସ୍ତ୍ରମ୍) । ଏହା ହେବ କେବଳ କୃଷ୍ଣ ତତ୍ତ୍ୱ ଜ୍ଞାନ ହେଲେ ଯାହାର ନାମ ଆତ୍ମ ଉପଲବ୍ଧିର ପରବର୍ତ୍ତୀ ଅବସ୍ଥା ବ୍ରହ୍ମ-ଉପଲବଧି (ସଂପଦ୍ୟ ଚ ଆତ୍ମାନଂ) ବା ଅନ୍ୟ ଶବ୍ଦରେ ସମୀପ୍ୟ ମୁକ୍ତି ।

## ୩୮.ସାମୀପ୍ୟ ମୁକ୍ତି ପ୍ରକରଣ ସାର

### ଅଧ୍ୟାୟ ୭ମ-୧୨ଶ

ବୈଷ୍ଣବମାନଙ୍କ ପାଇଁ ସାଲୋକ୍ୟ ମୁକ୍ତିଠାରୁ ସାମୀପ୍ୟ ମୁକ୍ତି ଆହୁରି ଅଧିକ ଆକର୍ଷଣୀୟ । ବୈଷ୍ଣବ କେବେ ବି ନିଜ ଦେହକୁ ନିଜ ସୁଖ ସୁବିଧା ଉପଭୋଗ ଲାଗି ଲଗାଇ ନଥାଏ । ସେ ଜନ୍ମେ ଜନ୍ମେ ଦେହକୁ ଭଗବାନଙ୍କ କାମରେ ଲଗାଉଥିବାରୁ ଉତ୍ତରାଧିକାରୀ ସୂତ୍ରରେ ତାକୁ ପଦୋନ୍ନତି ମଧ୍ୟ ମିଳୁଥାଏ । ଜନ୍ମ ପରେ ଜନ୍ମ ବୈଷ୍ଣବ ଗୁରୁ କରୁଥାଏ । ସେ କ୍ରମଶଃ ଉଚ୍ଚରୁ ଉଚ୍ଚତର ବିଭୁ ପ୍ରେମ ପ୍ରାପ୍ତିର ଅଧିକାରୀ ହୁଏ । ସାଲୋକ୍ୟ ମୁକ୍ତିଠାରୁ ସାମୀପ୍ୟ ମୁକ୍ତି ତା ପାଇଁ ଅଧିକ ଲୋଭନୀୟ ।

ଏ ପ୍ରକରଣ ଭଗବାନଙ୍କର ସବୁଠାରୁ ବେଶୀ ସମୟ ସାମୀପ୍ୟ ବା ସାନିଧ ପାଇଥିବା ଉଦ୍ଧବଙ୍କ ପ୍ରସଙ୍ଗରୁ ଆରମ୍ଭ ହୋଇଛି । ତାଙ୍କ ପ୍ରସଙ୍ଗ ଭାଗବତରେ ୨୪ ଅଧ୍ୟାୟରେ କୀର୍ତ୍ତିତ । ଉଦ୍ଧବଜୀ ଶ୍ରୀକୃଷ୍ଣଙ୍କ ସାଙ୍ଗରେ ତାଙ୍କ ଲୋକକୁ ଯିବା ଆକାଙ୍କ୍ଷା ପ୍ରକଟ କରନ୍ତେ ଭଗବାନଙ୍କ ତତ୍ତ୍ୱଜ୍ଞାନ ଉପଦେଶ ଦେବା ଶୁଭ ଆରମ୍ଭ ହୋଇଛି । ତାଙ୍କର ୨୪ ଅବତାରକୁ ବୁଝିବାକୁ ପ୍ରକୃତିର ୨୪ ତତ୍ତ୍ୱକୁ ଅନୁଭବ କରିବାକୁ ସେ ଯଦୁ-ଅବଧୂତ ସମ୍ବାଦରେ ୨୪ଗୁରୁଙ୍କ କଥା ସବିସ୍ତାର ଏହି ପ୍ରକରଣରେ ବର୍ଣ୍ଣନା କରିଛନ୍ତି । କାରଣ ବୃନ୍ଦାବନରେ ୨୪ବନ ଉପବନରେ ଓ ଯମୁନା ନଦୀ କୂଳର

୨୪ଘାଟରେ ଗୋପୀ ଗୋପୀନାଥଙ୍କ ଲୀଳା ରହସ୍ୟର କୂଳ କିନାରା ଏ ଯାଏଁ ପାରିପାରୁନାହାନ୍ତି ପ୍ରିୟ ସଖା ଉଦ୍ଧବ ।

ଭଗବାନଙ୍କ ଲୋକକୁ ଯାଇ ତାଙ୍କ ସାମୀପ୍ୟ ଲାଭର ଦିବ୍ୟ ଆନନ୍ଦ ଲାଭ କରିବା କିଛି ସାମାନ୍ୟ କଥା ନୁହେଁ । ସୁତରାଂ ଠାକୁରଜୀ ତାଙ୍କୁ ଏଠାରେ ୨୪ଗୁରୁ ପ୍ରସଙ୍ଗରେ ଅନେକ ଦୃଷ୍ଟାନ୍ତ କେଉଁଠାରେ ସଂକ୍ଷେପ ଓ କେଉଁଠାରେ ବିସ୍ତୃତ ଭାବରେ ଦେଇ ପ୍ରମାଣ କରିଛନ୍ତି ଯେ ବିନା ଗୁରୁରେ ଭଗବାନଙ୍କ ସାମୀପ୍ୟ ସୁଖ ପ୍ରାପ୍ତି ଅସମ୍ଭବ ବ୍ୟାପାର । ସଂସାରରେ ଦେଖାଯାଏ ଯେ ଅନେକ ଲୋକ ନିଜ ଅହଂକାରର ପ୍ରାଦୁର୍ଭାବରୁ ଜୀବନ ସାରା ଜଣେ ବି କାହାକୁ ଗୁରୁ ବୋଲି ନ ମାନି ଅଶେଷ ଦୁର୍ଗତିର ଶିକାର ହୁଅନ୍ତି । କର୍ମ, ଜ୍ଞାନ ଓ ଭକ୍ତି କୌଣସି ଗୋଟିଏ ଯୋଗ ସାଧନ କରିପାରନ୍ତି ନାହିଁ ।

ସାଧକର ମନ, ବୁଦ୍ଧି ଓ ଚିତ୍ତ ସାମାନ୍ୟ ନିର୍ମଳ ଥିଲେ ମଧ୍ୟ ସେ ଅନ୍ୟଠାରୁ କିଛି ଶିଖିବାରେ ଆଗ୍ରହ ଦେଖାଏ । ନଚେତ ବିଚରା ବଡ଼ ହାନିମାନ ଅବସ୍ଥା ହୁଏ । ରାଜା ଯଦୁ ସ୍ୱୟଂ ବିଦେହ । ଦେହ ଭାବରୁ ଊର୍ଦ୍ଧ୍ୱରେ ସେ ସର୍ବଦା ରହନ୍ତି । ତେଣୁ ସିନା ସେ ଭଗବାନ ଦତ୍ତାତ୍ରେୟଙ୍କୁ ଚିହ୍ନି ପକାଇଲେ ଓ ତାଙ୍କ ସମୀପକୁ ଯାଇପାରିଲେ । ଅଲୌକିକ ତତ୍ତ୍ୱଜ୍ଞାନ ଉପଦେଶ ସଂଗ୍ରହ କରି ନିଜ ଜୀବନକୁ ଧନ୍ୟ କରିପାରିଲେ । ମଣିଷ ଗୁରୁ କଅଣ ଏପରିକି ଆକାଶ, ମାଟି, ପାଣି, ପବନ, ସମୁଦ୍ର, ସୂର୍ଯ୍ୟ, ଚନ୍ଦ୍ର, ସର୍ପ, ମହୁମାଛି ସମସ୍ତଙ୍କୁ ଗୁରୁମାନିଲେ ତାଙ୍କଠାରୁ କିଛି କିଛି ବହୁ ମୂଲ୍ୟ ଶିକ୍ଷା ଗ୍ରହଣ କରିହୁଏ । କପୋତ ପକ୍ଷୀ, ବାଳକ, କୁମାରୀ କନ୍ୟା, ପିଙ୍ଗଳା ବେଶ୍ୟା ଏପରିକି ନିଜ ଦେହ ମଧ୍ୟ ଗୁରୁପଦବାଚ୍ୟ ହୋଇପାରନ୍ତି । ଭଗବାନ ଦତ୍ତାତ୍ରେୟଙ୍କର ମାନବ ସମାଜକୁ ଏହା କିଛି ସାମାନ୍ୟ ଆଧ୍ୟାତ୍ମିକ ଆବିଷ୍କାର ବା ଦାନ ନୁହେଁ । ଭାଗବତରେ ଏହାର ପ୍ରଭାବ ସୁଦୂର ପ୍ରସାରୀ ବୋଲି ପ୍ରମାଣିତ ହୋଇଛି ।

ଭଗବାନ ଶ୍ରୀକୃଷ୍ଣ ବଡ଼ ଭବ୍ୟ ଢ଼ଙ୍ଗରେ ନିଜ ପ୍ରିୟ ସଖା ଉଦ୍ଧବଙ୍କୁ ଈଶ୍ୱରୀୟ ପ୍ରେମର ସାମୀପ୍ୟତା ପ୍ରାପ୍ତିର ମାର୍ଗ ଦର୍ଶନ କରାଇଛନ୍ତି । କାମ, କ୍ରୋଧ, ଲୋଭ, ମୋହ, ଆଦି ଶତ୍ରୁ କବଳରୁ ମୁକ୍ତି ସହିତ ଇନ୍ଦ୍ରିୟ ମାନଙ୍କୁ ଲଗାମ ଲଗାଇବା, ମନକୁ ସଜାଡ଼ି ନେବା, ବୁଦ୍ଧିକୁ ଶୁଦ୍ଧ କରିବା ଓ ଆତ୍ମାକୁ ଶାନ୍ତି ଦେବା ସବୁ କିଛି ସମ୍ଭବ ହୁଏ ଏହିଭଳି ଗୁରୁମାନଙ୍କ ଶରଣାଗତ ହୋଇ ତାଙ୍କ ପ୍ରଦର୍ଶିତ ପଥରେ ସାଧନା କଲେ ।

ଦଶମ ଅଧ୍ୟାୟରେ ଭୌତିକ ସୁଖର ଏପରିକି ସ୍ୱର୍ଗ ସୁଖର ତୁଚ୍ଛତା ପ୍ରତିପାଦିତ ହୋଇଛି କେବଳ ସାଧକର ମନ, ବୁଦ୍ଧି ଚିତ୍ତଙ୍କୁ ପ୍ରଭୁଙ୍କ ଆନନ୍ଦମୟ ସ୍ୱରୂପର ସାନିଧ ବା ସମୀପ୍ୟ ପ୍ରାପ୍ତି ଉଦ୍ଦେଶ୍ୟରେ ସମର୍ପଣ କରି ।

॥ ଅପଣ୍ଡିତ ଦାମୋଦର ବଳୀୟାରସିଂହ ॥

ଏକାଦଶ ଅଧ୍ୟାୟରେ ବଦ୍ଧ ଜୀବ, ମୁକ୍ତ ଜୀବ ଲକ୍ଷଣ ସହିତ ଭାଗବତ ବା ସାଧୁ ଲକ୍ଷଣ ବିଶେଷ ଭବରେ ବର୍ଣ୍ଣିତ ହୋଇଛନ୍ତି । ଭକ୍ତି ଓ ଜ୍ଞାନ ମାର୍ଗର ସାଧକ ଭଗବତ ଭକ୍ତି ସହିତ ଭଗବତ ଶରଣାଗତିର ମୂଲ୍ୟାଙ୍କନ କରୁ ସେ ମାର୍ଗରେ ଚାଲି ସଂସାରୀ ଦୁଃଖ, ଶୋକ, ମୋହରୁ ମୁକ୍ତ ହେଉ ଏହି ଲକ୍ଷ୍ୟରେ ।

ପ୍ରକରଣର ଶେଷ ଅଧ୍ୟାୟରେ ଅର୍ଜିତ ଜ୍ଞାନ ବୈରାଗ୍ୟଠାରୁ ସାଧୁ ସଙ୍ଗ ପ୍ରାପ୍ତି ଯେ ଅଧିକ ଲାଭ ଜନକ ତାର ମଧ ସୂଚନା ଦିଆଯାଇଛି । ଭକ୍ତ ଉଦ୍ଧବ ଊର୍ଦ୍ଧ୍ୱବାହୁ ହୋଇ ଘୋଷଣା କରିଛନ୍ତି ଯେ ସକଳ ସାଧନାର ଅନ୍ତିମ ଫଳ ସାଧୁସଙ୍ଗ ପ୍ରାପ୍ତି ଓ ସାଧୁ ସଙ୍ଗରୁ ଭକ୍ତି, ଭଗବାନ ଉଭୟର ପ୍ରାପ୍ତି । ଭକ୍ତି ବ୍ୟତିରେକେ କର୍ମ, ଜ୍ଞାନ ଓ ଧ୍ୟାନ କଅଣ ଜପ, ତପ, ବ୍ରତ, ପୂଜା, ପାଠ, ଯଜ୍ଞ, ଦାନ ଇତ୍ୟାଦି ସବୁ ଆଡ଼ମ୍ବର, ଅହଂକାର ବା ଦିଖାଓ୍ୱା ମାତ୍ର । ସାଧୁ ସଙ୍ଗ ବା ସାଧୁ ସମୀପ୍ୟକୁ ସାମୀପ୍ୟ ମୁକ୍ତି କହିଲେ କିଛି ଅତ୍ୟୁକ୍ତି ହେବ ନାହିଁ ।

ଚୁମ୍ବକଟିଏ ଲୁହାକୁ ଚୁମ୍ବକ କରି ଦେଇପାରେ । ତାକୁ ଆଉ ଗୋଟିଏ ଚୁମ୍ବକ କରିବାରେ ସେ ଅସମର୍ଥ । ସାଧୁ କିନ୍ତୁ ଜଣେ ଅସାଧୁକୁ ମଧ ସାଧୁର ଆସନରେ ବସେଇ ଦେଇପାରନ୍ତି । ପ୍ରକରଣର ଉପସଂହାର ବେଳେ ଠାକୁରଜୀ ଉଦ୍ଧବଙ୍କୁ ପ୍ରବୃତ୍ତି ମାର୍ଗ(କର୍ମ) ବା ନିବୃତ୍ତି ମାର୍ଗ(ଜ୍ଞାନ) ଉଭୟର ଅନ୍ତିମ ଫଳ ଯଥାକ୍ରମେ ସ୍ୱର୍ଗ ସୁଖ ଓ ମୁକ୍ତି ସୁଖର ଲୋଭ ତ୍ୟାଗ କରି ଗୁରୁ ଗୋବିନ୍ଦଙ୍କ ଭକ୍ତି କରିବାକୁ ଏହି ସାମୀପ୍ୟମୁକ୍ତିର ଦିଗ୍‌ଦର୍ଶନ ଦେଇଛନ୍ତି । ଉଦ୍ଦେଶ୍ୟ ମନୁଷ୍ୟ ମୁକ୍ତି ନ ଚାହିଁଲେ ବରଂ କୃଷ୍ଣଭକ୍ତି ଚାହୁଁ ।

# ପ୍ରକରଣ -୩୯ ସାଯୁଜ୍ୟ ମୁକ୍ତି

## ଅଥ ୧୩ଶ ଅଧ୍ୟାୟଃ

## (ହଂସ ଅବତାରରେ ଚତୁଃସନଙ୍କ ପ୍ରଶ୍ନର ଉତ୍ତର ପ୍ରଦାନ)

ପ୍ରଶ୍ନ-୩୩: ଜ୍ଞାନ ମିଶ୍ରା ଭକ୍ତିଠାରୁ ଭାଗବତ ଧର୍ମ ବା ଭକ୍ତି ଧର୍ମ ଅଧିକ କଲ୍ୟାଣକାରକ । ଏ ପର୍ଯ୍ୟନ୍ତ ଏହି ଭକ୍ତି ଧର୍ମ ସାଧନର ସରଳ ଉପାୟ ଭଗବାନ ଉଦ୍ଧବଜୀଙ୍କୁ ଉପଦେଶ ଦେଲେ । ବୈଦିକ କର୍ମ ଧର୍ମ ପାଳନ କରି ପ୍ରଥମେ ସତ୍ତ୍ୱଗୁଣର ବିକାଶ କରିବାକୁ ହୁଏ ଯାହା ଦ୍ୱାରା ରଜତମୋ ଗୁଣର ବେଗକୁ ବା ଅଧର୍ମକୁ ନାଶ କରାଯାଏ । ଶେଷରେ ସତ୍ତ୍ୱଗୁଣର ବିକାଶ ଲାଗି ସାଧକକୁ କ'ଣ କ'ଣ କରିବାକୁ ପଡ଼େ ?

**ଶ୍ରୀ ଭଗବାନ ଉବାଚ**

**ଆଗମୋଽପଃ ପ୍ରଜା ଦେଶଃ କାଳଃ କର୍ମ ଚ ଜନ୍ମ ଚ ।**
**ଧ୍ୟାନଂ ମନ୍ତ୍ରୋଽଥ ସଂସ୍କାରୋ ଦଶ-ଏତେ ଗୁଣ ହେତବଃ ॥୪॥**

ଉ. ଦରକାର କେବଳ ସତ୍ତ୍ୱଗୁଣୀ ଶାସ୍ତ୍ର ପଠନ, ପାଠନ, ମନନ ସହିତ, ଜଳପାନ, ସନ୍ତାନ-ସନ୍ତତି, ବାସସ୍ଥାନ, ସମୟ, କାର୍ଯ୍ୟପ୍ରଣାଳୀ, ଜନ୍ମ, ଧ୍ୟାନ, ମନ୍ତ୍ର ଏବଂ ସଂସ୍କାର । ଏଇ ଦଶ ଚିଜ ସବୁ ସତ୍ତ୍ୱଗୁଣୀ ହେବା ଦରକାର । ସୁତରାଂ ସାଧକ ପାଇଁ ସତ୍ତ୍ୱଗୁଣୀ ଦ୍ରବ୍ୟ, ସ୍ଥାନ, କାଳ, ପାତ୍ର ଆଦି ପ୍ରଶଂସନୀୟ ଓ ଆଦରଣୀୟ । ପୁଣି ରଜଗୁଣୀ ତମୋଗୁଣୀ ଚିଜ ଉପେକ୍ଷଣୀୟ । ଦେହ ଜ୍ଞାନ ପୂର୍ଣ୍ଣ ମାତ୍ରାରେ ନ ଯିବା ଯାଏଁ ସତ୍ତ୍ୱଗୁଣ ହିଁ ସାଧକର ପ୍ରଧାନ ଆଶ୍ରୟ ।

ପ୍ରଶ୍ନ-୩୪: ମହାମାୟାଙ୍କ ସତ୍ତ୍ୱଗୁଣୀ ପ୍ରଭାବ ମଧ୍ୟ ଭାଗବତ ଧର୍ମର ଏକ ପ୍ରଧାନ ଅନ୍ତରାୟ । ସାଧକ ଏ ଗୁଣକୁ କିପରି ଅତିକ୍ରମ କରିପାରିବ ?

**ବେଣୁ ସଂଘର୍ଷଜୋ ବହ୍ନିଃ ଦଗ୍ଧ୍ୱା ଶାମ୍ୟତି ତତ୍‌ବନମ୍ ।**
**ଏବଂ ଗୁଣ ବ୍ୟତ୍ୟୟଜୋ ଦେହଃ ଶାମ୍ୟତି ତତ୍କ୍ରିୟଃ ॥୭॥**

ଉ. ବାଉଁଶ ବଣରେ ବାଉଁଶ ଗଛ ଉଠେ । କିଛି ଦିନ ପରେ ଗଛ ପାକଳ ହୁଏ । ବାଉଁଶରେ ବାଉଁଶ ଘଷି ହୋଇ ନିଆଁ ଉତ୍ପନ୍ନ ହୁଏ । ଶେଷରେ ବାଉଁଶ ବଣକୁ ଜାଳି ନିଜେ ଜଳିଯାଏ । ଠିକ୍ ସେଇ ନ୍ୟାୟରେ ମାୟାଙ୍କର ସତ୍ତ୍ୱ, ରଜ ଓ ତମୋ ଗୁଣ

ପ୍ରଭାବରେ ଦେହ ଉତ୍ପନ୍ନ ହୁଏ । ଦେହରୁ କର୍ମ ପୁଣି କର୍ମରୁ ଦେହ ଉତ୍ପନ୍ନ ହେଉଥାଏ ଅବିଦ୍ୟା ପ୍ରଭାବରେ । ଥରେ ମନରେ ବୁଦ୍ଧିରେ ବ୍ରହ୍ମ ବିଦ୍ୟାର ଉଦ୍ଭବ ହେଲେ ସେ ପ୍ରଥମେ ସତ୍ତ୍ୱଗୁଣକୁ ଉତ୍ପନ୍ନ କରାଏ । ରଜ ତମୋ ଗୁଣ ସହିତ ନିଜକୁ (ସତ୍ତ୍ୱଗୁଣୀ ଅହଂକାର)ଜଳାଇ ହରି ଭକ୍ତି ଉଦ୍ରେକ କରାଇ ଶେଷରେ ଶାନ୍ତ ବା ନିଷ୍ପ୍ରଭ ହୋଇଯାଏ ।

ପ୍ରଶ୍ନ-୩୫: ଉଦ୍ଧବ ତାଙ୍କ ଶହେ ପଚିଶ ବର୍ଷ ଜୀବନରେ ଦେଖିଛନ୍ତି ମରଣଶୀଳ ମନୁଷ୍ୟ ଜାଣେ ଯେ ବିଷୟ ଭୋଗ ତାକୁ ମୃତ୍ୟୁ ମୁଖକୁ ଟାଣି ନେବ । ତଥାପି ମନୁଷ୍ୟ ବିଷୟ ଭୋଗ ପଛରେ ଦୌଡ଼େ । ଏହି ଅଡୁଆ ପ୍ରଶ୍ନ ଉଦ୍ଧବ ପଚାରନ୍ତେ ଯୋଗେଶ୍ୱର ଭଗବାନ କି ଉତ୍ତର ଦେଲେ ?

**ଅହଂ ଇତି-ଅନ୍ୟଥା ବୁଦ୍ଧିଃ ପ୍ରମତ୍ତସ୍ୟ ଯଥା ହୃଦି ।**
**ଉତ୍ସର୍ପତି ରଜୋ ଘୋରଂ ତତୋ ବୈକାରିକଂ ମନଃ ॥୯॥**

ଉ. ବୁଦ୍ଧି ରହିତ ବିଷୟୀ ବ୍ୟକ୍ତି (ପ୍ରମତ୍ତସ୍ୟ) ନିଜକୁ ଆତ୍ମା ନ ଭାବି ଦେହ ଭାବି ବସେ । ଦେହ ସମ୍ବନ୍ଧୀୟ ପିତା ମାତା ପୁତ୍ର କନ୍ୟା ଇତ୍ୟାଦିଙ୍କୁ ମୋର ଭାବିଥାଏ । ଦେହକୁ ଗୃହକୁ ସାଇତିବାକୁ ଅସଂଖ୍ୟ କାମନାକୁ ନିଜ ମନରେ ଜନ୍ମଦିଏ (ବୈକାରିକଂ ମନଃ) । ବିଚରା ଭୁଲିଯାଏ ମୁଁ ଆତ୍ମା ଓ ମୋର କେବଳ ଭଗବାନ ବୋଲି । ସୁତରାଂ ମାୟାର ମହାବଳଶାଳୀ ପୁତ୍ର ଲୋଭ (ରଜୋ ଘୋରଂ) କବଳରେ ପଡ଼ିଯାଏ (ଉତ୍ସର୍ପତି)ସେ । ତେଣିକି ତୁଚ୍ଛ ସଂସାରି ସୁଖ ପାଇବାକୁ ବହୁତ ବଡ଼ ବଡ଼ ଯୋଜନା କରେ । ଆଜି ଏତେ ଧନ ଅଛି କାଲି ପୁଣି ଏତେ ଧନ କମେଇବି । ଆଜି ଯାକୁ ମାରିଲି କାଲି ତାକୁ ଧରିବି । ଏତେ ସପନକୁ ରାତି କାହିଁ ? ବିଚରା ବଡ଼ ହରବର ହୁଏ । ସୁଖ ପାଇବାକୁ କରେ ଅଜସ୍ର କର୍ମ । ପାଏ କିନ୍ତୁ ଦୁଃଖ କଷ୍ଟର ତୀବ୍ର ଯନ୍ତ୍ରଣା । ମହାମାୟାଙ୍କ କାମ ହେଲା ବୈଦିକ ପଥ ଭ୍ରଷ୍ଟ ସାଧକକୁ ଠିକଣା ସମୟରେ ଉଚିତ ଦଣ୍ଡ ଦେଇ ବାଟକୁ ଆଣିବା । ସେ ତ ମାୟାପତି ଭଗବାନଙ୍କର ଜଣେ ସଦା ଜାଗ୍ରତ ପ୍ରହରୀ ।

ପ୍ରଶ୍ନ-୩୬: ବିଶୁଦ୍ଧ ଭକ୍ତି ଧର୍ମ ବା ଭାଗବତ ଧର୍ମ ନ ଜାଣିବା ପର୍ଯ୍ୟନ୍ତ ଜୀବ ମାୟାଙ୍କର ତିନିଗୁଣର ଚକ୍ରବ୍ୟୁହରେ ଘୂରୁଥାଏ । ଭଗବାନ ସ୍ମରଣ କରାଇଦେଲେ ଉଦ୍ଧବଙ୍କୁ ଯେ ଅନେକ ବର୍ଷ ପୂର୍ବେ ବ୍ରହ୍ମାଜୀଙ୍କୁ ଏ ବିଷୟରେ ଏକ ଗୁପ୍ତ ରହସ୍ୟମୟ ପ୍ରଶ୍ନ ପଚାରିଥିଲେ ତାଙ୍କ ପ୍ରଥମ ଚାରିପୁତ୍ର ସନକ, ସନାତନ, ସନନ୍ଦନ ଓ ସନତ କୁମାର । ଯାହାର ଉତ୍ତର ସୃଷ୍ଟିକର୍ତ୍ତା ବ୍ରହ୍ମା ମଧ୍ୟ ଦେଇ ପାରିନଥିଲେ । ଅତ୍ୟନ୍ତ କୌତୂହଳୀ ହୋଇ ଉଦ୍ଧବଜୀ ଯେଉଁ ପ୍ରଶ୍ନଟିକୁ ଜାଣିବାକୁ ଚାହିଁଲେ ସେ ଗୂଢ଼ ପ୍ରଶ୍ନଟି କଅଣ ?

ସନକାଦୟ ଉଚୁଃ

**ଗୁଣେଷୁ-ଆବିଶତେ ଚେତୋ ଗୁଣାଃ ଚେତସି ଚ ପ୍ରଭୋ ।**
**କଥଂ ଅନ୍ୟୋନ୍ୟ ସଂତ୍ୟାଗୋ ମୁମୁକ୍ଷୋଃ ଅତିତୀର୍ଷୟୋଃ ॥୧୭॥**

ଉ. ସ୍ୱଭାବରେ ମାୟା ବା ପ୍ରକୃତି ତ୍ରିଗୁଣୀ । ମନୁଷ୍ୟର ମନ ବୁଦ୍ଧି ଉଭୟେ ତ୍ରିଗୁଣୀ । ଆଖି ଖୋଲିଲେ, କାନ ପାରିଲେ ବିଷୟ ଚିନ୍ତନ କରୁଛନ୍ତି ମନ ଓ ବୁଦ୍ଧି । ଅତଏବ ମନୁଷ୍ୟର ମନ ବୁଦ୍ଧି ଭିତରେ ବିଷୟ ପଶୁଚି ଓ ବିଷୟ ଭିତରେ ମନ ବୁଦ୍ଧି ପଶିଯାଉଛନ୍ତି । କେଉଁ ଉପାୟରେ ମୁକ୍ତିକାମୀ (ମୁମୁକ୍ଷୋଃ) ମନୁଷ୍ୟ ସେମାନଙ୍କୁ ନିଜ ଆତ୍ମାଠାରୁ ଅଲଗା କରିପାରିବ (ଅତିତୀର୍ଷୟୋଃ) ?

ପ୍ରଶ୍ନ-୩୭: ବ୍ରହ୍ମା ସ୍ୱୟଂ ଜଣେ ରଜୋଗୁଣୀ ଜୀବାତ୍ମା । ସେ ସର୍ବଦା ଜୀବାତ୍ମା ମାନଙ୍କ ସୂକ୍ଷ୍ମ ଶରୀର, କର୍ମ ଫଳ, ଭବିଷ୍ୟତ ଶରୀର ବିଷୟରେ ନିଜ ମନ ବୁଦ୍ଧି ଲଗାନ୍ତି । ତାଙ୍କୁ ଫୁରୁସତ କାହିଁ ଏ ବିଷୟରେ ମୁଣ୍ଡ ଖେଳାଇବାକୁ ? ସୁତରାଂ ସେ ନିଜ ପିତା ନାରାୟଣଙ୍କୁ ସ୍ମରଣ କଲେ ନିଜ ପିଲାମାନଙ୍କ ପାଖରେ ଲାଜରା ହୋଇ ଏବଂ ପ୍ରଶ୍ନର ସଠିକ୍ ଉତ୍ତର ଦେବାରେ ବିଫଳ ହୋଇ । ଏହି ଗୋଟିକ ପ୍ରଶ୍ନର ଉତ୍ତର ଦେବାକୁ ଭଗବାନଙ୍କୁ ଗୋଟିଏ ସ୍ୱତନ୍ତ୍ର ଅବତାର (ହଂସ) ନେବାକୁ ପଡ଼ିଲା । ଶ୍ରୀହଂସ ନାରାୟଣଙ୍କୁ ଦର୍ଶନ କରି ବ୍ରହ୍ମା ତାଙ୍କ ପିଲାମାନଙ୍କୁ ସାଙ୍ଗରେ ନେଇ ତାଙ୍କୁ ପ୍ରଣାମ ଅଭିବାଦନ ଆଦି କଲେ । ପାଦ ପୂଜନ କଲେ ଏବଂ ତାଙ୍କର ପରିଚୟ ଜିଜ୍ଞାସା କଲେ । ସ୍ୱପରିଚୟ ଦେବାକୁ ଯାଇ ଭଗବାନ ପ୍ରଶ୍ନଟିକୁ ନିରର୍ଥକ ବାଚାଳତା (ବାଚାରମ୍ଭ) ପାଗଳାମି ବୋଲି କାହିଁକି କହିଲେ ?

ଶ୍ରୀ ଭଗବାନ ଉବାଚ

**ପଞ୍ଚ-ଆତ୍ମର୍ଥେଷୁ ଭୂତେଷୁ ସମାନେଷୁ ଚ ବସ୍ତୁତଃ ।**
**କୋ ଭବାନ୍ ଇତି ବଃ ପ୍ରଶ୍ନୋ ବାଚାରମ୍ଭୋ ହି-ଅନର୍ଥକଃ ॥୨୩॥**

ଉ. ଶ୍ରୀହଂସ ଭଗବାନ ଉତ୍ତରରେ କହିଲେ, 'ହେ, ପିଲାଏ, ତୁମେ ମାନୁଛ ସକଳ ଜୀବଗଣ, ଜଡ଼ ସୃଷ୍ଟି, ଜୀବର ମନବୁଦ୍ଧି ବାସ୍ତବରେ (ବସ୍ତୁତଃ) ପଞ୍ଚଭୂତ ନିର୍ମିତ ମାୟାର ପରିପ୍ରକାଶ । ଅତଏବ ତୁମେ, ମୁଁ, ଆମେ ସମସ୍ତେ ଯଦି ଏକ । ଦୁଇ କିମ୍ବା ତତୋଧିକ ନୋହୁଁ ତେବେ ତୁମେ କାହାକୁ ପ୍ରଶ୍ନ ପଚାରୁଛ ? ସେ ପଞ୍ଚଭୂତ ବ୍ୟତୀତ ଆଉ କାହା ଆଧାରରେ ଅନ୍ୟ ଜଣେ ତୁମ ପ୍ରଶ୍ନର ଉତ୍ତର ଦେବାରେ ସମର୍ଥ ହେବ ? ଅତଏବ ପ୍ରଶ୍ନଟି ନିଶ୍ଚୟ ପାଗଳାମି, ବେକାର ହୋଇଥିବ ତ ।''

ପ୍ରଶ୍ନ-୩୮ : ଭଗବାନ ସେମାନଙ୍କୁ ବୁଝାଇ କହିଲେ ମନୁଷ୍ୟ ମନ ବୁଦ୍ଧିର ତିନି ଅବସ୍ଥା କଥା । ଜାଗରଣ ଅବସ୍ଥାରେ ଇନ୍ଦ୍ରିୟ ଦ୍ୱାରା ଜୀବ ସ୍ଥୁଳ ବିଷୟ ଭୋଗ (ସୁଖ-ଦୁଃଖ) ଅନୁଭବ କରେ । ସ୍ୱପ୍ନ ଅବସ୍ଥାରେ ମନ ଦ୍ୱାରା ସୂକ୍ଷ୍ମ ବିଷୟ ଭୋଗ କରି ସୁଖୀ ଦୁଃଖୀ ହୁଏ । ସୁଷୁପ୍ତି ଅବସ୍ଥାରେ ସୁଖ-ଦୁଃଖ ଉଭୟକୁ ହରାଇ ବସେ । ମନ ବୁଦ୍ଧିର ଏ ତିନି ଅବସ୍ଥା, ଯଥାକ୍ରମେ ସତ୍ତ୍ୱଗୁଣ, ରଜୋଗୁଣ ଓ ତମୋଗୁଣ ଜନିତ । କାଠ ମଧ୍ୟରେ ଅଗ୍ନି, ସୂର୍ଯ୍ୟ ମଧ୍ୟରେ କିରଣ, ଜଳ ମଧ୍ୟରେ ରସ, ମୃତ୍ତିକା ମଧ୍ୟରେ ଗନ୍ଧ ଲୁଚି ରହିବା ଭଳି ସେଇ ଦେହ ମଧ୍ୟରେ ଆତ୍ମା ମଧ୍ୟ ଥାଆନ୍ତି । ସେ ତୁରୀୟ ଅବସ୍ଥା ବା ଚତୁର୍ଥ ଅବସ୍ଥାରେ ରହନ୍ତି ଗୁଣାତୀତ ସାଧକ ଦେହରେ । ବ୍ରହ୍ମ ଦର୍ଶନ ପୂର୍ବରୁ ସେ ନିଜ ଗୁରୁକୃପାରୁ ଜାଣିପାରେ ନିଜର ଭୌତିକ ଦେହ ନିଜ ନିୟନ୍ତ୍ରଣରେ ନ ରହି ରହିଛି ଦୈବ ନିୟନ୍ତ୍ରଣରେ । ଯେ ପର୍ଯ୍ୟନ୍ତ ଜୀବ ନିଜ ମନରେ ସୁଖ ଆଶା, ବିଷୟ ଚିନ୍ତନ ଓ ଭୋଗ ଲାଳସା ବଳବତ୍ତର ରହିବ ସେ ଇନ୍ଦ୍ରିୟଙ୍କ ପ୍ରଲୋଭନରେ ପଡୁଥିବ । ଥରେ ବ୍ରହ୍ମ ଦର୍ଶନ ହୋଇଗଲେ ଇନ୍ଦ୍ରିୟମାନେ ଆଉ ହଇରାଣ କରିପାରନ୍ତି ନାହିଁ ତୁରୀୟ ଅବସ୍ଥାରେ ଥିବା ବୁଦ୍ଧିକୁ । ଏଭଳି ବୁଦ୍ଧିମାନ ଭାଗ୍ୟବାନ ସାଧକ କ'ଣ କରିଥାନ୍ତି ମାୟାନଦୀ ସନ୍ତରଣ କରିବା ପାଇଁ ?

**ମାଂ ଭଜନ୍ତି ଗୁଣାଃ ସର୍ବେ ନିର୍ଗୁଣଂ ନିରପେକ୍ଷକମ୍ ।**
**ସୁହୃଦଂ ପ୍ରିୟଂ ଆତ୍ମାନଂ ସାମ୍ୟ-ଅସଙ୍ଗ-ଆଦୟୋଽଗୁଣାଃ ॥୪୦॥**

ଉ. ପରମେଶ୍ୱର ପରମାତ୍ମା ସ୍ୱୟଂ ମାୟାଧୀଶ ହୋଇଥିବାରୁ ମାୟାଗୁଣରୁ ମୁକ୍ତ ନିର୍ଗୁଣ, ନିରପେକ୍ଷ, ସର୍ବ ସୁହୃଦ, ସମସ୍ତ ଭକ୍ତଙ୍କୁ ପ୍ରିୟ ଲାଗନ୍ତି । ସୁତରାଂ ଜୀବମଧ୍ୟରେ ଛପିଥିବା ସମତାଯୁକ୍ତ, ନିର୍ଲିପ୍ତ (ଅସଙ୍ଗ) ନିର୍ଗୁଣ ବୁଦ୍ଧି ଇତ୍ୟାଦିଙ୍କ ଦ୍ୱାରା ଶୟନେ, ସ୍ୱପନେ, ଜାଗରଣେ କାୟ, ମନୋ, ବାକ୍ୟରେ, ତନ, ମନ ଧନ ବିନିଯୋଗ କରି ଭକ୍ତମାନେ ହରି ଭଜନରେ ଲାଗିଯାଆନ୍ତି । ଯାହାର ଅନ୍ୟନାମ ବିଶୁଦ୍ଧ ଭକ୍ତି ଧର୍ମ ବା ସନାତନ ଭାଗବତ ଧର୍ମ । ଏହା ହିଁ ମାୟାନଦୀ ସନ୍ତରଣର ସରଳ ଓ ସହଜ ଉପାୟ ।ବ୍ରହ୍ମାଜୀ ଓ ସନକାଦି ମୁନିମାନଙ୍କର ସନ୍ଦେହ ଦୂର ହୁଅନ୍ତେ ସେମାନେ ଭଗବାନଙ୍କ ପୂଜନ କଲେ । ସେମାନେ ଦେଖୁ ଦେଖୁ ମାୟାପତି ପ୍ରଭୁ ଶ୍ରୀହରି ଅନ୍ତର୍ଦ୍ଧାନ ହୋଇଯାଇଥିଲେ ।

# ଅଥ ୧୪ଶ ଅଧ୍ୟାୟଃ

## (ଭକ୍ତିଯୋଗ ମହିମା ଓ ଧ୍ୟାନଯୋଗ ବିଧି ବର୍ଣ୍ଣନ)

ପ୍ରଶ୍ନ-୩୯ : ସନକାଦି ମୁନିମାନଙ୍କ ସମ୍ମୁଖରେ ଭଗବାନ ପ୍ରକାଶ କଲେ ଯେ ଅଷ୍ଟାଙ୍ଗ ଯୋଗୀର ଲକ୍ଷ୍ୟ କେବଳ ଭଗବାନଙ୍କୁ ଭକ୍ତି କରିବା । ପୁଣି କପିଳଙ୍କ ସାଂଖ୍ୟ ମତରେ ସତ୍ୟପଥ, ଋତପଥ, ଐଶ୍ୱର୍ଯ୍ୟ ପ୍ରାପ୍ତି, ଧନପ୍ରାପ୍ତି, କୀର୍ତ୍ତି ଅର୍ଜନ, ଶମ ଦମ ଇତ୍ୟାଦି କର୍ମମାର୍ଗ, ଜ୍ଞାନମାର୍ଗ, ଧ୍ୟାନ ମାର୍ଗ ସହିତ ଭକ୍ତିମାର୍ଗର ସେଇ ଗୋଟିଏ ସର୍ବୋଚ୍ଚ ଲକ୍ଷ୍ୟ ନିଷ୍କାମ କୃଷ୍ଣପ୍ରେମ ପ୍ରାପ୍ତି । ଏ ସବୁ ଶୁଣି ବେଦତତ୍ତ୍ୱଜ୍ଞାନୀ (ବ୍ରହ୍ମବାଦିନଃ) ଉଦ୍ଧବଜୀ ମନୁଷ୍ୟର ଶ୍ରେୟ ମାର୍ଗ ବିଷୟରେ କି ସ୍ପଷ୍ଟିକରଣ ଚାହିଁଲେ ?

ଉଦ୍ଧବ ଉବାଚ

**ବଦନ୍ତି କୃଷ୍ଣ ଶ୍ରେୟାଂସି ବହୂନି ବ୍ରହ୍ମବାଦିନଃ ।**
**ତେଷାଂ ବିକଳ୍ପ ପ୍ରାଧାନ୍ୟଂ ଉତ-ଅହୋ ଏକ ମୁଖ୍ୟତା ॥୧॥**

ଉ. ଉଦ୍ଧବଜୀ ଜାଣିବାକୁ ଚାହିଁଲେ ଯେ ସଂସାରରେ ଶ୍ରେୟମାର୍ଗ ତ ଅନେକ । ସେ ସବୁଗୁଡ଼ିକ ଶ୍ରେୟ ମାର୍ଗ ନା ସେମାନଙ୍କ ମଧ୍ୟରେ କୌଣସି ଗୋଟିଏ ମାର୍ଗ ଠିକଣା ମାର୍ଗ (ଏକ ମୁଖ୍ୟତା) ।

ପ୍ରଶ୍ନ-୪୦: ଏଭଳି ସୁନ୍ଦର ପ୍ରଶ୍ନଟିଏ ଶୁଣି ଭଗବାନ ଏକ ସୁନ୍ଦର ଉତ୍ତର ଦେଲେ । କହିଲେ ଯେ ଏ ସବୁ ମାର୍ଗ ଯଦି ଭକ୍ତି ଉତ୍ପନ୍ନ କରନ୍ତି ତେବେ ଶ୍ରେୟ ମାର୍ଗ । ଭକ୍ତି ବିହୀନ ହେଲେ ସେସବୁ ପ୍ରେୟ ମାର୍ଗ କେବଳ । ବେଦବର୍ଣ୍ଣିତ (ବେଦସଂଜ୍ଞିତା) ଏହି ରହସ୍ୟମୟ ସରଳ ଭାଗବତ ଧର୍ମଟି ଖାଲି ଶ୍ରେୟ ନୁହେଁ ଶ୍ରେୟମାନଙ୍କ ମଧ୍ୟରେ ଶ୍ରେୟ ଅର୍ଥାତ୍ ସର୍ବଶ୍ରେଷ୍ଠ ମାର୍ଗ । ଏହି ଭାଗବତ ଧର୍ମର ଇତିହାସ ତେବେ କ'ଣ ଅର୍ଥାତ୍ ଏହା କିଏ, କାହାକୁ, କେତେବେଳେ କାହିଁକି କହିଥିଲେ ?

ଶ୍ରୀ ଭଗବାନ ଉବାଚ

**କାଳେନ ନଷ୍ଟା ପ୍ରଳୟେ ବାଣୀ-ଇୟଂ ବେଦ ସଂଜ୍ଞିତା ।**
**ମୟା-ଆଦୌ ବ୍ରହ୍ମଣେ ପ୍ରୋକ୍ତା ଧର୍ମୋ ଯସ୍ୟାଂ ମଦ୍-ଆତ୍ମକଃ ॥୩॥**

ଉ. ଭଗବାନ କହିଲେ, 'ଉଦ୍ଧବଜୀ, ମୋ ମାହାତ୍ମ୍ୟ ବିଷୟ ଧର୍ମ ମୁଁ କଳ୍ପ ଆରମ୍ଭ ବେଳେ (ଆଦୌ) କହିଥିଲି ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କୁ (ବ୍ରହ୍ମଣେ) । ସୃଷ୍ଟି ଚଳାଇବା ସମ୍ବିଧାନ ଏହି ଭକ୍ତିଧର୍ମ । ସଂସାରରେ ଯୁଗ ପ୍ରଳୟ, ଚତୁର୍ଯୁଗୀ ପ୍ରଳୟ, ମନ୍ୱନ୍ତର

ପ୍ରଳୟ, କଳ୍ପାନ୍ତ ହୁଏ । ସେତେବେଳେ ଏ ବେଦ ରୂପକ ଧର୍ମର ପ୍ରଚାର, ପ୍ରସାର, ସଂରକ୍ଷଣରେ ବାଧା ଉପୁଜେ । ବେଳେ ବେଳେ ଲୁପ୍ତ ମଧ୍ୟ ହୋଇଯାଏ (ନଷ୍ଟ ପ୍ରଳୟେ) ସୁତରାଂ ବାରମ୍ବାର ମୁଁ ଏହାକୁ ଉପଦେଶ ଦେଉଥାଏ ।''

ପ୍ରଶ୍ନ-୪୧ : ଏ ଭକ୍ତି ଧର୍ମ ବ୍ରହ୍ମାଙ୍କୀ ତାଙ୍କ ପୁତ୍ର ମନୁ, ଚତୁଃସନ, ନାରଦ, ବଶିଷ୍ଠ ଭୃଗୁ ଆଦିଙ୍କୁ ଶିକ୍ଷା ଦିଅନ୍ତି । ପୁରୁଷାନୁକ୍ରମେ ତାହା ମନୁଷ୍ୟ, ସିଦ୍ଧ, ଗନ୍ଧର୍ବ, କିଂପୁରୁଷ, ବିଦ୍ୟାଧର ଆଦି ସତ୍ୱଗୁଣୀ, ରଜୋଗୁଣୀ ଓ ତମୋଗୁଣୀ ଅସୁରମାନେ ମଧ୍ୟ ଜାଣନ୍ତି । ପୁଣି ପ୍ରକାଣ୍ଡ ନାସ୍ତିକମାନେ (ପାଷାଣ୍ଡମତୟୋ) ମଧ୍ୟ ଏହି ଧର୍ମର ଓଲଟ ଅର୍ଥ ଅର୍ଥାନ୍ତର କରି ଚାର୍ବାକ ମତ ଆଦି ପ୍ରଚଳନ କରିଥାନ୍ତି । ଜୀବ ମାତ୍ରକେ ମାୟାଧୀନ । ସେ ମନୁଷ୍ୟ, ଋଷି, ମୁନି ଯାହା ବି ହେଉ । ସେମାନେ ସବୁ ନିଜ ନିଜ ସ୍ୱଭାବ, କର୍ମ, ଗୁଣକୁ ଆଶ୍ରୟ କରି କି କି ଉପମାର୍ଗକୁ ଶ୍ରେୟ ବୋଲି କହନ୍ତି ?

**ଧର୍ମଂ ଏକେ ଯଶଃ ଚ-ଅନ୍ୟେ    କାମଂ ସତ୍ୟଂ ଦମଂ ଶମମ୍ ।**
**ଅନ୍ୟେ ବଦନ୍ତି ସ୍ୱାର୍ଥଂ ବା    ଐଶ୍ୱର୍ଯ୍ୟଂ ତ୍ୟାଗ ଭୋଜନମ୍ ।**
**କେଚିତ୍ ଯଜ୍ଞଂ ତପୋ ଦାନଂ    ବ୍ରତାନି ନିୟମାନ୍ ଯମାନ୍ ।।୧୦।।**

ଉ. କେହି କେହି କହନ୍ତି ବୈଦିକ ମାର୍ଗରେ ସ୍ୱଧର୍ମ ପାଳନ କରି ସ୍ୱର୍ଗକୁ ଯିବା ସବୁଠାରୁ ବଢ଼ିଆ ମାର୍ଗ । ଆଉ କେହି କହନ୍ତି ନିଜ ସ୍ୱାର୍ଥ ରକ୍ଷା, କୀର୍ତ୍ତି ଅର୍ଜନ କରିବା, ମୈଥୁନ କାମ ଭୋଗ, ସତ୍ କହିବା, ଇନ୍ଦ୍ରିୟ ସଂଯମ, ଐଶ୍ୱର୍ଯ୍ୟ ପ୍ରାପ୍ତି, ତ୍ୟାଗ, ବଢ଼ିଆ । କେହି କେହି ଭୋଜନ କରିବା, ଯଜ୍ଞ, ତପସ୍ୟା, ଦାନ, ବ୍ରତ ଆଦି ସହିତ ଯମ ନିୟମ ପାଳନ କରିବାଠାରୁ ଆଉ କଲ୍ୟାଣକର ମାର୍ଗ ନାହିଁ ବୋଲି ଧେଣ୍ଡୁରା ପିଟନ୍ତି । ଅନ୍ୟମତ ଭୁଲ ନିଜ ମତ ଠିକ କହି ଏମାନେ ସମସ୍ତେ ନାନା ତର୍କରେ ମାତନ୍ତି ।

ପ୍ରଶ୍ନ-୪୨ : ମାୟାଧୀନ ଜୀବମାନଙ୍କ ମତ କହିସାରି ଭଗବାନ ନିଜ ମତରେ ସେ ମାର୍ଗଗୁଡ଼ିକର ତୁଚ୍ଛତା କାହିଁକି ପ୍ରତିପାଦନ କଲେ ?

**ଆଦି-ଅନ୍ତ ବନ୍ତ ଏବ-ଏଷାଂ    ଲୋକାଃ କର୍ମ ବିନିର୍ମିତାଃ ।**
**ଦୁଃଖ-ଉଦର୍କା ତମୋ ନିଷ୍ଠାଃ    କ୍ଷୁଦ୍ରା ମନ୍ଦାଃ ଶୁଚା-ଅର୍ପିତାଃ ।।୧୧।।**

ଉ. ଏ ସବୁଯାକ କେବଳ ଉପମାର୍ଗ । ସନାତନ ମାର୍ଗ ନୁହନ୍ତି । ଦିନେ ଏମାନଙ୍କର ଆରମ୍ଭ ହୁଏ । ପୁଣି ଦିନେ ଏମାନଙ୍କର ଅନ୍ତ ହୁଏ । ଏ ସବୁ ପୁରୁଷାର୍ଥ ପ୍ରଧାନ ଓ ଅହଂକାରଯୁକ୍ତ । ଆଦୌ ଶରଣାଗତି ମୂଳକ ନୁହନ୍ତି । ଦୁଃଖ, ଶୋକ,

ମୋହ ଆଚ୍ଛନ୍ନ କାରଣ ମାୟିକ କର୍ମର ଫଳବୋଲି । ଅବିଦ୍ୟା ଆଧାରିତ(ତମୋନିଷ୍ଠାଃ) ପୁରୁଷାର୍ଥ ପରାୟଣ ବୋଲି । ଏସବୁ ତକ ପ୍ରେୟ ମାର୍ଗ ପଦବାଚ୍ୟ । ଗୋଟିଏ ହେଲେ ଶ୍ରେୟ ମାର୍ଗ ନୁହନ୍ତି । ଶ୍ରେଷ୍ଠ ମାର୍ଗ ହେବା ତ ଦୂରର କଥା ।

ପ୍ରଶ୍ନ-୪୩: କୃଷ୍ଣ ଚେତନଶୀଳ ହୋଇ(ମୟି-ଅର୍ପିତ-ଆତ୍ମନଃ) ନିଷ୍କାମ ଭାବରେ ଭକ୍ତି ଆଧାରିତ କର୍ମ କଲେ(ନିରପେକ୍ଷସ୍ୟ) ନିଜକୁ ଆତ୍ମା ବୋଲି ଅନୁଭବ କରି (ମୟି ଆତ୍ମନା) କ'ଣ ଏ ଭାଗବତ ଧର୍ମ ଅନୁସରଣ କରାଯାଏ ?

**ମୟି-ଅର୍ପିତ-ଆତ୍ମନଃ ସଭ୍ୟ ନିରପେକ୍ଷସ୍ୟ ସର୍ବତଃ ।**
**ମୟି-ଆତ୍ମନା ସୁଖଂ ଯତ୍ତତ୍ କୁତଃ ସ୍ୟାତ୍ ବିଷୟ-ଆତ୍ମନାମ୍ ॥୧୨॥**

ଉ. ଠାକୁରଜୀ କହିଲେ, ''ହେ ବିଦ୍ୱାନ ଉଦ୍ଧବ(ସଭ୍ୟ), କାୟ ମନୋବାକ୍ୟରେ(ସର୍ବତଃ) ମୋର ଓ ମୋର ଭକ୍ତର ସେବା କଲେ ଯେଉଁ ଅନନ୍ତ ଓ ଅଖଣ୍ଡ ଦିବ୍ୟ ସୁଖ ମିଳେ ବିଷୟ ଭୋଗୀ ଲୋକ କାହୁଁ ପାଇବ ସେ ସୁଖ ? ଅର୍ଥାତ୍ ଆଦୌ ପାଇବ ନାହିଁ । ସେଥିପାଇଁ ସିନା ଶ୍ରେଷ୍ଠ ମାର୍ଗ ପୁଣି ସନାତନ ମାର୍ଗ !!''

ପ୍ରଶ୍ନ-୪୪: ଅବଶ୍ୟ ବେଦ ଆଦି ଶାସ୍ତ୍ରମାନଙ୍କରେ ଇନ୍ଦ୍ରଙ୍କୁ ଅମାପ ଐଶ୍ୱର୍ଯ୍ୟର ଅଧିକାରୀ ବୋଲି ବର୍ଣ୍ଣନା କରାଯାଇଛି । ଜଣେ ବୈଷ୍ଣବର ଅନୁଭୂତ କୃଷ୍ଣପ୍ରେମ ସୁଖ କ'ଣ ଇନ୍ଦ୍ରଙ୍କୁ ସ୍ୱର୍ଗସୁଖ ଠାରୁ (ମହେନ୍ଦ୍ର ଧିଷ୍ଣ୍ୟଂ) ବେଶୀ ହୋଇପାରେ କି ?

**ନ ପାରମେଷ୍ଠ୍ୟଂ ନ ମହେନ୍ଦ୍ରଧିଷ୍ଣ୍ୟଂ**
**ନ ସାର୍ବଭୌମ୍ୟଂ ନ ରସା-ଆଧିପତ୍ୟମ୍ ।**
**ନ ଯୋଗସିଦ୍ଧିଃ ଅପୁନର୍ଭବଂ ବା**
**ମୟି-ଅର୍ପିତ-ଆତ୍ମା-ଇଚ୍ଛତି ମତ୍ ବିନା-ଅନ୍ୟତ୍ ॥୧୪॥**

ଉ. କେବଳ ଇନ୍ଦ୍ରଙ୍କ ସୁଖ କଥା କ'ଣ କହିବା ସେ ସୁଖ ବ୍ରହ୍ମାଙ୍କ ସୁଖ (ପାରମେଷ୍ଠ୍ୟଂ), ସମଗ୍ର ପୃଥିବୀର ରାଜାଙ୍କ ସୁଖ (ସାର୍ବଭୌମଂ), ସପ୍ତପାତାଳର ଅଧୀଶ୍ୱରଙ୍କ ସୁଖ (ରସାଧିପତ୍ୟଂ), ଅଣିମାଦି ସକଳ ସିଦ୍ଧିରୁ ମିଳୁଥିବା ସୁଖ, ପାଞ୍ଚ ପ୍ରକାର ମୋକ୍ଷରୁ ମିଳୁଥିବା ସୁଖ (ଅପୁନର୍ଭବଂ)ଠାରୁ ମଧ୍ୟ ଅଧିକ ଅଟେ । କାରଣ ଜଣେ କୃଷ୍ଣଭକ୍ତ (ମୟି-ଅର୍ପିତ-ଆତ୍ମା)କୃଷ୍ଣ ପ୍ରେମ ବ୍ୟତୀତ ଅନ୍ୟ କୌଣସି ଲୌକିକ ଅଲୌକିକ ବସ୍ତୁ, ବ୍ୟକ୍ତି ବା ପରିସ୍ଥିତିକୁ ତୁଚ୍ଛ ମଣିଥାଏ । କାହିଁ ସୁବର୍ଣ୍ଣର ଅଳଙ୍କାର କାହିଁ ତୁଚ୍ଛାତିତୁଚ୍ଛ କାଇଁଚ ମାଳି । ସେଥିପାଇଁ ସିନା ଭାରତରେ ଗୋଟିଏ ହେଲେ ଇନ୍ଦ୍ରଙ୍କ ମନ୍ଦିର ନାହିଁ ।

ପ୍ରଶ୍ନ-୪୫: ଭକ୍ତ ସିନା ଭଗବାନଙ୍କୁ ଏତେ ବେଶୀ ଭଲପାଏ, ଭଗବାନ୍ ଜଣେ ଭକ୍ତକୁ କେତେ ମାତ୍ରାରେ ଭଲ ପାଆନ୍ତି ଏହି ବୈଷ୍ଣବ ଧର୍ମରେ ?

**ନ ତଥା ମେ ପ୍ରିୟତମ          ଆତ୍ମଯୋନିଃ ନ ଶଙ୍କରଃ ।**

**ନ ଚ ସଂକର୍ଷଣୋ ନ ଶ୍ରୀଃ     ନ-ଏବ-ଆତ୍ମା ଚ ଯଥା ଭବାନ୍ ॥୧୫॥**

ଉ. ଗୋବିନ୍ଦ ଅତ୍ୟନ୍ତ ଆନନ୍ଦ ସହକାରେ କହିଲେ, ‘‘ହେ ମୋର ପ୍ରିୟ ଭକ୍ତ ପରମ ବୈଷ୍ଣବ ଉଦ୍ଧବ, ମୁଁ ତୁମକୁ (ଯଥା ଭବାନ୍) ଯେତେ ଭଲ ପାଏ, ମୁଁ ମୋର ପୁତ୍ର ବ୍ରହ୍ମାଙ୍କୁ (ଆତ୍ମଯୋନିଃ), ଶଙ୍କରଙ୍କୁ, ମୋ ଭାଇ ବଳରାମଙ୍କୁ, ମୋ ପତ୍ନୀ ମହାଲକ୍ଷ୍ମୀଙ୍କୁ ଏପରିକି ମୋର ଆତ୍ମାକୁ ମଧ୍ୟ ଏତେ ଭଲ ପାଇ ନଥାଏ । ସେମାନେ ସିନା ମୋ ପାଇଁ ପ୍ରିୟ କିମ୍ବା ପ୍ରିୟତର ତୁମେ କିନ୍ତୁ ମୋର ପ୍ରିୟତମ ।’’

ପ୍ରଶ୍ନ-୪୬: ଭଗବାନ ନାରାୟଣ ରୂପରେ ବ୍ରହ୍ମାଶଙ୍କରଙ୍କ ପାଖେ ପାଖେ ରହନ୍ତି, ବଳରାମଙ୍କ ସହ ଖେଳ, କୁଦ, ପାନ ଏବଂ ଭୋଜନ ଆଦି କରନ୍ତି ଓ ମହାଲକ୍ଷ୍ମୀଙ୍କୁ ବକ୍ଷରେ ଧାରଣ କରନ୍ତି ତେବେ ଭକ୍ତକୁ କେଉଁ ସ୍ଥାନ ଦିଅନ୍ତି ?

**ନିରପେକ୍ଷଂ ମୁନିଂ ଶାନ୍ତଂ          ନିର୍ବୈରଂ ସମଦର୍ଶନମ୍ ।**

**ଅନୁବ୍ରଜାମି-ଅହଂ ନିତ୍ୟଂ          ପୂୟେୟେତି-ଅଙ୍ଘ୍ରି ରେଣୁଭିଃ ॥୧୬॥**

ଉ. ଭକ୍ତ ଯଦି ଅନାସକ୍ତ (ନିରପେକ୍ଷ), ଶୌଚ, ଶାନ୍ତ, ବୈରଭାବ ଶୂନ୍ୟ ଓ ସମଦର୍ଶୀ ହୁଏ ତେବେ ଭଗବାନ ତାକୁ ସଦା ସର୍ବଦା ଜଗି ରହନ୍ତି । କାୟାକୁ ଛାୟା ନ ଛାଡ଼ିବା ପରି । ତକୁ ଆଗେ ଆଗେ ଚଳାଇ ତା ପଛେ ପଛେ ଚାଲନ୍ତି । ତାକୁ ବିପଦରୁ ରକ୍ଷା କରିବାକୁ ନୁହେଁ ବରଂ ସେ ଚାଲିବା ବେଳେ ତା ପାଦରୁ ପଛକୁ ଛିଟିକି ପଡୁଥିବା ପାଦରେଣୁ ଭଗବାନଙ୍କ ଉପରେ ପଡ଼ିଗଲେ ସେ ଆହୁରି ଅଧିକ ପବିତ୍ର ହୋଇଯିବେ ଏହି ଲକ୍ଷ୍ୟରେ ! ! !

ପ୍ରଶ୍ନ-୪୭: ନିଜ ହୃଦୟରେ କୃଷ୍ଣଭକ୍ତି ଉତ୍ପନ୍ନ ହେବା ପରେ ଭକ୍ତ ମଧ୍ୟ ଏହି ସଂସାରରେ ରହେ । ରୂପ, ରସ, ଗନ୍ଧ ଆଦି ବିଷୟ ତାର ମନ ବୁଦ୍ଧିକୁ ଆକ୍ରମଣ କରନ୍ତି । ବିଷୟର ବିଷଜ୍ୱାଳା ସାଙ୍ଗରେ ଲଢ଼େଇ କରେ ଭକ୍ତ । ଶେଷରେ ମନ, ବୁଦ୍ଧି ସହ ଇନ୍ଦ୍ରିୟମାନେ ସମସ୍ତେ ଭକ୍ତି ପାଖରେ ହାର ମାନନ୍ତି । ତୀବ୍ର ହରି ଭକ୍ତିର ପ୍ରଭାବରେ ବୈଷ୍ଣବ ହସି ହସି କାମ ଜ୍ୱାଳା, କ୍ରୋଧ ଜ୍ୱାଳା, ଲୋଭ ମୋହର ଉପଦ୍ରବ ସତ୍ତ୍ୱେ କୃଷ୍ଣ ପ୍ରେମରୁ ଆଦୌ ବିଚ୍ୟୁତ୍ ହୁଏନା । ବେଦ ବର୍ଣ୍ଣିତ କର୍ମକାଣ୍ଡ, ଜ୍ଞାନ କାଣ୍ଡ, ଉପାସନା କାଣ୍ଡ, ବେଦ ଅଧ୍ୟୟନ, ତପ ଓ ତ୍ୟାଗ ଇତ୍ୟାଦି କ’ଣ ପରମାତ୍ମାଙ୍କୁ ପ୍ରସନ୍ନ କରିପାରନ୍ତି ନାହିଁ କି ?

**ନ ସାଧୟତି ମାଂ ଯୋଗୋ ନ ସାଂଖ୍ୟଂ ଧର୍ମ ଉଦ୍ଧବ ।**
**ନ ସ୍ୱାଧାୟଃ ତପଃ ତ୍ୟାଗୋ ଯଥା ଭକ୍ତିଃ ମମ-ଉର୍ଜିତା ||୨୦||**

ଉ. ଅନ୍ୟ ସକଳ ଧର୍ମ ସାଧନ ହୁଏତ ପ୍ରସନ୍ନ କରିପାରନ୍ତି କିନ୍ତୁ ଶୁଦ୍ଧ କୃଷ୍ଣ ପ୍ରେମ (ଭକ୍ତିଃ ମମ ଉର୍ଜିତା) ପରମାତ୍ମାଙ୍କୁ ପ୍ରସନ୍ନ କରିବ କଅଣ ବଶୀଭୂତ କରିଦିଏ । ବସ ଉଠ କରେ ଠିକ୍ କହ୍ନେୟାକୁ ଯଶୋଦା, ରୋହିଣୀ ମାତା ନଚେଇବା ସଦୃଶ ।

ପ୍ରଶ୍ନ-୪୮: ଦଶରଥ, କୌଶଲ୍ୟା, ଦେବକୀ, ବସୁଦେବ, କଶ୍ୟପ ଅଦିତି ଇତ୍ୟାଦି ବ୍ରାହ୍ମଣ କ୍ଷତ୍ରିୟଙ୍କ ଭଳି ଉଚ୍ଚବର୍ଣ୍ଣର ଥିଲେ ବୋଲି ଭଗବାନଙ୍କୁ ଭକ୍ତିରେ ବଶ କରିପାରିଥିଲେ କି ?

**ଭକ୍ତ୍ୟା-ଅହଂ ଏକୟା ଗ୍ରାହ୍ୟଃ ଶ୍ରଦ୍ଧୟା-ଆତ୍ମା ପ୍ରିୟଃ ସତାମ୍ ।**
**ଭକ୍ତିଃ ପୁନାତି ମତ୍‌ନିଷ୍ଠା ଶ୍ୱପାକାନ୍ ଅପି ସମ୍ଭବାତ୍ ||୨୧||**

ଉ. ସେ କଥା ମଧ ପୂର୍ଣ୍ଣ ସତ୍ୟ ନୁହେଁ । ଅନ୍ତରର ଶ୍ରଦ୍ଧାଯୁକ୍ତ ଶୁଦ୍ଧ ଭକ୍ତି ଦ୍ୱାରା କୁକୁର ମାଂସ ଭୋଜି (ଶ୍ୱପାକାନ୍ ଅପି) ଜନ୍ମରୁ ଚାଣ୍ଡଳ ହୋଇ ମଧ ଐକାନ୍ତିକ ଭକ୍ତି କରି ଭଗବାନଙ୍କୁ ବଶ କରିଥାଏ । ଭକ୍ତି ତାର ଅନ୍ତଃକରଣର ଷଡ଼ ରିପୁ, କାମନା, ବାସନା ସବୁକୁ ଜାଳି ପୋଡ଼ି ଶୁଦ୍ଧ କରିଦିଏ । ବସିବା ଆସନ ନିର୍ମଳ ହେଲେ ଭଗବାନ ପରମ ଆନନ୍ଦରେ ଭକ୍ତ ହୃଦୟରେ ଆସନ ଜମାଇ ଲୀଳା କରନ୍ତି ଓ କରାନ୍ତି ।

ପ୍ରଶ୍ନ-୪୯: ସ୍ୱଧର୍ମ ପାଳନ, ସତ୍ୟ ଭାଷଣ, ଦୟା ଯୁକ୍ତ ହେଲେ କିମ୍ବା ବ୍ରହ୍ମ ବିଦ୍ୟା କଠୋର ତପସ୍ୟା ଯୁକ୍ତ ହେଲେ ବ୍ରହ୍ମା, ବିଷ୍ଣୁ, ଶଙ୍କର ଆଦି ଦେବତା ସନ୍ତୁଷ୍ଟ ହୋଇ ବର ପ୍ରଦାନ କରିବାର ଅନେକ ଦୃଷ୍ଟାନ୍ତ ଅଛି । ଭଗବାନ ଦୟା ଓ ତପସ୍ୟାକୁ ଉପେକ୍ଷା କରି ଭକ୍ତିକୁ ଏତେ ଉଚ୍ଚସ୍ଥାନ ଦେବାର କାରଣ କଅଣ ?

**ଧର୍ମଃ ସତ୍ୟ ଦୟା-ଉପେତୋ . ବିଦ୍ୟା ବା ତପସ୍ୟା-ଅନ୍ୱିତା ।**
**ମଦ୍‌ଭକ୍ତ୍ୟା-ଅପେତଂ ଆତ୍ମାନଂ ନ ସମ୍ୟକ୍ ପ୍ରପୁନାତି ହି ||୨୨||**

ଉ. ବିନା ଭକ୍ତିରେ (ଅପେତଂ) ଧର୍ମ ଧର୍ମ ନୁହେଁ, ଦୟା ଦୟା ନୁହେଁ, ସତ୍ୟ ସତ୍ୟ ନୁହେଁ, ବିଦ୍ୟା ବିଦ୍ୟା ନୁହେଁ କି ତପସ୍ୟା ମଧ ତପସ୍ୟାରେ ଗଣାଯାଏ ନାହିଁ । ସବୁ ଖାଲି ଉତ୍ପାତ । ହିରଣ୍ୟକଶିପୁଙ୍କ ଭଳି ତପସ୍ୟା କରି ରାବଣଙ୍କ ଭଳି ଭକ୍ତିହୀନ ତପସ୍ୱୀ, ବିଦ୍ୱାନ ବ୍ରାହ୍ମଣ ବଂଶୀ ଋଷିପୁତ୍ର ରାଜାଙ୍କର କି ସଦ୍‌ଗତି ହେବ ? ଅନ୍ୟ ବାକ୍ୟରେ ଦୁର୍ଗତି ବା ପତନ ହେବ ଭକ୍ତିହୀନ ହେଲେ । ବିନା ଭକ୍ତିରେ ସାଧକର ଅନ୍ତଃକରଣ ଶୁଦ୍ଧି ଅସମ୍ଭବ । ସକଳ ସାଧନା ଚୁଲି ପାଉଁଶକୁ ଯୋଗ୍ୟ ।

ପ୍ରଶ୍ନ-୫୦: କେଉଁ କେଉଁ ଲକ୍ଷଣଯୁକ୍ତ ଶୁଦ୍ଧ ଭକ୍ତ ଭଗବାନଙ୍କ ଲାଗି କଅଣ କଅଣ ସବୁ କରିପାରେ ?

**ବାକ୍ ଗଦ୍‌ଗଦା ଦ୍ରବତେ ଯସ୍ୟ ଚିତ୍ତଂ**
**ରୁଦତି ଅଭୀକ୍ଷ୍ଣଂ ହସତି କ୍ୱଚିତ୍ ଚ ।**
**ବିଲଜ୍ଜ ଉଦ୍‌ଗାୟତି ନୃତ୍ୟତେ ଚ**
**ମଦ୍ ଭକ୍ତି ଯୁକ୍ତୋ ଭୁବନଂ ପୁନାତି ॥୨୪॥**

ଉ. ହରି କଥା ଶ୍ରବଣ, କୀର୍ତ୍ତନ, ମନନ ବେଳେ ଯାହାର ବାଣୀରେ ଗଦ୍ ଗଦ୍ ଲକ୍ଷଣ ଦେଖାଯାଏ, ପର ଦୁଃଖ ଦେଖି ଯାହାର ଚିତ୍ତ ତରଳି ଯାଏ, ଅନେକ ସମୟରେ ଚକ୍ଷୁରୁ ପ୍ରେମ ଅଶ୍ରୁ ଗଡ଼ିଯାଏ, ଯେ ବେଳେ ବେଳେ ମନକୁ ମନ ହରିକଥା ସ୍ମରଣ କରି ହସି ପକାଏ, ଲାଜ ଶରମ ଛାଡ଼ି ହରି ବନ୍ଦନା ଗାଏ ଓ ଲଜ୍ଜା ଶୂନ୍ୟ ହୋଇ ସତ୍‌ସଙ୍ଗରେ ନାଚିପାରେ ସେ ନିଶ୍ଚୟ ଜଣେ ଶୁଦ୍ଧ ଭକ୍ତ । ସେ କେବଳ ନିଜକୁ, ନିଜ ପରିବାରକୁ ଶୁଦ୍ଧପ୍ରେମ ଭକ୍ତିରେ ପବିତ୍ର କରେ ନା ବରଂ ସମଗ୍ର ସଂସାରକୁ ମନୁଷ୍ୟ, ପଶୁ, ପକ୍ଷୀ, ବୃକ୍ଷଲତା, ଭୂମି, ଜଳ ଆକାଶ ଆଦିଙ୍କୁ ପବିତ୍ର କରିପକାଏ । ସେଇ ତ ଭକ୍ତି ମହାରାଣୀଙ୍କ ବାହାଦୂରୀ । ଜ୍ଞାନ, ଧ୍ୟାନ, କର୍ମ ଆଦି ହୁଏତ କେବଳ ସେଇ ଭକ୍ତିଯୁକ୍ତ ସାଧକକୁ ମୁକ୍ତି, ସିଦ୍ଧି, ସ୍ୱର୍ଗ ଆଦି ଫଳ ଦେଇପାରନ୍ତି ଅନ୍ୟକୁ ନୁହେଁ ।

ପ୍ରଶ୍ନ-୫୧: ନିରନ୍ତର ବିଷୟ ଧ୍ୟାନରେ ବିଷୟୀ ପୁରୁଷର ଚିତ୍ତ (ମନ ଓ ବୁଦ୍ଧି ଉଭୟେ) ବିଷୟ ବିଷରେ ବୁଡ଼ନ୍ତି । ଭଗବାନଙ୍କର ନିରନ୍ତର ଚିନ୍ତନ କଲେ ଭକ୍ତର କି ଅବସ୍ଥା ହେବ ?

**ବିଷୟାନ୍ ଧ୍ୟାୟତଃ ଚିତ୍ତଂ ବିଷୟେଷୁ ବିଷଜତେ ।**
**ମାଂ ଅନୁସ୍ମରତଃ ଚିତ୍ତଂ ମୟି-ଏବ ପ୍ରବିଲୀୟତେ ॥୨୭॥**

ଉ. କଅଣ ଆଉ ହୁଅନ୍ତା ? କୃଷ୍ଣପ୍ରେମ ସାଗରରେ ସେ ବୁଡ଼ନ ମାରେ । ଥଳ କୂଳ ପାଏନା ବିଚରା । ସେ ପ୍ରେମ କେବଳ ଅଖଣ୍ଡ ନୁହେଁ ଅନନ୍ତ, ନିତ୍ୟ ନବାୟମାନ, ତରଙ୍ଗାୟିତ ପୁଣି ନିତ୍ୟ ବର୍ଦ୍ଧମାନ ।

ପ୍ରଶ୍ନ-୫୨: ନିର୍ମଳ କୃଷ୍ଣଭକ୍ତି ସାଧନାରେ କିଛି ସଂସାରୀ ବାଧା ବିଘ୍ନର ସମ୍ମୁଖୀନ ହୁଏକି ଭକ୍ତ ?

**ସ୍ତ୍ରୀଣାଂ ସ୍ତ୍ରୀସଙ୍ଗିନାଂ ସଙ୍ଗଂ ତ୍ୟକ୍ତ୍ୱା ଦୂରତ ଆତ୍ମବାନ୍ ।**
**କ୍ଷେମେ ବିବିକ୍ତ ଆସୀନଃ ଚିନ୍ତୟେତ୍ ମାଂ ଅତନ୍ଦ୍ରିତଃ ॥୨୯॥**

ଉ. ହଁ ହଁ ନିଶ୍ଚୟ ଅନେକ ବାଧା ବିଘ୍ନ ତା ବାଟ ଓଗାଳନ୍ତି । କାମୁକିନୀ ନାରୀ ସଙ୍ଗ କିମ୍ବା ସେଭଳି ନାରୀର ସଙ୍ଗ କରୁଥିବା ପୁରୁଷଙ୍କଠାରୁ ସେ ଦୂରରେ ରହିବ । ସାବଧାନ ହୋଇ (ଅତନ୍ଦ୍ରିତଃ) ଏକାନ୍ତ ସ୍ଥାନରେ (ବିବିକ୍ତ)ଅବସ୍ଥାନ କରି (ମଠରେ ମନ୍ଦିରରେ କିମ୍ବା ଆଶ୍ରମ ଆଦି ସ୍ଥାନରେ) ଭକ୍ତି ସାଧନା ଆରମ୍ଭ କରାଯିବା ଉଚିତ । କାରଣ ଲୋଭ ଓ କ୍ରୋଧ ଆଦି ରିପୁ ଭକ୍ତ ନିମିତ୍ତ ସେତେଟା ଭୟପ୍ରଦ ନୁହନ୍ତି ଭକ୍ତି ମାର୍ଗୀ ପାଇଁ ଯେତେ ଭୟ ଉତ୍ପନ୍ନ କରେ ମୈଥୁନ ସୁଖ ଭାବନା । ସକଳ ବାଧା ବିଘ୍ନରୁ ଭକ୍ତକୁ ରକ୍ଷା କରିବା ଠିକା ଭଗବାନ ସ୍ୱୟଂ ନିଅନ୍ତି । ଭକ୍ତ ବେପରୁଆ ବୁଲେ ଭଗବାନଙ୍କ କର୍ମ କରି କରି ।

ପ୍ରଶ୍ନ-୫୩: ସ୍ଥୁଳ ଦେହରେ କର୍ମ, ସୂକ୍ଷ୍ମ ଦେହରେ ଧ୍ୟାନ ଓ କାରଣ ଦେହରେ ଭକ୍ତି ସାଧନା କରାଯାଏ । ଜ୍ଞାନ ସାଧନା କରାଯାଏ ବେଦ ମନ୍ତ୍ର ଜପ ଓ ମନ ମଧ୍ୟରେ ତଦର୍ଥ ଭାବନା କରି । ସୁତରାଂ କିଭଳି ଧ୍ୟାନ କରି ସାଧକ ସାଯୁଜ୍ୟ ମୁକ୍ତି ପ୍ରାପ୍ତ କରି ପାରନ୍ତି ଏକଥା ବିଶଦ ଭାବରେ ଜାଣିବାକୁ ଉଦ୍ଧବଜୀ ଆଗ୍ରହୀ ହୋଇଛନ୍ତି । ଭଗବାନ ପ୍ରଥମେ ଆସନର କାଇଦା, ଯମ ନିୟମ ପାଳନର ଉପକାରିତା, ପ୍ରାଣାୟାମ ପ୍ରଣାଳୀ, ପ୍ରତ୍ୟାହାର ଓ ଧାରଣା ସଂକ୍ଷେପରେ କହି ସାରି ଶେଷରେ ଧ୍ୟାନ ବିଧି ବିଧାନ ସହିତ ମନ ନିରୋଧର ଉପାୟ ବିସ୍ତୃତ ଭାବରେ ଖୋଲି କରି ବତାଇଛନ୍ତି ।

ଜ୍ଞାନ ମିଶ୍ରା ଭକ୍ତି ମାର୍ଗରେ ଧ୍ୟାନ କଲାବେଳେ ପ୍ରଥମେ ଭଗବାନ ନାରାୟଣଙ୍କ ଏକ ଏକ ଅଙ୍ଗ ମନରେ କଳ୍ପନା କରି, ପରେ ସର୍ବାଙ୍ଗ କଳ୍ପନା କରାଯିବ । ତତ୍‌ପରେ ସେଥିରୁ ମନକୁ ହଟାଇ କେବଳ ଭଗବାନଙ୍କ ସ୍ମିତ ଭାସ୍ୟଯୁକ୍ତ ମୁଖ କମଳରେ ମନକୁ ସ୍ଥିର କରିବ । ସେତେବେଳେ ଧ୍ୟାନ, ଧ୍ୟେୟ ଓ ଧ୍ୟାତା ଏକତ୍ର ହୋଇଯିବେ । ସାଧକ ଦେଖିବ ପ୍ରଥମେ ସୂର୍ଯ୍ୟଙ୍କ ପାଖରେ ଆଲୋକ କଣିକା, ଚନ୍ଦ୍ରଦେବତାଙ୍କ ପାଖରେ ଆହ୍ଲାଦର କିରଣ ଓ ଶେଷରେ ଅଗ୍ନି ମଧ୍ୟରେ (କାଷ୍ଠ ମଧ୍ୟରେ ଆତ୍ମ ଗୋପନ କରି ରହିଥିବା ଅଗ୍ନି) ଭଗବାନ ନାରାୟଣଙ୍କ ଦିବ୍ୟ ଶରୀର । ସେ ନିଜେ କିନ୍ତୁ ପରମାତ୍ମାଙ୍କର ଆଲୋକ, ଉତ୍ତାପ, ଜ୍ଞାନ ରୂପୀ ଶକ୍ତି ମାତ୍ର । ଜ୍ଞାନଯୋଗୀ ଏଭଳି ଧ୍ୟାନ କରି କ'ଣ ସଂପୂର୍ଣ୍ଣ ମାୟାମୁକ୍ତ ହୋଇଯିବ ?

**ଧ୍ୟାନେନ-ଇତ୍‌ଥଂ ସୁତୀବ୍ରେଣ ଯୁଞ୍ଜତୋ ଯୋଗିନୋ ମନଃ ।**
**ସଂଯାସ୍ୟତି-ଆଶୁ ନିର୍ବାଣଂ ଦ୍ରବ୍ୟ ଜ୍ଞାନ କ୍ରିୟା ଭ୍ରମଃ ।।୪୬।।**

ଉ. ସାଧକର ମନ ରୂପୀ ଅହଂକାର ସୂର୍ଯ୍ୟଙ୍କର କିରଣ ସୂର୍ଯ୍ୟଙ୍କ ସହିତ ସଂପୂର୍ଣ୍ଣ ମିଶିଗଲେ (ଯୁଞ୍ଜତୋ) ସେ ଭିନ୍ନ ଭିନ୍ନ ଭୋଗ୍ୟ ଦ୍ରବ୍ୟର ଭିନ୍ନତା ଜ୍ଞାନ (ଦ୍ରବ୍ୟ

ଜ୍ଞାନ) ଭୋକ୍ତୃତ୍ୱ ପଣିଆ ଓ କରୁଥିବା କର୍ମର କର୍ତ୍ତୃତ୍ୱ (କ୍ରିୟା) ପଣିଆ ଭୁଲ୍ ବୁଝାମଣା (ଭ୍ରମ) ମୁକ୍ତ ହେବେ । ଅନ୍ୟ ଶବ୍ଦରେ ସେହି ଅବସ୍ଥାର ନାମ ବୌଦ୍ଧ ଧର୍ମର ବ୍ରହ୍ମ ନିର୍ବାଣ ବା ବୈଦିକ ଅଦ୍ୱୈତ ବାଦର ସାଯୁଜ୍ୟ ବା କୈବଲ୍ୟ ମୁକ୍ତି ।

# ଅଥ ୧୫ଶ ଅଧ୍ୟାୟଃ

## (୨୮ଯୋଗ ସିଦ୍ଧି ସିନା କର୍ମଯୋଗୀର ଲୋଭ, ଜ୍ଞାନ ଯୋଗର ଆଶ୍ରୟ କିନ୍ତୁ ଭକ୍ତ ପାଇଁ ବିଘ୍ନ)

ପ୍ରଶ୍ନ-୫୪: ସାଯୁଜ୍ୟ ମୁକ୍ତି ଲୋଭରେ ଧ୍ୟାନୀ ଧ୍ୟାନ କରୁ କରୁ ଅଠେଇଶ ପ୍ରକାରର ସିଦ୍ଧି ନ ଚାହିଁଲେ ମଧ୍ୟ ସ୍ୱୟଂ ଉପସ୍ଥିତ ହୁଅନ୍ତି ସାଧକର ସେବା କରିବା ପାଇଁ । ଉଦ୍ଧବଜୀ ଯୋଗସିଦ୍ଧିମାନଙ୍କର ପ୍ରକାରଭେଦ, ପ୍ରାପ୍ତିର ସାଧନ ଓ ବିଘ୍ନର କାରଣ ବିଷୟରେ ବିସ୍ତୃତ ଭାବରେ ଜାଣିବାକୁ ଭଗବାନଙ୍କୁ ପ୍ରଶ୍ନ କରିଛନ୍ତି । ଉତ୍ତରରେ ମହାଯୋଗେଶ୍ୱର କୃଷ୍ଣ ସଂକ୍ଷେପରେ ସେ ସବୁକୁ କାହିଁକି ଓ କିପରି ବର୍ଣ୍ଣନ କଲେ ?

**ଶ୍ରୀ ଭଗବାନ ଉବାଚ**

**ସିଦ୍ଧୟୋଽଷ୍ଟାଦଶ ପ୍ରୋକ୍ତା ଧାରଣା ଯୋଗପାରଗୈଃ ।**
**ତାସାଂ ଅଷ୍ଟୌ ମତ୍ ପ୍ରଧାନା ଦଶ-ଏବ ଗୁଣହେତବଃ ॥୩॥**

ଉ. ଯୋଗତତ୍ତ୍ୱବିତ୍‌ମାନେ ଧ୍ୟାନ ଦ୍ୱାରା (ଧାରଣା) ନାରାୟଣ ଆଶ୍ରୟୀ ନିର୍ଗୁଣୀ ଭକ୍ତଙ୍କୁ (ମତ୍ ପ୍ରଧାନା) ଆଠ ପ୍ରକାରର ମୁଖ୍ୟ ସିଦ୍ଧି ଓ ସତ୍ତ୍ୱଗୁଣୀ ଦେବତା ଆଶ୍ରୟୀ ସତ୍ତ୍ୱଗୁଣୀ ଅଷ୍ଟାଙ୍ଗ ଯୋଗୀଙ୍କୁ ଦଶ ପ୍ରକାର ଗୌଣସିଦ୍ଧି ମିଳେ ବୋଲି ସ୍ୱୀକାର କରନ୍ତି ।

ମୁଖ୍ୟ ଅଷ୍ଟସିଦ୍ଧିର ନାମ ୧.ଅଣିମା (ଅଣୁ ଆକାର ଧାରଣ କରିବା ଶକ୍ତି) ୨. ମହିମା (ବିରାଟ ଆକାର ପ୍ରାପ୍ତିର ଶକ୍ତି), ୩. ଲଘିମା (ତୂଳା ଭଳି ହାଲକା ହୋଇଯିବା). ୪. ପ୍ରାପ୍ତି (ଇଚ୍ଛାନୁରୂପ ଦ୍ରବ୍ୟ ପ୍ରାପ୍ତି), ୫. ପ୍ରାକାମ୍ୟ (ଇଚ୍ଛାନୁରୂପ କାର୍ଯ୍ୟ ସାଧନ ଶକ୍ତି), ୬. ଇଶିତା (ଅନ୍ୟ ଜୀବ ଶରୀର ଉପରେ ନିୟନ୍ତ୍ରଣ), ୭.ବଶିତା (ଅନ୍ୟଜୀବ ଦ୍ୱାରା ନିଜର ଅଭୀଷ୍ଟ ସାଧନ କରିବା) ଓ ୮. କାମବଶାୟିତା (ସକଳ ଭୌତିକ କାମନା, ବାସନାକୁ ଈଶ୍ୱରଙ୍କୁ ପ୍ରତ୍ୟର୍ପଣ) ।

ଦଶ ଗୌଣସିଦ୍ଧିର ନାମ ୧.ଅନୂର୍ମି (କ୍ଷୁଧା-ତୃଷା ଜୟ, ଜନ୍ମ-ମୃତ୍ୟୁରେ ନିର୍ଭୟ ଓ ଶୋକ-ମୋହରୁ ଅତୀତ), ୨. ଦୂରଦର୍ଶନ.୩.ଦୂରଶ୍ରବଣ, ୪.ମନୋଜବ (ନିଜ ଶରୀରକୁ ନିଜ ମନ ପଛେ ପଛେ ନେଇ ଚାଲିବାର ଶକ୍ତି), ୫.କାମରୂପ (ଇଛାନୁରୂପ ଶରୀର ଧାରଣ), ୬. ପରକାୟ ପ୍ରକାଶ, ୭.ସ୍ୱଚ୍ଛନ୍ଦ ମୃତ୍ୟୁ (ଯୋଗ ବଳଦ୍ୱାରା ପ୍ରାଣ ତ୍ୟାଗ), ୮.ଦେବୀ ଦେବତାଙ୍କ ସ୍ୱର୍ଗର ସୂକ୍ଷ୍ମ କ୍ରୀଡ଼ା ଦର୍ଶନ, ୯.ସଂକଳ୍ପ ସିଦ୍ଧି (ଯାହା ଈଶ୍ୱରଙ୍କ ଆଜ୍ଞା ତାକୁ କାର୍ଯ୍ୟରୂପ ଦେବା), ୧୦.ଅପ୍ରତିହତା ଗତି (ନାରଦ, ଚତୁଃସନଙ୍କ ସଦୃଶ ଚତୁର୍ଦ୍ଦଶ ଭୁବନ ଯାଇପାରିବା ଶକ୍ତି ।

ପ୍ରଶ୍ନ-୫୫: ଶୁଦ୍ଧ ଭକ୍ତକୁ ଆଠ ମୁଖ୍ୟ ସିଦ୍ଧି ଓ ଜ୍ଞାନୀ ଭକ୍ତକୁ ଦଶ ଗୌଣସିଦ୍ଧି ଆଶ୍ରୟ କରନ୍ତି । ଯୋଗୀ ଭକ୍ତକୁ କେଉଁ କେଉଁ ଦଶ ସାମାନ୍ୟ ସିଦ୍ଧି ଆଶ୍ରୟ କରିଥାଆନ୍ତି ?

**ତ୍ରିକାଳଜ୍ଞତ୍ୱଂ ଅଦ୍ୱନ୍ଦ୍ୱଂ ପରଚିତ୍ତ-ଆଦି-ଅଭିଜ୍ଞତା ।**
**ଅଗ୍ନି-ଅର୍କ-ଅମ୍ବୁ-ବିଷ-ଆଦିନାଂ ପ୍ରତିଷ୍ଟମ୍ଭୋଽପରାଜୟଃ ॥୮॥**

ଉ. ୧.ତ୍ରିକାଳଜ୍ଞତ୍ୱ (ବର୍ତ୍ତମାନ, ଅତୀତ, ଭବିଷ୍ୟତ ଘଟଣା ଜାଣିବା ଶକ୍ତି), ୨. ନିଜର ଓ ଅନ୍ୟର ଜନ୍ମ-ମୃତ୍ୟୁ ବିଷୟ ଜାଣିପାରିବା, ୩. ଅଦ୍ୱନ୍ଦ୍ୱ (ସୁଖ-ଦୁଃଖ, ଶୀତଳତା-ଉଷ୍ଣତା, ହର୍ଷ-ଶୋକରୁ ଅତୀତ ହେବାର ଶକ୍ତି), ୪. ପରଚିତ୍ତ ଆଦି ଅଭିଜ୍ଞତା (ଅନ୍ୟର ମନ, ବୁଦ୍ଧିର ଭାବନା ଜାଣିପାରିବା), ୫. ଅଗ୍ନିସ୍ତମ୍ଭନ (ମନ୍ତ୍ରଶକ୍ତି ଦ୍ୱାରା ଅଗ୍ନି ନିର୍ବାପନ), ୬. ଅର୍କ ସ୍ତମ୍ଭନ (ସୂର୍ଯ୍ୟଙ୍କ ଗତିରୋଧ କରିବା ଶକ୍ତି), ୭. ଅମ୍ବୁ ସ୍ତମ୍ଭନ (ନଦୀର ଜଳଧାରାକୁ ନିରୋଧ କରିବା), ୮.ବିଷ ସ୍ତମ୍ଭନ, ୯.ଅସ୍ତ୍ର-ଶସ୍ତ୍ର ସ୍ତମ୍ଭନ ଓ ୧୦.ଅପରାଜୟ ସିଦ୍ଧି (ଶତ୍ରୁକୁ ବଶ କରିବା ଶକ୍ତି) । ଏହି ୧୦ ସାମାନ୍ୟ ସିଦ୍ଧି ମିଳିପାରେ ଭକ୍ତିହୀନ ସିଦ୍ଧ ଯୋଗୀ ମାନଙ୍କୁ । ଅତଏବ ସିଦ୍ଧି ୨୮ ପ୍ରକାରର ।

ପ୍ରଶ୍ନ-୫୬: ଶ୍ରୀମନ୍ ନାରାୟଣଙ୍କ ବିଭୂତି ଚିନ୍ତନରେ ଜ୍ଞାନୀ, ଧ୍ୟାନୀ, ଭକ୍ତ ଏତେ ସିଦ୍ଧିର ଅଧିକାରୀ ହୁଅନ୍ତି । ତେବେ ତ ସେମାନେ ସମସ୍ତେ ସହଜରେ ମୁକ୍ତି ଓ କୃଷ୍ଣ ପ୍ରେମ ପ୍ରାପ୍ତ ହେଉଥିବେ ?

**ଅନ୍ତରାୟାନ୍ ବଦନ୍ତି-ଏତା ଯୁଞ୍ଜତୋ ଯୋଗଂ ଉତ୍ତମମ୍ ।**
**ମୟା ସମ୍ପଦ୍ୟମାନସ୍ୟ କାଳକ୍ଷେପଣ ହେତବଃ ॥୩୩॥**

ଉ. ବିଲକୁଲ ସତ୍ୟ ନୁହେଁ ଏହି ଅନୁମାନ । ବରଂ ଏହି ସିଦ୍ଧିମାନ ମୁକ୍ତି ଓ ଭଗବତ ପ୍ରେମ ପ୍ରାପ୍ତିର ବାଧକ (ଅନ୍ତରାୟାନ୍) । ଆଦୌ ସାଧକ ନୁହନ୍ତି । ଏହା ଜଣେ ସିଦ୍ଧଯୋଗୀ ଭକ୍ତ ହେଲାପରେ କେବଳ ଅନୁଭବ କରିପାରନ୍ତି । ଭଗବାନଙ୍କର

ଭକ୍ତ (ମୟା ସଂପଦ୍ୟମାନସ୍ୟ) ପାଇଁ ଏ ସବୁ କେବଳ ସମୟର ବୃଥା ଅପଚୟ (କାଳକ୍ଷେପଣ) ବା ଚଷ୍ଟୁ କୁଟା ବ୍ୟାପାର । ଅତଏବ ଶ୍ରୀକୃଷ୍ଣ ଭକ୍ତପାଇଁ ଏସବୁ ସିଦ୍ଧିମାନଙ୍କର ଲୋଭ ସର୍ବଦା ତ୍ୟାଜ୍ୟ ।

ପ୍ରଶ୍ନ-୫୭: ଯୋଗ ସିଦ୍ଧି ପ୍ରାପ୍ତିର ଉପାୟ ସବୁ କ'ଣ ବୋଲି ଯୋଗ ଶାସ୍ତ୍ରମାନେ ନିରୂପଣ କରନ୍ତି ?

**ଜନ୍ମ-ଔଷଧି ତପୋ ମନ୍ତ୍ରୈଃ ଯାବତୀଃ ଇହ ସିଦ୍ଧୟଃ ।**
**ଯୋଗେନ-ଆପ୍ନୋତି ତାଃ ସର୍ବା ନ-ଅନ୍ୟୈଃ ଯୋଗଗତିଂ ବ୍ରଜେତ୍॥୩୪॥**

ଉ. ଚାରୋଟି ଉପାୟ ସେଥିପାଇଁ ବିଧାନ କରାଯାଇଛି । ପୂର୍ବଜନ୍ମରେ ଅର୍ଜିତ ସିଦ୍ଧି ପରଜନ୍ମରେ ସ୍ୱତଃ ମିଳିଥାଏ । କିଛି ଦୁର୍ଲ୍ଲଭ ଚେରମୂଳି ବନସ୍ପତି ସେବନରେ ମଧ୍ୟ ଏସବୁ ମିଳିପାରେ । ଗୁରୁଙ୍କ ଆଶ୍ରୟରେ କଠିନ ତପସ୍ୟା ଦ୍ୱାରା କିମ୍ବା ଗୁରୁ ଉପଦିଷ୍ଟ ମନ୍ତ୍ର ସିଦ୍ଧ କଲେ ମଧ୍ୟ ଏସବୁ ମିଳିପାରନ୍ତି । ଏ ତିନି ସିଦ୍ଧିପ୍ରାପ୍ତିର ଉପାୟ ଅତୀବ କଷ୍ଟକର । ପୁରୁଷାର୍ଥ ସାଧ୍ୟ ।

ସବୁଠୁ ସହଜ ଉପାୟ ହେଲା ହରି ଭଜନ କରି (ଯୋଗେନ) ଏହା ନ ମାଗିଲେ ମଧ୍ୟ ସ୍ୱୟଂ ସାଧକକୁ ମିଳିଯାଏ । ଏତତ୍ ବ୍ୟତୀତ ଅନ୍ୟ କୌଣସି ଉପାୟରେ ଯୋଗସିଦ୍ଧି ପ୍ରାପ୍ତି ଏକାନ୍ତ ଅସମ୍ଭବ ।

ଶେଷରେ ଭଗବାନ କହିଲେ ଯେ ସିଦ୍ଧିଦାତା, ସିଦ୍ଧିର ସ୍ୱାମୀ ବା ମାଲିକ, ସିଦ୍ଧିର ରକ୍ଷକ ପୁଣି ଯୋଗ, ସାଂଖ୍ୟ, ସ୍ୱଧର୍ମ ପାଳନର ଉପଦେଷ୍ଟା ମଧ୍ୟ ପ୍ରଭୁ କେବଳ ଶ୍ରୀମନ୍ ନାରାୟଣ । ଅନ୍ୟ କେହି ନୁହେଁ । ତଙ୍କର ଶରଣାଗତି ହିଁ ସଂସାରର ସକଳ ସିଦ୍ଧିମାନଙ୍କୁ ଉଚିତ ମାର୍ଗ ଦର୍ଶନ କରାଇବ । ଅତଏବ ଏହି ଅଠେଇଶ ପ୍ରକାରର ସିଦ୍ଧି ବର୍ଣ୍ଣନାର ଲକ୍ଷ୍ୟ ନୁହେଁ ମନୁଷ୍ୟ ସିଦ୍ଧି ପ୍ରତି ଆକର୍ଷିତ ହେଉ ବରଂ ସେ ଆକର୍ଷିତ ନହୋଇ ହରି ଭଜନରେ ପ୍ରବୃତ୍ତ ହେଉ । ତେବେ ତାର ଜୀବନରେ ଉଚିତ କଲ୍ୟାଣ ହେବ । ଅନ୍ୟଥା ଅଯଥା ଅହଙ୍କାରୀ ହୋଇ ପତନର ଶିକାର ହେବ ।

# ଅଥ ୧୬ଶ ଅଧ୍ୟାୟଃ

## (ଭଗବାନଙ୍କର ବିଭୂତି ସଂଖ୍ୟାତୀତ)

ପ୍ରଶ୍ନ-୫୮ : ଭୂତି କହିଲେ ସଂପତ୍ତି ବା ଐଶ୍ୱର୍ଯ୍ୟକୁ ବୁଝାଏ । ବିଭୂତି ହେଉଛି ଭଗବାନଙ୍କର ବିଶେଷ ବଳ, ଜ୍ଞାନ, ପ୍ରଭାବ ବା ମାହାତ୍ମ୍ୟ । ଶ୍ରୀକୃଷ୍ଣ ସମଗ୍ର ସୃଷ୍ଟିର ଚରମ ଆଶ୍ରୟ । ତାଙ୍କର ମାହାତ୍ମ୍ୟ ଅବର୍ଣ୍ଣନୀୟ । ବ୍ରହ୍ମାଠାରୁ ପିପିଲିକା ପର୍ଯ୍ୟନ୍ତ ବୃକ୍ଷଠାରୁ ତୃଣ ପର୍ଯ୍ୟନ୍ତ ପୁଣି ବିଶ୍ୱ ବ୍ରହ୍ମାଣ୍ଡଠାରୁ ଧୂଳିକଣା ପର୍ଯ୍ୟନ୍ତ ସମସ୍ତଙ୍କର ଜନ୍ମ, ପାଳନ, ରକ୍ଷଣ ଓ ସଂହାରର କାରଣ କେବଳ କୃଷ୍ଣ ଅଟନ୍ତି । ସକଳ ବସ୍ତୁର, ବ୍ୟକ୍ତିର, ଜୀବର ଅନ୍ତରରେ ଓ ବାହାରେ ସେ ହିଁ ବିଦ୍ୟମାନ । ଏ ସକଳ ରହସ୍ୟ ବୁଝିସାରିବା ପରେ ଜ୍ଞାନୀଶ୍ରେଷ୍ଠ ଉଦ୍ଧବ ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ ଆଦି ଚତୁର୍ଦ୍ଦଶ ଭୁବନରେ ତାଙ୍କର କେଉଁ କେଉଁ ବିଭୂତିକୁ କିଭଳି ଉପାସନା କରାଯାଏ ବୋଲି ପ୍ରଶ୍ନ କରନ୍ତେ ଭଗବାନ କି ଉତ୍ତର ଦେଲେ ?

ଶ୍ରୀ ଭଗବାନ ଉବାଚ

**ଅହଂ ଆତ୍ମା-ଉଦ୍ଧବ-ଅମୀଷାଂ ଭୂତାନାଂ ସୁହୃଦ୍ ଈଶ୍ୱରଃ ।**
**ଅହଂ ସର୍ବାଣି ଭୂତାନି ତେଷାଂ ସ୍ଥିତି-ଉଦ୍ଭବ-ଅପ୍ୟୟଃ ।।୯।।**

ଉ. ଭଗବାନ କହିଲେ, ''ହେ ଉଦ୍ଧବ, ମୁଁ ଏହି (ଅମୀଷାଂ) ଦୃଶ୍ୟ ଅଦୃଶ୍ୟ ସକଳ ସୃଷ୍ଟି ଭିତରେ ଥିବା ଜୀବମାନଙ୍କର ଶୁଭଚିନ୍ତକ (ସୁହୃତ୍), ଶାସନ କର୍ତ୍ତା (ଈଶ୍ୱରଃ) । ସେମାନଙ୍କର ଜନ୍ମ-ପାଳନ ଓ ସଂହାର (ଅପ୍ୟୟ)ର କାରଣ ମଧ୍ୟ ମୁଁ । ଅନ୍ୟ କେହି ନୁହେଁ ।''

ପରେ ପରେ ଭଗବାନ କହି ଚାଲିଲେ ଯେ ସେ ମନ୍ତ୍ର ମଧ୍ୟରେ ଓଁକାର, ଦେବତା ମଧ୍ୟରେ ଇନ୍ଦ୍ର, ବେଦଙ୍କ ମଧ୍ୟରେ ବ୍ରହ୍ମା, ଛନ୍ଦ ମଧ୍ୟରେ ଗାୟତ୍ରୀ, ବ୍ରହ୍ମର୍ଷି ମଧ୍ୟରେ ଭୃଗୁ, ରାଜର୍ଷି ମଧ୍ୟରେ ମନୁ, ଦେବର୍ଷି ମଧ୍ୟରେ ନାରଦ, ଧେନୁମାନଙ୍କ ମଧ୍ୟରେ କାମଧେନୁ, ହସ୍ତୀ ମଧ୍ୟରେ ଐରାବତ, ଅଶ୍ୱ ମଧ୍ୟରେ ଉଚ୍ଚୈଃଶ୍ରବା, ସିଦ୍ଧଙ୍କ ମଧ୍ୟରେ କପିଳ, ପଶୁ ମଧ୍ୟରେ ସିଂହ, ପକ୍ଷୀ ମଧ୍ୟରେ ଗରୁଡ଼, ବୃକ୍ଷ ମଧ୍ୟରେ ଅଶ୍ୱତ୍ଥ, ଯଜ୍ଞ ମଧ୍ୟରେ ଜପ, ବିଦ୍ୟା ମଧ୍ୟରେ ଅଧ୍ୟାତ୍ମ୍ୟ ବିଦ୍ୟା ଇତ୍ୟାଦି ଇତ୍ୟାଦି ।

ପ୍ରଶ୍ନ-୫୯ : ଦେଖାଯାଏ ଯେ ସଂସାରରେ ନାରୀ ଏକ ବିଚିତ୍ର ରହସ୍ୟମୟ ସୃଷ୍ଟି । ସୁତରାଂ ନାରୀ, ପୁରୁଷ, ମୁନି ଓ ବ୍ରହ୍ମଚାରୀ ଇତ୍ୟାଦି ସ୍ୱତନ୍ତ୍ର ସୃଷ୍ଟି ମଧ୍ୟରେ ଭଗବାନଙ୍କର ବିଭୂତିବୋଲି କାହାକୁ ସାଧକ ଜାଣିବ ?

**ସ୍ତ୍ରୀଣାଂ ତୁ ଶତରୂପା-ଅହଂ ପୁଂସାଂ ସ୍ୱାୟମ୍ଭୁବୋ ମନୁଃ ।**
**ନାରାୟଣୋ ମୁନୀନାଂ ଚ କୁମାରୋ ବ୍ରହ୍ମଚାରିଣାମ୍ ॥୨୫॥**

ଉ. ସ୍ତ୍ରୀମାନଙ୍କ ମଧ୍ୟରେ ଶତରୂପା, ପୁରୁଷ ମଧ୍ୟରେ ସ୍ୱାୟମ୍ଭୁବ ମନୁ, ମୁନିମାନଙ୍କ ମଧ୍ୟରେ ନର-ନାରାୟଣ ଓ ବ୍ରହ୍ମଚାରୀମାନଙ୍କ ମଧ୍ୟରେ ଭଗବାନଙ୍କ ବିଭୂତି ଚତୁଃସନ ଅଟନ୍ତି ।

ଭଗବାନ କହିଲେ ଯେ ଯୁଗ ମଧ୍ୟରେ ସତ୍ୟଯୁଗ, ଚତୁର୍ବ୍ୟୂହ ମଧ୍ୟରେ ସେ ବାସୁଦେବ, ଗନ୍ଧର୍ବ ମଧ୍ୟରେ ବିଶ୍ୱାବସୁ, ଜଳ ମଧ୍ୟରେ ରସ, ତେଜୀୟାନମାନଙ୍କ ମଧ୍ୟରେ ସୂର୍ଯ୍ୟ, ବ୍ରାହ୍ମଣ ସେବକ ମଧ୍ୟରେ ବିରୋଚନ ପୁତ୍ର ବଳି, ଈଶ୍ୱରଙ୍କ ବିଭୂତି ଭାବରେ ଧ୍ୟାନ ଯୋଗ୍ୟ । ଚର ଅଚର ସକଳ ସୃଷ୍ଟି କେବଳ ତାଙ୍କର ପରିପ୍ରକାଶ ବା ବିଭୂତି ।

ପ୍ରଶ୍ନ-୬୦: ଭଗବାନ କୃଷ୍ଣଙ୍କର ବିଭୂତି ଯଦି ଅନନ୍ତ, ସୀମାହୀନ ଅସଂଖ୍ୟ ତେବେ ଭୌତିକ ଜଗତରେ ତାଙ୍କର ଉପାସନା ସମ୍ଭବ ହେବ କେମିତି ?

**ବାଚଂ ଯଚ୍ଛ ମନୋ ଯଚ୍ଛ ପ୍ରାଣାନ୍ ଯଚ୍ଛ-ଇନ୍ଦ୍ରିୟାଣି ଚ ।**
**ଆତ୍ମାନଂ ଆତ୍ମନା ଯଚ୍ଛ ନ ଭୂୟଃ କଳ୍ପସେଽଧ୍ୱନେ ॥୪୨॥**

ଉ. ସୁନ୍ଦର ଭାବରେ ଭଗବାନ ଉତ୍ତରରେ କହିଲେ, ''ଉଦ୍ଧବ, ଭୌତିକ ଭାବରେ ବିଭୂତିମାନଙ୍କରେ ଉପାସନା ସମ୍ଭବ ନୁହେଁ । ବରଂ ସାଧକ ନିଜର ବାଣୀକୁ ସଂଯତ (ଯଚ୍ଛ)କରୁ । ସାଂସାରିକ ବର୍ଣ୍ଣନା ବନ୍ଦ କରି, ମନକୁ ସଂଯମ କରୁ ସଂସାରୀ ଭୌତିକ ଭୋଗ୍ୟ ବିଷୟ ଚିନ୍ତନ ନକରି, ପ୍ରାଣ ସହିତ ଇନ୍ଦ୍ରିୟମାନଙ୍କୁ ବିଷୟ ଭୋଗରେ ନ ଲଗାଉ । ବିବେକ ଦ୍ୱାରା (ଆତ୍ମନା), ଭୋଗ ଉନ୍ମୁଖ ବୁଦ୍ଧିକୁ (ଆତ୍ମାନଂ) ସଂଯମ କରିଦେଉ । ସେ ସବୁକୁ କେବଳ ଈଶ୍ୱରୀୟ ମନନ, ଚିନ୍ତନ, ସ୍ମରଣରେ ଲଗାଇ ରଖୁ । ତେବେ ତାର ଆତ୍ମାର ଊର୍ଦ୍ଧ୍ୱଗତି ହେବ । ଆଦୌ ପତନ ହେବନି (କଳ୍ପସେଽଧ୍ୱନେ) । ଅନ୍ୟଥା ସେ ଅତି ଯତ୍ନରେ କରୁଥିବା ସକଳ ବ୍ରତ, ତପସ୍ୟା, ଦାନ, ତୀର୍ଥାଟନ, ବେଦ ଅଧ୍ୟୟନାଦି କଣା ମାଠିଆରୁ ଜଳ ସ୍ରବିଯିବା ଭଳି ଫଳ ଦେବ ଅର୍ଥାତ୍ କିଛି ବି କଲ୍ୟାଣକର ଫଳ ମିଳିବ ନାହିଁ ।''

# ଅଥ ୧୭ଶ ଅଧ୍ୟାୟଃ

## ଚାରିବର୍ଣ୍ଣ-ଚାରି ଆଶ୍ରମଧର୍ମବିଧି ବ୍ୟବସ୍ଥା(ବ୍ରହ୍ମଚର୍ଯ୍ୟ ଓ ଗୃହସ୍ଥ)

ପ୍ରଶ୍ନ-୬୧ : ଭଗବାନଙ୍କ ବିଭୂତି ଚିନ୍ତନ ନକରି ବରଂ ବିଭୂତିଯୁକ୍ତ ଭଗବାନଙ୍କ ମନନ, ଚିନ୍ତନ, ସ୍ମରଣ କଲେ ଭକ୍ତି ପ୍ରାପ୍ତି ହୁଏ । ଧର୍ମ ଏକ ସିଡ଼ି । ଭକ୍ତି ତାର ଲକ୍ଷ୍ୟ । ଯଦି ଜଣେ ବହୁତ ଯଜ୍ଞ କଲା, ଦକ୍ଷିଣା ଦେଲା, ଦାନ ପୁଣ୍ୟ କଲା, ବ୍ରତ ତୀର୍ଥ ଆଦି କଲା କେଉଁ ମାଲିକ ପ୍ରେରଣାରେ ସେ ଏସବୁ କରୁଛି ନିଜ ଜୀବନ କାଳ ମଧ୍ୟରେ ଜାଣି ନ ପାରିଲା ତେବେ ସେ ସବୁ ବ୍ୟର୍ଥ ହେଲା ବୋଲି ଜାଣ । ତାଙ୍କୁ ଜାଣିପାରି ତାଙ୍କ ସେବାରେ ଜୀବନରେ କାର୍ଯ୍ୟ କଲେ ମନୁଷ୍ୟ ଜୀବନ ପୂର୍ଣ୍ଣତା ଲାଭ କରିବା କଥା ବୈଦିକ ନିର୍ଦ୍ଦେଶ । ଏହି ରହସ୍ୟ ସମ୍ବନ୍ଧରେ ଜାଣିବାକୁ ଉଦ୍ଧବଜୀ ଭକ୍ତି ଉତ୍ପନ୍ନକାରୀ ବର୍ଣ୍ଣ ଓ ଆଶ୍ରମ ଧର୍ମ ପ୍ରସଙ୍ଗରେ କି ପ୍ରଶ୍ନ କଲେ ?

ଉଦ୍ଧବ ଉବାଚ

**ତତ୍ତ୍ୱଂ ନଃ ସର୍ବଧର୍ମଜ୍ଞ ଧର୍ମଃ ତ୍ୱତ୍ ଭକ୍ତି ଲକ୍ଷଣଃ ।**
**ଯଥା ଯସ୍ୟ ବିଧୀୟେତ ତଥା ବର୍ଣ୍ଣୟ ମେ ପ୍ରଭୋ ॥୭॥**

ଉ. ଉଦ୍ଧବଜୀ କହିଲେ, ''ହେ ମହାମୁନ, ଆପଣ ସକଳ ଧର୍ମର ବିଜ୍ଞାତା । ଅତଏବ କଳ୍ପ ଆରମ୍ଭରେ ଆପଣ ଯେଉଁ ବର୍ଣ୍ଣାଶ୍ରମ ଧର୍ମ ପାଳନ ମୂଳକ ସନାତନ ଭାଗବତ ଧର୍ମ କଥା ବ୍ରହ୍ମାଜୀଙ୍କୁ କହିଥିଲେ ତାକୁ କିଏ କିପରି ପାଳନ କରିବା କଥା ସବିସ୍ତାର ବୁଝାଇ କୁହନ୍ତୁ ।''

ପ୍ରଶ୍ନ-୬୨ : ଭଗବାନ ପ୍ରଥମରେ କହିଥିଲେ ଯେ ଏହା ମନୁଷ୍ୟ, ଦେବତା, ରାକ୍ଷସ ସମସ୍ତଙ୍କ ପକ୍ଷେ ଅତ୍ୟନ୍ତ କଲ୍ୟାଣକାରୀ । କାଳ ଚକ୍ରର ଆବର୍ତ୍ତନରେ ସତ୍ୟ, ତ୍ରେତା, ଦ୍ୱାପର ଓ କଳି ଯୁଗରେ ସେ ବର୍ଣ୍ଣ ଆଶ୍ରମ ଧର୍ମ ଏବଂ ଭାଗବତ ଧର୍ମର ସ୍ୱରୂପ କିଭଳି ହୁଏ ବୋଲି ଭଗବାନ କହିଲେ ?

ଶ୍ରୀ ଭଗବାନ ଉବାଚ

**ଆଦୌ କୃତ ଯୁଗେ ବର୍ଣ୍ଣୋ ନୃଣାଂ ହଂସ ଇତି ସ୍ମୃତଃ ।**
**କୃତକୃତ୍ୟାଃ ପ୍ରଜା ଜାତ୍ୟା ତସ୍ମାତ୍ କୃତଯୁଗଂ ବିଦୁଃ ॥୧୦॥**

ଉ. କଳ୍ପ ଆରମ୍ଭର ପ୍ରଥମ ମନ୍ୱନ୍ତର ହେଲା ସ୍ୱାୟମ୍ଭୁବ ମନ୍ୱନ୍ତର । ପୁଣି ତାହାର ପ୍ରଥମ ଚତୁର୍ଯୁଗୀ ଆରମ୍ଭରେ ଆସେ ସତ୍ୟଯୁଗ ଯାହାର ଅନ୍ୟ ନାମ କୃତ ଯୁଗ । ଏହି ଯୁଗରେ କୌଣସି ସାମାଜିକ ଶ୍ରେଣୀ ବର୍ଣ୍ଣ-ଆଶ୍ରମ ଆଦି ବିଭାଗ ନଥାଏ ।

ଏକମାତ୍ର ଶ୍ରେଣୀ ହଂସ ବା ବ୍ରାହ୍ମଣ । ଜନ୍ମରୁ ସେମାନେ ସବୁ ଭଗବତ ଭକ୍ତ ବା କୃତ କୃତ୍ୟ । ସେମାନଙ୍କର କିଛି କରିବା ଜାଣିବା ବାକି ନଥାଏ । ସୁତରାଂ ଯୁଗର ନାମ ରଖଯାଏ କୃତ ଯୁଗ । ସେତେବେଳର ଏକମାତ୍ର ଧର୍ମ ତପସ୍ୟା । ବେଦ ରହନ୍ତି ଓଁ ରୂପରେ ସମସ୍ତଙ୍କ ହୃଦୟରେ । ଚାରିପାଦରେ ବୃଷଭ ରୂପରେ ତାଙ୍କୁ ଧ୍ୟାନ କରିଥାଏ ସତ୍ୟଯୁଗୀ ମନୁଷ୍ୟ । ଏହା ହିଁ ଅଧ୍ୟାତ୍ମ ଧର୍ମ ବା ଭାଗବତ ଧର୍ମ ।

ପ୍ରଶ୍ନ-୬୩: ସତ୍ୟଯୁଗ ପରେ ଅଭ୍ୟୁଦୟ ହୁଏ ତ୍ରେତାଯୁଗ । ଚାରିଜଣ ମୁନିଙ୍କ ହୃଦୟରେ ଋକ୍, ଯଜୁଃ, ସାମ ଓ ଅଥର୍ବ ନାମରେ ଚାରିବେଦ ପ୍ରକଟ ହୁଅନ୍ତି । ବେଦକୁ ଅଧାର କରି ବିବିଧ ଯଜ୍ଞ ପ୍ରବର୍ତ୍ତିତ ହୁଏ ଜୀବର ଭୌତିକ ଆଶା ପୂରଣ ଓ ଅଧ୍ୟାତ୍ମ୍ୟ ଲକ୍ଷ୍ୟ ପୂରଣ ଲାଗି । ତେବେ ଚାରିବର୍ଣ୍ଣ ଚାରି ଆଶ୍ରମ ପୁଣି କୁଆଡୁ କିପରି ଆସନ୍ତି ଏହି ଧରାପୃଷ୍ଠକୁ ?

**ବିପ୍ର କ୍ଷତ୍ରିୟ ବିଟ୍ ଶୂଦ୍ରା ମୁଖ ବାହୁ ଉରୁ ପାଦଜାଃ ।**
**ବୈରାଜାତ୍ ପୁରୁଷାତ୍‌ଜାତା ଯ ଆତ୍ମା-ଆଚାର ଲକ୍ଷଣାଃ ॥୧୩॥**

ଉ. ତ୍ରେତାଯୁଗ ଆରମ୍ଭରେ ବିରାଟ ପୁରୁଷଙ୍କ ଦେହରୁ (ବୈରାଜାତ ପୁରୁଷାତ୍) ଚାରି ବର୍ଣ୍ଣର ମନୁଷ୍ୟ ଜନ୍ମ ହେଲେ (ଜାତା) । ସେମାନଙ୍କୁ ନିଜ ନିଜର ଆଚାର ବ୍ୟବହାରରୁ ଚିହ୍ନି ହୁଏ (ଆଚାର ଲକ୍ଷଣାଃ) । ବିରାଟ ଭଗବାନଙ୍କ ମୁଖରୁ ବ୍ରାହ୍ମଣ (ବିପ୍ର), ବାହୁରୁ କ୍ଷତ୍ରିୟ, ଉରୁରୁ ବୈଶ୍ୟ ଓ ପାଦରୁ ଶୂଦ୍ର ଜନ୍ମ ନେଲେ ।

ପୁନଶ୍ଚ ଶିରଦେଶରୁ ସନ୍ନ୍ୟାସ, ବକ୍ଷରୁ ବାନପ୍ରସ୍ଥ, ହୃଦୟରୁ ବ୍ରହ୍ମଚର୍ଯ୍ୟ ଓ ଜଘନ ପ୍ରଦେଶରୁ ଗୃହସ୍ଥ ଆଶ୍ରମ ପ୍ରକଟ ହେଲେ । ଚାରି ବର୍ଣ୍ଣ ବୃତ୍ତିପରକ ହେବାବେଳେ ଚାରି ଆଶ୍ରମ ସମାଜର ଶ୍ରେଣୀପରକ ହେଲେ । ବ୍ରାହ୍ମଣଙ୍କର ଲକ୍ଷଣ ଶମ, ଦମ, ତପ, ଶୌଚ ଇତ୍ୟାଦି ଓ କ୍ଷତ୍ରିୟଙ୍କର ତେଜ, ବଳ, ଧୃତି, ତିତିକ୍ଷା ଲକ୍ଷଣ ଦେଖାଗଲା । ସେହିପରି ବୈଶ୍ୟମାନଙ୍କଠାରେ ଆସ୍ତିକତା, ଦାନ, ନିଷ୍ଠା, ବ୍ରାହ୍ମଣ ସେବା ଇତ୍ୟାଦି ଓ ଶୂଦ୍ରଙ୍କଠାରେ ଗୋ, ବ୍ରାହ୍ମଣ, ଦେବତା ସେବା ଆଦି ଲକ୍ଷଣ ପ୍ରକାଶ ପାଇଲା । ଏହା ବ୍ୟତୀତ ଏକ ପତିତ (୪ବର୍ଣ୍ଣରୁ ଭିନ୍ନ) ଅନ୍ତ୍ୟଜ ଜାତିର ମନୁଷ୍ୟ ମଧ ଦେଖାଗଲେ ଯେଉଁମାନଙ୍କୁ ଅଶୌଚ, ମିଥ୍ୟାବାଦୀ, ଚୋରୀ, ନାସ୍ତିକତା, ବ୍ୟର୍ଥ କଳି ଝଗଡ଼ା, କାମୁକ୍, କ୍ରୋଧୀ, ଭୋଗତୃଷ୍ଣା ଲକ୍ଷଣ ଦ୍ୱାରା ସମାଜ ଚିହ୍ନିପାରିଲା ।

ପ୍ରଶ୍ନ-୬୪: ଚାରିବର୍ଣ୍ଣର ଲୋକମାନଙ୍କ ମଧରେ କେଉଁ କେଉଁ ସାଧାରଣ ଧର୍ମ ଥିବା ଲକ୍ଷ୍ୟ କରାଗଲା ସେତେବେଳେ ସମାଜରେ ?

**ଅହିଂସା ସତ୍ୟଂ ଅସ୍ତେୟଂ ଅକାମ-କ୍ରୋଧ-ଲୋଭତା ।**
**ଭୂତ ପ୍ରିୟ ହିତ-ଇହା ଚ ଧର୍ମୋଽୟଂ ସାର୍ବବର୍ଣ୍ଣିକଃ ॥୨୧॥**

ଉ. ଉପର ବର୍ଣ୍ଣିତ ବ୍ରାହ୍ମଣାଦି ଚାରି ବର୍ଣ୍ଣର ଲୋକଙ୍କର ବିଶେଷ ଧର୍ମ କଥା ଏ ପର୍ଯ୍ୟନ୍ତ କୁହାଯାଇଛି । ତଥାପି ସେମାନଙ୍କଠାରେ ଅଙ୍କେ ବହୁତେ, ଅହିଂସା, ସତ୍ୟବାଦିତା, ଚୋରି ନ କରିବା (ଅସ୍ତେୟଂ), ଅକାମ, ଅଲୋଭ, ଅକ୍ରୋଧ, ସର୍ବଭୂତହିତେ ରତା ଇତ୍ୟାଦି ଲକ୍ଷଣ ଦୃଷ୍ଟ ହେଉଥିଲା । ସେଥିପାଇଁ ସେତେବେଳେ ରାଜ୍ୟରେ ସମାଜ ଶୃଙ୍ଖଳା ବଜାୟ ରହୁଥିଲା ।

ପ୍ରଶ୍ନ-୬୫: ପ୍ରଥମେ ପୁରୁଷକୁ ବ୍ରହ୍ମଚର୍ଯ୍ୟ ଆଶ୍ରମ ପରେ ଗୃହସ୍ଥ, ବାନପ୍ରସ୍ଥ ଓ ଶେଷରେ ସନ୍ନ୍ୟାସ ଆଶ୍ରମ ନିୟମ ପାଳନ ବିଧିର ବ୍ୟବସ୍ଥା ସ୍ୱୟଂ ଭଗବାନ ବେଦରେ କହିଛନ୍ତି । ବ୍ରହ୍ମଚର୍ଯ୍ୟ ଆଶ୍ରମ ବିଧି ପାଳନ ପାଇଁ ଭଗବାନ କି ବ୍ୟବସ୍ଥା ଖଞ୍ଜିଛନ୍ତି ଯାହା ଫଳରେ ତାର ପତନ ହେବ ନାହିଁ ସେ ସ୍ୱତଃ ଭକ୍ତି ଲକ୍ଷ୍ୟ ପ୍ରାପ୍ତ କରିପାରିବ ?

**ଆଚାର୍ଯ୍ୟଂ ମାଂ ବିଜାନୀୟାନ୍ ନ-ଅବମନ୍ୟେତ କର୍ହିଚିତ୍ ।**
**ନ ମର୍ତ୍ତ୍ୟବୁଦ୍ଧ୍ୟା-ଅସୂୟେତ ସର୍ବଦେବମୟୋ ଗୁରୁଃ ॥୨୭॥**

ଉ. ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ ବର୍ଣ୍ଣର ବାଳକ ଉପନୟନ ସଂସ୍କାର ପରେ ପିତାମାତାଙ୍କ ପାଖରେ ନରହି ସିଧା ଗୁରୁଙ୍କ ଆଶ୍ରମକୁ ଯିବ । ଏ ସମ୍ବନ୍ଧରେ ଶିକ୍ଷା ଗୁରୁ, ଦୀକ୍ଷା ଗୁରୁ ଓ ଅଧ୍ୟାତ୍ମ୍ୟ ଗୁରୁଙ୍କ ଭିନ୍ନ ଭିନ୍ନ ଭୂମିକା କଥା ସ୍କନ୍ଦ ପୁରାଣରେ ଗୁରୁଗୀତାରେ ଦର୍ଶାଯାଇଛି । ସେମାନଙ୍କ ମଧ୍ୟରେ କୃଷ୍ଣପ୍ରେମ ପ୍ରଦାତା ଗୁରୁଙ୍କୁ ଆଚାର୍ଯ୍ୟ ବା ସଦ୍‌ଗୁରୁ ବୋଲି କୁହାଯାଇଛି । କାରଣ କୃଷ୍ଣଙ୍କୁ ଭଗବାନଙ୍କ ସାକ୍ଷାତ ରୂପ ଓ ସକଳ ଦେବୀଦେବତାଙ୍କ ମିଳିତ ମୂର୍ତ୍ତି ବୋଲି ମାନିବାକୁ ହୁଏ । ତାଙ୍କୁ ଆଦୌ ଜଣେ ସାଧାରଣ ମନୁଷ୍ୟ ନ ଭାବି ଚିନ୍ମୟ ତତ୍ତ୍ୱ ଓ ଜନ୍ମ-ମରଣ ଚକ୍ରରୁ ଉର୍ଦ୍ଧ୍ୱରେ ଅବସ୍ଥିତ ମାୟାତୀତ ସଗୁଣ ସାକାର ଭଗବାନଙ୍କ ଜୀବନ୍ତ ବିଗ୍ରହ ମାନିବାକୁ ହୁଏ ।

ପ୍ରଶ୍ନ-୬୬: କୃଷ୍ଣ ବଳରାମଙ୍କ ଭଳି ଗୁରୁଙ୍କୁ ସେବାରେ ପ୍ରସନ୍ନ କରି ତାଙ୍କ ପ୍ରାର୍ଥିତ ଦକ୍ଷିଣା ଦେଲେ ବ୍ରହ୍ମଚର୍ଯ୍ୟ ଆଶ୍ରମରେ ପୂର୍ଣ୍ଣଚ୍ଛେଦ ପଡ଼େ । ବ୍ରହ୍ମଚର୍ଯ୍ୟ ଜୀବନ କାଳରେ ନାରୀଜାତି ସହ ଆଚାର ବ୍ୟବହାର କେବଳ ଗୁରୁଙ୍କ ଆଦେଶ ଯାଏଁ ସୀମିତ ରହେ । ଦୀକ୍ଷାନ୍ତ ସମାରୋହ ପରେ ବ୍ରହ୍ମଚାରୀ ଗୁରୁଙ୍କ ଆଦେଶରେ ଗୃହସ୍ଥାଶ୍ରମରେ ପ୍ରବେଶ କରିପାରେ କିମ୍ବା ସେ ସାଧନ ନୈଷ୍ଠିକ ବ୍ରହ୍ମଚାରୀ ହୋଇ ନିବୃତ୍ତି ମାର୍ଗରେ

ବାନପ୍ରସ୍ଥ ଓ ସନ୍ନ୍ୟାସ ଆଶ୍ରମରେ ପହଞ୍ଚନ୍ତି । ପ୍ରବୃତ୍ତି ମାର୍ଗ ଓ ନିବୃତ୍ତି ମାର୍ଗ ଉଭୟର ଶେଷ ଲକ୍ଷ୍ୟ କିନ୍ତୁ ଭାଗବତ ଧର୍ମ ପାଳନ ଓ ହରିଭଜନ(ଭକ୍ତି ପ୍ରାପ୍ତି) ତାହା ଚାରି ବର୍ଣ୍ଣ ଓ ଚାରି ଆଶ୍ରମ କେନ୍ଦ୍ରିକ । ଆଚାର୍ଯ୍ୟ ସିନା ନିଜେ ପ୍ରଣତ ଶିଷ୍ୟମାନଙ୍କୁ ପ୍ରେମ ଦାନ କରନ୍ତି ତେବେ ଆଚାର୍ଯ୍ୟଙ୍କ ଉଦ୍ଧାର କିପରି କାହାଦ୍ୱାରା ହୁଏ ?

**ସମୁଦ୍ଧରନ୍ତି ଯେ ବିପ୍ରଂ ସୀଦନ୍ତଂ ମତ୍‌ପରାୟଣମ୍ ।**
**ତାନ୍ ଉଦ୍ଧରିଷ୍ୟେ ନ ଚିରାତ୍ ଆପଦ୍‌ଭ୍ୟୋ ନୌ ଇବ-ଅର୍ଣ୍ଣବାତ୍ ॥୪୪॥**

ଉ. ଭଗବାନ କହିଲେ, "ଉଦ୍ଧବଜୀ, ନୌକା ସମୁଦ୍ରରେ ବୁଡ଼ିଯାଉଥିବା ଲୋକକୁ ଉଦ୍ଧାର କଲାଭଳି ମୁଁ ନିଜେ ସେଇ ଆଚାର୍ଯ୍ୟମାନଙ୍କୁ କୃଷ୍ଣ ପ୍ରେମରେ ଜୁଡୁବୁଡୁ କରିଦିଏ ଯେଉଁମାନେ ମୋର ଦାରିଦ୍ର୍ୟ ପ୍ରପୀଡ଼ିତ ବ୍ରାହ୍ମଣ (ବିପ୍ରଂ) ଓ ଗୃହସ୍ଥାଶ୍ରମରେ କଲବଲ ହେଉଥିବା ବୈଷ୍ଣବକୁ (ମତ୍‌ପରାୟଣଂ) ଭଗବତ୍ ପ୍ରେମ କରିଥାଆନ୍ତି । ସେଇ ସଦ୍‌ଗୁରୁ ବା ଆଚାର୍ଯ୍ୟମାନଙ୍କ ମାୟାନିବୃତ୍ତି ଇତ୍ୟାଦିର ଠିକା ମୁଁ ସ୍ୱୟଂ ନେଇଥାଏ ।

ପ୍ରଶ୍ନ-୬୭: ଯେଉଁ କ୍ଷତ୍ରିୟ ବର୍ଣ୍ଣର ଗୃହସ୍ଥ ରାଜା ହୁଏ ପ୍ରଜାମାନଙ୍କୁ ସନ୍ତାନ ଦୃଷ୍ଟିରେ ଦେଖି ପ୍ରଜା ସ୍ଖଳିତ ହେଲେ ସେମାନଙ୍କୁ ଦଣ୍ଡ ଦିଏ କିନ୍ତୁ ବିଳାସ ବ୍ୟସନ ବିମୁଖ ହୋଇ ଧର୍ମମାର୍ଗରେ ଚାଲିଲେ ଉପଯୁକ୍ତ ପୁରସ୍କାର ଦିଏ ସେ ବି ତ ପୁଣି ବିଳାସ ବ୍ୟସନ ଜାଲରେ ପଡ଼ି ନିଜର ସତ୍ୟାନାଶ କରୁଥିବ ?

**ସର୍ବାଃ ସମୁଦ୍ଧରେତ୍ ରାଜା ପିତା-ଇବ ବ୍ୟସନାତ୍ ପ୍ରଜାଃ ।**
**ଆତ୍ମାନଂ ଆତ୍ମନା ଧୀରୋ ଯଥା ଗଜପତିଃ ଗଜାନ୍ ॥୪୫॥**

ଉ. ନା, ନା, ସେ କଥା ବିଲକୁଲ ଘଟେ ନାହିଁ । ହାତୀ ଦଳରେ ଥିବା କୌଣସି ହାତୀ ପଙ୍କ କାଦୁଅରେ ପଡ଼ିଗଲେ ହାତୀମାନଙ୍କ ଦଳପତି ଯେପରି ତାକୁ ଉଦ୍ଧାର କରେ ଓ ନିଜେ ନିରାପଦ ରହିପାରେ ଠିକ୍ ସେଇଭଳି ବିବେକୀ (ଧୀରୋ) ରାଜା ନିଜ ଶୁଦ୍ଧଭକ୍ତି ଦ୍ୱାରା ନିଜକୁ (ଆତ୍ମାନଂ) ନିଜେ (ଆତ୍ମନା) ଉଦ୍ଧାର କରିଥାଏ ।

ପ୍ରଶ୍ନ-୬୮: ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ ଆପତ୍‌କାଳ ପଡ଼ିଲେ ଗୋଟିଏ ଅନ୍ୟର ଜୀବିକା ବୃତ୍ତି ଆପଣେଇ ନେଇପାରେ କିନ୍ତୁ କଦାପି ଶୂଦ୍ର ବୃତ୍ତି ଗ୍ରହଣ କରିବା ଶାସ୍ତ୍ର ବିରୁଦ୍ଧ । ବ୍ରାହ୍ମଣ ବର୍ଣ୍ଣର ଲୋକକୁ ଚାରି ଆଶ୍ରମ ଓ କ୍ଷତ୍ରିୟ ଲୋକ ସନ୍ନ୍ୟାସ ବ୍ୟତୀତ ଅନ୍ୟ ତିନି ଆଶ୍ରମ ପୁଣି ବୈଷ୍ଣବ ଲୋକକୁ କେବଳ ବ୍ରହ୍ମଚାରୀ ଓ ଗୃହସ୍ଥ ଆଶ୍ରମ ପାଳନ କରିବା ବିଧି ଅଛି କିନ୍ତୁ ଶୂଦ୍ର ବର୍ଣ୍ଣର ଲୋକ କେବଳ ଗୃହସ୍ଥାଶ୍ରମରେ ରହିବା ଉଚିତ । ତେବେ ଜଣାଯାଏ ଗୃହସ୍ଥ ଆଶ୍ରମ ହିଁ ଚାରି ଆଶ୍ରମ ମଧ୍ୟରେ ଏକ

ବିଶିଷ୍ଟ ଆଶ୍ରମ ଅଟେ । ଭଗବାନଙ୍କର ଚବିଶ ଅବତାର ମଧ୍ୟରେ ଅତୀବ ଦୀର୍ଘକାଳୀନ ଦୁଇ ଅବତାର ରାମ ଓ କୃଷ୍ଣ ଅବତାର । ସେହି ଅବତାର ଦ୍ୱୟରେ ସେମାନେ ଗୃହସ୍ଥ ଆଶ୍ରମର ଚରମ ଆଦର୍ଶ ସ୍ଥାପନ କରିଯାଇଛନ୍ତି । ଜଣେ ସାଧାରଣ ମନୁଷ୍ୟ ସଂସାରର ଏତେ ପ୍ରଲୋଭନୀୟ ବିଷୟ ଭୋଗ ଇହଲୋକର (ଦୃଷ୍ଟଂ ଅପି) ପରଲୋକର (ଅଦୃଷ୍ଟଂ ଅପି) ଲୋଭକୁ ଗୃହସ୍ଥ ଆଶ୍ରମରେ ରହି କିପରି ଅତିକ୍ରମ କରିପାରିବ ?

**କୁଟୁମ୍ବେଷୁ ନ ସଜ୍ଜେତ ନ ପ୍ରମାଦ୍ୟେତ୍ କୁଟୁମ୍ବୀ-ଅପି ।**
**ବିପଶ୍ଚିତ୍ ନଶ୍ୱରଂ ପଶ୍ୟେତ୍ ଅଦୃଷ୍ଟଂ ଅପି ଦୃଷ୍ଟବତ୍ ॥୫୨॥**

ଉ. ଆଚାର୍ଯ୍ୟଙ୍କ ଶରଣରେ ରହି ଗୃହସ୍ଥାଶ୍ରମ କଲେ ସାଧକ ଦମ୍ପତିଙ୍କ ହୃଦୟରେ ଭଗବତ ଭକ୍ତି ନିଶ୍ଚୟ ଉଦ୍ରେକ ହେବ ହିଁ ହେବ । ସେମାନଙ୍କର ବିବେକ ସଦା ଜାଗ୍ରତ ରହିବ (ବିପଶ୍ଚିତ ନଶ୍ୱରଂ ପଶ୍ୟେତ) । ତେଣୁ ଇହଲୋକ ଓ ପରଲୋକର ଭୌତିକ ସୁଖକୁ ସେମାନେ ନଶ୍ୱର ବୋଲି ବୁଝିଯିବେ । ବହୁ କୁଟୁମ୍ବୀ ବୋଲି ପରିବାର ପୋଷଣକୁ ଗୁରୁଭାର ବୋଲି ଭାବିବେ ନାହିଁ । କୁଟୁମ୍ବ ପରିବାରଜନଙ୍କଠାରୁ ସୁଖ ଆଶା କରି ଆସକ୍ତ ନ ହୋଇ ସେମାନଙ୍କ ସେବାରେ ଜୀବନ କଟାଇବେ । ସଂସାରମାୟା ସେମାନଙ୍କର କିଛି ହେଲେ କ୍ଷତି କରିପାରିବ ନାହିଁ ।

ପ୍ରଶ୍ନ-୬୯ : ଜଣେ ଗୃହସ୍ଥ ହୋଇ ଗୃହରେ ରହିବ ପୁଣି ବନ୍ଧୁ ପରିଜନଙ୍କଠାରୁ ସୁଖ ଆଶା ନକରି ସଂସାରରେ ରହିବ କେମିତି ?

**ପୁତ୍ର ଦାର-ଆପ୍ତ ବନ୍ଧୂନାଂ ସଙ୍ଗମଃ ପାନ୍ଥ ସଙ୍ଗମଃ ।**
**ଅନୁଦେହଂ ବିୟନ୍ତି-ଏତେ ସ୍ୱପ୍ନୋ ନିଦ୍ରା-ଅନୁଗୋ ଯଥା ॥୫୩॥**

ଉ. ପତ୍ନୀ, ସନ୍ତାନ, ପରିବାରଜନ ଓ ବନ୍ଧୁଙ୍କୁ ହରିଭକ୍ତ ସର୍ବଦା ନିଜକୁ ଗାଡ଼ି ମୋଟରରେ ଯାତ୍ରା କରୁଥିବା ପାସେଞ୍ଜର (ପାନ୍ଥ) ବୋଲି ଅସ୍ଥାୟୀ ସଂପର୍କ ବୋଲି ମାନି ଚଳିବ । ଯାହାର ଷ୍ଟେସନ ଆସିବ ସେ ଅନ୍ୟମାନଙ୍କୁ ଛାଡ଼ି ଓହ୍ଲେଇବାକୁ ବାଧ୍ୟ ହେବ । ଦେହ ନଷ୍ଟ ହେଲେ, ବଦଳିଗଲେ, ସେମାନଙ୍କ ସହ ସଂପର୍କ ଦୂରେଇଯିବ (ବିୟନ୍ତି-ଏତେ) । ନୂତନ ଲୋକଙ୍କ ସହ ପୁଣି ନୂତନ ସଂପର୍କ ଯୋଡ଼ି ହୋଇଯିବ । ନିଦ୍ରାରୁ ଉଠିଲା ପରେ ଜଣେ ଯେମିତି ସ୍ୱପ୍ନ ଲବ୍ଧ ଐଶ୍ୱର୍ଯ୍ୟ ହରାଇ ଦୁଃଖିତ ହେବା ମୂର୍ଖତା ବୋଲି ସ୍ୱୀକାର କରିଥାଏ ଭକ୍ତର ସକଳ ସଂପତ୍ତି ତାକୁ ସେହିଭଳି ବୋଧ ହେବ । ଏଇତ ଗୃହସ୍ଥ ଧର୍ମର କମାଲ ।

ପ୍ରଶ୍ନ-୭୦: ଗୃହରେ ଥାଇ ନିଜକୁ ଗୃହର ଅତିଥି ବୋଲି ଭାବନା କରି ସଂସାର ବ୍ୟବହାରରେ ଚଳିଲେ ସେ ଶେଷରେ ଅହଂ ମମ ବ୍ୟାଧି ମୁକ୍ତ ହେବ ହିଁ ହେବ କାରଣ ସେ ଦେହ ଆସକ୍ତି ଓ ଗୃହ କୁଟୁମ୍ବ ଆସକ୍ତି ସର୍ବଥା ତ୍ୟାଗ କରିସାରିଛି । ଭଗବତ ଭକ୍ତି ଉତ୍ପନ୍ନ ହେଲେ ଜଣେ ସଫଳ ଗୃହସ୍ଥ ଆଶ୍ରମୀ ଗୃହତ୍ୟାଗ କରି ବାନପ୍ରସ୍ଥ କିମ୍ବା ସନ୍ନ୍ୟାସ ଆଶ୍ରମ ଗ୍ରହଣ କରିବ ନା ନାହିଁ ?

**କର୍ମଭିଃ ଗୃହ-ମେଧୀୟୈଃ ଇଷ୍ଟ୍ୱା ମାଂ ଏବ ଭକ୍ତିମାନ୍ ।**
**ତିଷ୍ଠେତ୍ ବନଂ ବା ଉପବିଶେତ୍ ପ୍ରଜାବାନ୍ ବା ପରିବ୍ରଜେତ୍ ॥୫୫॥**

ଉ. ଭଗବାନଙ୍କ ବୈଦିକ ନିୟମ ତା ପାଇଁ ଅତ୍ୟନ୍ତ ଉଦାର । ତାର ଇଛାରେ ସେ ଗୃହସ୍ଥାଶ୍ରମରେ ରହି ହରିଭଜନ କରିପାରେ । ବାନପ୍ରସ୍ଥାଶ୍ରମ ଅଶ୍ରୟ କରି ହରିଭଜନ କରିପାରେ । ଅଥବା ହୋସିଆର ପୁତ୍ରଟିଏ ହୋଇଗଲେ ସେ ସନ୍ନ୍ୟାସ ଆଶ୍ରମ ଆଦରି ନେଇ ଗୃହତ୍ୟାଗ କରି ହରିଭଜନ ମଧ କରିପାରେ ।

ପ୍ରଶ୍ନ-୭୧: ଧ୍ୟାନ, ଜପ, ତପ, ବ୍ରତ ତୀର୍ଥ ଆଦି ସହିତ ଗୃହସ୍ଥ ଆଶ୍ରମରେ ଯଦି ହରିଭଜନ ବିମୁଖ ହେଲା ତେବେ ତାର କିଭଳି ଦୂରବସ୍ଥା ହେବ ?

**ଯଃ ତୁ-ଆସକ୍ତ ମତିଃ ଗେହେ ପୁତ୍ର ବିତ୍ତ-ଏଷଣା-ଆତୁରଃ ।**
**ସ୍ତ୍ରୈଣଃ କୃପଣଧୀଃ ମୂଢ଼ୋ ମମ-ଅହଂ ଇତି ବଧ୍ୟତେ ॥୫୬॥**

ଉ. ସେଭଳି ଗୃହମେଧୀ ଲୋକର ମନ ପୁତ୍ର ଏଷଣା, ବିତ୍ତ ଏଷଣା, ପତ୍ନୀ ଦେହର ମୈଥୁନ ସୁଖ ଭୋଗ ଲାଳସା ତାକୁ ଆତ୍ମଜ୍ଞାନ ଶୂନ୍ୟ (କୃପଣଧୀଃ) ଓ ମହାମୂର୍ଖରେ ପରିଣତ କରିଦେବେ । ବିଚରା ମମ-ଅହଂ ବା ମୁଁ-ମୋର ବନ୍ଧନରେ ପଡ଼ି ଅସରନ୍ତି ଦୁଃଖରେ ଛଟପଟ ହେବ । ଦର୍ଲ୍ଲଭ ମନୁଷ୍ୟ ଜନ୍ମକୁ ପୋଡ଼ା ଅଙ୍ଗାର କରି ଇତର ଯୋନିରେ ପଶୁ, ପକ୍ଷୀ, ବୃକ୍ଷ ଜନ୍ମପ୍ରାପ୍ତ ହେବ କିମ୍ବା ନରକକୁ ଟିକଟ କାଟିବ ବିଚରା ।

ପ୍ରଶ୍ନ-୭୨: ବ୍ରହ୍ମଚର୍ଯ୍ୟ ଆଶ୍ରମରେ ୨୫ବର୍ଷ ଓ ଗୃହସ୍ଥ ଆଶ୍ରମରେ ୨୫ବର୍ଷ ଜୀବନ ନିର୍ବାହ ପରେ ସଂସାର ବୈରାଗ୍ୟ କିମ୍ବା ଭକ୍ତି ଉତ୍ପନ୍ନ ନ ହୋଇ ପାରିଲେ ସେ କ'ଣ ସବୁ ବିଚାର କରି ବାନପ୍ରସ୍ଥ ବା ସନ୍ନ୍ୟାସ ଆଶ୍ରମରେ ପଶିବାକୁ ଭୟ କରେ ?

**ଅହୋ ମେ ପିତରୌ ବୃଦ୍ଧୌ ଭାର୍ଯ୍ୟା ବାଳ-ଆତ୍ମଜ-ଆତ୍ମଜାଃ ।**
**ଅନାଥା ମାଂ ଋତେ ଦୀନାଃ କଥଂ ଜୀବନ୍ତି ଦୁଃଖିତାଃ ॥୫୭॥**

ଉ. ବିଚରା ଏତେ ସଂସାର ଆସକ୍ତ ହୋଇଯାଇଥାଏ ଯେ ସେ ନିଜ ଉଦ୍ଧାର

କଥା ଚିନ୍ତା ନକରି କୁଟୁମ୍ବୀ ଜନଙ୍କ ଦୁଃଖ କଥା ଭାବୁଥାଏ । ସେ ମୁର୍ଖ ଭାବେ ହାୟ, ପିତାମାତା ବୁଢ଼ାବୁଢ଼ୀ ହେଲେ, ପତ୍ନୀ ଜାତିରେ ଅବଳା, ଅସହାୟା, ପୁଅ, ଝିଅମାନେ ସାନସାନ (ବାଳା) ମୁଁ ଘରଛାଡ଼ି ବାନପ୍ରସ୍ଥ ଗଲେ ସେମାନେ ଅନାଥ ହୋଇଯିବେ । କେତେ ଦୁଃଖ କଷ୍ଟ ଭୋଗିବେ ବାସ ଏଇ ସଂସାର ଚିନ୍ତନ ହିଁ ତାର ନିଜର ପତନର କାରଣ । ପଗଡ଼ି ବାନ୍ଧୁ ବାନ୍ଧୁ କଚେରୀ ବରଖାସ୍ତ । ଆତ୍ମୋଦ୍ଧାର କରିବ କେତେବେଳେ ?

# ଅଥ ୧୮ଶ ଅଧ୍ୟାୟଃ

## (ବାନପ୍ରସ୍ଥ ଆଶ୍ରମ ଓ ସନ୍ନ୍ୟାସ ଆଶ୍ରମ ବ୍ୟବସ୍ଥା)

ପ୍ରଶ୍ନ-୭୩: ଗୃହସ୍ଥାଶ୍ରମ ପରେ କ୍ଷତ୍ରିୟ ପାଇଁ ବାନପ୍ରସ୍ଥ ଓ ବ୍ରାହ୍ମଣ ପାଇଁ ପ୍ରଥମେ ବାନପ୍ରସ୍ଥ ଓ ପରେ ସନ୍ନ୍ୟାସ ଆଶ୍ରମ ଗ୍ରହଣ କରିବା ବୈଦିକ ନିର୍ଦ୍ଦେଶ । ସାଧକ ତେବେ କେତେ ବୟସରେ କେଉଁ କେଉଁ ଆଶ୍ରମ କରିବ ?

ଶ୍ରୀ ଭଗବାନ ଉବାଚ

**ବନଂ ବିବିକ୍ଷୁଃ ପୁତ୍ରେଷୁ ଭାର୍ଯ୍ୟାଂ ନ୍ୟସ୍ୟ ସହ-ଏବ ବା ।**
**ବନଂ ଏବ ବସେତ୍ ଶାନ୍ତଃ ତୃତୀୟଂ ଭାଗଂ ଆୟୁଷଃ ||୧||**

ଉ. ବାନପ୍ରସ୍ଥ ଆଶ୍ରମରେ ପ୍ରବେଶ କରିବାକୁ ଚାହୁଁଥିବା ସାଧକ(ବନଂ ବିବିକ୍ଷୁଃ) ଗୃହସ୍ଥ ପୁତ୍ରହୀନ ଥିଲେ ପତ୍ନୀଙ୍କୁ ସଙ୍ଗରେ ନେଇପାରିବେ । ହୋସିଆର ପୁତ୍ର ଗୃହରେ ଥିଲେ ପତ୍ନୀଙ୍କୁ ଗୃହରେ ଛାଡ଼ି ଏକାକୀ ବାନପ୍ରସ୍ଥ ଆଶ୍ରମରେ ଯାଇପାରିବେ । କଳିଯୁଗର ଆୟୁଷ ଶହେ ବର୍ଷ ଧରାଗଲେ ୨୫ବର୍ଷ ବ୍ରହ୍ମଚର୍ଯ୍ୟ ଆଶ୍ରମରେ ଓ ୨୬ରୁ ୫୦ବର୍ଷ ଗୃହସ୍ଥ ଆଶ୍ରମରେ, ୫୧ରୁ ୭୫ବର୍ଷ ଯାଏଁ (ତୃତୀୟ ଭାଗଂ ଆୟୁଷଃ) ବାନପ୍ରସ୍ଥରେ କଟାଇ ଶେଷ ପଚିଶ ବର୍ଷ ସନ୍ନ୍ୟାସ ଆଶ୍ରମରେ ରହିବ ।

ପ୍ରଶ୍ନ-୭୪: ସତ୍ୟ, ତ୍ରେତା ଓ ଦ୍ୱାପର ଯୁଗରେ ରାଜା ମହାରାଜାମାନେ ବାନପ୍ରସ୍ଥୀ ଓ ସନ୍ନ୍ୟାସୀମାନଙ୍କ ଚଳିବା ଲାଗି ବଣ ଜଙ୍ଗଲରେ ମଧ୍ୟ ଫଳନ୍ତି ବୃକ୍ଷ ଲଗାଉଥିଲେ ଓ ଜଳପ୍ରାପ୍ତିର ବ୍ୟବସ୍ଥା କରୁଥିଲେ । ଏହି ଦୁଇ କଠିନ ଆଶ୍ରମୀମାନେ କିପରି ନିଜ ନିଜର ରୋଟି କପଡ଼ା ମକାନର ଆବଶ୍ୟକତା ପୂରଣ କରୁଥିଲେ ?

**କନ୍ଦମୂଳ ଫଳୈଃ ବନ୍ୟୈଃ　　　ମେଧ୍ୟୈଃ ବୃତ୍ତିଂ ପ୍ରକଳ୍ପୟେତ୍ ।**
**ବସୀତ ବଲ୍କଳଂ ବାସଃ　　　ତୃଣ ପର୍ଣ୍ଣ -ଅଜିନାନି ଚ ॥୨॥**

ଉ. ବଣର ଫଳମୂଳ, ଝରଣାର ଜଳପାନ, ବୃକ୍ଷର ବକ୍‌କଳ ବସ୍ତ୍ର, ପତ୍ରକୁଡ଼ିଆ (ପର୍ଣ୍ଣ, ତୃଣ)ରେ ବାସଗୃହ ଓ ମୃଗଚର୍ମ (ଅଜିନ)ରେ ଆସନ ଇତ୍ୟାଦିରେ ଆବଶ୍ୟକତା ପୂରଣ କରିବାକୁ ପଡ଼େ ସେମାନଙ୍କୁ ।

ପ୍ରଶ୍ନ-୭୫: ଉଭୟ ଆଶ୍ରମବାସୀମାନଙ୍କ ପାଇଁ ଦିନ ଚର୍ଯ୍ୟା ଓ ଆଚାର ବ୍ୟବହାର ବିଷୟରେ କି କି କଠିନ ନିୟମ ସବୁ ରଖାଯାଇଛି ।

**କେଶ ରୋମ ନଖ ଶ୍ମଶ୍ରୁ　　　ମଳାନି ବିଭୃୟାତ୍ ଦତଃ ।**
**ନ ଧାବେତ୍ ଅପ୍‌ସୁ ମଜ୍ଜେତ　　　ତ୍ରିକାଳଂ ସ୍ଥଣ୍ଡିଳେ ଶୟଃ ॥୩॥**

ଉ. ସେମାନଙ୍କୁ ମସ୍ତକର କେଶ, ନିଶ ଦାଢ଼ି, ନଖ ଇତ୍ୟାଦି କାଟିବାକୁ ମନା । ସେମାନେ ମୁହଁ ଧୋଇପାରିବେ କିନ୍ତୁ ଦାନ୍ତ ଘଷିବାକୁ ବୃକ୍ଷରୁ ଦାନ୍ତକାଠି ଭାଙ୍ଗିପାରିବେନି । ଦିନରେ ତିନି ତିନି ଥର ସ୍ନାନ କରିବେ ଓ ବିନା ବିଛଣାରେ ଭୂମି ଉପରେ ଶୟନ କରିବେ । ଗ୍ରୀଷ୍ମ ଦିନରେ ଚାରିପଟେ ନିଆଁ ଜାଳି ଦିନ ଦ୍ୱିପର କାଟିବେ । ଅସରା ଅସରା ବର୍ଷାରେ ତିନ୍ତିବେ ଓ ଶୀତଦିନେ କଣ୍ଠ ପର୍ଯ୍ୟନ୍ତ ରାତ୍ରିରେ ଜଳମଗ୍ନ ରହି ଶରୀର କଷ୍ଟ ହସି ହସି ସହିବା ଅଭ୍ୟାସ କରିବେ । ସାଧା ସିଧା ଭୋଜନ କରିବେ । ଢ଼ିଙ୍କିକୁଟା ଓ ଶିଳବଟା ଖାଦ୍ୟ ନ ଖାଇ ଦାନ୍ତରେ ଛିଣ୍ଡାଇ ଖାଦ୍ୟ ଖାଇବା ଉଚିତ । ବଣରୁ ଫଳମୂଳ ସଂଗ୍ରହ କରି ଖାଇବେ କିନ୍ତୁ ପରଦିନ ପାଇଁ ସାଇତି ରଖିବା ମନା । ବଣରେ ମଧ ଅଗ୍ନି ଜଳାଇ ହବନ କରିବେ ବିନା ଘୃତରେ କିନ୍ତୁ ଜଡ଼ିବୁଟି ଇତ୍ୟାଦି ଆହୂତି ଦେଇ । ଯଜ୍ଞ ବିନା ପଶୁବଳିରେ ହେବ, ଅଟା ଚକଟି ଗୁଳା କରି ପୋଡ଼ପିଠା କରି (ପୁରୋଡ଼ାଂଶ) ଅଗ୍ନିରେ ବଳିରୂପରେ ସମର୍ପଣ କରି । ସେଇ ହେବ ତାଙ୍କ ପାଇଁ ପ୍ରସାଦ । ଏହିସବୁ କଠିନ ନିୟମରେ ସେମାନଙ୍କୁ ଚଳିବାକୁ ପଡ଼େ ।

ପ୍ରଶ୍ନ-୭୬: ଏଭଳି କଷ୍ଟକର ଜୀବନ ନିର୍ବାହ କରି ସାଧକ ଅସ୍ଥି କଙ୍କାଳ ସାର ହୋଇଯାଏ । ଦେହ ତ୍ୟାଗ ପରେ ସାଧକ ମହଲୋକ ଜନଲୋକରେ ସ୍ଥା'ନ ପାଇଥାଏ ଯଦି ସେତେବେଳକୁ ତାର ଅନ୍ତରରେ ହରି ଭକ୍ତି ଉତ୍ପନ୍ନ ହୋଇଥାଏ । ନଚେତ ସକଳ ସାଧନା ବ୍ୟର୍ଥ ପୁଣି ନରଦେହ ପ୍ରାପ୍ତି ଓ ସାଧନା ଆରମ୍ଭ । ଜୀବନ ରକ୍ଷଣରେ ଅସମର୍ଥ ହେଲେ ଅଗ୍ନି ଜଳେଇ ତାକୁ ଆତ୍ମାହୁତି ଦେବାକୁ ହୁଏ । ଏହା

ଆଦୌ ଆତ୍ମହତ୍ୟା ନୁହେଁ । ପୂର୍ଣ୍ଣ ବୈରାଗ୍ୟ ଉତ୍ପନ୍ନ ହୋଇଗଲେ ସେ ଅଧିକରୁ ଅଧିକ କଠିନତର ସନ୍ନ୍ୟାସ ଆଶ୍ରମ ମଧ୍ୟ ଚାଲୁରଖେ । ଜଣେ ସନ୍ନ୍ୟାସ ଆଶ୍ରମରେ ପ୍ରବେଶ କଲେ ସ୍ୱର୍ଗର ଦେବତାମାନେ କାହିଁକି ବିଘ୍ନ ଉତ୍ପନ୍ନ କରନ୍ତି ?

**ବିପ୍ରସ୍ୟ ବୈ ସଂନ୍ୟସତୋ ଦେବା ଦାର-ଆଦି ରୂପିଣଃ ।**
**ବିଘ୍ନାନ୍ କୁର୍ବନ୍ତି-ଅୟଂ ହି-ଅସ୍ମାନ୍ ଆକ୍ରମ୍ୟ ସମିୟାତ୍ ପରମ ॥୧୪॥**

ଉ. ଦେବତାମାନେ ଭାବନ୍ତି, ଆମେମାନେ କେତେ ଦାନ, ପୁଣ୍ୟ, ଯଜ୍ଞ ଆଦି କରି ସ୍ୱର୍ଗରେ ଦେବତା ହେଲୁ । ଏ କେବଳ ସନ୍ନ୍ୟାସ ନେଇ ଏତେ ଅଳ୍ପ ସାଧନା କରି ଆମ ସ୍ୱର୍ଗଲୋକ ଅତିକ୍ରମ କରି ମହ, ଜନ, ତପ, ସତ୍ୟ, ବୈକୁଣ୍ଠ ଲୋକ ପଳେଇବ କିପରି ? ଏଣୁ ଈର୍ଷାରେ ସେମାନେ ସୁନ୍ଦରୀ ଅପ୍‌ସରୀ ନାରୀ ପଠାଇ ତାର ଧ୍ୟାନ ଭଙ୍ଗ କରନ୍ତି ଠିକ୍ ମେନକାଙ୍କ ଦ୍ୱାରା ବିଶ୍ୱାମିତ୍ରଙ୍କ ତପ ଭାଙ୍ଗିବା ଭଳି ।

ପ୍ରଶ୍ନ-୭୭: କୁଟିଚକ, ବହୁଦକ, ହଂସ ଓ ପରମହଂସ ଯଥାକ୍ରମେ ସନ୍ନ୍ୟାସର ନିମ୍ନରୁ ଉଚ୍ଚତର ଚାରି ସୋପାନ । ପ୍ରଥମ ଦୁଇ ପ୍ରକାର ସନ୍ନ୍ୟାସୀ ପର୍ଣ୍ଣ କୁଟୀରରେ ଚଳନ୍ତି କିନ୍ତୁ ହଂସ ଓ ପରମହଂସଙ୍କୁ ବିନା ଆଶ୍ରମରେ ଜୀବନ କାଟିବାକୁ ପଡ଼େ । ହଂସ ସନ୍ନ୍ୟାସୀଙ୍କଠାରେ (ଯତିଃ) କେଉ କେଉଁ ବାହ୍ୟ ଲକ୍ଷଣ ସବୁ ଦେଖିବାକୁ ମିଳେ ?

**ମୌନ-ଅନୀହ-ଅନିଳ-ଆୟାମା ଦଣ୍ଡା ବାକ୍ ଦେହ ଚେତସାମ୍ ।**
**ନ ହି-ଏତେ ଯସ୍ୟ ସନ୍ତି-ଅଙ୍ଗ ବେଣୁଭିଃ ନ ଭବେତ୍ ଯତିଃ ॥୧୭॥**

ଉ. ଅରୁଆ ଖାଇ ଗେରୁଆ ପିନ୍ଧି ବସ୍ତ୍ର ରଙ୍ଗେଇ ଠେଙ୍ଗାଧରି ବୁଲିଲେ (ବେଣୁଭିଃ) କେହି ହଂସ ସନ୍ନ୍ୟାସୀ ହୋଇପାରେନା । ଯଦି ସେ ନିଜ ବାଣୀକୁ ଲଗାମ ଲଗାଇ ମୌନ ରହିପାରୁଛନ୍ତି, ଭୌତିକ ବସ୍ତୁ ଭୋଗ ସଂଗ୍ରହ କାମନା (ଅନୀହ) ତ୍ୟାଗ କରିଛନ୍ତି ପୁଣି ଓଁକାର ମନ୍ତ୍ର ଜପି ସ୍ଥୁଳରେ ସୂକ୍ଷ୍ମରେ ପ୍ରାଣକୁ ସଂଯମ କରିଛନ୍ତି ସେ କେବଳ ଦଣ୍ଡୀ ସନ୍ନ୍ୟାସୀ (ସେ ଏକଦଣ୍ଡୀ ସନ୍ନ୍ୟାସୀ ଜ୍ଞାନୀ ହୁଅନ୍ତୁ ବା ତ୍ରିଦଣ୍ଡୀ ସନ୍ନ୍ୟାସୀ ଭକ୍ତ ହୁଅନ୍ତୁ) ।

ପ୍ରଶ୍ନ-୭୮: ଦେହର ଦଣ୍ଡ ଆସନ, ବାଣୀର ଦଣ୍ଡ ମୌନ, ମନର ଦଣ୍ଡ ଓଁ ମନ୍ତ୍ର ଜପ ଦ୍ୱାରା ହଂସ ସନ୍ନ୍ୟାସୀଙ୍କର କି କି ଲାଭ ହୁଏ ?

**ଏକଃ ଚରେତ୍ ମହୀଂ ଏତାଂ ନିଃସଙ୍ଗଃ ସଂଯତ-ଇନ୍ଦ୍ରିୟଃ ।**
**ଆତ୍ମକ୍ରୀଡ଼ ଆତ୍ମରତ ଆତ୍ମବାନ୍ ସମଦର୍ଶନଃ ॥୨୦॥**

ଉ. ହଂସ ସନ୍ନ୍ୟାସୀଙ୍କର ସାତ ପାରମାର୍ଥିକ ଲାଭ ହୁଏ । ୧. ସେ ଚେଲା ସାଙ୍ଗରେ ନନେଇ ଏକାକୀ ପୃଥିବୀ ବୁଲିପାରନ୍ତି । ୨. ଏକାକୀ ଆଶ୍ରମରେ ରହନ୍ତି । ୩. ଇନ୍ଦ୍ରିୟ ସଂଯମ, ୪. ଚିତ୍ତସଂଯମ (ଆତ୍ମକ୍ରୀଡ଼), ୫. ପ୍ରାଣ ସଂଯମ (ଆତ୍ମରତ), ୬. ମନୋସଂଯମ (ଆତ୍ମବାନ) ଓ ୭. ବୁଦ୍ଧି ସଂଯମ (ସମଦର୍ଶନଃ) କରିପାରନ୍ତି ।

ପ୍ରଶ୍ନ-୭୯: ତତ୍ତ୍ୱଜ୍ଞାନ ନିଷ୍ଠ ହଂସ ସନ୍ନ୍ୟାସ ପୂର୍ଣ୍ଣ ବୈରାଗ୍ୟ ବାନ ହୋଇ ଜ୍ଞାନର କେଉଁ ମୂଳ ରହସ୍ୟ ଭେଦ କରିପାରନ୍ତି ?

**ଅନ୍ୱୀକ୍ଷେତ-ଆତ୍ମନୋ ବନ୍ଧଂ ମୋକ୍ଷଂ ଚ ଜ୍ଞାନ ନିଷ୍ଠୟା ।**
**ବନ୍ଧ ଇନ୍ଦ୍ରିୟ ବିକ୍ଷେପୋ ମୋକ୍ଷ ଏଷାଂ ଚ ସଂଯମଃ ॥୨୨॥**

ଉ. ମନ, ବୁଦ୍ଧି, ଚିତ୍ତ ଆଦି ପାଞ୍ଚ ସଂଯମର ଫଳ ଅନୁଭବ କରି (ଅନ୍ୱୀକ୍ଷେତ) ସେ ବୁଝିଯାଆନ୍ତି ଯେ ଅନ୍ତଃକରଣ(ମନ)ର ସଂଯମ ହିଁ ମୋକ୍ଷ ଏବଂ ଅସଂଯମ ବା ଅନିୟନ୍ତ୍ରଣ ହିଁ ସଂସାର ବନ୍ଧନର କାରଣ । ଏହା ହିଁ ସକଳ ଆଧ୍ୟାତ୍ମ ସାଧନାର ରହସ୍ୟ ।

ପ୍ରଶ୍ନ-୮୦: ବାନପ୍ରସ୍ଥାଶ୍ରମୀ ବା ସନ୍ନ୍ୟାସୀ ନିଜେ ଶ୍ରମ କରି ଖାଇବା ଅନୁଚିତ । ଭିକ୍ଷା କରି ଜୀବନ ନିର୍ବାହ କରିବା ତା ପାଇଁ ବାଧତାମୂଳକ । କାରଣ ତାହା କଲେ ସିନା ତାର ନିଜର ଅହଂକାର ନଷ୍ଟ ହେବ, ଦୈନ୍ୟ ଭାବର ବୃଦ୍ଧି ହେବ । ଅପମାନ ସହିଷ୍ଣୁତା ମଧ୍ୟ ବଢ଼ିବ । ହଂସ ସନ୍ନ୍ୟାସୀ ଜ୍ଞାନନିଷ୍ଠା ବା ଭକ୍ତି ନିଷ୍ଠାରେ ପରିପକ୍ୱ ହେଲେ କେଉଁ ଉଚ୍ଚତର ସ୍ଥିତି ପ୍ରାପ୍ତ ହେବ ?

**ଜ୍ଞାନନିଷ୍ଠୋ ବିରକ୍ତୋ ବା ମଦ୍‌ଭକ୍ତୋ ବା-ଅନପେକ୍ଷକଃ ।**
**ସଲିଙ୍ଗାନ୍ ଆଶ୍ରମାନ୍ ତ୍ୟକ୍ତ୍ୱା ଚରେତ୍ ଅବିଧି ଗୋଚରଃ ॥୨୮॥**

ଉ. ଉଭୟେ ପରମହଂସ ସ୍ଥିତି ପ୍ରାପ୍ତ ହେବେ । ସନ୍ନ୍ୟାସ ଆଶ୍ରମର ଚିହ୍ନ ଦଣ୍ଡ, କମଣ୍ଡଳୁ, ଶିଖା, ସୂତ୍ରାଦି ଫିଙ୍ଗି ଦେଇ ଖାଲି ଖାଲି ବୁଲିବେ । ପଣ୍ଡିତ ହୋଇ ମୂର୍ଖଭଳି, ସବୁଜାଣି କିଛି ନ ଜାଣିବା ଭଳି, ଜ୍ଞାନୀ ହୋଇ ପାଗଳ ଭଳି ବେଦଜ୍ଞାନୀ ହୋଇ ବେଦ ଅବୁଝାଙ୍କ ଭଳି ଆଚରଣ କରିବେ । କେବେ ବି ସେ ବୈଦିକ ବା ଅବୈଦିକ ପକ୍ଷକୁ ସମର୍ଥନ କରିବେ ନାହିଁ । ନିଜେ କାହାକୁ ମଧ୍ୟ ଡ଼ରିବେ ନାହିଁ ପୁଣି ସିଦ୍ଧି ଦେଖାଇ କାହାକୁ ହେଲେ ଡ଼ରାଇବେ ନାହିଁ । ପ୍ରହ୍ଲାଦଜୀ, ହରିଦାସ ଠାକୁର, ମହାରାଷ୍ଟ୍ରର ଶିବାଜୀଙ୍କ ପୁତ୍ର ଶମ୍ଭୁଜୀଙ୍କ ଭଳି କେହି ଦଣ୍ଡ ଦେଲେ ସହିଯିବେ ସିନା ପ୍ରତିବାଦ କରିବେ ନାହିଁ । ଭୋଜନ କେବେ ନ ମିଳିଲେ ମାଗିବେ ନାହିଁ । କେବେ

ମିଳିଲେ ଖୁସିରେ ହେଣ୍ଡିମାରି ଖାଇ ପକାଇବେ ନାହିଁ । କେବଳ ଜୀବନ ଧାରଣ ଲାଗି ଭୋଜନ କରୁଥିବେ । ସନ୍ନ୍ୟାସୀ ଭିକ୍ଷା ନ ମାଗିଲେ ଅଧା ସନ୍ନ୍ୟାସୀ ।

ପ୍ରଶ୍ନ-୮୧: ସଂକ୍ଷେପରେ ଏକ ଶ୍ଳୋକରେ କହିଲେ ସନ୍ନ୍ୟାସୀର ଧର୍ମ (ଭିକ୍ଷୋଧର୍ମଃ), ବାନପ୍ରସ୍ଥୀର ଧର୍ମ (ବନୌକସଃ), ଗୃହସ୍ଥର ଧର୍ମ (ଗୃହିଣୋ) ଓ ବ୍ରହ୍ମଚାରୀର ଧର୍ମ (ଦ୍ୱିଜସ୍ୟ) କହିଲେ କ'ଣ ବୁଝାଏ ?

**ଭିକ୍ଷୋଃ ଧର୍ମଃ ଶମୋଽହିଂସା ତପ ଈକ୍ଷା ବନ-ଓକସଃ ।**
**ଗୃହିଣୋ ଭୂତରକ୍ଷା-ଇଜ୍ୟା ଦ୍ୱିଜସ୍ୟ-ଆଚାର୍ଯ୍ୟ ସେବନମ୍ ॥୪୨॥**

ଉ. ସନ୍ନ୍ୟାସୀ ପାଇଁ ଇନ୍ଦ୍ରିୟ ସଂଯମ ଓ ଅହିଂସା, ବାନପ୍ରସ୍ଥୀ ପାଇଁ ତପସ୍ୟା ଓ ଦେହ ଆତ୍ମା ମଧ୍ୟସ୍ଥିତ ଭେଦ ଅନୁଭବ ବା ବିବେକ, ଗୃହସ୍ଥ ପାଇଁ ସକଳ ଜୀବଙ୍କର ଅଭିଭାବକ ହେବାର ଦାୟିତ୍ୱ ଗ୍ରହଣ କରିବା ଓ ବ୍ରହ୍ମଚାରୀ ପାଇଁ ଗୁରୁ (ଆଚାର୍ଯ୍ୟ) ସେବା ମୁଖ୍ୟ ଧର୍ମ ଅଟେ । ଚାରି ଆଶ୍ରମୀଙ୍କର କିନ୍ତୁ ଭଗବତ ପୂଜା ସ୍ଥୁଳରେ ବା ସୂକ୍ଷ୍ମ ଭାବରେ ମନରେ ହେଉ ପଛେ ହରିଭଜନ ବାଧ୍ୟତାମୂଳକ ଏକଥା ସର୍ବଦା ମନେ ରଖିବା ଉଚିତ ।

ଉପର ବର୍ଣ୍ଣିତ ଛଅ ଅଧ୍ୟାୟର ଶେଷ ନିଷ୍କର୍ଷ ହେଲା ବର୍ଣ୍ଣ-ଆଶ୍ରମ ଧର୍ମ ପାଳନ କରି ସାଧକ ହରିଭକ୍ତି ପ୍ରାପ୍ତ ହେଲେ ତାର ସାଯୁଜ୍ୟ ମୁକ୍ତିର ଇଛା ମଧ୍ୟ ମ୍ଳାନ ହୋଇଯାଏ ।

## ୩୯. ସାଯୁଜ୍ୟ ମୁକ୍ତି ପ୍ରକରଣ ସାର

### ଅଧ୍ୟାୟ ୧୩ଶ-୧୮ଶ

ଜ୍ଞାନୀମାନଙ୍କର ଓ ଭକ୍ତମାନଙ୍କର ପାଞ୍ଚ ମୁକ୍ତି ବର୍ଣ୍ଣନା କରିବା ବେଳେ ଜ୍ଞାନୀମାନଙ୍କ ମୁକ୍ତିକୁ ଭକ୍ତମାନଙ୍କର ଚାରି ମୁକ୍ତି ମଧ୍ୟଭାଗରେ ରଖାଯାଇଛି । ଗୀତା ଗ୍ରନ୍ଥ ମଧ୍ୟରେ କର୍ମ ଓ ଜ୍ଞାନର ଠିକ୍ ମଝିରେ ଛଅ ଅଧ୍ୟାୟ ବିଶିଷ୍ଟ ଭକ୍ତିକୁ ରଖାଗଲା ଭଳି । ଦଶମ ସ୍କନ୍ଧରେ ଭଗବାନ ଶ୍ରୀକୃଷ୍ଣଙ୍କ ଲୀଳା ୯୦ଅଧ୍ୟାୟରେ ବିସ୍ତୃତ ବର୍ଣ୍ଣନା କଲାପରେ ପୁଣି ଶୁଷ୍କ ମୁକ୍ତି କଥା ବର୍ଣ୍ଣନା ହୁଏତ କାହାରି କାହାରିକୁ ଅବାନ୍ତର

ଅବାଞ୍ଛିତ ମନେ ହୋଇପାରେ । ମୁକ୍ତି କଥା କହିବାକୁ ପୁଣି ତିରିଶ ଅଧ୍ୟାୟ ଖର୍ଚ୍ଚ କରାଯିବାର ଅର୍ଥ ନୁହେଁ କୃଷ୍ଣ ଭକ୍ତମାନଙ୍କୁ ମୁକ୍ତି ଆଡ଼କୁ ଆକର୍ଷଣ କରାଇବା ପାଇଁ ଲୋଭ ଦେଖାଇବା । ବରଂ ବିପରୀତ ପକ୍ଷେ ଯଦି କିଛି ଲୋକ କୃଷ୍ଣଙ୍କ ମାଧୁର୍ଯ୍ୟଗୁଣ ଚାରୋଟି (ରୂପ ମାଧୁରୀ, ବାଳ ଲୀଳା ମାଧୁରୀ, ବେଣୁ ମାଧୁରୀ ଓ ପ୍ରେମ ମାଧୁରୀ)ପ୍ରତି ଆକର୍ଷିତ ନହୋଇପାରି ତାଙ୍କର ଐଶ୍ୱର୍ଯ୍ୟ ଗୁଣ ଲୋଭରେ ତାଙ୍କ ପ୍ରେମରୁ କାଳେ ବଞ୍ଚିତ ହୋଇଯିବେ, ସେହି ଉଚ୍ଚତର ଲକ୍ଷ୍ୟରେ ଏହି ଏକାଦଶ ସ୍କନ୍ଧରେ ପାଞ୍ଚ ମୁକ୍ତିଙ୍କର ସବିସ୍ତାର ବର୍ଣ୍ଣନା କରାଯାଇଛି ।

ଜ୍ଞାନୀମାନଙ୍କର ଲୋଭନୀୟ ଲକ୍ଷ୍ୟ ସାଯୁଜ୍ୟମୁକ୍ତି । ଏ ସାଯୁଜ୍ୟ ମୁକ୍ତି ଭଲ ଯେତିକି ମନ୍ଦ ସେତିକି । ପରମାଣୁ ବୋମା ତିଆରି କୌଶଳ ଜାଣିନଥିବା ଲୋକ ଶାନ୍ତିରେ ଶୟନ କରିପାରେ କିନ୍ତୁ ଜ୍ଞାନ କୌଶଳ ଜାଣିଥିବା ଲୋକ ଅଜଣା ବିପଦ ଆଶଙ୍କାରେ ସୁଖ ନିଦ୍ରାକୁ ହରାଇ ବସେ ବିଚରା । ବ୍ରହ୍ମାଜୀଙ୍କର ପ୍ରଥମ ଚାରି ମାନସ ପୁତ୍ର ସନକାଦି ମୁନିମାନେ ନାରାୟଣ ମାୟା ସୃଷ୍ଟି ହେବା ପୂର୍ବରୁ ପ୍ରକଟ ହୋଇଛନ୍ତି । ସେମାନଙ୍କର ଜ୍ଞାନ ସର୍ବଦା ନିର୍ମଳ ବା ମାୟାମୁକ୍ତ ଜ୍ଞାନ । ତଥାପି ସେମାନଙ୍କ ମନରେ ବ୍ରହ୍ମଜ୍ଞାନ ସଂପର୍କୀୟ ଏକ ଶଙ୍କା ଉପୁଜିଛି ଯେ ଜନ୍ମ-ମୃତ୍ୟୁ କାହାର ହୁଏ ଜଡ଼ ଦେହର ନା ଚେତନ ଆତ୍ମାର । ଯେ ଜଡ଼ ସେ ମରିବା ଅସମ୍ଭବ ପୁଣି ଆତ୍ମା ନିତ୍ୟ ଚେତନ ତାର ମରିବାର ପ୍ରଶ୍ନ ଉଠେନା । ଆଲୋଚ୍ୟ ପ୍ରକରଣରେ ଏ ପ୍ରଶ୍ନର ଉତ୍ତର ସ୍ୱୟଂ ବେଦ ଗର୍ଭ ବ୍ରହ୍ମା ଦେବାରେ ଅସମର୍ଥ ହୋଇଛନ୍ତି ।

ପ୍ରଶ୍ନର ଉତ୍ତର ଏତେ ଗମ୍ଭୀର ଯେ ଭଗବାନ ନାରାୟଣଙ୍କୁ ଗୋଟିଏ ଆଲୌକିକ ଭବ୍ୟ ପକ୍ଷୀ ଅବତାର ବା ସ୍ୱତନ୍ତ୍ର ହଂସ ଅବତାର ଗ୍ରହଣ କରିବା ଦରକାର ପଡ଼ିଛି । ଭଗବାନ ୨୫ଶ୍ଳୋକରେ ବୁଝାଇଛନ୍ତି ବ୍ରହ୍ମା ଓ ବ୍ରହ୍ମାପୁତ୍ରମାନଙ୍କୁ ଯେ ବାସ୍ତବରେ ଦେହ ଆତ୍ମା କେହି ମରନ୍ତି ନାହିଁ । ମରେ କେବଳ ଦୁହିଁଙ୍କ ମଧ୍ୟରେ ଦୋଳି ଖେଳୁଥିବା ''ମିଥ୍ୟା ଅହଂକାର'' । ଏହି ଅହଂକାରକୁ ଦାସ ଅହଂ କଲେ ଭକ୍ତି ଉପୁଜେ ଭକ୍ତ ହୃଦୟରେ କିମ୍ବା ଜ୍ଞାନ ମାର୍ଗୀ ସାଧକ ଅହଂ ସଃ ସାଧନା କରୁ କରୁ ତାର ସାଯୁଜ୍ୟ ମୁକ୍ତି ହୋଇଯାଇପାରେ ।

ପରବର୍ତ୍ତୀ ଅଧ୍ୟାୟରେ ଭକ୍ତିଯୋଗର ମହିମା ଓ ଧ୍ୟାନ ବିଧି ଉଭୟର ସବିସ୍ତୃତ ବର୍ଣ୍ଣନା କରାଯାଇଛି ଜଣେ ଭକ୍ତି କିମ୍ବା ଜ୍ଞାନ ସାଧକକୁ ସଂପୂର୍ଣ୍ଣ ସନ୍ଦେହ ମୁକ୍ତ କରାଇବା ଲକ୍ଷ୍ୟରେ । ପୁଣି ୧୫ଶ ଅଧ୍ୟାୟ ସାରା ଆଠ ପ୍ରକାର ଅଣିମାଦି ନିର୍ଗୁଣୀ ସିଦ୍ଧି, ୧୦ପ୍ରକାର

ଅଗ୍ନି ସ୍ତମ୍ଭନ, ଜଳସ୍ତମ୍ଭନ ଆଦି ଗୌଣ ସିଦ୍ଧି ସହିତ ସତ୍ତ୍ୱଗୁଣୀ ଦେବତମାନଙ୍କର ଦଶପ୍ରକାର ଦୂରଦର୍ଶନ, ଦୂରଶ୍ରବଣ, ମନୋଜବ, କାମରୂପ, ସଂକଳ୍ପ ସିଦ୍ଧି ଆଦିର ସାଧନା, ସିଦ୍ଧି ଓ ଫଳ ଅଫଳର ବର୍ଣ୍ଣନା କରାଯାଇଛି । ଏ ସବୁ ସିଦ୍ଧି ବର୍ଣ୍ଣନାର ଉଦ୍ଦେଶ୍ୟ କେବଳ ଏତିକି ଯେ ଜ୍ଞାନୀ କିମ୍ବା ଭକ୍ତ ଏସବୁ ପ୍ରତି ଆଦୌ ଆକୃଷ୍ଟ ନ ହେଉ ବରଂ ଏଥିରେ ଥିବା ବିପଦକୁ ଜାଣି ସେସବୁର ପ୍ରଲୋଭନଠାରୁ ଦୂରେଇ ରହୁ । ନଚେତ ଅହଂକାର ବ୍ୟାଧିରେ ଅଯଥା ଆକ୍ରାନ୍ତ ହୋଇ ବିଚରା ସାଧନାର ମଝି ନଈରେ ହରବର ହେବ । ନିଜେ ଅଦର, ସମ୍ମାନ, ସତ୍କାର ପୂଜା ଦାବି କରି ଜନସମାଜକୁ ଅଲୌକିକ ସିଦ୍ଧି ପ୍ରଦର୍ଶନ କରି କାଶୀପୀଠରେ ଚାଙ୍ଗଦେବଙ୍କ ଭଳି ଲୋକଙ୍କୁ ଭୟଭୀତ କରାଇବ ।

ଭକ୍ତ ଜ୍ଞାନେଶ୍ୱରଙ୍କ ସଂପର୍କରେ ଆସି ନଥିଲେ ଚାଙ୍ଗଦେବଜୀ ସାଯୁଜ୍ୟ ମୁକ୍ତି ଲୋଭରେ ବାରଶହ ବର୍ଷ ବଞ୍ଚିଥିବା ଧ୍ୟାନଯୋଗୀ ଭକ୍ତିରୁ ବଞ୍ଚିତ ହୋଇ ଆହୁରି କେତେ ଶହ ବର୍ଷ ସିଦ୍ଧି, ବିଭୂତି ପ୍ରାପ୍ତିର ସୁନେଲି ସ୍ୱପ୍ନ ଦେଖିଥାଆନ୍ତେ । ଗୀତା ଗ୍ରନ୍ଥରେ ମଧ୍ୟ ପ୍ରଥମେ ଅର୍ଜୁନ ଭଗବାନଙ୍କ ବିଭୂତି ଦର୍ଶନ ଓ ଚିନ୍ତନ କରିବାର ଲୋଭ ସମ୍ବରଣ କରି ପାରିନାହାନ୍ତି । ସେଇ ସେଇ ବିଭୂତିର ଅଲୌକିକ ଶକ୍ତି ପ୍ରଭାବ ଜାଣି ବିଶ୍ୱରୂପ ଦର୍ଶନ ଲାଗି ଠାକୁରଜୀଙ୍କୁ ଏକ ପ୍ରକାର ବାଧ କରିଛନ୍ତି । ଠାକୁରଜୀ ବାଧ ହୋଇ ବିଶ୍ୱରୂପ ଦର୍ଶନ କରାଇଛନ୍ତି । ଦିବ୍ୟ ଦୃଷ୍ଟି ପ୍ରାପ୍ତ ହୋଇ ମଧ୍ୟ ବିଶ୍ୱରୂପ ଦର୍ଶନ କରି ଅର୍ଜୁନ ଭୟରେ କମ୍ପି ଉଠିଛନ୍ତି । ପରେ ପରେ ହାତଯୋଡ଼ି ପ୍ରାର୍ଥନା କରିଛନ୍ତି ଆଉ ବିଶେଷ ବିଭୂତି ଦର୍ଶନ ନକରି ପୁଣି ସେ ଚତୁର୍ଭୁଜ ନାରାୟଣ ରୂପ ଓ ଦ୍ୱିଭୂଜ ମୁରଲୀଧାରୀ ରୂପରେ ଦର୍ଶନ କରିବେ । ପରିଶେଷରେ ସେ ଭୟଶୂନ୍ୟ ହୋଇ ପରମଶାନ୍ତି ପ୍ରାପ୍ତ ହୋଇଛନ୍ତି । ଅତଏବ ଐଶ୍ୱର୍ଯ୍ୟ ପ୍ରାପ୍ତ ହୋଇ ଭଗବାନ ନାରାୟଣଙ୍କ ସହିତ ଲାଭ କରୁଥିବା ସାଯୁଜ୍ୟ ମୁକ୍ତି କେବେ ବି ଶାନ୍ତି ଦାୟକ ନୁହେଁ ବରଂ ଭୟପ୍ରଦ ଏହା ପ୍ରମାଣିତ ହେଲା ।

ସାଯୁଜ୍ୟ ମୁକ୍ତି ପ୍ରକରଣର ଅନ୍ତିମ ଦୁଇ ଅଧ୍ୟାୟରେ ଶୁକଦେବଜୀ ସାଯୁଜ୍ୟ ମୁକ୍ତି ଲୋଭୀମାନଙ୍କୁ ସେଥିରୁ କ୍ଷାନ୍ତ ରହିବାକୁ ରକ୍ଷା କବଚ ରୂପକ ଗୃହସ୍ଥ, ବାନପ୍ରସ୍ଥ ଓ ସନ୍ନ୍ୟାସ ଆଶ୍ରମର ବିଧି ବ୍ୟବସ୍ଥା କଥା ଖୋଲି କହିଛନ୍ତି । ଜନ୍ମ ହେଉ ହେଉ ଶୁକଦେବ ପରମହଂସ ସ୍ୱୟଂ ଏ ବିପଦରେ ପଡ଼ିଥିଲେ । ମାତା ଗର୍ଭରୁ ପ୍ରକଟ ହେଉ ହେଉ ପିତା, ମାତାଙ୍କୁ ଅନାଦର କରି ସେ ବନଗମନ କରିଛନ୍ତି । ଧ୍ୟାନ କରି ଶ୍ରୀମନ

ନାରାୟଣଙ୍କ ସାଯୁଜ୍ୟ ମୁକ୍ତିର ସ୍ୱାଦ ଚାଖିବେ । ହେଲେ ତାଙ୍କର ପିତା ଶ୍ରୀଲ ବ୍ୟାସଦେବ ଜଣେ ପକ୍‌କା ଗୃହସ୍ଥ ଥିବାରୁ କୌଶଳ କରି ଏ ବିପଦରୁ ତାଙ୍କୁ ଉଦ୍ଧାର କରିଛନ୍ତି । **ବର୍ହାପୀଡ, ଅହୋବକୀ, ଜୟତିତେ ଓ ତାସାଂ ଆବିର୍ଭୂଃ** ଇତ୍ୟାଦି ଶ୍ରୀମଦ୍ଭାଗବତଙ୍କର ଚାରୋଟି ଦିବ୍ୟ ଶ୍ଳୋକ ଶ୍ରବଣ କରି ସେଇ ଶୁକଦେବ ଗୋସ୍ୱାମୀ ପୁଣି ଜଣେ ସିଦ୍ଧ ଗୃହସ୍ଥ ସନ୍ନ୍ୟାସୀ ବିଦେହ ରାଜନ ଜନକଙ୍କୁ ଗୁରୁ ପଦରେ ବରଣ କରିଛନ୍ତି । ସାଯୁଜ୍ୟ ମୁକ୍ତି କବଳରୁ ଖସି ଯାଇ, ଶ୍ରୀମନ୍ ନାରାୟଣଙ୍କ ଐଶ୍ୱର୍ଯ୍ୟ ଚିନ୍ତନ, ପ୍ରାପ୍ତି ଲୋଭ ତ୍ୟାଗ କରି ଗିରିଧର ଗୋପାଳଙ୍କ ମାଧୁର୍ଯ୍ୟ ରସର ଭାବ ଆବେଶରେ ପ୍ରଥମେ ନିଜେ ବୁଡ଼ିଛନ୍ତି ଓ ପରେ ପରେ ଅନ୍ୟମାନଙ୍କୁ ମଧ୍ୟ ବୁଡ଼ାଇଛନ୍ତି । କୃଷ୍ଣ ମାଧୁର୍ଯ୍ୟ ପ୍ରେମର ଅଧିକାରିଣୀ ଗୋପୀମାନଙ୍କ ପ୍ରେମ ବର୍ଣ୍ଣନା କରୁ କରୁ ଭାଗବତ ପ୍ରବଚନ ବେଳେ ବାରମ୍ବାର ସମାଧିସ୍ଥ ହୋଇଯାଇଛନ୍ତି । ଅତଏବ କି ଜ୍ଞାନୀ କି ଭକ୍ତ ଉଭୟଙ୍କ ଲାଗି ସାଯୁଜ୍ୟ ମୁକ୍ତି ଆଦୌ ଆକର୍ଷଣୀୟ ନୁହେଁ । ଏବେ ବର୍ଣ୍ଣିତ ହେବ ସକାମ ଭକ୍ତମାନଙ୍କର ଅନ୍ୟ ଦୁଇଟି ପ୍ରକାର ମୁକ୍ତି ସାରୂପ ଓ ସାର୍ଷ୍ଟି ପରବର୍ତ୍ତୀ ପାଞ୍ଚ ପାଞ୍ଚ ଅଧ୍ୟାୟମାନଙ୍କରେ ।

## ପ୍ରକରଣ-୪୦ ସାରୂପ୍ୟ ମୁକ୍ତି (ଅଧ୍ୟାୟ ୧୯ଶ-୨୪ଶ)

### ଅଥ ୧୯ଶ ଅଧ୍ୟାୟଃ

### (ସାଧନ ଅବସ୍ଥାରେ କର୍ମ ଜ୍ଞାନ ଓ ଭକ୍ତି)

ପ୍ରଶ୍ନ-୮୨: ୪ବର୍ଣ୍ଣ ଓ ୪ ଆଶ୍ରମ ଧର୍ମ ପାଳନରେ ସାଧକ ଯଥାକ୍ରମେ କର୍ମରୁ ଜ୍ଞାନ, ଜ୍ଞାନରୁ ଭକ୍ତି ପ୍ରାପ୍ତି ହେବା କଥା ଭଗବାନ ଉଦ୍ଧବଜୀଙ୍କୁ କହିଲେ । ତେବେ କର୍ମଠାରୁ ଜ୍ଞାନକୁ କ'ଣ ସାଧକ ବଡ଼ ବୋଲି ବୁଝିବ ?

ଶ୍ରୀ ଭଗବାନ ଉବାଚ

**ତପଃ ତୀର୍ଥଂ ଜପୋ ଦାନଂ  ପବିତ୍ରାଣି-ଇତରାଣି ଚ ।**
**ନ-ଅଳଂ କୁର୍ବନ୍ତି ତାଂ ସିଦ୍ଧିଂ  ଯା ଜ୍ଞାନ କଳୟା କୃତା ॥୪॥**

ଉ. ସ୍ୱୟଂ ଭଗବାନ ଏ ବିଷୟରେ ମତ ଦିଅନ୍ତି, କଠିନ ତପସ୍ୟା, ତୀର୍ଥ ଭ୍ରମଣ, ଦୀର୍ଘକାଳୀନ ମନ୍ତ୍ରଜପ ଅନୁଷ୍ଠାନ, ଭୂଦାନ, ଗୋଦାନ, ସ୍ୱର୍ଣ୍ଣଦାନ ଇତ୍ୟାଦି

ସମସ୍ତେ ଅତ୍ୟନ୍ତ ପୁଣ୍ୟ ବା ଶୁଭ ଦାୟକ ବା କଲ୍ୟାଣକାରୀ କର୍ମ ନିଶ୍ଚୟ । ଅଧ୍ୟାତ୍ମ୍ୟ ଜ୍ଞାନ ପ୍ରାପ୍ତି ଏ ସକଳ ସାଧନାର ଫଳ ହୋଇଥିବାରୁ ଉଭୟଙ୍କୁ ତୁଳନା କରିବା ଅନୁଚିତ । ଆମ୍ବ ଗଛରେ ଆମ୍ବ ଫଳିଥାଏ । ଆମ୍ବର ସ୍ୱାଦ କ'ଣ ଆମ୍ବ ବୃକ୍ଷରେ ଆଶା କରାଯାଏ କି ? ସୁତରାଂ କୃଷ୍ଣ ଭକ୍ତିର ଅଂଶର ଅଂଶ ଏକ କଳା ଏସବୁ ସକଳ ଶୁଭ କର୍ମରୁ ପ୍ରାପ୍ତ ଅଧ୍ୟାତ୍ମ୍ୟ ଜ୍ଞାନର ସହିତ ମଧ୍ୟ ତୁଳନୀୟ ନୁହନ୍ତି (ନ-ଅଳଂ କୁର୍ବନ୍ତି ତାଂ) । ଏହି ଭକ୍ତି କଥା ପର ଶ୍ଳୋକରେ କୁହାଯିବ ।

ପ୍ରଶ୍ନ-୮୩: କର୍ମ ଜ୍ଞାନ ପାର୍ଥକ୍ୟ ଜାଣିବା ପରେ ସ୍ୱତଃ ଉଦ୍ଧବ ଆଗ୍ରହୀ ହୋଇଛନ୍ତି ଭକ୍ତି ବା ମୋକ୍ଷ ଧର୍ମର ମାହାତ୍ମ୍ୟ ବୁଝିନେବାକୁ । କାରଣ ଜ୍ଞାନ, ବିଜ୍ଞାନ, ବୈରାଗ୍ୟ, ସତ୍‌ସଙ୍ଗ ପ୍ରାପ୍ତି ଇତ୍ୟାଦିର ମୂଳ କେବଳ ସେଇ ଭଗବତ୍ ଭକ୍ତି । ବ୍ରହ୍ମାଠାରୁ ପିପିଲିକା ପର୍ଯ୍ୟନ୍ତ ସକଳ ଜୀବଙ୍କ ଦେହ ସେହି ଚବିଶ ତତ୍ତ୍ୱରେ ନିର୍ମିତ କିନ୍ତୁ ନିତ୍ୟ ପରିବର୍ତ୍ତନଶୀଳ ଅତଏବ ଅସତ୍ । ଏତିକି ବୁଝିବାକୁ ଅଧ୍ୟାତ୍ମ ଶାସ୍ତ୍ରରେ ଜ୍ଞାନ କୁହାଯାଏ । ନିତ୍ୟ ଅପରିବର୍ତ୍ତନଶୀଳ ଆତ୍ମାଙ୍କୁ ବୁଝିବା ବିଜ୍ଞାନ ପଦବାଚ୍ୟ । ଅସତ୍ୟ ପଦାର୍ଥର ଭୋଗ ସଂଗ୍ରହ ପରାଙ୍‌ମୁଖ ହୋଇ ସତ୍‌ଙ୍କୁ ଜାଣିବାକୁ ଆଗ୍ରହୀ ହେବା ହିଁ ବୈରାଗ୍ୟ ବୋଲି କେଉଁ ଅକାଟ୍ୟ ପ୍ରମାଣ ଭଗବାନ ଉପସ୍ଥାପନ କଲେ ?

**ଶ୍ରୁତିଃ ପ୍ରତ୍ୟକ୍ଷଂ ଐତିହ୍ୟଂ ଅନୁମାନଂ ଚତୁଷ୍ଟୟମ୍ ।**
**ପ୍ରମାଣେଷ୍ୱ-ଅନବସ୍ଥାନାତ୍ ବିକଳ୍ପାତ୍ ସ ବିରଜ୍ୟତେ ॥୧୭॥**

ଉ. ଦୃଶ୍ୟମାନ କୌଣସି ବସ୍ତୁର ସତ୍ୟତା ପ୍ରମାଣ କରିବାକୁ ବେଦ ପ୍ରମାଣ, ପ୍ରତ୍ୟକ୍ଷ ପ୍ରମାଣ, ପୂର୍ବରୁ ପ୍ରମାଣିତ ଐତିହ୍ୟ ପ୍ରମାଣ ସହିତ ତର୍କ ପ୍ରମାଣ (ଅନୁମାନଂ)ର ଆଶ୍ରୟ ନିଆଯାଇଥାଏ । ବିଷୟୀ ପାଇଁ ସଂସାର ଦୃଶ୍ୟମାନ ଏବଂ ସତ୍ୟ କିନ୍ତୁ ଅପରିବର୍ତ୍ତନୀୟ ନୁହେଁ (ସତ୍) ଏ କଥା ଉପରୋକ୍ତ ଚାରି ପ୍ରମାଣ ଦ୍ୱାରା ପ୍ରତିଷ୍ଠା କରାଯାଇପାରେ ନାହିଁ (ଅନବସ୍ଥାନାତ୍) । ସୁତରାଂ ଅଦୃଶ୍ୟ ବସ୍ତୁ ପରମାତ୍ମା ସତ୍ ବା ତତ୍‌ଙ୍କୁ ପ୍ରତିଷ୍ଠା କରିବାକୁ (ବିକଳ୍ପାତ୍ ) ସଂସାର ଆସକ୍ତି ତ୍ୟାଗ କରିବାକୁ ବିବେକୀ ସାଧକ ବାଧ୍ୟ ହୁଏ ଯାହାର ନାମ ପରାବୈରାଗ୍ୟ (ବିରଜ୍ୟତେ) । ସେହି ତତ୍ତ୍ୱଜ୍ଞାନ ଯେଉଁ ସାଧନ ମାର୍ଗରେ ଗତି କରେ ତାହା ହିଁ ଭକ୍ତି ଧର୍ମ, ଭାଗବତ ଧର୍ମ ବା ମୋକ୍ଷଧର୍ମ । ଏହା ଏକା ଅକାଟ୍ୟ ନିୟମ ।

ପ୍ରଶ୍ନ-୮୪: ପୂର୍ବରୁ ଧ୍ୟାନ ଦ୍ୱାରା ଅଣିମା, ମହିମା, ଲଘିମା ଆଦି ସିଦ୍ଧିରୁ

ପ୍ରାପ୍ତ ଐଶ୍ୱର୍ଯ୍ୟ ମୋକ୍ଷକାମୀ ସାଧକର ଲକ୍ଷ୍ୟ ନୁହେଁ ବୋଲି ଉଦ୍ଧବଙ୍କୁ ଭଗବାନ ବୁଝାଇ ସାରିଛନ୍ତି । ଧର୍ମ, ଜ୍ଞାନ, ବିଜ୍ଞାନ, ବୈରାଗ୍ୟ ଇତ୍ୟାଦିଙ୍କର ମୋକ୍ଷ ଧର୍ମ ସହିତ ସଂପର୍କ କଅଣ ବୋଲି ଉଦ୍ଧବ ପ୍ରଶ୍ନ କରନ୍ତେ ଭଗବାନ କି ଉତ୍ତର ଦେଲେ ?

**ଧର୍ମୋ ମଦ୍‌ଭକ୍ତିକୃତ୍ ପ୍ରୋକ୍ତୋ ଜ୍ଞାନଂ ଚ-ଏକ-ଆତ୍ମ୍ୟ ଦର୍ଶନମ୍ ।**
**ଗୁଣେଷ୍ୱ-ଅସଙ୍ଗୋ ବୈରାଗ୍ୟଂ ଐଶ୍ୱର୍ଯ୍ୟଂ ଚ-ଅଣିମା-ଆଦୟଃ ॥୨୭॥**

ଉ. ଭଗବାନ ପୁଣି ବୁଝାଇ କହିଲେ, ''ଉଦ୍ଧବଜୀ, ଧର୍ମର ଲକ୍ଷ୍ୟ କୃଷ୍ଣଭକ୍ତି (ମଦ୍‌ଭକ୍ତି କୃତ) ଉତ୍ପନ୍ନ କରିବା, ଜ୍ଞାନର ଲକ୍ଷ୍ୟ ଜୀବ ଓ ବ୍ରହ୍ମ ଉଭୟଙ୍କ ମଧ୍ୟରେ ଥିବା ଭିନ୍ନତା ଓ ଅଭିନ୍ନତା ଉଭୟକୁ ବୁଝାଇଦେବା ଓ ବୈରାଗ୍ୟର ଲକ୍ଷ୍ୟ ମାୟା ପ୍ରକୃତିର ତମୋଗୁଣ, ରଜୋଗୁଣ ଓ ସତ୍ତ୍ୱଗୁଣର ଆକର୍ଷଣରୁ ମୁକ୍ତିଦେବା । ଏହି ତିନି ଲକ୍ଷ୍ୟ ପ୍ରାପ୍ତି ପାଇଁ କେବଳ ହରିଭଜନରେ ସାଧକକୁ କାୟ ମନୋବାକ୍ୟରେ ନିରନ୍ତର ଲଗାଇ ରଖିବା ହିଁ ଭାଗବତ ଧର୍ମର ଚରମ ନିଷ୍କର୍ଷ ।

ଏତିକି କଥାକୁ ବୁଝାଇବାକୁ ଅନୁରୋଧ କରି ପାଞ୍ଚ ଶ୍ଳୋକରେ ଉଦ୍ଧବଜୀ ୩୭ ପ୍ରଶ୍ନ ପଚାରିଛନ୍ତି । ଉତ୍ତର ଦେବାକୁ ଭଗବାନଙ୍କୁ ୧୨ଶ୍ଳୋକ ଖର୍ଚ୍ଚ କରିବାକୁ ପଡ଼ିଛି । ସଂକ୍ଷେପରେ କହିଲେ, ୧.ଯମ-ବହିଃ ଇନ୍ଦ୍ରିୟ ସଂଯମ, ୨.ନିୟମ ଶୌଚ, ସନ୍ତୋଷ, ଜପ, ତପ, ଆଦି, ବହିଃ ଇନ୍ଦ୍ରିୟ ସଂଯମ, ୩.ଶମ ଅନ୍ତଃ ଇନ୍ଦ୍ରିୟ ସଂଯମ, ୪.ଦମ-ବୁଦ୍ଧି ଓ ମନର ସଂଯମ, ୫.ତିତିକ୍ଷା-କଷ୍ଟ ସହିବାକୁ ଅଭ୍ୟାସ କରିବା, ୬.ଧୃତି-ଜିହ୍ୱା ଓ ଉପସ୍ଥ ଇନ୍ଦ୍ରିୟ ସଂଯମ, ୭.ଦାନ-କାହାକୁ ଦଣ୍ଡ ନ ଦେବା, ୮. ତପ-ସ୍ୱଧର୍ମ ପାଳନ, ୯.ଶୂରତା-ସ୍ୱଭାବ ଉପରେ ବିଜୟ, ୧୦.ସତ୍ୟ-ସମଦର୍ଶନ, ୧୧. ଋତ-କୋମଳ ବଚନ, ୧୨. ପବିତ୍ରତା-କର୍ମଫଳରେ ଅନାସକ୍ତି, ୧୩. ସନ୍ନ୍ୟାସ-ଭୋଗ ଲାଳସା ତ୍ୟାଗ, ୧୪. ଧନ-ଧର୍ମ ସଂଗ୍ରହ, ୧୫. ଯଜ୍ଞ-ନାରାୟଣ, ୧୬. ଦକ୍ଷିଣା-ଜ୍ଞାନୀକୁ ଜ୍ଞାନ ଦାନ ଓ ଭକ୍ତକୁ ଭକ୍ତିଦାନ, ୧୭. ବଳ-ପ୍ରାଣାୟାମ, ୧୮. ଭଗକୁ ଐଶ୍ୱର୍ଯ୍ୟ, ୧୯.ଲାଭକୁ ଭକ୍ତି, ୨୦. ବିଦ୍ୟାକୁ ମୁକ୍ତିର ଉପାୟ, ୨୧. ଲଜ୍ଜାକୁ ସ୍ୱଧର୍ମ ବିମୁଖତା, ୨୨. ଲକ୍ଷ୍ମୀଙ୍କୁ ନିଜ ଦ୍ରବ୍ୟରେ ସନ୍ତୋଷ, ୨୩. ସୁଖକୁ ସୁଖ-ଦୁଃଖରେ ଭିନ୍ନତା ନ ଦେଖିବା, ୨୪. ଦୁଃଖକୁ ଭୋଗ ସୁଖ ଇଚ୍ଛା, ୨୫. ପଣ୍ଡିତ-ବନ୍ଧ ମୋକ୍ଷ ଉଭୟକୁ ଜାଣିବା ଲୋକ, ୨୬. ମୁର୍ଖ-ଦେହକୁ ମୁଁ ଭାବୁଥିବା ଲୋକ, ୨୭. ମାର୍ଗକୁ ଈଶ୍ୱର ପ୍ରାପ୍ତିର ପଥ, ୨୮. ଉତ୍‌ପଥକୁ ସଂସାର ଭୋଗ ମାର୍ଗ, ୨୯.ସ୍ୱର୍ଗ-ମନରେ ସତ୍ତ୍ୱଗୁଣର ଉଦୟ, ୩୦. ନର୍କ-ମନରେ ତମୋଗୁଣର ଉଦୟ, ୩୧. ଗୃହକୁ ମନୁଷ୍ୟ ଦେହ, ୩୨. ବନ୍ଧୁଙ୍କୁ ଗୁରୁ ଓ ବୈଷ୍ଣବ, ୩୩. ଧନୀକୁ ସଦ୍‌ଗୁଣୀ, ୩୪. ଦରିଦ୍ରକୁ

ଅସନ୍ତୁଷ୍ଟ, ୩୫. କୃପଣ-ନିଜକୁ ଆତ୍ମା ବୋଲି ବୁଝିନଥିବା ଲୋକ, ୩୬.ସମର୍ଥ (ଈଶ୍ୱର)କୁ ବିଷୟ ଅନାସକ୍ତ, ୩୭. ଅସମର୍ଥ (ଅନୀଶ୍ୱର) ବିଷୟୀ ଲୋକ ବୁଝାଯାଏ ।

ପ୍ରଶ୍ନ-୮୫. ମୂର୍ଖ, ପଣ୍ଡିତ, ସ୍ୱର୍ଗ ଓ ନର୍କର ସଂଜ୍ଞା ବ୍ୟାଖ୍ୟା କରୁ କରୁ ଭଗବାନ ଦୋଷ ଗୁଣର କି ବାସ୍ତବ ସଂଜ୍ଞା ନିରୂପଣ କରି ମହାଜ୍ଞାନୀ ଭକ୍ତ ଉଦ୍ଧବଙ୍କୁ ଚମକାଇ ଦେଲେ ?

**କିଂ ବର୍ଣ୍ଣିତେନ ବହୁନା ଲକ୍ଷଣଂ ଗୁଣ ଦୋଷୟୋଃ ।**
**ଗୁଣଦୋଷ ଦୃଶୀଃ ଦୋଷୋ ଗୁଣଃ ତୁ ଉଭୟ ବର୍ଜିତଃ ॥୪୫॥**

ଉ. ଭଗବାନ କୃଷ୍ଣ ଏଠାରେ ଅତ୍ୟନ୍ତ ଚମତ୍କାର କଥାଟିଏ କହି ଜ୍ଞାନ ଜଗତରେ ଚହଳ ପକାଇ ଦେଇଛନ୍ତି । ଦୋଷକୁ ଦୋଷ କହିବା ଓ ଗୁଣକୁ ଗୁଣ କହିବା ଉଭୟ ଦୋଷ ଅଟେ । ଦୋଷକୁ ଦୋଷ ନ କହିବା ଓ ଗୁଣକୁ ଗୁଣ ନ କହିବା ଭଗବାନଙ୍କ ଖାତାରେ ଗୁଣ ହିସାବରେ ଗଣାଯାଏ । ଏହାର ସ୍ପଷ୍ଟିକରଣ କରିବେ ପରବର୍ତ୍ତୀ ଅଧ୍ୟାୟରେ ଉଦ୍ଧବଙ୍କ ସଂଶୟର ସମାଧାନ ନିମିତ୍ତ । ଚଳିତ ଅଧ୍ୟାୟର ବିଷୟ ବସ୍ତୁ ଥିଲା ସାଧନ ଅବସ୍ଥାରେ କର୍ମ ଜ୍ଞାନ ଓ ଭକ୍ତି ।

# ଅଥ ୨୦ଶ ଅଧ୍ୟାୟଃ

## (ସିଦ୍ଧ ଅବସ୍ଥାରେ କର୍ମ, ଜ୍ଞାନ ଓ ଭକ୍ତି)

ପ୍ରଶ୍ନ-୮୬: ପୂର୍ବ ଅଧ୍ୟାୟରେ ଭଗବାନ ଦୋଷକୁ ଦୋଷ କହିବା ଓ ଗୁଣକୁ ଗୁଣ କହିବା ଉଭୟ ଦୋଷ କହିବାରୁ ଉଦ୍ଧବ ଭଗବାନଙ୍କ ବାଣୀ ବେଦ ପ୍ରମାଣକୁ କିପରି ଦୃଷ୍ଟାନ୍ତ କରି ତାଙ୍କ ସମ୍ମୁଖରେ ରଖିଲେ ?

**ଉଦ୍ଧବ ଉବାଚ**

**ବିଧିଃ ଚ ପ୍ରତିଷେଧଃ ଚ ନିଗମୋ ହି-ଈଶ୍ୱରସ୍ୟ ତେ ।**
**ଅବେକ୍ଷତେଽରବିନ୍ଦ-ଅକ୍ଷ ଗୁଣଂ ଦୋଷଂ ଚ କର୍ମଣାମ୍ ॥୧॥**

ଉ. ଉଦ୍ଧବଜୀ କହିଲେ, "ହେ, କମଳ ଲୋଚନ, ଆପଣଙ୍କ (ଈଶ୍ୱରସ୍ୟ)

ବାଣୀ ହିଁ ବେଦ (ନିଗମୋ) ଅଟେ । ସେ ହିଁ ଦର୍ଶାଇଛନ୍ତି ଧର୍ମ, ଅଧର୍ମ, ବିଧି, ନିଷେଧ, ଦୋଷ ଓ ଗୁଣ । କେଉଁ କର୍ମ କଲେ ସ୍ୱର୍ଗ ଯିବ ପୁଣି କେଉଁ କର୍ମ କଲେ ନର୍କ ଯିବାକୁ ଜୀବ ବାଧ । ଅତଏବ ଦ୍ରବ୍ୟ, ଦେଶ, କାଳ, ପାତ୍ର ଆଦିରେ ଦୋଷ ଗୁଣ ଦର୍ଶନ ନକଲେ ମୋକ୍ଷ ମିଳିବ ବୋଲି କହିବା ଯୁକ୍ତି ସଙ୍ଗତ ବୋଲି ମନେ ହୁଏନା ।''

ପ୍ରଶ୍ନ-୮୭: ପିତୃଲୋକ, ଦେବଲୋକ ଓ ମନୁଷ୍ୟ ଲୋକରେ ବେଦ ଓ ପୁରାଣଙ୍କୁ ଦୁଇଟି ଦିବ୍ୟ ଚକ୍ଷୁ ବୋଲି ମାନିବାକୁ ପଡ଼େ । ସଂସାରୀ ସୁଖ ଖୋଜିବା ମାର୍ଗକୁ ପ୍ରେୟ ମାର୍ଗ ଓ ଈଶ୍ୱରୀୟ ସୁଖ ସନ୍ଧାନ କରିବାକୁ ଶ୍ରେୟ ମାର୍ଗ କୁହାଯାଏ । ସଂସାର ଦୃଶ୍ୟମାନ । ଅଦୃଷ୍ଟ ସ୍ରଷ୍ଟାଙ୍କୁ ଉପଲବ୍ଧି କରାଯାଏ ବେଦ ଓ ପୁରାଣ ଚକ୍ଷୁଙ୍କ ଦ୍ୱାରା । ଦୋଷ ଗୁଣ ନ ଦେଖିବା ଦ୍ୱାରା ଶ୍ରୁତି ସ୍ମୃତି ଉଲ୍ଲଂଘନ ହେବ ନାହିଁକି ?

**ଶ୍ରୀ ଭଗବାନ ଉବାଚ**

**ଯୋଗାଃ ତ୍ରୟୋ ମୟା ପ୍ରୋକ୍ତା ନୃଣାଂ ଶ୍ରେୟୋ ବିଧିତ୍ସୟା ।**
**ଜ୍ଞାନଂ କର୍ମ ଚ ଭକ୍ତିଃ ଚ ନ-ଉପାୟୋଽନ୍ୟୋଽସ୍ତି କୁତ୍ରଚିତ୍ ॥୬॥**

ଉ. ଶ୍ରେୟ ମାର୍ଗୀ ଲୋକ ପାଇଁ (ଶ୍ରେୟୋ ବିଧିତ୍ସୟା) ଭଗବାନ ଅବଶ୍ୟ ଜ୍ଞାନ, କର୍ମ ଓ ଭକ୍ତି ଏହି ତିନି ମାର୍ଗ ସ୍ୱୟଂ ବେଦରେ ବତାଇଛନ୍ତି । ଯେହେତୁ ମନୁଷ୍ୟର ସ୍ଥୁଳ, ସୂକ୍ଷ୍ମ ଓ କାରଣ ଦେହ ତିନୋଟି ଅଛି । ସେଇ ସାଧନାର ଲକ୍ଷ୍ୟ ମଧ ବ୍ରହ୍ମ, ପରମାତ୍ମା ଓ ଭଗବାନଙ୍କ ସ୍ୱରୂପ ମଧ ତିନୋଟି । ଅତଏବ ଚତୁର୍ଥ ମାର୍ଗ ଆସିବ କେଉଁଠୁ ? (ଅନ୍ୟୋଽସ୍ତି କୁତ୍ରଚିତ) ?

ପ୍ରଶ୍ନ-୮୮: ଯେହେତୁ ମାର୍ଗ ତିନୋଟି ଓ ଲକ୍ଷ୍ୟ ତିନୋଟି ତେବେ ଜ୍ଞାନ ଯୋଗର ଅଧିକାର କିଏ ଓ କର୍ମ ଯୋଗର ଅଧିକାରୀ କିଏ ?

**ନିର୍ବିର୍ଣ୍ଣାନାଂ ଜ୍ଞାନଯୋଗୋ ନ୍ୟାସିନାଂ ଇହ କର୍ମସୁ ।**
**ତେଷ୍ୱ-ଅନିର୍ବିଣ୍ଣ ଚିତ୍ତାନାଂ କର୍ମଯୋଗଃ ତୁ କାମିନାମ୍ ॥୭॥**

ଉ. ଯେଉଁ ପରାବୈରାଗ୍ୟର ଅଧିକାରୀ (ନିବିଣ୍ଣାନାଂ)ସାଧକ ଇହଲୋକରେ ଧନୀ ହୋଇ ସୁଖ ଭୋଗିବା ବା ସ୍ୱର୍ଗକୁ ଯାଇ ଦେବତା ହେବାର ଲୋଭ ତ୍ୟାଗ କରି ବୈଦିକ ଯଜ୍ଞ କରିବାରେ ଅନିଚ୍ଛୁକ (ନ୍ୟାସିନାଂ) ସେମାନେ ନିଶ୍ଚୟ ଜ୍ଞାନ ଯୋଗର ଅଧିକାରୀ । ଯେଉଁମାନେ ସଂପୂର୍ଣ୍ଣ ବୈରାଗ୍ୟହୀନ ସଂସାର ଆସକ୍ତ (କାମିନାଂ) କିନ୍ତୁ ଶ୍ରେୟଫଳ ଇଚ୍ଛୁକ ସେମାନଙ୍କ ପାଇଁ କର୍ମଯୋଗ ବିଧାନ କରାଯାଇଛି ।

ପ୍ରଶ୍ନ-୮୯ : ଭକ୍ତିଯୋଗର ଅଧିକାରୀ ତେବେ କିଏ ?

**ଯଦୃଚ୍ଛୟା ମତ୍‌କଥା-ଆଦୌ ଜାତଶ୍ରଦ୍ଧଃ ତୁ ଯଃ ପୁମାନ୍ ।**
**ନ ନିର୍ବିଣ୍ଣୋ ନ-ଅତି-ଆସକ୍ତୋ ଭକ୍ତିଯୋଗୋଽସ୍ୟ ସିଦ୍ଧିଦଃ ॥୮॥**

ଉ. ଯାହାର ସୌଭାଗ୍ୟ ବଳରୁ ବା ପୂର୍ବ ଜନ୍ମର ଶୁଭ ସଂସ୍କାର ବଳରୁ କିଛି କିଛି ଶ୍ରଦ୍ଧା ବିଶ୍ୱାସ ମିଳିଯାଇଛି(ଯଦୃଚ୍ଛୟା) ହରି କଥା ଶ୍ରବଣ କରିବାରେ ରୁଚି ଜାଗ୍ରତ ହୋଇଛି ପୁଣି ସେଭଳି ଲୋକ ଅତ୍ୟନ୍ତ ସଂସାର ବୈରାଗୀ ନୁହେଁ କିମ୍ବା ଅତ୍ୟନ୍ତ ସଂସାର ଆସକ୍ତ ନୁହେଁ ସେ ନିଶ୍ଚୟ ଭକ୍ତିଯୋଗର ଅଧିକାରୀ ।

ପ୍ରଶ୍ନ-୯୦ : ମୂଳ ଯୋଗ ତେବେ କର୍ମଯୋଗ ବୋଲି ପ୍ରମାଣିତ ହେଲା । ବୈଦିକ ନିୟମରେ ଦୋଷ ଗୁଣ ମାନି ବର୍ଣ୍ଣ ଆଶ୍ରମ ଧର୍ମ ପାଳନକାରୀ ସାଧକ କେତେ କାଳ ପର୍ଯ୍ୟନ୍ତ ସ୍ୱଧର୍ମ ପାଳନ ରୂପୀ କର୍ମଯୋଗ କରିବ ?

**ତାବତ୍ କର୍ମାଣି କୁର୍ବୀତ ନ ନିର୍ବିଦ୍ୟେତ ଯାବତା ।**
**ମତ୍‌କଥା ଶ୍ରବଣ-ଆଦୌ ବା ଶ୍ରଦ୍ଧା ଯାବତ୍ ନ ଜାୟତେ ॥୯॥**

ଉ. ଯେଉଁ ପର୍ଯ୍ୟନ୍ତ ମନବୁଦ୍ଧିରେ ବିଚରାର ପୂର୍ଣ୍ଣ ସଂସାର ବୈରାଗ୍ୟ ଉଦ୍ରେକ ହୋଇ ନାହିଁ କିମ୍ବା ହରିକଥା ଶ୍ରବଣ ଆଦିରେ ଶ୍ରଦ୍ଧା, ରୁଚି, ଜାଗ୍ରତ ହୋଇ ନାହିଁ ସେ ପର୍ଯ୍ୟନ୍ତ ସେ କର୍ମଯୋଗ ଜାରି ରଖିବା ଉଚିତ । ପରେ ପରେ ସଂସାର ବୈରାଗ୍ୟ ଉଦ୍ରେକ ହେଲେ ଜ୍ଞାନ ଯୋଗରେ କିମ୍ବା ଶ୍ରୀହରି କଥା ଶ୍ରବଣରେ ଶ୍ରଦ୍ଧା, ବିଶ୍ୱାସ ରତି ଉତ୍ପନ୍ନ ହେଲେ ସେ ନିଶ୍ଚୟ ଭକ୍ତି ଯୋଗର ଅଧିକାରୀ ହେବ । ନଚେତ ଅଶୁଦ୍ଧ ଅନ୍ତଃକରଣରେ ବିଚରା ଅତୋ ଭ୍ରଷ୍ଟା ତତୋ ଭ୍ରଷ୍ଟ ହେବ ।

ପ୍ରଶ୍ନ-୯୧ : ସାଧକ ଠିକ୍ ଠିକ୍ ବୈଦିକ ନିୟମମାନି ବିନା ଭକ୍ତିରେ କର୍ମଯୋଗ ବା ସ୍ୱଧର୍ମ ପାଳନ କଲେ ସ୍ୱର୍ଗ ଯାଏ । ମନ ଇଚ୍ଛା ଧର୍ମ କର୍ମ ଆଦି କରି ପାପ କଲେ ନର୍କ ଯାଏ । ଭକ୍ତି ସହିତ ସ୍ୱଧର୍ମ ପାଳନ କଲେ ସ୍ୱର୍ଗ ନରକ ଉଭୟ ଯିବାକୁ ପଡ଼େନା । ଅଥଚ ପାପ ସହିତ ପୁଣ୍ୟ କଲେ ପୁଣି ମର୍ତ୍ତ୍ୟଲୋକର ନର ଜନ୍ମ ମିଳେ । ଆଦୌ ପାପ ନ କରି ଭକ୍ତି ସହିତ ସ୍ୱଧର୍ମ ପାଳନ କଲେ ସାଧକକୁ ସ୍ୱର୍ଗ, ମର୍ତ୍ତ୍ୟ, ନରକ ନ ମିଳି କଅଣ ମିଳିବ ?

**ଅସ୍ମିନ୍ ଲୋକେ ବର୍ତ୍ତମାନଃ ସ୍ୱଧର୍ମସ୍ଥୋଽନଘଃ ଶୁଚିଃ ।**
**ଜ୍ଞାନଂ ବିଶୁଦ୍ଧଂ ଆପ୍ନୋତି ମଦ୍‌ଭକ୍ତିଂ ବା ଯଦୃଚ୍ଛୟା ॥୧୧॥**

ଉ. ମୃତ୍ୟୁ ପରେ କେଉଁ ଲୋକ ମିଳିବ ସେ କଥା ବିଚାର୍ଯ୍ୟ ନୁହେଁ । ତାର ଜୀବନ କାଳରେ ଆତ୍ମାରାମ ସାଧୁସଙ୍ଗ ପ୍ରାପ୍ତି ହୋଇ ବିଶୁଦ୍ଧ ଜ୍ଞାନ ମାର୍ଗରେ ତାକୁ ପ୍ରବେଶ ଅଧିକାର ମିଳିବ କାରଣ ସେ ଏବେ ସଂସାର ବୈରାଗୀ । ଭାଗ୍ୟ ଆହୁରି ଜୋର ଥିଲେ ବୈଷ୍ଣବ ସାଧୁସଙ୍ଗ ପ୍ରାପ୍ତ ହୋଇ (ଯଦୃଚ୍ଛୟା) ଭକ୍ତି ଧର୍ମରେ ରୁଚି ହେବ କାରଣ ସେ ସଂସାର ସେବା ଲାଗି ଅଣ୍ଟା ଭିଡ଼ିଛି । ସଂସାରର ସକଳ ମନୁଷ୍ୟ, ପଶୁ, ପକ୍ଷୀ, ବୃକ୍ଷଲତା ସବୁଥିରେ ସେ କେବଳ ଭଗବାନଙ୍କୁ ଦର୍ଶନ କରି ପରମ ଆନନ୍ଦରେ ବିହାର କରୁଛି । ମନୁଷ୍ୟ ଜନ୍ମ ତାର ସାର୍ଥକ ହେବ । ସେ ହେବ ବିରଳ କୃଷ୍ଣପ୍ରେମର ଅଧିକାରୀ ।

ପ୍ରଶ୍ନ-୯୨: ନର ଜନ୍ମରେ କଅଣ ଏଭଳି ମାହାତ୍ମ୍ୟ ଅଛି ଯେ ସ୍ୱର୍ଗବାସୀ ଦେବତାମାନେ (ସ୍ୱର୍ଗିଣୋ) ଓ ନରକବାସୀ (ନିରୟିଣଃ) ଏହି ମର୍ତ୍ତ୍ୟଲୋକରେ ଏହି (ଏତଂ) ମନୁଷ୍ୟ ଦେହ ପାଇବାକୁ ଇଚ୍ଛା କରନ୍ତି (ଇଚ୍ଛନ୍ତି) ।

**ସ୍ୱର୍ଗିଣୋଽପି-ଏତଂ ଇଚ୍ଛନ୍ତି ଲୋକଂ ନିରୟିଣଃ ତଥା ।**
**ସାଧକଂ ଜ୍ଞାନ ଭକ୍ତିଭ୍ୟାଂ ଉଭୟଂ ତତ୍ ଅସାଧକମ୍ ॥୧୨॥**

ଉ. ପ୍ରେୟକାମୀ ବିଷୟୀ ଲୋକ ସିନା ଭୋଗ ବିଳାସ ଭୋଗ ସୁଖରେ ମାତେ । ଶ୍ରେୟକାମୀ ସାଧକ ନରକ ଓ ସ୍ୱର୍ଗ ଉଭୟଲୋକରେ କିନ୍ତୁ ଜ୍ଞାନ ଭକ୍ତି କିଛି ପାଇ ପାରେନା (ତତ୍ ଅସାଧକଂ) । ତାହା ମିଳେ ମାତ୍ର ମନୁଷ୍ୟ ଲୋକରେ ଓ ମନୁଷ୍ୟ ଦେହରେ ।

ପ୍ରଶ୍ନ-୯୩: ସାଧକ ତେବେ ଏହି ମୃତ୍ୟୁଲୋକରେ ଦୀର୍ଘକାଳ ପାଇଁ ସ୍ଥାୟୀ ବସବାସ ଲାଗି କଅଣ ଅମରତ୍ୱ ଆକାଙ୍‌କ୍ଷା କରିବ କି ?

**ନ ନରଃ ସ୍ୱର୍ଗତିଂ କାଙ୍‌କ୍ଷେତ୍ ନାରକୀଂ ବା ବିଚକ୍ଷଣଃ ।**
**ନ ଇମଂ ଲୋକଂ ଚ କାଂଙ୍‌କ୍ଷେତ୍ ଦେହ-ଆବେଶାତ୍ ପ୍ରମାଦ୍ୟତି ॥୧୩॥**

ଉ. ନା ନା ତାହା ମଧ୍ୟ ଠିକ୍ ନୁହେଁ । ବିବେକୀ ଲୋକ(ବିଚକ୍ଷଣଃ) ଏ ତିନିଲୋକ ସୁଖ ପ୍ରତି ଆଦୌ ଆସକ୍ତ ହୁଏ ନାହିଁ । ଥରେ ଭଗବତ ଭକ୍ତି ସାଧକର ହୃଦୟରେ ଉଦୟ ହେଲେ ସେ ନିଜର ଦେହ ଆସକ୍ତିକୁ ମଧ୍ୟ ପାଶୋରି ପକାଏ । କାରଣ ଭକ୍ତ ପାଇଁ ଦୀର୍ଘ ଜୀବନ କାମ୍ୟ ନୁହେଁ ବରଂ ଦିବ୍ୟ ଜୀବନ କାମ୍ୟ ଅଟେ । ସେ ବଂଚିଲେ ଲାଭ କାରଣ ସେ ହରି, ହରି ଭକ୍ତଙ୍କ ସେବା କରିବ । ମଲେ ମଧ୍ୟ ତାର

ଲାଭ କାରଣ ଦୁର୍ବଳ ଅସମର୍ଥ ଅଙ୍ଗ ପ୍ରତ୍ୟଙ୍ଗ ତ୍ୟାଗ କରି ନୂତନ ଶରୀର ମିଳିଲେ ସେ ଆହୁରି ଉଚ୍ଚତର ନିଖୁଣ ବିଷ୍ଣୁ ବୈଷ୍ଣବ ସେବା କରିପାରିବ । ଅତଏବ ଦୁଇ ହାତରେ ଲଡ୍‌ଡୁ । ଭକ୍ତ ପାଇଁ ଜନ୍ମ ମରଣ ଉଭୟେ ଲାଭଦାୟକ ! ! !

ପ୍ରଶ୍ନ-୯୪ : ସ୍ଥୂଳ ଦେହ ଦିନେ ନା ଦିନେ ମୃତ୍ୟୁକୁ ଭେଟିବ ହିଁ ଭେଟିବ ଜୀବ ଚାହୁଁ କିମ୍ବା ନ ଚାହୁଁ । ଦେହ ଅନିତ୍ୟ ହେଲେ ମଧ୍ୟ ନିତ୍ୟ ଭଗବାନଙ୍କୁ ପ୍ରାପ୍ତିରେ ଏହା ଏକମାତ୍ର ସହାୟକ ଓ ନିଶୁଣୀ ଭଳି କାମ ଦିଏ । କିଭଳି ବିଚାର କରି ଭକ୍ତ ତାର ଦେହ ଆସକ୍ତିରୁ ମୁକ୍ତି ପାଇଥାଏ ?

**ଛିଦ୍ୟମାନଂ ଯମୈଃ ଏତୈଃ  କୃତନୀଡ଼ଂ ବନସ୍ପତିମ୍ ।**
**ଖଗଃ ସ୍ୱକେତଂ ଉତ୍ସୃଜ୍ୟ  କ୍ଷେମଂ ଯାତି ହି-ଅଲମ୍ପଟଃ ॥୧୫॥**

ଉ. ସଂସାରରେ ପକ୍ଷୀ ବୃକ୍ଷ ଡ଼ାଳରେ (ବନସ୍ପତିଂ) ବସା ବାନ୍ଧି ଜୀବନ କାଟେ । ନିରାପଦ ଭାବୁଥାଏ ନିଜକୁ । ଯେଉଁ ଦିନ ଦେଖେ ସେ ବିଷୟ ବିମୁଖ (ଅଲମ୍ପଟଃ) ବୃକ୍ଷ ମୂଳରୁ କଟାଯାଉଛି ସେ ତତ୍‌କ୍ଷଣାତ୍ ବୃକ୍ଷ ତ୍ୟାଗ କରି ଅନ୍ୟତ୍ର ଚାଲିଯାଏ । ସେହିଭଳି ବିବେକୀ ଭକ୍ତ ଜାଣିପାରେ ନିଜ ଦେହର ଆୟୁଷ ସରି ସରି ଆସୁଛି । ସଂପୂର୍ଣ୍ଣ ଆୟୁଷ ଶେଷ ହେବା ପୂର୍ବରୁ ତାର ଆସକ୍ତି ତ୍ୟାଗ କରିଦେବା ହିଁ ବିବେକର କାର୍ଯ୍ୟ । ଦିନ ରାତି ସେ ହରିଭଜନ ସହିତ ବିଷ୍ଣୁ ବୈଷ୍ଣବ ସେବାରେ ମଜ୍ଜି ଯାଉଥିବାରୁ ତାର ଦେହ ଆସକ୍ତି ଓ ଗୃହ ଆସକ୍ତି ଅକ୍ଳେଶରେ ତ୍ୟକ୍ତ ହୋଇଯାଏ ।

ପ୍ରଶ୍ନ-୯୫ : ଦେହ ଥାଉ ଥାଉ ମୃତ୍ୟୁ ଆସିବା ପୂର୍ବରୁ ଜଣେ ଯଦି ମାୟାନଦୀ ବା ଭବସାଗର ପାର ହୋଇପାରିଲାନି କିମ୍ବା ପାରିହେବା ପାଇଁ ଚେଷ୍ଟା କଲା ନାହିଁ ତାକୁ କଅଣ ଅବିବେକୀ କୁହାଯିବ ?

**ନୃଦେହଂ ଆଦ୍ୟଂ ସୁଲଭଂ ସୁଦୁର୍ଲ୍ଲଭଂ**
**ପ୍ଲବଂ ସୁକଳ୍ପଂ ଗୁରୁ କର୍ଣ୍ଣଧାରମ୍ ।**
**ମୟା-ଅନୁକୂଳେନ ନଭସ୍ୱତା-ଈରିତଂ**
**ପୁମାନ୍ ଭବ-ଅବ୍‌ଧିଂ ନ ତରେତ୍ ସ ଆତ୍ମହା ॥୧୭॥**

ଉ. ଅବିବେକୀ କୁହାଯିବ ନାହିଁ ବରଂ ମହାପାପୀ ଆତ୍ମହତ୍ୟାକାରୀ ବୋଲି କୁହାଯିବ । ଦେବଦୁର୍ଲ୍ଲଭ ମନୁଷ୍ୟ ଶରୀର ଭଗବାନଙ୍କ କୃପାରୁ ସୁଲଭ ହେଲା । ଭବ ସାଗରରୁ ପାରହେବା ନିମିତ୍ତ ଏହା ଏକ ସୁଦୃଢ଼ ନୌକା (ପ୍ଲବଂ) । ନାବିକ ଗୁରୁ

(କର୍ଣ୍ଣଧାରମ୍) । ଭଗବାନଙ୍କ କୃପା ଅନୁକୂଳ ସମୀର (ନଭସ୍ୱତା) ଦ୍ୱାରା ଏ ନାବ ଚାଲେ (ଈରିତଂ) । ତଥାପି ଯଦି କେହି ଏ ସୁନ୍ଦର ସୁଯୋଗର ଫାଇଦା ଉଠାଇପାରେ ନାହିଁ ତେବେ ସେ ନିଶ୍ଚୟ ଏକ ଆତ୍ମହତ୍ୟାକାରୀ । ମହାପାପୀ ଓ ହତଭାଗ୍ୟ ମନୁଷ୍ୟ । ଅତଏବ ତାକୁ ପଶୁଜନ୍ମକୁ ଠେଲାଯାଏ ।

ପ୍ରଶ୍ନ-୯୬: ଆତ୍ମା ଉଦ୍ଧାର ଲାଗି ଭଗବାନ କର୍ମ, ଜ୍ଞାନ ଓ ଭକ୍ତିର ଯେଉଁ ତିନିଟି ଉପାୟ କହିଛନ୍ତି ତାର ଅସଲି ଲଗାମ ହେଉଛି ସାଧକର ମନ ଓ ବୁଦ୍ଧି । ଜନ୍ମ ହେଉ ହେଉ ପୂର୍ବ ପୂର୍ବ ଜନ୍ମର ଅସଂଖ୍ୟ ଭୋଗ ସଂଗ୍ରହର ସଂସ୍କାର ମନ ବୁଦ୍ଧିକୁ ଅବଶ୍ୟ ବିଚଳିତ କରିବେ । ସାଧକ ଏଥିରେ ବିଚଳିତ ନ ହୋଇ ଧୈର୍ଯ୍ୟ ଧାରଣ କରିବ । ଗୁରୁଙ୍କ ଶରଣରେ ରହି ଆସନ, ପ୍ରାଣାୟାମ କରି ଏବଂ ଆବଶ୍ୟକ ବେଳେ ମୌନ ରହି ଗୁରୁ ବୈଷ୍ଣବଙ୍କ କୃପା ଦ୍ୱାରା ମନକୁ ବଶକୁ ଆଣିବ । ପ୍ରଥମେ ମନର ଶୁଦ୍ଧ ସତ୍ତ୍ୱ ଗୁଣ ଦ୍ୱାରା ରଜୋ ତମୋ ଗୁଣକୁ ଜୟ କରିବ । ତେଣିକି ନିଜ ହୃଦୟରେ ବୈରାଗ୍ୟ ସହିତ ଜ୍ଞାନର ଉଦୟ ସ୍ୱତଃ ହେବ । ସ୍ୱଧର୍ମ ପାଳନ ଚାଷର ଫଳ ଜ୍ଞାନ ବୈରାଗ୍ୟ ପ୍ରାପ୍ତି ପର୍ଯ୍ୟନ୍ତ ହେଲେ ଦୋଷଗୁଣ ଦେଖିବା ବୈଦିକ ଆଦେଶ ତେବେ ସାଧକ ପକ୍ଷେ କେଉଁ ଅବସ୍ଥା ପର୍ଯ୍ୟନ୍ତ ପାଳନୀୟ ?

**ସ୍ୱେ ସ୍ୱେଽଧିକାରେ ଯା ନିଷ୍ଠା ସ ଗୁଣଃ ପରିକୀର୍ତ୍ତିତଃ ।**
**କର୍ମଣା ଜାତି-ଅଶୁଦ୍ଧାନାଂ ଅନେନ ନିୟମଃ କୃତଃ ।**
**ଗୁଣ ଦୋଷ ବିଧାନେନ ସଙ୍ଗାନାଂ ତ୍ୟାଜନ-ଇଚ୍ଛୟାଃ ॥୨୬॥**

ଉ. ନିଜ ନିଜ ବର୍ଣ୍ଣ ଧର୍ମ ଓ ଆଶ୍ରମ ଧର୍ମ ପାଳନ କରିବାର ନିଷ୍ଠାକୁ ଶାସ୍ତ୍ରରେ ଗୁଣ କୁହାଯାଏ (ପରିକୀର୍ତ୍ତିତା) । ବିମୁଖତାକୁ ଦୋଷ କୁହାଯାଏ । ବିଷୟୀ ମନୁଷ୍ୟ ପାଇଁ କର୍ମମାତ୍ରକେ ଜନ୍ମରୁ ଅଶୁଦ୍ଧ କାରଣ ତାର ମନ ସର୍ବଦା ବିଷୟ ଭୋଗ ଲାଳସା ଅଶୁଦ୍ଧିରେ ପରିପୂର୍ଣ୍ଣ । ସେଇ ବିଷୟ ଆସକ୍ତିରୁ (ସଙ୍ଗାନାଂ) ମନକୁ ମୁକ୍ତ କରିବାକୁ (ତ୍ୟାଜେନ-ଇଚ୍ଛୟା) ଦୋଷ ଓ ଗୁଣର ବିଧାନ ବୋଲି ବେଦ ନିୟମ କରିଛନ୍ତି କେବଳ ନିଷ୍କାମ ଓ ନିରନ୍ତର କୃଷ୍ଣ ଭକ୍ତି ଉଦୟ ହେବା ପର୍ଯ୍ୟନ୍ତ ।

ପ୍ରଶ୍ନ-୯୭: ଅନେକ ଦିନ ଧରି ସ୍ୱଧର୍ମ ପାଳନ କରି ଗୃହସ୍ଥାଶ୍ରମରେ ୨୫ବର୍ଷ ବିତାଇବା ପରେ ଯଦି ସଂସାର ବୈରାଗ୍ୟ ଉତ୍ପନ୍ନ ନ ହେଲା ତେବେ ଆଦୌ ବ୍ୟସ୍ତ ହେବନି ସାଧକ । ପ୍ରାରବ୍ଧ ଦୁଃଖ ବୋଲି ମନେ କରି ଦୁଃଖ କଷ୍ଟକୁ ସହର୍ଷ ଭୋଗ କରିବ ଓ ଶ୍ରଦ୍ଧା ବିଶ୍ୱାସ ସହ ଭକ୍ତି ଉପାସନାରେ ନିଜ ମନକୁ ଲଗାଇ ରଖିବ ।

ଶେଷରେ ଠିକ୍ ସମୟରେ ଭଗବାନ ସ୍ୱୟଂ ତାର ହୃଦୟରେ ପ୍ରକଟ ହୋଇ ମାର୍ଗଦର୍ଶନ କରାଇବେ ଓ ଗୁରୁ ରୂପରେ କଷ୍ଟ ହଜମ କରାଇବାରେ ସାହାଯ୍ୟ କରିବେ। ଭକ୍ତ ଶ୍ରେଷ୍ଠ ସୁଦାମା, ମୀରାବାଈ, ନରସିଂହ ମେହେଟ୍ଟା ଓ ସନ୍ଥ ତୁକାରାମଙ୍କ ଭଳି ହରିଭଜନ କରି ଚାଲିଲେ ସାଧକର କି ଅଲୌକିକ ଅବସ୍ଥାନ୍ତର ହେବ ?

**ଭିଦ୍ୟନ୍ତେ ହୃଦୟଗ୍ରନ୍ଥୀଃ ଛିଦ୍ୟନ୍ତେ ସର୍ବ ସଂଶୟାଃ ।**
**କ୍ଷୀୟନ୍ତେ ଚ-ଅସ୍ୟ କର୍ମାଣି ମୟି ଦୃଷ୍ଟେଽଖିଳ ଆତ୍ମନି ॥୩୦॥**

ଉ. ପ୍ରାରବ୍ଧ କର୍ମ ଦେହପାତ ପର୍ଯ୍ୟନ୍ତ ସମସ୍ତଙ୍କର ରହେ। ସଂଚିତ ଓ କ୍ରିୟମାଣ ଉଭୟ କର୍ମର ଫଳ ନିଶ୍ଚୟ ଆସିବେ କିନ୍ତୁ ଆଉ ଦୁଃଖ ଦେଇପାରିବେନି ଭକ୍ତକୁ। ଭକ୍ତ ସହର୍ଷ ପ୍ରାରବ୍ଧ କର୍ମଫଳ ଭୋଗିପାରିବ। ସ୍ୱଧର୍ମ ତ୍ୟାଗ ସ୍ଥିତିରେ ସେ ପହଞ୍ଚିଯିବ। ମୁଁ ଖାଲି ହରିଭଜନ କଲେ ମୋ ପିଲା କୁଟୁମ୍ବ ଭାସି ଯିବେ ଓ ମୋ ସଂସାର ଉଚ୍ଛନ୍ନ ହୋଇଯିବ ଏଭଳି ଧାରଣାରୁ ତା ମନ ବୁଦ୍ଧି ହଟିଯିବ। ତାକୁ କୁହାଯାଏ ଗ୍ରନ୍ଥୀ ଭେଦନ। କରିବା, ଜାଣିବା, ପାଇବା ତିନି ଅତୃପ୍ତ, ଅସମାପ୍ତ କର୍ମ ଯାହା ଜନ୍ମ ଜନ୍ମାନ୍ତର ଧରି ତାକୁ ବ୍ୟସ୍ତ କରୁଥିଲା ଏବେ ନିରନ୍ତର ହରିଭଜନ ଫଳରେ ତିନି ଗ୍ରନ୍ଥୀରୁ ମୁକ୍ତ ହେବ ସେ। ସକଳ ଜଡ଼, ଚେତନ, ଚର, ଅଚର ଜୀବ ମଧ୍ୟରେ ତାକୁ ନିଜ ଇଷ୍ଟ ରାଧାକୃଷ୍ଣଙ୍କ ଦିବ୍ୟ ମୂର୍ତ୍ତି ଦର୍ଶନ ହେବ ହିଁ ହେବ। ସେ ଏବେ ସମ୍ପାଳୁଆ ଦେହ ଛାଡ଼ି ସୁନ୍ଦର ପ୍ରଜାପତିଟିଏ ପରା!!!

ପ୍ରଶ୍ନ-୯୮: କର୍ମଦ୍ୱାରା ସ୍ୱର୍ଗ ସୁଖ ମିଳେ, ତପସ୍ୟା ଦ୍ୱାରା ଅଲୌକିକ ସିଦ୍ଧିମିଳେ, ତୀର୍ଥ ଦର୍ଶନ ଆଦି ଦ୍ୱାରା ଦେବତା ଜନ୍ମ ମିଳିବାର ସମ୍ଭାବନା ରହେ। ଏସବୁକୁ ତ୍ୟାଗ କରି ସ୍ୱଧର୍ମ ତ୍ୟାଗୀ ହୋଇ ନିରନ୍ତର ହରିଭଜନରେ ଲାଗିଲେ ସାଧକକ ଏ ସବୁକୁ ହରାଇଲା ବୋଲି ଦୁଃଖ କରିବନି କି ?

**ଯତ୍ କର୍ମଭିଃ ଯତ୍ତପସା ଜ୍ଞାନ ବୈରାଗ୍ୟତଃ ଚ ଯତ୍ ।**
**ଯୋଗେନ ଦାନ ଧର୍ମେଣ ଶ୍ରେୟୋଭିଃ ଇତରୈଃ ଅପି ॥୩୨॥**

ଉ. ସେ ଆଦୌ ଦୁଃଖୀ ହେବନି ବରଂ ପରମ ଆନନ୍ଦ ପ୍ରାପ୍ତ ହେବ। କୂପ ତଡ଼ାଗ, ଖନନ, ଧର୍ମଶାଳା ନିର୍ମାଣ ଆଦି ଇଷ୍ଟାପୂର୍ତ୍ତ ଆଦି କର୍ମ କରି (ଶ୍ରେୟୋଭିଃ ଇତରୈଃ ଅପି) ସେ ଯେଉଁ ଅହଂକାର ଜାଲରେ ପଡ଼ିଥାଆନ୍ତା ସେଥିରୁ ସେ ଏବେ ମୁକ୍ତ ବୋଲି ଜାଣି ନିଜର ସୌଭାଗ୍ୟର ପ୍ରଶଂସା କରିବ।

॥ ଅପଣ୍ଡିତ ଦାମୋଦର ବଳୀୟାରସିଂହ ॥

ପ୍ରଶ୍ନ-୯୯ : ଅନ୍ୟାନ୍ୟ ଶ୍ରେୟ ମାର୍ଗରେ ମିଳୁଥିବା ଫଳ ସବୁ କଅଣ ଏକାକୀ ଭକ୍ତିମାର୍ଗରେ ସାଧକକୁ ପ୍ରାପ୍ତ ହୋଇପାରିବ ?

**ସର୍ବଂ ମଦ୍‌ଭକ୍ତି ଯୋଗେନ ମଦ୍‌ଭକ୍ତୋ ଲଭତେଽଞ୍ଜସା ।**
**ସ୍ୱର୍ଗ-ଅପବର୍ଗଂ ମତ୍‌ଧାମ କଥଂଚିତ୍ ଯଦି ବାଞ୍ଛତି ॥୩୩॥**

ଉ. ଭକ୍ତ ସ୍ୱର୍ଗ ଲୋକ, ବୈକୁଣ୍ଠ ଲୋକ, ଗୋଲୋକ (ମତ୍‌ଧାମ) ସହିତ ପାଞ୍ଚ ପ୍ରକାର ମୋକ୍ଷ (ଅପବର୍ଗ) ପ୍ରାପ୍ତିର ମଧ୍ୟ ଅଧିକାରୀ ହେବ । ମଜା କଥା ହେଲା ଭକ୍ତି ପ୍ରାପ୍ତିପରେ ଏ ସବୁ ତାକୁ ତୁଚ୍ଛାତିତୁଚ୍ଛ ମନେ ହେବ । ଏସବୁକୁ ସେ ଆଦୌ ଚାହିଁବ ନାହିଁ । ଅବଶ୍ୟ ଯଦି ଚାହିଁବ ତେବେ ଅକ୍ଲେଶରେ (ଅଞ୍ଜସା) ପାଇ ପାରିବ । ସେଇ ତ ଭକ୍ତି ମାର୍ଗର ବାହାଦୂରୀ ! !

ପ୍ରଶ୍ନ-୧୦୦ : କିଏ ସ୍ୱର୍ଗଲୋକ, ବୈକୁଣ୍ଠ, ମହାବୈକୁଣ୍ଠ, ଗୋଲୋକ ଧାମ ଚାହିଁଲା ବା କିଏ ମୁକ୍ତି ଚାହିଁଲା ଓ ପାଇଲା ସେ କଥା ଯେତେଟା ବଡ଼ ନୁହେଁ ଭଗବାନଙ୍କ ବିଚାରରେ କିଏ ଯାଚିଲା ପରେ ମଧ୍ୟ ଆଦୌ କିଛି ନ ଚାହିଁଲା ସେ କଅଣ ଉତ୍ତମ ଭକ୍ତ ଭାବରେ ଗଣ୍ୟ ହେବ ?

**ନୈରପେକ୍ଷ୍ୟଂ ପରଂ ପ୍ରାହୁଃ ନିଃଶ୍ରେୟସଂ ଅନଳ୍ପକମ୍ ।**
**ତସ୍ମାତ୍ ନିରାଶିଷୋ ଭକ୍ତିଃ ନିରପେକ୍ଷସ୍ୟ ମେଽଭବତ୍ ॥୩୪॥**

ଉ. ବିଲକୁଲ ଗଣାଯିବ । ତାକୁ କୁହାଯାଏ (ପ୍ରାହୁଃ) ପରମ (ପରଂ) ନିଷ୍କାମ ଭକ୍ତ (ନୈରପେକ୍ଷ୍ୟଂ) । ସେ ମହାନ୍ (ଅନଳ୍ପକଂ) କଲ୍ୟାଣକାରୀ (ନିଃଶ୍ରେୟସଂ) ଜଗତବନ୍ଦ୍ୟ ଭକ୍ତ ଶିରୋମଣି ଅଟେ । ଭଗବାନଙ୍କର ସେ ଜଣେ ସମର୍ପିତ ସୈନିକ ବା ଗେହ୍ଲାପୁଅ ।

ପ୍ରଶ୍ନ-୧୦୧ : ମୋଠାରେ ଐକାନ୍ତିକି ଭକ୍ତି ରଖିଥିବା ଭକ୍ତର ଦୋଷଗୁଣ କିଛି ମୁଁ ଦେଖେନା ବୋଲି କହି ଭଗବାନ ଏଠାରେ ସ୍ପଷ୍ଟ କରିଦେଲେ । ଭକ୍ତ କିନ୍ତୁ ଦୋଷଗୁଣ ନିୟମ କାନୁନ୍‌ର ଊର୍ଦ୍ଧ୍ୱରେ ରହେ (ବୁଦ୍ଧେଃ ପରଂ ଉପେୟୁଷାମ୍) କିପରି ?

**ନ ମୟି-ଏକାନ୍ତ ଭକ୍ତାନାଂ ଗୁଣଦୋଷ-ଉଭବା ଗୁଣାଃ ।**
**ସାଧୂନାଂ ସମଚିତ୍ତାନାଂ ବୁଦ୍ଧେଃ ପରଂ ଉପେୟୁଷାମ୍ ॥୩୬॥**

ଉ. ବୁଦ୍ଧି ସିନା ଦୋଷ ଗୁଣ ବାଛେ । ଭଗବାନଙ୍କର ଭକ୍ତର କାର୍ଯ୍ୟକଳାପ ବିଷୟୀ ମନୁଷ୍ୟର ବୁଦ୍ଧିରୁ ଅତୀତ । ଭକ୍ତ ସମଦର୍ଶୀ, ସାଧୁ ଅତଏବ ସାଧାରଣ

ଲୋକଙ୍କ ପାଇଁ ପ୍ରଯୁଜ୍ୟ ଦୋଷ ଗୁଣ ପାପ ପୁଣ୍ୟ ନିୟମ ତାକୁ ଲାଗୁ ହୁଏ ନାହିଁ ବୋଲି ନିଷ୍କତ୍ତି ଶୁଣାଇ ଭଗବାନ ଉଦ୍ଧବଜୀଙ୍କୁ ସ୍ତବ୍ଧ କରାଇଦେଲେ ।

# ଅଥ ୨୧ଶ ଅଧ୍ୟାୟଃ

## ବୈଦିକ ଗୁଣ ଦୋଷ ବ୍ୟବସ୍ଥାର ରହସ୍ୟ ଓ ବ୍ୟାଖ୍ୟା

## (କର୍ମ, ଜ୍ଞାନ ଓ ଭକ୍ତି ତିନି ଯୋଗର ଅପାତ୍ର ସକାମ କର୍ମୀଙ୍କ ପାଇଁ)

ପ୍ରଶ୍ନ-୧୦୨ : ଭଗବାନ ନାରାୟଣଙ୍କର ବେଦବାଣୀ ମନୁଷ୍ୟ ଜାତିର ମୂଳ ସମ୍ବିଧାନ । ସମସ୍ତ ମନୁଷ୍ୟ ସମାଜକୁ ଶୃଙ୍ଖଳିତ କରିବା ନିମିତ୍ତ ଏହା ପରମେଶ୍ୱରଙ୍କ ଏକ ଅଯାଚିତ ଦାନ । ଜନ୍ମରୁ ମନୁଷ୍ୟ ପ୍ରକୃତିର ନିୟମମାନଙ୍କ ଅଧୀନସ୍ଥ । ପୂର୍ବ ଜନ୍ମର ଶୁଭ ଅଶୁଭ ସଂସ୍କାର ଆଧାରରେ ତାର ପ୍ରାପ୍ତ ନୂତନ ଦେହରେ ଏକ ନୂତନ ଜୀବନର ଶୁଭାରମ୍ଭ ହୁଏ । ବେଦ ଜାଣିବା ବୁଝିବା ନିମିତ୍ତ ବହୁତ କମ ଲୋକଙ୍କୁ ସୁଯୋଗ ମିଳେ । ତେବେ ବ୍ୟକ୍ତିଗତ ଧର୍ମରେ ଚଳିବା ପାଇଁ ଶୁଦ୍ଧି ଅଶୁଦ୍ଧି, ସମାଜରେ ଚଳିବା ପାଇଁ ଗୁଣ ଦୋଷ, ଜୀବନ ନିର୍ବାହ ପାଇଁ ଶୁଭ (ପୁଣ୍ୟ) ଅଶୁଭ (ପାପ) ଓ ଦୈନନ୍ଦିନ କର୍ମ କରିବା ପାଇଁ ଧର୍ମ-ଅଧର୍ମ ବା କର୍ମ-ଅକର୍ମ-ବିକର୍ମର ବିଧାନ ଭଳି ଏତେ ଅଡୁଆ ନିୟମ କାନୁନ୍ ସବୁ ସ୍ୱୟଂ ବେଦ କରିଛନ୍ତି କାହିଁକି ?

**ଶ୍ରୀ ଭଗବାନ ଉବାଚ**

**ବେଦେନ ନାମ ରୂପାଣି ବିଷମାନି ସମେଷ୍ୱ-ଅପି ।**
**ଧାତୁଷ୍ୱ-ଉଦ୍ଧବ କଳ୍ପନ୍ତେ ଏତେଷାଂ ସ୍ୱାର୍ଥ ସିଦ୍ଧୟେ ॥୬॥**

ଉ. ବ୍ରହ୍ମାଙ୍କଠାରୁ ପିପିଲିକା ପର୍ଯ୍ୟନ୍ତ ସମସ୍ତଙ୍କ ଶରୀର ସେଇ ଚବିଶ ତତ୍ତ୍ୱରେ ଗଠିତ ଓ ସମସ୍ତଙ୍କ ଶରୀରରେ ସେଇ ଏକ ପରମାତ୍ମାଙ୍କର ଅଂଶ ଆତ୍ମା ହିଁ ବିଦ୍ୟମାନ । ତଥାପି ସବୁ ପ୍ରାଣୀମାନଙ୍କୁ ନାନା ରୂପ ପ୍ରଦାନ ଓ ଭିନ୍ନ ଭିନ୍ନ ନାମ କରଣ ବେଦ ସମ୍ମତ । ଚାରିବର୍ଣ୍ଣ ଚାରି ଆଶ୍ରମରେ ସାଧକ କିଭଳି ଜୀବର ଚରମ ଲକ୍ଷ୍ୟରେ ପହଞ୍ଚିବେ (ସ୍ୱାର୍ଥ ସିଦ୍ଧିୟେ) ସେଥିପାଇଁ ଏହି ଗୁଣ ଦୋଷ ଆଦି ବେଦର ବିଧାନ । ନଚେତ କୌଣସି ଗୋଟିଏ ଜୀବର ଆତ୍ମୋଦ୍ଧାର ଅସମ୍ଭବ ହେବ ।

ପ୍ରଶ୍ନ-୧୦୩: ଦେଶ ଶୁଦ୍ଧି, କାଳ ଶୁଦ୍ଧି, ଦ୍ରବ୍ୟ ଶୁଦ୍ଧି, କର୍ତ୍ତା ଶୁଦ୍ଧି, କର୍ମ ଶୁଦ୍ଧି ଓ ମନ୍ତ୍ର ଶୁଦ୍ଧି ଏହି ଛଅ ଶୁଦ୍ଧି ହେଲେ ବେଦ ବର୍ଣ୍ଣିତ ସ୍ୱଧର୍ମ ପାଳନ ଯଜ୍ଞର ଶୁଭଫଳ ମିଳେ । ସେହି ସିଦ୍ଧିରୁ ଜ୍ଞାନ, ବୈରାଗ୍ୟ, ଭକ୍ତି, ସତ୍‌ସଙ୍ଗ ଓ ତତ୍ତ୍ୱଜ୍ଞାନ ମଧ୍ୟ ପ୍ରାପ୍ତି ହୁଏ । ତେବେ ଦେଶ ଶୁଦ୍ଧି କାହାକୁ କୁହାଯାଏ ?

**ଅକୃଷ୍ଣସାରୋ ଦେଶାନାଂ ଅବ୍ରହ୍ମଣ୍ୟୋଽଶୁଚିଃ ଭବେତ୍ ।**
**କୃଷ୍ଣସାରୋଽପି ଅସୌବୀର କୀକଟ-ଅସଂସ୍କୃତ-ଈରିଣମ୍ ॥୮॥**

ଉ. ଯେଉଁ ରାଜ୍ୟରେ କୃଷ୍ଣସାର ମୃଗ ନଥାନ୍ତି ସେ ରାଜ୍ୟ ଆର୍ଯ୍ୟ ମାନଙ୍କର ବାସ ଅନୁପଯୋଗୀ । ପୁଣି କୃଷ୍ଣସାର ମୃଗ ଥିବା ରାଜ୍ୟରେ ଯଦି ସାଧୁ ବୈଷ୍ଣବ ପୂଜନ (ଅସୌବୀର) ହୁଏନା ତାହା ଅନାର୍ଯ୍ୟ ରାଷ୍ଟ୍ର । ତାହା ଅପବିତ୍ର କୀକଟ ରାଜ୍ୟ । ସେଭଳି କୀକଟ ରାଜ୍ୟରେ ଅନ୍ତ୍ୟଜ ରହୁଥାନ୍ତି । ପୁଣି ଯଦି ସେଠାରେ ଚାଷର ଅନୁପଯୋଗୀ ଉଷର, ଅନୁର୍ବର ଭୂମି ଅତ୍ୟଧିକ ଥାଏ ତେବେ ସେ ରାଜ୍ୟ ଅଶୁଦ୍ଧ ଅଟେ ।

ପ୍ରଶ୍ନ-୧୦୪: ଯଜ୍ଞ କରିବାକୁ ଶୁଦ୍ଧ କାଳ, ଶୁଦ୍ଧ କର୍ତ୍ତା, ଶୁଦ୍ଧ ଦ୍ରବ୍ୟ, ଶୁଦ୍ଧ ମନ୍ତ୍ର ଦରକାର ହୁଏ ତେବେ ସିନା କର୍ମ ଶୁଦ୍ଧ ହେବ । ମିଳୁଥିବା ଯଜ୍ଞ ଦ୍ରବ୍ୟ ଅଶୁଦ୍ଧ ଥିଲେ ଜଣେ ଯଜ୍ଞ କରିବ କେମିତି ?

**ସ୍ନାନ ଦାନ ତପୋଽବସ୍ଥା ବୀର୍ଯ୍ୟ ସଂସ୍କାର କର୍ମଭିଃ ।**
**ମତ୍ ସ୍ମୃତ୍ୟା ଚ-ଆତ୍ମାନଂ ଶୌଚଂ ଶୁଦ୍ଧଃ କର୍ମ -ଆଚରେତ୍ ଦ୍ୱିଜଃ ॥୧୪॥**

ଉ. ଯଜ୍ଞ ଦ୍ରବ୍ୟରେ ଅଭିମନ୍ତ୍ରିତ ଜଳ ସିଞ୍ଚନ କଲେ ଯଜ୍ଞ ଦ୍ରବ୍ୟ ଶୁଦ୍ଧ ହୁଏ । ସେହିଭଳି ଉପଯୁକ୍ତ ପାତ୍ରରେ ଦାନ ଦେଲେ ଦ୍ରବ୍ୟ ଶୁଦ୍ଧ ହୁଏ । କିଛି ଜିନିଷକୁ ଏକତ୍ର କଲେ (ପଞ୍ଚାମୃତକୁ) ମଧ୍ୟ ସେହି ସେହି ଦ୍ରବ୍ୟ ଶୁଦ୍ଧ ହୁଏ । ସେହିଭଳି ମନ୍ତ୍ର, ଜପ, କୀର୍ତ୍ତନ ଆଦି କରି କିମ୍ୱା ଭଗବତ୍ ନାମ, ରୂପ, ଗୁଣ ଆଦି ସ୍ମରଣ କରି ଯଜ୍ଞ ଦ୍ରବ୍ୟ, ସ୍ଥାନ, କାଳ, କର୍ତ୍ତା, କର୍ମ ଆଦିଙ୍କୁ ଶୁଦ୍ଧ କରାଯାଇଥାଏ ।

ପ୍ରଶ୍ନ-୧୦୫: ବୈଦିକ ନିୟମ ମାନି କଷ୍ଟକର ଜୀବନ ନିର୍ବାହ କଲେ ଦୁଃଖରୁ ମୁକ୍ତି ଓ ନ ମାନି ମନ ଇଛା କର୍ମ କଲେ ପାପଦ୍ୱାରା ଦୁଃଖମୟ ବନ୍ଧନ ମଧ୍ୟ ହୋଇଥାଏ । ବ୍ୟୟ ବହୁଳ ଶ୍ରମସାଧ ଯଜ୍ଞରେ ପଶୁବଳି ଦିଆଯିବା ଓ ସେ ପଶୁମାଂସ ଖାଇବା କଥା କଅଣ ବେଦଙ୍କ ନିର୍ଦ୍ଦେଶ ?

**ତେ ମେ ମତଂ ଅବିଜ୍ଞାୟ ପରୋକ୍ଷଂ ବିଷୟ-ଆତ୍ମକାଃ ।**
**ହିଂସାୟାଂ ଯଦି ରାଗଃ ସ୍ୟାତ୍ ଯଜ୍ଞ ଏବ ନ ଚୋଦନା ।।୨୯।।**

ଉ. ଭଗବାନ କହୁଛନ୍ତି, ''ହେ ଉଦ୍ଧବ, ସେ ସବୁ ବିଷୟ ଲୋଲୁପ ଭୋଗୀ ମନୁଷ୍ୟମାନେ ମୋ ବେଦ ନିର୍ଦ୍ଦେଶକୁ ଠିକ୍ ନ ବୁଝିପାରି (ଅବିଜ୍ଞାୟ) ଜିହ୍ୱା ଲାଳସାରେ ପଶୁମାରି ଯଜ୍ଞ କରି ମହାପାପ ଅର୍ଜ୍ଜନ କରିଥାନ୍ତି । କାଳେ ଲୋକେ ଅର୍ଥକୁ ଅନର୍ଥ କରି ନିଜର ସତ୍ୟାନାଶ କରିବେ ସେଥିପାଇଁ ମୁଁ ବେଦବାଣୀକୁ ପରୋକ୍ଷ ଭାବରେ କହିଛି । ଏହା କେବଳ ସାଧୁ, ସନ୍ଥ, ବ୍ରାହ୍ମଣ, ବୈଷ୍ଣବ ଆଦି ଅଧିକାରୀ ପୁରୁଷ ବୁଝିବା ସମ୍ଭବ । ବେଦରେ ମୋର ନିର୍ଦ୍ଦେଶ ଯେ ମାଂସ ଖାଇବା ନିହାତି ଦରକାର ପଡ଼ିଲେ ବ୍ୟୟ ବହୁଳ, ଶ୍ରମ କଷ୍ଟସାଧ ଯଜ୍ଞଟିଏ କରି ଖାଇପାର । ଥରେ ଦୁଇଥର ଏପରି କଲେ ଜୀବନରେ ଆଉ ଏ ଧନ୍ଦା କରିବ ନାହିଁ ବୋଲି ନିଜେ ନିଜ କାନମୋଡ଼ି ଜୀବ ଦଣ୍ଡ ପାଉ ଏହା ମୋର ଉଦ୍ଦେଶ୍ୟ । ମାଂସ ଖାଇବାକୁ ଯଜ୍ଞ କରିବାର ପ୍ରେରଣା ଦେବା (ନ ଚୋଦନା) ବେଦବାଣୀଙ୍କ ତାତ୍ପର୍ଯ୍ୟ ଅର୍ଥ ନୁହେଁ ।'' ଜଣେ ଆର୍ଯ୍ୟ ପାଇଁ ଯଜ୍ଞର ଉଦ୍ଦେଶ୍ୟ ପଶୁ ଅହିଂସା । କଦାପି ପଶୁବଳି ନୁହେଁ ।

ପ୍ରଶ୍ନ-୧୦୬: ମୃଗୟା ନାମରେ, ଯଜ୍ଞ ବାହାନାରେ ପଶୁବଧ ମହାପାପ । ତ୍ରିନାଥ ପୂଜା ବାହାନାରେ ଗଞ୍ଜେଇ ଖାଇବା, ତନ୍ତ୍ର ପୂଜା ନାମରେ ମଦ୍ୟସେବନ ଓ ମୈଥୁନ ଏସବୁ ଧୂର୍ତ୍ତ ମାନଙ୍କ କୁବୁଦ୍ଧି । ଯଜ୍ଞ କରି ପୁଣ୍ୟକୁ ପୁଞ୍ଜି କରି ଦେବତା ହେବାର ସ୍ୱପ୍ନ ଦେଖିଲେ ଜଣେ ମନୁଷ୍ୟ ଜୀବନର ପରମ ଶ୍ରେୟ ତତ୍ତ୍ୱଜ୍ଞାନ ପ୍ରାପ୍ତି, ମୁକ୍ତି ଓ ଭଗବତ ଭକ୍ତି ସମସ୍ତ ଫଳକୁ ହରାଇବସେ । ଭୋଗ ପାଇଁ ତ୍ରିଗୁଣୀ ମନୁଷ୍ୟ ତିନିଗୁଣର ଦେବୀ ଦେବତା, ଭୂତ ପ୍ରେତଙ୍କୁ ପୁଜି ଜଲଦି ବିଭୂତି ଓ ସିଦ୍ଧି ପ୍ରାପ୍ତିକୁ ଲୋଭ କରେ । କୃଷ୍ଣ ଲୀଳା, ଶ୍ରବଣ କିମ୍ବା କୃଷ୍ଣଭକ୍ତ ସଙ୍ଗ ତାକୁ ରୁଚେ ନାହିଁ କାହିଁକି ?

**ବେଦା ବ୍ରହ୍ମ-ଆତ୍ମ ବିଷୟାଃ ତ୍ରିକାଣ୍ଡ ବିଷୟା ଇମେ ।**
**ପରୋକ୍ଷ ବାଦା ଋଷୟଃ ପରୋକ୍ଷଂ ମମ ଚ ପ୍ରିୟମ୍ ।।୩୫।।**

ଉ. ଭଗବାନ କହିଲେ, ''ହେ ଉଦ୍ଧବ, ସତ୍ତ୍ୱଗୁଣୀ ଋକ୍‌ବେଦ ଜ୍ଞାନ ବିଷୟରେ, ରଜୋଗୁଣୀ ଯଜୁଃବେଦ କର୍ମ ବିଷୟରେ ଓ ସତ୍ତ୍ୱଗୁଣୀ ସାମବେଦ ଉପାସନା ବିଷୟରେ ଭଗବାନଙ୍କୁ ପ୍ରତ୍ୟକ୍ଷ ରୂପରେ ବର୍ଣ୍ଣନା ନକରି ପରୋକ୍ଷ ଭାବରେ ବର୍ଣ୍ଣନା କରିଥାନ୍ତି ବୋଲି ମୁନି, ଋଷି, ବ୍ରାହ୍ମଣ ବୈଷ୍ଣବମାନେ ବୁଝାଇଥାନ୍ତି ମୋତେ ପ୍ରିୟ ବୋଲି (ମମଚ ପ୍ରିୟମ୍) ।''

ପ୍ରଶ୍ନ-୧୦୭: ବେଦବାଣୀକୁ (ଶବ୍ଦ ବ୍ରହ୍ମ) ପ୍ରତ୍ୟକ୍ଷ ନ କହି ପରୋକ୍ଷରେ କହିବାର କାରଣ କଅଣ ?

**ଶବ୍ଦବ୍ରହ୍ମ ସୁଦୁର୍ବୋଧଂ ପ୍ରାଣ-ଇନ୍ଦ୍ରିୟ ମନୋମୟମ୍ ।**
**ଅନନ୍ତ ପାରଂ ଗମ୍ଭୀରଂ ଦୁର୍ବିଗାହ୍ୟଂ ସମୁଦ୍ରବତ୍ ॥୩୬॥**

ଉ. ସମୁଦ୍ର ଜଳରାଶିର ଦୀର୍ଘ-ଓସାର ଉଭୟେ ଯେପରି ଅସୀମ (ଅନନ୍ତପାରଂ) ଗଭୀରତା (ଅମାପ ବା ଗମ୍ଭୀର) ସେହି ଅନନ୍ତ ଜଳରାଶିର କଳ୍ପନା ମଧ୍ୟ ଅସମ୍ଭବ (ଦୁର୍ବିଗାହ୍ୟଂ) । ଠିକ୍ ସେହିଭଳି ବେଦବାଣୀର ଅର୍ଥ ମଧ୍ୟ ଅନନ୍ତ ଭଗବାନଙ୍କ ପ୍ରାଣ ଇନ୍ଦ୍ରିୟ ଓ ମନ ମଧ୍ୟରେ ପରିବ୍ୟାପ୍ତ ସୀମାହୀନ ନୀଳ ଆକାଶର ନୀଳିମା ସଦୃଶ ମନୁଷ୍ୟର ସୀମିତ ମନବୁଦ୍ଧି ଚିତ୍ତର ବୁଝିବା ବାହାରର ବିଷୟ । ତାକୁ ପ୍ରତ୍ୟକ୍ଷ ରୂପରେ ମନୁଷ୍ୟ ବୁଝିବ କେମିତି ବା ଆଉ ଜଣେ ତାକୁ ବୁଝାଇବ କେମିତି ? ସେଥିପାଇଁ ବେଦବାଣୀ ପରୋକ୍ଷରେ ଅନୁଭବ ଗମ୍ୟ । ଗୁରୁମୁଖୀ ବିଦ୍ୟା । ସଦ୍‌ଗୁରୁଙ୍କ କୃପାରୁ କିନ୍ତୁ ବୁଝିହୁଏ ବେଦବାଣୀ ।

ପ୍ରଶ୍ନ-୧୦୮: କର୍ମକାଣ୍ଡରେ ବେଦ କ'ଣ ବିଧାନ କରିଛନ୍ତି(କିଂ ବିଧତ୍ତେ), କେଉଁ ଦେବତାଙ୍କୁ ସଙ୍କେତ କରିଛନ୍ତି (କିଂ ଆଚଷ୍ଟେ), ତାଦ୍ୱାରା କି ଫଳ ମିଳିବ ବୋଲି ଲୋଭ ଦେଖାଇଛନ୍ତି (କିଂ ଅନୁଦ୍ୟ) କାହିଁକି କରିଛନ୍ତି ତାର ତାତ୍ପର୍ଯ୍ୟ କିଏ ତେବେ ଠିକ୍‌ଠିକ୍ ବୁଝିପାରିବ ?

**କିଂ ବିଧତ୍ତେ କିଂ ଆଚଷ୍ଟେ କିଂ ଅନୂଦ୍ୟ ବିକଳ୍ପୟେତ୍ ।**
**ଇତି-ଅସ୍ୟା ହୃଦୟଂ ଲୋକେ ନ-ଅନ୍ୟୋ ମଦ୍‌ବେଦ କଶ୍ଚନ ॥୪୨॥**

ଉ. ବେଦ ବାଣୀର ମର୍ମ (ଅସ୍ୟା ହୃଦୟଂ)ଭଗବାନଙ୍କ କିମ୍ବା ତାଙ୍କ ପ୍ରତିନିଧି ଗୁରୁଙ୍କ ବ୍ୟତୀତ (ନ-ଅନ୍ୟୋ ମଦ୍) ବୋଲି ଜାଣିପାରିବେ ନାହିଁ । ଏପରିକି ସରସ୍ୱତୀ ବୃହସ୍ପତି, ବ୍ରହ୍ମା, ଶଙ୍କରଙ୍କ ଭଳି ଦେବୀ ଦେବତାଙ୍କର ବୁଦ୍ଧି ହାର ମାନିଯାଏ ଏହି ବେଦ୍‌ବାଣୀ ବୁଝିବାରେ । ଏତିକି କହି ଦୋଷଗୁଣ, ଧର୍ମ ଅଧର୍ମ, ପାପପୁଣ୍ୟ, ଶୁଭ ଅଶୁଭ ବିଚାର କେବଳ ଭଗବାନ କପିଳଙ୍କ ପ୍ରଣୀତ ସାଂଖ୍ୟ ଜ୍ଞାନ ତତ୍ତ୍ୱକୁ ସଙ୍କେତ କରେ ଯାହାର ବିସ୍ତୃତ ଆଲୋଚନା ହେବ ପରବର୍ତ୍ତୀ ଅଧ୍ୟାୟରେ ।

**ଇତି ଶ୍ରୀମଦ୍ ଭାଗବତେ ମହାମୁନି କୃତେ ମହାପୁରାଣେ ବୈୟାସିକ୍ୟାଂ ଅଷ୍ଟାଦଶ ସାହସ୍ର୍ୟାଂ ପାରମହଂସ୍ୟା ସଂହିତାୟା ଏକାଦଶ ସ୍କନ୍ଧେ ଏକବିଂଶୋଽଧ୍ୟାୟଃ ।**

**। ।ହରିଃ ଓଁ ତତ୍ ସତ୍ । ।**

**ଶ୍ରୀକୃଷ୍ଣାର୍ପଣଂ ଅସ୍ତୁ ।**

॥ ଅପଣ୍ଡିତ ଦାମୋଦର ବଳୀୟାରସିଂହ ॥

# ୨୬ଶ ନକ୍ଷତ୍ର- ଉତ୍ତରଭାଦ୍ରା

## ଅଥ ୨୨ଶ ଅଧ୍ୟାୟଃ

## (ପୁରୁଷ ପ୍ରକୃତି ବିବେକ-ଭୌତିକ ସୃଷ୍ଟିରେ ତତ୍ତ୍ୱଗଣନା)

ପ୍ରଶ୍ନ-୧ : ବେଦରେ ଦୋଷଗୁଣ ଏବଂ ବିଧି ନିଷେଧ ବ୍ୟବସ୍ଥା ଖଞ୍ଜାଯାଇଛି ଜ୍ଞାନ ମାର୍ଗୀ ଲୋକଙ୍କ ବିବେକ ଶକ୍ତିକୁ ଜାଗ୍ରତ କରାଇବା ଲାଗି । ଭୌତିକ ସୃଷ୍ଟି ରହସ୍ୟକୁ ବୁଝିବା ପାଇଁ ତାର ସ୍ରଷ୍ଟାଙ୍କୁ ନିହାତି ବୁଝିବା ଦରକାର । କାରଣ ସେ ଏ ସୃଷ୍ଟି ନିର୍ମାଣ କରିଛନ୍ତି ପୁଣି ସେ ନିଜେ ସୃଷ୍ଟି ମଧ୍ୟରେ ବିଦ୍ୟମାନ । ସେ ସୃଷ୍ଟିର କ୍ଷିତି, ଜଳ, ଅଗ୍ନି, ବାୟୁ, ଆକାଶ ରୂପକୁ ନିଜେ ଧାରଣ କରିଛନ୍ତି । ଦିନେ ସୃଷ୍ଟି ନଥିଲା । ପରମାତ୍ମା କିନ୍ତୁ ଥିଲେ । ତାଙ୍କ ଇଛାରୁ ପ୍ରକୃତି ଓ ପୁରୁଷ ସୃଷ୍ଟି ହେଲେ । କୁକୁଡ଼ା କାରଣ ହେଲେ ଅଣ୍ଡା କାର୍ଯ୍ୟ । ପୁଣି ସେଇ ଅଣ୍ଡା କାରଣ ହେଲେ ତା ଭିତରେ ଲୁଚିଥିବା କୁକୁଡ଼ା କାର୍ଯ୍ୟ । ସୁତରାଂ ସୃଷ୍ଟିର ଭିନ୍ନତା ଏହି କାର୍ଯ୍ୟ କାରଣ ନିୟମ ଆଶ୍ରିତ । ଭିନ୍ନତା ମଧ୍ୟରେ ଅଭିନ୍ନତା ଦର୍ଶନ ବିବେକ ବା ବିଶ୍ୱାସ ନାମରେ ନାମିତ । ଏହି ଜ୍ଞାନ ହିଁ ତତ୍ତ୍ୱ ଜ୍ଞାନ । ଭଗବାନ ଉଦ୍ଧବଙ୍କୁ ପୂର୍ବରୁ ଏ ପ୍ରସଙ୍ଗରେ ଅଠେଇଶ ତତ୍ତ୍ୱ କଥା କହି ସାରିଛନ୍ତି । ତଥାପି ଉଦ୍ଧବ ତତ୍ତ୍ୱ ଗଣନାରେ ଶଙ୍କା କାହିଁକି କଲେ ?

ଉଦ୍ଧବ ଉବାଚ

**କେଚିତ୍ ଷଟ୍ ବିଂଶତି ପ୍ରାହୁଃ ଅପରେ ପଞ୍ଚ ବିଂଶତିମ୍ ।**
**ସପ୍ତ-ଏକେ ନବ ଷଟ୍ କେଚିତ୍ ଚତ୍ୱାରି-ଏକାଦଶ-ଅପରେ ।**
**କେଚିତ ସପ୍ତଦଶ ପ୍ରାହୁଃ ଷୋଡ଼ଶ-ଏକେ ତ୍ରୟୋଦଶ ॥୨॥**

ଉ. ଜ୍ଞାନୀ ଉଦ୍ଧବ ଜୀବନରେ ଅନେକ ଧୁରନ୍ଧର ବେଦଜ୍ଞାନୀଙ୍କ ସଂସ୍ପର୍ଶରେ ଆସିଛନ୍ତି । ସେମାନଙ୍କ ମତକୁ ସେ ଉଦ୍ଧାର କରିଛନ୍ତି ଭାଗବତ ପାଠକ ଓ ଶ୍ରୋତାମାନଙ୍କର ସଂଶୟ ମୋଚନ ଲାଗି । କାହାରି ମତରେ ତତ୍ତ୍ୱ ସଂଖ୍ୟା ୨୫, ୨୬, ୭, ୯, ୬, ୪, ୧୧, ୧୭, ୧୬ ଓ ୧୩ ଏହିପରି ଦଶଟି ଭିନ୍ନ ଭିନ୍ନ ମତ ଥିବା କଥା ସେ କହିଛନ୍ତି ଭଗବାନଙ୍କୁ ।

ପ୍ରଶ୍ନ-୨: ପରମାତ୍ମାଙ୍କୁ ତତ୍ କହନ୍ତି ଜ୍ଞାନୀମାନେ । ତାଙ୍କଠାରୁ ଜାତ ଅନ୍ୟମାନେ ସମସ୍ତେ କେବଳ ତତ୍ତ୍ୱ ଅଟନ୍ତି । ତତ୍‌କୁ ପୂର୍ଣ୍ଣ ଶ୍ରଦ୍ଧା କିମ୍ବା ବିଶ୍ୱାସ ଦ୍ୱାରା

ଜାଣିବା ଲୋକ ତତ୍ତ୍ୱ ସଂଖ୍ୟାକୁ ୨୮ବୋଲି ମାନି ନିଅନ୍ତି । ଅନ୍ୟମାନେ ଏଭଳି ୨୬, ୨୫ ଆଦି ସଂଖ୍ୟା ବୋଲି ତର୍କ କରିଥାନ୍ତି । ଭଗବାନ କଅଣ ସେ ସବୁ ମତକୁ ଖଣ୍ଡନ କରି ଭୁଲ ବୋଲି ( ଦୁର୍ଘଟନମ୍) କହିଲେ କି ?

ଶ୍ରୀ ଭଗବାନ ଉବାଚ

**ଯୁକ୍ତଂ ଚ ସନ୍ତି ସର୍ବତ୍ର ଭାଷନ୍ତେ ବ୍ରାହ୍ମଣା ଯଥା ।**
**ମାୟା ମଦୀୟାଂ ଉଦ୍‌ଗୃହ୍ୟ ବଦତାଂ କିଂ ନୁ ଦୁର୍ଘଟନମ୍ ॥୪॥**

ଉ. ଏକ ପରମାତ୍ମାଙ୍କଠାରେ ପୂର୍ଣ୍ଣ ଶ୍ରଦ୍ଧା କିମ୍ବା ବିଶ୍ୱାସ ନକଲେ ମନୁଷ୍ୟ ମାୟା ଦ୍ୱାରା ଆକ୍ରାନ୍ତ ହୁଏ (ଉଦ୍‌ଗୃହ୍ୟ) । ବ୍ରହ୍ମଜ୍ଞାନୀ ହେଲେ କଅଣ ହେଲା ଆଂଶିକ ସ୍ୱୀକାର ବା ଅସଂପୂର୍ଣ୍ଣ ଦୃଷ୍ଟିରେ ସେ ନିଜ ମାୟିକ ବୁଦ୍ଧିରେ ନିଜ ମତ ଜାହିର କରିଥାଏ । ସୁତରାଂ ଭଗବାନ ସେମାନଙ୍କ ମତକୁ ଖଣ୍ଡନ କରି ନାହାନ୍ତି କି ମଣ୍ଡନ ମଧ କରି ନାହାନ୍ତି । ଠିକ୍ ବୋଲି କହିନାହାନ୍ତି କି ଭୁଲ ବୋଲି ମଧ କହି ନାହାନ୍ତି ।

ପ୍ରଶ୍ନ-୩: ସୃଜନ ପ୍ରକ୍ରିୟାରେ ଆଗ ପଛ ହୋଇ ଭିନ୍ନ ଭିନ୍ନ ତତ୍ତ୍ୱ କାର୍ଯ୍ୟ କାରଣ ଆକାରରେ ଆସିଥାନ୍ତି । ତେବେ ତତ୍ତ୍ୱଗୁଡ଼ିକ ଗଣନା କରିବାରେ ଭିନ୍ନ ଭିନ୍ନ ମତ ହୁଏ କାହିଁକି ?

**ଏକସ୍ମିନ୍ ଅପି ଦୃଶ୍ୟନ୍ତେ ପ୍ରବିଷ୍ଟାନି-ଇତରାଣି ଚ ।**
**ପୂର୍ବସ୍ମିନ୍ ବା ପରସ୍ମିନ୍ ବା ତତ୍ତ୍ୱେ ତତ୍ତ୍ୱାନି ସର୍ବଶଃ ॥୮॥**

ଉ. ଜଣେ ଯାହାକୁ କାର୍ଯ୍ୟ କହୁଛି ଆଉ ଜଣେ ତାକୁ କାରଣ କହୁଛି । କାର୍ଯ୍ୟ ଭିତରେ କାରଣ ଓ କାରଣ ଭିତରେ କାର୍ଯ୍ୟ ସର୍ବଦା ଅଦୃଶ୍ୟ ରହିଥାଏ । ତେଣୁ ସେମାନଙ୍କ ମଧରେ ମତପାର୍ଥକ୍ୟ ରହିବା ସ୍ୱାଭାବିକ ।

ପ୍ରଶ୍ନ-୪: କଥାଟା ଯଦି ଏତେ ଅଡୁଆ ତେବେ ଭଗବାନ ତାଙ୍କ ନିଜ ମତ ୨୮ତତ୍ତ୍ୱକୁ ବୁଝାଇବା ଲାଗି କିଛି ବ୍ୟବସ୍ଥା କରିଛନ୍ତି କି ?

**ଅନାଦି-ଅବିଦ୍ୟା ଯୁକ୍ତସ୍ୟ ପୁରୁଷସ୍ୟ-ଆତ୍ମ ବେଦନମ୍ ।**
**ସ୍ୱତୋ ନ ସମ୍ଭବାତ୍ ଅନ୍ୟଃ ତତ୍ତ୍ୱଜ୍ଞୋ ଜ୍ଞାନଦୋ ଭବେତ୍ ॥୧୦॥**

ଉ. ଏ ଜନ୍ମରୁ ନୁହେଁ ଅନେକ ପୂର୍ବ ପୂର୍ବ ଜନ୍ମମାନଙ୍କରୁ ଜୀବ ଅବିଦ୍ୟାମାୟା କବଳିତ ଥାଏ । ତେଣୁ ନିଜକୁ ଆତ୍ମା ଓ ନିଜର ପରିଚୟ ପରମାତ୍ମାଙ୍କର ସଚ୍ଚିଦାନନ୍ଦମୟ ଅଂଶ ଅନୁଭବ କରିବା ତା ପକ୍ଷରେ ସମ୍ଭବ ହୋଇନଥାଏ । ସେଥିପାଇଁ ନିଜ ଧାମରୁ

କିଛି କିଛି କ୍ଷମତାପ୍ରାପ୍ତ ପ୍ରତିନିଧି ରୂପରେ ଭଗବାନ ବ୍ରାହ୍ମଣ ବୈଷ୍ଣବଙ୍କୁ ପଠାନ୍ତି । ସଂସାରରେ ସେଇମାନେ କେବଳ ମାୟାତୀତ ତତ୍ତ୍ୱଜ୍ଞାନୀ ମହାପୁରୁଷ ବା ଗୁରୁ ଅଟନ୍ତି । ସେମାନଙ୍କର ଶରଣାଗତ ହୋଇ ତାଙ୍କୁ ସେବା ଦ୍ୱାରା ପ୍ରସନ୍ନ କଲେ ସେ ସୃଷ୍ଟି ତତ୍ତ୍ୱ ରହସ୍ୟକୁ ମନୁଷ୍ୟ ବୁଝିପାରେ ।

ପ୍ରଶ୍ନ-୫: ଯେଉଁମାନେ ତତ୍ତ୍ୱସଂଖ୍ୟା ୯ କହନ୍ତି ସେମାନେ କାହାକୁ କାହାକୁ ମୂଳତତ୍ତ୍ୱ ବୋଲି ସ୍ୱୀକାର କରିଥାନ୍ତି ?

**ପୁରୁଷଃ ପ୍ରକୃତିଃ ବ୍ୟକ୍ତଂ ଅହଂକାରୋ ନଭୋଽନିଳଃ ।**
**ଜ୍ୟୋତିଃ ଆପଃ କ୍ଷିତିଃ ଇତି ତତ୍ତ୍ୱାନି-ଉକ୍ତାନି ମେ ନବ ।।୧୪।।**

ଉ. ଆତ୍ମା ବା ମନ (ପୁରୁଷଃ), ବୁଦ୍ଧି (ପ୍ରକୃତିଃ), ମହତତ୍ତ୍ୱ ବା ଚିତ୍ତ (ବ୍ୟକ୍ତଂ) ଅହଂକାର ସହିତ ପାଞ୍ଚ ମହାଭୂତଙ୍କୁ ମିଶାଇ ନଅ ତତ୍ତ୍ୱ ବୋଲି ଗଣାଯାଏ ।

ପ୍ରଶ୍ନ-୬: ଅନ୍ୟ କାହାରି ମତରେ ୧୧ତତ୍ତ୍ୱ କେମିତି ସିଦ୍ଧ ହୁଏ ?

**ଶ୍ରୋତ୍ରଂ ତ୍ୱକ୍ ଦର୍ଶନଂ ଘ୍ରାଣୋ**
**ଜିହ୍ୱା-ଇତି ଜ୍ଞାନ ଶକ୍ତୟଃ ।**
**ବାକ୍ ପାଣି-ଉପସ୍ଥ ପାୟୁ-ଅଙ୍ଘ୍ରିଃ**
**କର୍ମାଣି-ଅଙ୍ଗ-ଉଭୟଂ ମନଃ ।।୧୫।।**

ଉ. ପାଞ୍ଚ ଜ୍ଞାନେନ୍ଦ୍ରିୟ (ଜ୍ଞାନ ଶକ୍ତୟଃ), ପାଞ୍ଚ କର୍ମେନ୍ଦ୍ରିୟ ସହିତ ଆତ୍ମା (ମନ)କୁ ମିଶାଇ ତତ୍ତ୍ୱ ସଂଖ୍ୟା ଏଗାର ହେଲା ।

ପ୍ରଶ୍ନ-୭: ତତ୍ତ୍ୱ ସଂଖ୍ୟା ସତର ହୁଏ କେମିତି ?

**ସଂଖ୍ୟାନେ ସପ୍ତଦଶ-ଏକେ ଭୂତ ମାତ୍ରା-ଇନ୍ଦ୍ରିୟାଣି ଚ ।**
**ପଞ୍ଚ ପଞ୍ଚ-ଏକ ମନସା ଆତ୍ମା ସପ୍ତଦଶଃ ସ୍ମୃତଃ ।।୨୨।।**

ଉ. ସେମାନଙ୍କ ମତରେ ପଞ୍ଚ ମହାଭୂତ, ପଞ୍ଚ ତନ୍ମାତ୍ରା, ପଞ୍ଚ ଜ୍ଞାନେନ୍ଦ୍ରିୟ, ମନ ଓ ବୁଦ୍ଧି (ଆତ୍ମା) ମିଶି ୧୭ବୋଲି କୁହାଯାଏ (ସ୍ମୃତଃ) ।

ପ୍ରଶ୍ନ-୮: ତତ୍ତ୍ୱମାନଙ୍କ ସଂଖ୍ୟା ୧୬ ଓ ୧୩ କେମିତି ଗଣାଯାଏ ?

**ତଦ୍‌ବତ୍ ଷୋଡ଼ଶ ସଂଖ୍ୟାନେ ଆତ୍ମା-ଏବ ମନ ଉଚ୍ୟତେ ।**
**ଭୂତ-ଇନ୍ଦ୍ରିୟାଣି ପଞ୍ଚ-ଏବ ମନ ଆତ୍ମା ତ୍ରୟୋଦଶଃ ।।୨୩।।**

ଉ. ଉପର ଶ୍ଳୋକ ପ୍ରକାରେ ମନ ଓ ଆତ୍ମାଙ୍କୁ ଏକ ମାନିଲେ ତତ୍ତ୍ୱ ସଂଖ୍ୟା ୧୬ହୁଏ । ପୁଣି ପଞ୍ଚ ମହାଭୂତ, ପଞ୍ଚ ଜ୍ଞାନେନ୍ଦ୍ରିୟ, ମନ, ଆତ୍ମା ଓ ପରମାତ୍ମାଙ୍କୁ ମିଶାଇ ତତ୍ତ୍ୱ ସଂଖ୍ୟା ପୁଣି ୧୩ରେ ପହୁଞ୍ଚେ ।

ପ୍ରଶ୍ନ-୯ : ସେହିଭଳି ଭଗବାନଙ୍କ ବର୍ଣ୍ଣିତ ୨୮ ତତ୍ତ୍ୱକୁ ମିଶାଣ ଫେଡ଼ାଣ କରି ଅନେକ ପ୍ରକାର ସଂଖ୍ୟା ଗଣିବା କଅଣ ଯୁକ୍ତିଯୁକ୍ତ କଥା କି ?

**ଇତି ନାନା ପ୍ରସଂଖ୍ୟାନାଂ ତତ୍ତ୍ୱାନାଂ ଋଷିଭିଃ କୃତମ୍ ।**
**ସର୍ବଂ ନ୍ୟାଯ୍ୟ ଯୁକ୍ତି ମତ୍ତ୍ୱାତ୍ ବିଦୁଷାଂ କିଂ ଅଶୋଭନମ୍ ॥୨୫॥**

ଉ. ମହାନ ମହାନ ଋଷି, ବ୍ରହ୍ମବେତ୍ତା ବିଦ୍ୱାନମାନଙ୍କ ମତ ହୋଇଥିବାରୁ ସାଧକ ତାର ବିରୋଧ ନକରି ମାନି ନେଉ ଏହା ଭଗବାନଙ୍କ ଇଚ୍ଛା । କାର୍ଯ୍ୟ କାରଣ ଦୃଷ୍ଟିରେ ଦେଖିଲେ କ'ଣ ବା ଭୁଲ ଅଛି (ଅଶୋଭନମ୍) ଏ ମତମାନଙ୍କରେ ? ଅତଏବ ଭଗବାନଙ୍କ ମତରେ ସବୁ ମତ ଠିକ୍ ।

ପ୍ରଶ୍ନ-୧୦ : ଜୀବର ବିବେକ ଜାଗ୍ରତ ହେବା, ପୁରୁଷ ପ୍ରକୃତି ପାର୍ଥକ୍ୟ ବୁଝି ତତ୍ତ୍ୱଜ୍ଞାନ ପ୍ରାପ୍ତ କରିବା ଏବଂ ଶ୍ରଦ୍ଧା ବିଶ୍ୱାସର ଅଧିକାରୀ ହୋଇ ହରି ଭକ୍ତି କରିପାରିବା ଏସବୁ ପୁରୁଷାର୍ଥ ଦ୍ୱାରା ସମ୍ଭବ ନୁହେଁ ବରଂ ପରମେଶ୍ୱରଙ୍କ ଅଦୃଶ୍ୟ କୃପାର ଫଳ ବୋଲି ଅନେକ ଜ୍ଞାନୀ ଭକ୍ତ ନିଜକୁ ଅସହାୟ ମନେ କରନ୍ତି । ସକାମ କର୍ମ କରି ବନ୍ଧନରେ ପଡ଼ିବା (କର୍ମତନ୍ତ୍ରଂ) ପୁଣି ବନ୍ଧନର କାରଣ ଜାଣିପାରି (ତତ୍ ସ୍ମୃତି ଅନୁ ଶ୍ୟାମତି) ନିଷ୍କାମ କର୍ମରେ ପ୍ରବୃତ୍ତ ହେବାର ମୂଳ କାରଣ କଅଣ ?

**ଧ୍ୟାୟନ୍ ମନୋଽନୁ ବିଷୟାନ୍ ଦୃଷ୍ଟାନ୍ ବା-ଅନୁଶ୍ରୁତାନ୍ ଅଥ ।**
**ଉଦ୍ୟତ୍ ସୀଦତ୍ କର୍ମତନ୍ତ୍ରଂ ସ୍ମୃତିଃ ତତ୍ ଅନୁ ଶ୍ୟାମତି ॥୩୮॥**

ଉ. ଜୀବ ମନୁଷ୍ୟ ଜନ୍ମଟିଏ ପାଇ ସକାମ କର୍ମରେ ପ୍ରବୃତ୍ତ ହୋଇ ସୁଖ ଦୁଃଖ ଫଳ କେବଳ ଭୋଗି ନଥାଏ । ତାର ମନ ମଧ୍ୟ ବିଷୟ ଭୋଗ କାମନାରେ କଳୁଷିତ ହୁଏ । ଦେହ ନାଶ ପରେ ସେଇ ମନ ପୁଣି ଥରେ ଇନ୍ଦ୍ରିୟ, ବୁଦ୍ଧି, ଚିତ୍ତ, ଅହଂକାର ସହିତ ଅନ୍ୟ, ଅନ୍ୟ ଦେହକୁ ବାରମ୍ବାର ଆଶ୍ରୟ କରେ । ଇହଲୋକର ସୁଖ (ଦୃଷ୍ଟାନ୍) ପୁଣି ପରଲୋକର ସୁଖ (ଅନୁଶ୍ରୁତାନ୍) ଲାଳସାରେ ସେ ବିଷୟ ଧ୍ୟାନ କରି ମୂଷା ଖାଦ୍ୟ ଲୋଭରେ ଯନ୍ତାରେ ପଡ଼ିବା ଭଳି ମହାମାୟାଙ୍କର ମାୟାଜାଲରେ ପଡ଼ିଯାଏ । ଦେହରୁ ଦେହାନ୍ତର ଯିବାକୁ ଜନ୍ମ (ଉଦ୍ୟତ୍) ଓ ମରଣ (ସୀଦତ୍)ବୋଲି ବୈଦିକ

ଶାସ୍ତ୍ର ଦୁଇଟି ଅବସ୍ଥାକୁ ନାମିତ କରିଛନ୍ତି ।

ପ୍ରଶ୍ନ-୧୧ : ଜନ୍ମ ମୃତ୍ୟୁର ରହସ୍ୟ ଏବେ ମଧ୍ୟ ମନୁଷ୍ୟର ଅବୋଧ ରହିବା ଭଳି ବୋଧହୁଏ । ତେବେ ମନୁଷ୍ୟର ମୃତ୍ୟୁ ହୁଏ କିପରି ଓ କାହିଁକି ?

**ବିଷୟ-ଅଭିନିବେଶେନ ନ-ଆତ୍ମାନଂ ଯତ୍ ସ୍ମରେତ୍ ପୁନଃ ।**
**ଜନ୍ତୋଃ ବୈ କସ୍ୟଚିତ୍ ହେତୋଃ ମୃତ୍ୟୁଃ ଅତ୍ୟନ୍ତ ବିସ୍ମୃତିଃ ।।୩୯।।**

ଉ. ମନୁଷ୍ୟ ଜନ୍ମ ପରେ ପରେ ମୃତ୍ୟୁ ପର୍ଯ୍ୟନ୍ତ ମଧ୍ୟ ସେଇ ମାୟିକ ବିଷୟ ଧ୍ୟାନ କରେ । ବିଷୟ ସୁଖ ପ୍ରାପ୍ତି ଲୋଭରେ ଅକର୍ମ କିମ୍ୱା ବିକର୍ମ କରି ବନ୍ଧନରେ ପଡ଼େ । ଆୟୁ ଶେଷରେ ପୁଣି ଜନ୍ମ ପାଇଁ ସୁଯୋଗ ଖୋଜେ ସିନା ଆତ୍ମ ଚିନ୍ତନ କରିପାରେ ନା (ନ ଆତ୍ମାନଂ ଯତ୍ ସ୍ମରେତ) । ଜୀବର ବିଷୟ ଚିନ୍ତନ ଅବସ୍ଥାର ଅନ୍ତ ହେବାକୁ ମୃତ୍ୟୁ କୁହାଯାଏ ।

ପ୍ରଶ୍ନ-୧୨ : ତେବେ ତାର ଜନ୍ମହୁଏ କିପରି ଓ କାହିଁକି ?

**ଜନ୍ମ ତୁ-ଆତ୍ମତୟା ପୁଂସଃ ସର୍ବ ଭାବେନ ଭୂରିଦ ।**
**ବିଷୟ ସ୍ୱୀକୃତିଂ ପ୍ରାହୁଃ ଯଥା ସ୍ୱପ୍ନ ମନୋରଥ ।।୪୦।।**

ଉ. ଜୀବ ମାଆ ପେଟରୁ ଜନ୍ମ ହେଉ ହେଉ ପୁଣି ସେଇ ପୂର୍ବ ଜନ୍ମର ପୁରୁଣା ବିଷୟ ଚିନ୍ତନର ପ୍ରାରମ୍ଭ ହୋଇଯାଏ । ଶାସ୍ତ୍ର ଏହାକୁ ଜନ୍ମ ବୋଲି କହନ୍ତି । ସୁଖର ସ୍ୱପ୍ନ ଦେଖି ଦେଖି ସେ ସ୍ୱପ୍ନର ସୌଦାଗର (ଭୂରିଦ) ବନିଯାଏ । ସୁନେଲି ସ୍ୱପ୍ନରେ ଆତ୍ମହରା ହୁଏ । ଅହଂକାରୀ ହୁଏ । ଭଗବାନଙ୍କୁ ଭୁଲିଯାଏ ।

ପ୍ରଶ୍ନ-୧୩: ମନୁଷ୍ୟ ଶରୀର କ୍ଷଣ ଭଙ୍ଗୁର । ଏତେ ସପନକୁ ରାତି କାହିଁ ? ମନୁଷ୍ୟ ଦେହକୁ ନିତ୍ୟ ବଦଳୁଥିବା କେବେ ବି ସ୍ଥାୟୀ ରହୁ ନଥିବା ରହସ୍ୟକୁ ଖୋଲି ଜଣାଇବା ପାଇଁ ଭାଗବତ କି କି ଦୃଷ୍ଟାନ୍ତ ସବୁ ଦେଇଛନ୍ତି ?

**ଯଥା-ଅର୍ଚ୍ଚିଷାଂ ସ୍ରୋତସାଂ ଚ ଫଳାନାଂ ବା ବନସ୍ପତେଃ ।**
**ତଥାଽଏବ ସର୍ବ ଭୂତାନାଂ ବୟୋଽବସ୍ଥା-ଆଦୟଃ କୃତାଃ ।।୪୪।।**

ଉ. ପ୍ରଥମ ଦୃଷ୍ଟାନ୍ତରେ ଜଳନ୍ତା ଦୀପଟିଏ ସ୍ଥାୟୀ ସିନା ଜଣାଯାଏ ହେଲେ ଦୀପ ଶିଖା ପବନର ବେଗରେ ପ୍ରତି କ୍ଷଣ ବଦଳୁଥାଏ । ଦ୍ୱିତୀୟ ଦୃଷ୍ଟାନ୍ତରେ ନଦୀଟିଏ ସବୁବେଳେ ବହୁ ଥାଏ କିନ୍ତୁ ନଦୀର କୂଳ, ଶଯ୍ୟା, ନିରନ୍ତର ବହୁଥିବା ଜଳସ୍ରୋତ ଏ ସବୁ ପ୍ରତିକ୍ଷଣ ବଦଳୁଥାନ୍ତି । ବୃକ୍ଷରେ ଫୁଲ ଫଳ ଥିବା ଆମେ ଦେଖୁ । ସତେ ଯେପରି

ସେମାନେ ଆଦୌ ପରିବର୍ତ୍ତିତ ହେଉ ନାହାନ୍ତି । ପ୍ରତ୍ୟେକ ମୁହୂର୍ତ୍ତରେ ତାର ପତ୍ର, ଫୁଲ ଫଳ ସମସ୍ତେ କିନ୍ତୁ ବଦଳୁଥାଆନ୍ତି । ବିଷୟ ଧ୍ୟାନକାରୀ ସୁଖ ଲୋଭୀ ମଣିଷ ଜାଣିପାରେନା ସେ କେତେବେଳେ ତାର ଶୈଶବ, କୁମାର, କୈଶୋର, ଯୌବନ ଅବସ୍ଥା ପାର ହୋଇ ବୃଦ୍ଧ ଅବସ୍ଥା ପ୍ରାପ୍ତ ହୋଇ ସାରିଲାଣି । ଦାନ୍ତ ଉପୁଡ଼ିଗଲେ, ନୂଆ ଦାନ୍ତ ଲଗାଇ ଏବଂ କେଶ ଧଳା ହୋଇଗଲେ କଳା ରଙ୍ଗ ଲଗାଇ ବିଚରା କେତେ ଚେଷ୍ଟା କରେନା ଯୌବନକୁ ଧରି ରଖିବାକୁ । ହେଲେ ସବୁ ଉପାୟ ବେକାର ଯାଏ । ବୃଦ୍ଧ ଆଉ ଯୁବକ ହୋଇ ପାରେନା । ହତାଶ ହୁଏ ବିଚରା । କାରଣ ଶରୀର ସଂସାର ଉଭୟ ନିତ୍ୟ ପରିବର୍ତ୍ତନଶୀଳ ଏବଂ କ୍ଷଣ ଭଙ୍ଗୁର ।

ପ୍ରଶ୍ନ-୧୪ : ଜନ୍ମ ହୋଇ ହୋସ୍ ଆସିବା ପରେ ଜୀବ ନିଜର ଜନ୍ମ ହେବା କଥା ଭୁଲି ଯାଇଥାଏ । ତାର ଦିନେ କି ଭଳି ମୃତ୍ୟୁ ହେବ ଏକଥା ସେ ଭାବି ପାରେନାହିଁ । ଏ ଦୁଇ କଥାକୁ (ଭବ-ଅପ୍ୟୟୌ) । ସେ କିଭଳି ବିଶ୍ୱାସ (ଅନୁମେୟୌ) କରିପାରିବ ?

**ଆତ୍ମନଃ ପିତୃ ପୁତ୍ରାଭ୍ୟାଂ ଅନୁମେୟୌ ଭବ-ଅପ୍ୟୟୌ ।**
**ନ ଭବ-ଅପ୍ୟୟ ବସ୍ତୁନାଂ ଅଭିଜ୍ଞୋ ଦ୍ୱୟ ଲକ୍ଷଣଃ ॥୪୯॥**

ଉ. ପରମେଶ୍ୱର ଏ ବିଷୟ ବୁଝିବା ନିମିତ୍ତ ଜୀବ ପାଇଁ ସୁନ୍ଦର ବ୍ୟବସ୍ଥା ଖଞ୍ଜିଛନ୍ତି । ନିଜ ପୁତ୍ରର ଜନ୍ମ ଦେଖି ଓ ପିତାର ମରଣ ଅବସ୍ଥା ଦେଖି ବିବେକୀ ମନୁଷ୍ୟ ବୁଝେ ଯେ ସେ ମଧ୍ୟ ପୂର୍ବେ ନିଜ ସନ୍ତାନ ଭଳି ଜନ୍ମ ହୋଇଥିଲା ଓ ନିଜ ପିତା ପିତାମହଙ୍କ (ପିତୃ ପୁତ୍ରାଭ୍ୟାଂ) ଭଳି ସଂସାରରୁ ନ ଚାହିଁଲେ ମଧ୍ୟ ବିଦାୟ ନେବାକୁ ବାଧ୍ୟ ହେବ । ତାକୁ ମଧ୍ୟ ମରିବାକୁ ପଡ଼ିବ ।

ପ୍ରଶ୍ନ-୧୫ : ପ୍ରକୃତି ପୁରୁଷ ତତ୍ତ୍ୱ ଚିନ୍ତନ କରି ବିବେକକୁ ଜାଗ୍ରତ କରି କର୍ମ କଲେ (କର୍ମଭିଃ) ମନକୁ କ୍ରମଶଃ ତମଗୁଣୀରୁ ରଜଗୁଣୀ ଓ ପୁଣି ରଜଗୁଣୀରୁ ସତ୍ତ୍ୱଗୁଣୀ କରାଇ ପାରିଲେ ଜୀବର କିଭଳି ଆତ୍ମୋଦ୍ଧାର ହୁଏ ?

**ସତ୍ତ୍ୱସଙ୍ଗାତ୍ ଋଷିନ୍ ଦେବାନ୍ ରଜସା-ଅସୁର ମାନୁଷାନ୍ ।**
**ତମସା ଭୂତ ତୀର୍ଯ୍ୟକ୍‌ତ୍ୱଂ ଭ୍ରାମିତୋ ଯାତି କର୍ମଭିଃ ॥୫୨॥**

ଉ. ମୃତ୍ୟୁବେଳକୁ ମନୁଷ୍ୟର ମନ ତମୋଗୁଣୀ ହୋଇଥିଲେ ମନୁଷ୍ୟ ଭୂତ, ପ୍ରେତ, ପଶୁ, ପକ୍ଷୀ, କୀଟ, ପତଙ୍ଗ କିମ୍ବା ବୃକ୍ଷଲତା ଜନ୍ମ ପ୍ରାପ୍ତ ହୁଏ । ଗୁରୁ ପ୍ରଦର୍ଶିତ

ମାର୍ଗରେ ସାଧନା କରିଥିଲେ ଏବଂ ସୌଭାଗ୍ୟକ୍ରମେ ସତ୍ତ୍ୱଗୁଣୀ ହୋଇପାରିଥିଲେ ଦେବତା, ମୁନି, ଋଷି, ଜ୍ଞାନୀ, ଭକ୍ତ କୁଳରେ ଜନ୍ମ ହୋଇ ନିଜ ଜୀବନକୁ ଧନ୍ୟ କରିଥାଏ । ତାହାର ଅନ୍ୟନାମ ଆତ୍ମୋଦ୍ଧାର ।

ପ୍ରଶ୍ନ-୧୬: ଉଦ୍ଧବଙ୍କୁ ତତ୍ତ୍ୱଜ୍ଞାନ ବୁଝାଇବା ଛଳରେ ମନୁଷ୍ୟ ଜାତିକି କେଉଁ ଚେତାବନୀ ଶୁଣାଇଲେ ଠାକୁରଜୀ ?

**ତସ୍ମାତ୍ ଉଦ୍ଧବ ମା ଭୁଙ୍କ୍ଷ୍ୱ ବିଷୟାନ୍ ଅସତ୍ ଇନ୍ଦ୍ରିୟୈଃ ।**
**ଆତ୍ମ-ଅଗ୍ରହଣ ନିର୍ଭାତଂ ପଶ୍ୟ ବୈକଳ୍ପିକଂ ଭ୍ରମମ୍ ।।୫୭।।**

ଉ. ଭଗବାନ ସତର୍କ କରାଇ କହିଲେ, ''ହେ, ଉଦ୍ଧବ, ଶ୍ରେୟକାମୀ ମନୁଷ୍ୟ କେବେ ବି ଅଶୁଦ୍ଧ ମନ ଓ ଇନ୍ଦ୍ରିୟ ମାନଙ୍କୁ ତୃପ୍ତ କରିବାକୁ ଯାଇ ବିଷୟ ଭୋଗରେ ମାତିବା ଅନୁଚିତ । ଅଦ୍ୱୈତ ଦର୍ଶନ ନ କରି କେବଳ ଦ୍ୱୈତରେ ରହିଲେ (ବୈକଳ୍ପିକଂ) ବିଚରା ଆତ୍ମ ସାକ୍ଷାତ୍‌କାରରୁ ବଂଚିତ ହୋଇଯିବ (ଆତ୍ମ-ଅଗ୍ରହଣ ନିର୍ଭାତଂ) । ଜ୍ଞାନ ମାର୍ଗୀ ଓ ଭକ୍ତି ମାର୍ଗୀ ଉଭୟଙ୍କ ଲାଗି ଏହା ହିଁ ତତ୍ତ୍ୱ ଜ୍ଞାନ ।

ବିବେକକୁ ଜାଗ୍ରତ ରଖିବାକୁ ଚାହୁଁଥିବା ସାଧକ ମନକୁ ଏପରି ଦୃଢ଼ କରିବା ଉଚିତ ଯେ କେହି ଗାଳି, ନିନ୍ଦା, ଅପମାନ, ଦୋଷ ଦର୍ଶନ, ପ୍ରଚୁର ଲୋଭ ପ୍ରଦର୍ଶନ କଲେ କିମ୍ବା କେହି କେବେ ମାଡ଼ ମାରିଲେ, ବାନ୍ଧି ପକାଇଲେ, ଜୀବିକା ଛଡ଼ାଇନେଲେ, ଘୃଣାରେ ଉପରକୁ ଛେପ ପକାଇଲେ, ଉପରକୁ ମଳ ମୂତ୍ର ଆଦି ଫିଙ୍ଗିବା ଭଳି ଦୁଃଖ କଷ୍ଟ ଦେଲେ ମଧ୍ୟ ସେ ଅବିଚଳିତ ରହିବା ଉଚିତ । ଜ୍ଞାନ ମାର୍ଗୀ ସାଧକ ଏଥିରେ ତିଳେମାତ୍ର ବିଚଳିତ ହେଲେ ପଦେ ପଦେ ବିପଦ ।''

ଭଗବାନଙ୍କ ଶ୍ରୀମୁଖରୁ ଏଭଳି ବ୍ରଜ କଠୋର ବାଣୀ ଶ୍ରବଣ କରି ଉଦ୍ଧବ ସଙ୍ଗେ ସଙ୍ଗେ ଦୁଇ ହାତ ଯୋଡ଼ି ପ୍ରାର୍ଥନା କରି କହୁଛନ୍ତି, ''ହେ ବକ୍ତା ଶିରୋମଣି, ମୁଁ ବୁଝିପାରିବା ଭଳି ସରଳ ଉପାୟଟିଏ କହନ୍ତୁ ଯେପରି ମୁଁ ତାକୁ ପାଳନ କରି ନିଜକୁ ଉଦ୍ଧାର କରି ପାରିବି । ଆପଣଙ୍କ କହୁଥିବା ଖଳ ଲୋକଙ୍କ ଶାରୀରିକ ଓ ମାନସିକ ଯାତନା ସବୁ ସହ୍ୟ କରିବା ରକ୍ତମାଂସ ଦେହ ଧରିଥିବା ମନୁଷ୍ୟ ପକ୍ଷରେ ସଂପୂର୍ଣ୍ଣ ଅସମ୍ଭବ ମନେ ହୁଏ ।'' ପରବର୍ତ୍ତୀ ଅଧ୍ୟାୟରେ ଭଗବାନ ସୁନ୍ଦର ଦୃଷ୍ଟାନ୍ତଟିଏ ଦେଇ ଭିକ୍ଷୁଗୀତା ପ୍ରସଙ୍ଗରେ ଏହି ରହସ୍ୟମୟ ତତ୍ତ୍ୱଜ୍ଞାନ କଥା ବୁଝାଇବେ ।

# ଅଥ ୨୩ଶ ଅଧ୍ୟାୟଃ

## (ଭିକ୍ଷୁ ଗୀତା ବା ଅବନ୍ତୀ ବ୍ରାହ୍ମଣଙ୍କ ଐତିହାସିକ ସହିଷ୍ଣୁତା)

ପ୍ରଶ୍ନ-୧୭: କର୍ମମାର୍ଗ ସଫଳ ହେଲେ ସାଧକ ପାଇଁ ଦୁଇଟି ନୂତନ ମାର୍ଗ ଖୋଲିଯାଏ । ଅବିଦ୍ୟା ମାୟା ଦୂର ହୋଇଥିବାରୁ ସେ ଗୃହସ୍ଥାଶ୍ରମରେ ରହି ହରି ଭକ୍ତି କରି କରି ତା ମନରୁ ଚିତ୍ତମଳକୁ ଦୂର କରେ । ଦୋଷ ଗୁଣ ଉପରକୁ ଉଠିଥାଏ । ମାୟାତୀତ ହୁଏ । ଅନ୍ୟଥା ଗୃହ ତ୍ୟାଗୀ ଜ୍ଞାନମାର୍ଗୀଙ୍କ ପାଇଁ ଅନ୍ୟ ମାର୍ଗଟିଏ ମଧ୍ୟ ଖୋଲିଯାଏ । ଧ୍ୟାନ ଦ୍ୱାରା ଚିତ୍ତ ମଳ ଦୂର କରିବା ମାର୍ଗ କିନ୍ତୁ ଅତ୍ୟନ୍ତ କଷ୍ଟ ସାଧ୍ୟ (ଗୀତା ମତରେ କ୍ଳେଶ ଅଧିକତର ତେଷାଂ-ଦ୍ୱାଦଶ ଅଧ୍ୟାୟ) । କାରଣ ହେଲା ଜ୍ଞାନ ମାର୍ଗୀ ଯଜ୍ଞ, ଦାନ, ତୀର୍ଥ, ବ୍ରତ, ପରୋପକାର ଇତ୍ୟାଦି ସବୁକୁ ଦୂରେଇ ଦିଏ । ସୁତରାଂ ସଂସାର ଉଦାସୀନ ପାଇଁ ଭଗବାନ ସଂସାରର ଉପଦ୍ରବ, ଅତ୍ୟାଚାର, ନିର୍ଯ୍ୟାତନା, ଅପମାନ, ତାଡ଼ନ, ପୀଡ଼ନ ଇତ୍ୟାଦି ବ୍ୟବସ୍ଥା କରିଛନ୍ତି ଜ୍ଞାନମାର୍ଗୀ ସାଧକର ପରୀକ୍ଷା ନିମିତ୍ତ । ଉଦ୍ଧବଜୀ ପ୍ରଥମେ ଏଭଳି ସାଧନା ଅସମ୍ଭବ କହିବାରୁ ଭଗବାନ କଅଣ ସିଧାସଳଖ ମାନିନେଲେ ସେ ମନ୍ତବ୍ୟକୁ ?

ଶ୍ରୀ ଭଗବାନ ଉବାଚ

**ବାର୍ହସ୍ପତ୍ୟ ସ ବୈ ନ-ଅତ୍ର ସାଧୁଃ ବୈ ଦୁର୍ଜ୍ଜନ-ଈରିତୈଃ ।**
**ଦୁରୁକ୍ତୈଃ ଭିନ୍ନଂ ଆତ୍ମାନଂ ଯଃ ସମାଧାତୁଂ ଈଶ୍ୱରଃ ॥୨॥**

ଉ. ଭଗବାନ କହିଲେ, ‘‘ହେ ବୃହସ୍ପତି ଶିଷ୍ୟ ଉଦ୍ଧବଜୀ, ଯେ ଦୁର୍ଜନ ଲୋକର କଟୁ ଉକ୍ତି ଶୁଣି ମନକୁ ସ୍ଥିର ରଖିବାରେ ସମର୍ଥ (ଈଶ୍ୱରଃ) ତାକୁ ସାଧୁ ନ କହି ବରଂ ମହାସାଧୁ କୁହାଯିବା ଉଚିତ ।’’

ପ୍ରଶ୍ନ-୧୮: ଦୁଃଖ କଷ୍ଟ ସହିଷ୍ଣୁତା କଥାଟିକୁ ପ୍ରାଞ୍ଜଳ କରି ବୁଝାଇବା ନିମିତ୍ତ ସେତେବେଳେ ଭଗବାନ କେଉଁ ଉପମାଟିକୁ ଉପସ୍ଥାପନ କଲେ ?

**ନ ତଥା ତପ୍ୟତେ ବିଦ୍ଧଃ ପୁମାନ୍‌ବାଣୈଃ ସୁମର୍ମଗୈଃ ।**
**ଯଥା ତୁଦନ୍ତି ମର୍ମସ୍ଥା ହି-ଅସତାଂ ପୁରୁଷ-ଇଷବଃ ॥୩॥**

ଉ. କାହାରି ବକ୍ଷରେ ତୀକ୍ଷ୍ଣ ଶରଟିଏ ଭେଦ କରି କଳିଜାକୁ ଭେଦ କଲେ ଉପଚାର ବା ଚିକିତ୍ସା ପରେ ହୁଏତ କ୍ଷତ ଶୁଖିଯାଏ । ମନୁଷ୍ୟ ଭୁଲି ଯାଇପାରେ ସେ ପୀଡ଼ା କଷ୍ଟକୁ । ଦୁଷ୍ଟ ଲୋକର ବାକ୍ୟ ବାଣ ସବୁକୁ (ଇଷବଃ) ଯଦି ଥରେ ମର୍ମକୁ ବାଧିଥାଏ ତାକୁ କିନ୍ତୁ ସାରା ଜୀବନ ଭୁଲିବା ଅସମ୍ଭବ ।

ପ୍ରଶ୍ନ-୧୯: ଦୁର୍ବ୍ୟବହାର ଓ କଟୂକ୍ତି ଜନିତ ଅସହ୍ୟ ପୀଡ଼ାକୁ ସହିବା କଷ୍ଟକର ଅବଶ୍ୟ କିନ୍ତୁ ଅସମ୍ଭବ ନୁହେଁ। ଏହାର କେଉଁ ଐତିହାସିକ ବିରଳ ଦୃଷ୍ଟାନ୍ତଟିଏ ଭଗବାନ ଉଦ୍ଧବଙ୍କ ସମ୍ମୁଖରେ ରଖିଲେ ?

**ଅବନ୍ତୀଷୁ ଦ୍ୱିଜ କଶ୍ଚିତ୍ ଆସୀତ୍ ଆଢ୍ୟତମଃ ଶ୍ରିୟା ।**
**ବାର୍ତ୍ତାବୃତ୍ତିଃ କଦର୍ଯ୍ୟଃ ତୁ କାମୀ ଲୁବ୍‌ଧୋଽତି କୋପିନଃ ॥୬॥**

ଉ. ହରିଶ୍ଚନ୍ଦ୍ରଙ୍କ ରାଜ୍ୟସିଂହାସନ ଦାନ, ଶିବିଙ୍କ ନିଜ ଦେହର ମାଂସ ଦାନ, ଦଧୀଚିଙ୍କ ଅସ୍ଥି ଦାନ, ଇନ୍ଦ୍ରଙ୍କୁ ବିରୋଚନଙ୍କ ଆୟୁଷ ଦାନ, ବଳିଙ୍କର ସର୍ବସ୍ୱ ଦାନ ମହିମା ଭାରତ ଇତିହାସରେ ସାଇତା ହୋଇ ରହିଛି। ଠିକ୍ ସେହିଭଳି ଅବନ୍ତୀ (ମାଳବ) ରାଜ୍ୟର ଜଣେ କୃଷିଜୀବୀ ଦ୍ୱିଜଙ୍କ ଉଦାହରଣ ଭଗବାନ ଏଠାରେ ଦେଇଛନ୍ତି। ପ୍ରଥମେ ସେ ଦ୍ୱିଜ ଜଣେ ଅତ୍ୟନ୍ତ ଧନଶାଳୀ ଲୋକ (ଆଢ୍ୟତମଃ ଶ୍ରିୟା) ଭାବରେ ମର୍ଯ୍ୟାଦାପୂର୍ଣ୍ଣ ଜୀବନ ଯାପନ କରୁଥିଲେ। ସ୍ୱଭାବରେ କାମୁକ, ଲୋଭୀ ଓ ଅତ୍ୟନ୍ତ କ୍ରୋଧୀ ଥିଲେ। ତାଙ୍କ କଠୋର ବ୍ୟବହାରରେ ତାଙ୍କର ପୁତ୍ର, ବନ୍ଧୁ, ଅତିଥି, ପତ୍ନୀ ଏବଂ ଭୃତ୍ୟ ଆଦି ସମସ୍ତେ ଅସନ୍ତୁଷ୍ଟ ଥିଲେ। ଧର୍ମ, ପୁଣ୍ୟକର୍ମ, ଦାନ ଇତ୍ୟାଦି କରିବା ତ ଦୂର କଥା ସେ କୌଣସି ଅତିଥିଙ୍କୁ ମିଠା କଥା ପଦେ ମଧ୍ୟ କହୁନଥିଲେ।

ପ୍ରଶ୍ନ-୨୦: ଅନ୍ୟ କାହାକୁ କିଛି ଧନ ସଂପତ୍ତି ନ ଦେଇ ନିଜେ ମଧ୍ୟ ଖାଇବା ପିନ୍ଧିବା ଆଦିରେ ଅତ୍ୟନ୍ତ କୃପଣ ଥିଲେ। ଏଭଳି ଯକ୍ଷଭଳି ଧନ ସଂଚୟୀ ବ୍ୟକ୍ତିର ଧର୍ମ, ଅର୍ଥ, କାମ ତିନି ଲକ୍ଷ୍ୟ ଚ୍ୟୁତି ହେତୁ କି ଦୁରବସ୍ଥା ହୋଇଥିଲା ?

**ତସ୍ୟ-ଏବଂ ଯକ୍ଷ ବିତ୍ତସ୍ୟ ଚ୍ୟୁତସ୍ୟ-ଉଭୟ ଲୋକତଃ ।**
**ଧର୍ମକାମ ବିହୀନସ୍ୟ ଚୁକ୍ରୁଧୁଃ ପଞ୍ଚଭାଗିନଃ ॥୯॥**

ଉ. ବିଚରାର ଇହକାଳ ଓ ପରକାଳ ସୁଖ ଉଭୟ ନଷ୍ଟ ହୋଇଗଲା। ସମଗ୍ର ଜୀବନରେ ନା ଧର୍ମ ଲାଭ ହେଲା, ନା ସଂସାରୀ ସୁଖ କାମନା ପୂରଣ କରିପାରିଲା ସେ। ଗୃହସ୍ଥ ହୋଇ ପଞ୍ଚରଣ ପରିଶୋଧ ନ କରିବାରୁ ସେମାନେ ସମସ୍ତେ (ଋଷି, ଦେବତା, ସମାଜ, ପିତୃପୁରୁଷ, ବଳି ବୈଶ୍ୱଦେବ) ଅସନ୍ତୁଷ୍ଟ ହେଲେ (ଚୁକ୍ରୁଧୁଃ)।

ପ୍ରଶ୍ନ-୨୧: ମାୟା ପୁତ୍ରୀ ସେଇ ପଞ୍ଚ ଭଗିନୀଙ୍କର କ୍ରୋଧରୁ ସେ ବ୍ରାହ୍ମଣ ତାଙ୍କର ସମସ୍ତ ସଂପତ୍ତି କିପରି ହରାଇ ବସିଲେ ?

**ଜ୍ଞାତୟୋ ଜଗୃହୁଃ କିଂଚିତ୍ କିଂଚିତ୍ ଦସ୍ୟବଃ ଉଦ୍ଧବ ।**
**ଦୈବତଃ କାଳତଃ କିଂଚିତ୍ ବ୍ରହ୍ମବନ୍ଧୋଃ ନୃପ-ଅର୍ଥିବାତ୍ ॥୧୧॥**

॥ ଅପଣ୍ଡିତ ଦାମୋଦର ବଳୀୟାରସିଂହ ॥

ଉ. ବନ୍ଧୁ କୁଟୁମ୍ବମାନେ କିଛି ଅପହରଣ କରିନେଲେ (ପିତୃରଣ ପାଇଁ) ଆଉ କିଛି ଚୋର ତସ୍କର ହରି ନେଲେ (ବଳି ବୈଶ୍ୱଦେବ ରଣ ପାଇଁ) । ଦୈବ କୋପରୁ  ଅଗ୍ନି, ବନ୍ୟା ଦାଉରୁ ଉଜୁଡ଼ିଗଲା (ଦେବରଣ ପାଇଁ) । ପତିତ ବ୍ରାହ୍ମଣ (ବ୍ରହ୍ମବନ୍ଧୋଃ) ମାନେ କିଛି ଋଷି ରଣ ବାବଦକୁ ଲୁଟି ନେଲେ । ଅବଶିଷ୍ଟ ଧନ ରାଜା ଓ ରାଜ କର୍ମଚାରୀ ସମାଜ ଋଣ ବାବଦରେ ହରିନେଲେ । ବ୍ରାହ୍ମଣ ବିଚରା ହେଲେ ସଂପୂର୍ଣ୍ଣ ନିରାଶ୍ରୟ ।

ପ୍ରଶ୍ନ-୨୨ : ସେ ଅବନ୍ତୀ ଦ୍ୱିଜ ଏବେ ସର୍ବହରା ହେଲେ । ଏ ସମାଜରେ ସମସ୍ତେ ହତାଦର କଲେ ତାଙ୍କୁ । ଉପେକ୍ଷା କଲେ ସବୁ କଥାରେ । ଧନ ନଷ୍ଟ ଚିନ୍ତାରେ ସେ ମନେ ମନେ ଦୁଃଖରେ (ଖିଦ୍ୟତୋ) ଜଳିଲେ (ନଷ୍ଟରାୟଃ ତପସ୍ୱିନଃ) । ନିଜ ଗୃହରେ କବାଟ କିଳି ଅଜସ୍ର ଅଶ୍ରୁମୋଚନ କଲେ । କାହାକୁ କିଛି କହିବାକୁ ବାକ୍ ସ୍ଫୁରଣ (ବାଷ୍ପ କଣ୍ଠସ୍ୟ) ହେଲା ନାହିଁ । ଏଭଳି ଅବସ୍ଥାରେ ସେ ଦ୍ୱିଜ ନିଜକୁ ଅତ୍ୟନ୍ତ ଭାଗ୍ୟଶାଳୀ ମନେ କଲେ କିପରି ?

**ତସ୍ୟ-ଏବଂ ଧ୍ୟାୟତୋ ଦୀର୍ଘଂ ନଷ୍ଟରାୟଃ ତପସ୍ୱିନଃ ।**
**ଖିଦ୍ୟତୋ ବାଷ୍ପକଣ୍ଠସ୍ୟ ନିର୍ବେଦଃ ସୁମହାନ୍ ଅଭୂତ୍ ।।୧୩।।**

ଉ. କାରଣ ସେ ବୁଝିଗଲେ ଧନ ନଷ୍ଟ ହେବାରୁ (ନଷ୍ଟରାୟଃ)ଏବେ ଯେ ତାଙ୍କର ସକଳ ସଂସାର ଭୋଗ ଆସକ୍ତି ଦୂର ହୋଇଛି । ଭଗବାନଙ୍କ ଅହୈତୁକୀ କୃପାରୁ ତାଙ୍କର ଉତ୍କଟ ସଂସାର ବୈରାଗ୍ୟ (ନିର୍ବେଦଃ ସୁମହାନ୍) ଜାତ ହୋଇଛି । ସେ କୋଟି ଜନ୍ମ ତପସ୍ୟାର ଫଳ ଆଜି ପାଇ ନିଜକୁ ଧନ୍ୟ ମନେ କରୁଛନ୍ତି । ତୁଚ୍ଛ ଧନ ବଦଳରେ ଆଜି ଅମୂଲ୍ୟ ବୈରାଗ୍ୟ ଧନର ସେ ଅଧିକାରୀ ।

ପ୍ରଶ୍ନ-୨୩: ମନୁଷ୍ୟ ଭୋଗ ଦୃଷ୍ଟିରେ ଧନ ସଂପତ୍ତି ସଂଗ୍ରହ କରି ସାଇତିବାରେ ମନେ ମନେ କାଞ୍ଚନିକ ସୁଖ ପାଉଥାଏ । ବୈରାଗ୍ୟ ଦୃଷ୍ଟିରେ ସେ ଦ୍ୱିଜ ଏବେ ସମ୍ପତ୍ତିକୁ କଅଣ ବୋଲି ବୁଝିଲେ ?

**ଅର୍ଥସ୍ୟ ସାଧନେ ସିଦ୍ଧେ ଉତ୍କର୍ଷେ ରକ୍ଷଣେ ବ୍ୟୟେ ।**
**ନାଶ ଉପଭୋଗ ଆୟାସଃ ତ୍ରାସଃ ଚିନ୍ତା ଭ୍ରମୋ ନୃଣାମ୍ ।।୧୭।।**

ଉ. ସେ ବୁଝିଲେ ସମ୍ପତ୍ତିର ଭୋଗ ସଂଗ୍ରହ ପ୍ରବୃତ୍ତି ହିଁ ମନୁଷ୍ୟର ସକଳ ବିପତ୍ତିର କାରଣ । ଧନ ଅର୍ଜନ ଶ୍ରମସାଧ (ଆୟାସ) ହେବା, ଧନର ବିୟୋଗ ଭୟ (ତ୍ରାସ), ଧନ ବଣ୍ଟୁଆରା ଭୁଲ ବୁଝାମଣା (ଭ୍ରମୋ) ଭଳି ଚିନ୍ତାର କାରଣକୁ ବିଷାଦ

ବୋଲି କୁହାଯାଏ । ସେ ଦେଖିଲେ ଯେ ଧନ ରୋଜଗାର କରିବାରେ (ସାଧନେ), ସଂଗ୍ରହ କରିବାରେ (ସିଦ୍ଧେ), ତାକୁ ସୁଧ ଲଗାଇ ବୃଦ୍ଧି କରିବାରେ (ଉତ୍କର୍ଷେ), ସାଇତି ବାରେ, ଲୁଚେଇ ରଖିବାରେ, ଧନ ଖର୍ଚ୍ଚ ହୋଇଗଲେ, କେହି ନେଇଗଲେ, ହଜିଗଲେ କିମ୍ବା ଧନକୁ ନିଜେ ଉପଭୋଗ କଲେ ତାଙ୍କୁ ଏହି ଆୟାସ, ତ୍ରାସ, ଚିନ୍ତା ଓ ଭ୍ରମରୂପୀ ବିପଦ ଘେରିଯାଉଛନ୍ତି । ଧନହୀନ ହେବାପରେ ସେ ନିଜେ ଏହି ସତ୍ୟ ଉପଲବ୍ଧି କରିଛନ୍ତି ।

ପ୍ରଶ୍ନ-୨୪: ନିଜର ଧନ ଭୋଗ ସଂଗ୍ରହ ଲାଳସାକୁ ସେ ଦୁଃଖର କେଉଁ କେଉଁ ପନ୍ଦର କାରଣ ବୋଲି ମନେ କଲେ ?

**ସ୍ତେୟଂ ହିଂସା-ଅନୃତଂ ଦମ୍ଭଃ କାମଃ କ୍ରୋଧଃ ସ୍ମୟୋ ମଦଃ ।**
**ଭେଦୋ ବୈରଂ ଅବିଶ୍ୱାସଃ ସଂସ୍ପର୍ଦ୍ଧା ବ୍ୟସନାନି ଚ ।**
**ଏତେ ପଞ୍ଚଦଶ-ଅନର୍ଥା ହି-ଅର୍ଥମୂଳା ମତା ନୃଣାମ୍ ॥୧୮॥**

ଉ. ଅର୍ଥ ଭୋଗ ସଂଗ୍ରହ ହିଁ ସାମାନ୍ୟ ଦୁଃଖର କାରଣ ବୋଲି ସେ ନ ଭାବି ବରଂ ପନ୍ଦର ପ୍ରକାର ଅନର୍ଥର ମୂଳ ବୋଲି କହିବୁଲିଲେ । ଅର୍ଥ ଯୋଗୁ ଚୋରି (ସ୍ତେୟ), ହିଂସା, ମିଥ୍ୟାଭାଷଣ, କପଟ ଆଚରଣ, ଲମ୍ପଟ ପଣିଆ, କ୍ରୋଧ, ବିଳାସ (ସ୍ମୟୋ), ଗର୍ବ (ମଦଃ), ଅହନ୍ତା ମମତା ଆଦି ଭେଦ ବୁଦ୍ଧି, ଶତ୍ରୁତା, ଅବିଶ୍ୱାସ, ଅଯଥା ପ୍ରତିଯୋଗିତା (ସଂସ୍ପର୍ଦ୍ଧା) ତଥା କାମୁକତା, ମଦ୍ୟପାନ ଓ ଦ୍ୟୁତକ୍ରୀଡ଼ା ଏହି ପନ୍ଦର ପ୍ରକାର ଦୁଃଖ ଭୋଗେ ଜଣେ ଧନୀ ଲୋକ । ସୁତରାଂ ଶ୍ରେୟାର୍ଥୀ ଲୋକ ଧନକୁ ଦୂରରୁ ଜୁହାର କରିଥାଏ । ଏହା ଥିଲା ତାଙ୍କର ମୂଲ୍ୟବାନ ଜୀବନ ଦର୍ଶନ ।

ପ୍ରଶ୍ନ-୨୫: ଧନ ରୋଜଗାର କରି ଗୃହସ୍ଥ ଯଦି ତାର ସଦୁପଯୋଗ କରେ ତେବେ କ'ଣ ତାକୁ ଦୁଃଖ ଭୋଗିବାକୁ ପଡ଼େ ନାହିଁ କି ?

**ଦେବ-ଋଷି ପିତୃ ଭୂତ-ଆଦି ଜ୍ଞାତୀନ୍ ବନ୍ଧୂନ୍ ଚ ଭାଗିନଃ ।**
**ଅସଂବିଭଜ୍ୟ ଚ-ଆତ୍ମାନଂ ଯକ୍ଷବିତ୍ତଃ ପତତି-ଅଧଃ ॥୨୪॥**

ଉ. ବୈଦିକ ଶାସ୍ତ୍ର ମତରେ ନିଜ ସତ୍ ଉପାର୍ଜିତ ଅର୍ଥକୁ ଦେବତା, ଋଷି, ସାଧୁ, ସନ୍ଥ, ପିତା ମାତା, ଗୁରୁ, ଗୁରୁଜନ, କୁଟୁମ୍ବ, ବନ୍ଧୁ, ସମାଜଙ୍କ ଅଭାବ ଦୂର କରିବାରେ ଖର୍ଚ୍ଚ ନ କଲେ ମନୁଷ୍ୟ ଜନ୍ମରୁ ପତନ ହୁଏ କୁକୁର, ଶୁକର ଯୋନିକୁ । ସେଇ ଧନର ସଦ୍ ବିନିଯୋଗ କଲେ ତାର ମନ ରଜ ତମୋଗୁଣରୁ ଉଦ୍ଧାର ପାଇ ସତ୍ତ୍ୱଗୁଣୀ ହୋଇଯାଏ ।

ପ୍ରଶ୍ନ-୨୬: ସେ ଦ୍ୱିଜ ତାଙ୍କ ମନରେ ସଂସାର ବୈରାଗ୍ୟ ଜାତ କରାଇଥିବାରୁ ବିଶ୍ୱନିୟନ୍ତା ଭଗବାନଙ୍କ ପାଖରେ ତାଙ୍କ କୃପା ପାଇଁ ଅଶେଷ କୃତଜ୍ଞତା ଜ୍ଞାପନ କଲେ । ଏହି ସମୟରେ ସେ ଭାରତ ଇତିହାସର ଖଟ୍ୱାଙ୍ଗ ରାଜାଙ୍କୁ କାହିଁକି ସ୍ମରଣ କଲେ ?

**ତତ୍ର ମାଂ ଅନୁମୋଦେରନ୍ ଦେବାଃତ୍ରିଭୁବନ-ଈଶ୍ୱରାଃ ।**
**ମୁହୂର୍ତ୍ତେନ ବ୍ରହ୍ମଲୋକଂ ଖଟ୍ୱାଙ୍ଗଃ ସମଃ ସାଧୟତ୍ ।।୩୦।।**

ଉ. ଖଟ୍ୱାଙ୍ଗ ନାମରେ ଜଣେ ରାଜା ଜୀବନର ଅନ୍ତିମ ଅବସ୍ଥାରେ ଜାଣି ପାରିଥିଲେ ଯେ ତାଙ୍କର ଆୟୁ ମାତ୍ର ଏକ ମୁହୂର୍ତ୍ତ (ଅଠଚାଳିଶ ମିନିଟ୍) ବାକି ଅଛି । ସେ ଧୈର୍ଯ୍ୟ ନ ହରାଇ ସେତିକି ସମୟର ସଦୁପଯୋଗ କରି ନାରାୟଣ ଧ୍ୟାନ କରି ସଦ୍‌ଗତି (ବ୍ରହ୍ମଲୋକଙ୍କ) ପ୍ରାପ୍ତ ହେବାର ନଜିର ଅଛି । ସେ ଅନୁଭବ କରୁଥିଲେ ତାଙ୍କର ନିଜର ଆୟୁଷ ଅତ୍ୟନ୍ତ ସୀମିତ । ତେଣୁ ସେ ଖଟ୍ୱାଙ୍ଗଙ୍କୁ ସ୍ମରଣ କଲେ ।

ପ୍ରଶ୍ନ-୨୭: ସେ ସଂକଳ୍ପ କଲେ ଯେ ଯଥାସାଧ୍ୟ ଧର୍ମ କର୍ମରେ ମନୋନିବେଶ କରି ମୁନି, ଋଷି, ଦେବୀ, ଦେବତା ତଥା ତ୍ରିଭୁବନ ଈଶ୍ୱର ଭଗବାନଙ୍କୁ ପ୍ରସନ୍ନ କରିବେ । ସେ ନିଜ ଦେହ, ମନ, ବୁଦ୍ଧି ସହିତ ଅହଂକାରକୁ ସନ୍ନ୍ୟାସ ବେଶରେ ସଜାଇଦେଲେ । ଦଣ୍ଡ, କମଣ୍ଡଳୁ ଧରି ଦ୍ୱାର ଦ୍ୱାର ବୁଲି ବିନମ୍ର ହେଇ ଭିକ୍ଷା ମାଗିଲେ । ସେ ବ୍ରାହ୍ମଣ ନିୟମିତ କିଛି କିଛି ପ୍ରାଣାୟାମ ଧ୍ୟାନ, ଧାରଣାଦି କରି ଚାଲିଲେ । ଦୁଷ୍ଟ ଲୋକମାନେ ତାଙ୍କର ଅନେକ ନିନ୍ଦା, ଅପମାନ ଏବଂ ତିରସ୍କାର କଲେ । କିଭଳି ଅସହ୍ୟ ଦୁଃଖ କଷ୍ଟର ସମ୍ମୁଖୀନ ହେବାକୁ ପଡ଼ିଲା ତାଙ୍କୁ ?

**କେଚିତ୍ ତ୍ରିବେଣୁଂ ଜଗୃହୁଃ ଏକେ ପାତ୍ରଂ କମଣ୍ଡଳୁମ୍ ।**
**ପୀଠଂ ଚ-ଏକେଽକ୍ଷ ସୂତ୍ରଂ ଚ କନ୍ଥାଂ ଚିରାଣି କେଚନ ।।୩୪।।**

ଉ. କେଉଁ ବାଳକ ତାଙ୍କ ତ୍ରିଦଣ୍ଡ ଛଡ଼େଇ ନେଲା ତ ପୁଣି କିଏ ତାଙ୍କର କମଣ୍ଡଳୁ, ଭିକ୍ଷା ପାତ୍ରକୁ ଟାଣି ଆଣି ଫିଙ୍ଗି ଦେଲାଣି । କିଏ ବସୁଥିବା ଆସନକୁ (ପୀଠଂ) ଧରି ପଳାଇଲାଣି ତ ପୁଣି କିଏ ତାଙ୍କର ରଦ୍ରାକ୍ଷମାଳ (ଅକ୍ଷସୂତ୍ରଂ), କନ୍ଥା, କୌପିନୀ ଟାଣି ଦୂରକୁ ଫୋପାଡ଼ି ଦେଲାଣି । ମିଳିଥିବା ଭିକ୍ଷାନ୍ନକୁ ଭୋଜନ କରିବାକୁ ଯିବାବେଳେ କିଏ ସେଥିରେ ଛେପ କିମ୍ୱା ପରିସ୍ରା ପକାଇଲାଣି । ଏହିଭଳି ଅକଥନୀୟ ଦୁଃଖ ଦୁର୍ଦ୍ଦଶା ଭୋଗ କରିବାକୁ ପଡ଼ିଲା ତାଙ୍କୁ । ସେ କିନ୍ତୁ ସେ ସବୁକୁ ସହିନେଲେ ।

କିଛି ପ୍ରତିବାଦ କଲେନି । ସତେ କି କାଠ ପଥରରେ ଗଢ଼ା ତାଙ୍କର ଶରୀର । ରକ୍ତ ମାଂସର ଶରୀର ଧରି ଜଣେ ବିବେକୀ ମନୁଷ୍ୟ କ'ଣ ଏହାକୁ ସହ୍ୟ କରିବା ସମ୍ଭବ ହୋଇପାରେ ! ! !

ପ୍ରଶ୍ନ-୨୮ : କିଭଳି ମାନସିକ କଷ୍ଟ ଭୋଗ କଲେ ସେ ବୈରାଗ୍ୟବାନ୍ ଦ୍ୱିଜ ମହୋଦୟ ?

**କ୍ଷପନ୍ତି-ଏକେଽବଜାନନ୍ତି ଏଷ ଧର୍ମଧ୍ୱଜଃ ଶଠଃ ।**
**କ୍ଷୀଣବିତ୍ତ ଇମାଂ ବୃତ୍ତିଂ ଅଗ୍ରହୀତ୍ ସ୍ୱଜନ-ଉଜ୍‌ଝିତଃ ॥୩୮॥**

ଉ. କେହି କେହି ଦୁଷ୍ଟ ଲୋକ ଅକଥ୍ୟ ଭଷାରେ ଗାଳି ମନ୍ଦ କରନ୍ତି । ଚୋର ଚୋର କହି ବାନ୍ଧ ବାନ୍ଧ କହି ଟଣା ଓଟରା କରନ୍ତି । କଟୂ ନିନ୍ଦା ବାଣୀ ଶୁଣାନ୍ତି । ଘୃଣା କରନ୍ତି (ଅବଜାନନ୍ତି) । ଠକଟେ ବୋଲି ଧକ୍‌କା ମାରି ପେଲି ଦିଅନ୍ତି (କ୍ଷପନ୍ତି) । କହନ୍ତି, ''କପଟୀ ଅଳସୁଆଟେ । କୁଟୁମ୍ବ ପୋଷି ନ ପାରି (ସ୍ୱଜନ-ଉଜ୍‌ଝିତଃ) କପଟରେ ଭିକ୍ଷୁକ ସାଜିଛି । ଧର୍ମ ଅର୍ଜନ ଲାଗି ନୁହେଁ ବରଂ ସରଳ ଲୋକଙ୍କୁ ଠକିବା (ଧର୍ମଧ୍ୱଜଃ ଶଠଃ) ଏହାର ମତଲବ ।''

ପ୍ରଶ୍ନ-୨୯ : ସେ ମହାତ୍ମାଙ୍କୁ ଦେଖି କେହି କେହି କହନ୍ତି ଯେ ଏ ଏକ ପାଖଣ୍ଡ ବଗ । କେତେ ଧୈର୍ଯ୍ୟ ଏହାର ଦେଖ । ଖାଇ ପିଇ କେତେ ଗଣ୍ଡି ବଢ଼େଇଛି । କାମ ଦାମ କିଛି କରୁନି । ତାଙ୍କ ଆଡ଼କୁ ପିଠି କରି ଅଧୋବାୟୁ ତ୍ୟାଗ କରନ୍ତି । କୌଣସି ଏକ ଘରେ ପୁରାଇ କବାଟ ବନ୍ଦ କରି ଅନେକ ସମୟ ପରେ କେତେ କଳବଲ କରି ଛାଡ଼ନ୍ତି । ଏତେ ସବୁ ଦୈହିକ, ଦୈବିକ ଓ ଭୌତିକ କଷ୍ଟ (ଗ୍ରୀଷ୍ମ, ବର୍ଷା, ଶୀତ କଷ୍ଟ, ପିଲାମାନଙ୍କ ଦୁଷ୍ଟାମି) ସବୁକୁ ସେ ମହାତ୍ମା କଅଣ ବୋଲି ଭାବୁଥିଲେ (ଅବୁଧ୍ୟତ) ?

**ଏବଂ ସ ଭୌତିକଂ ଦୁଃଖଂ ଦୈବିକଂ ଦୈହିକଂ ଚ ଯତ୍ ।**
**ଭୋକ୍ତବ୍ୟଂ ଆତ୍ମନ-ଉଦ୍ଦିଷ୍ଟଂ ପ୍ରାପ୍ତଂ ପ୍ରାପ୍ତଂ ଅବୁଧ୍ୟତ ॥୪୧॥**

ଉ. ସେ କାହାକୁ କିଛି ନ କହି ନିଜର ପୂର୍ବକୃତ ପ୍ରାରବ୍‌ଧ କର୍ମର ଫଳ ଓ ଏହାକୁ ସହର୍ଷ ସହିଯିବା ହିଁ ଧର୍ମ ବୋଲି ଭାବି ସେ ସବୁ ନିର୍ବିକାରରେ ହଜମ କରିଚାଲିଲେ । ଶେଷରେ ସେ ଜଣେ ଅସାଧାରଣ ଦାର୍ଶନିକ ପାଲଟିଗଲେ ।

ପ୍ରଶ୍ନ-୩୦ : ଦାର୍ଶନିକମାନେ ନିଜ ଜୀବନର ବହୁମୂଲ୍ୟ ଅନୁଭୂତି ସଂସାରକୁ ଦେଇଥାନ୍ତି । ଅବନ୍ତୀର ସେ ବୈରାଗ୍ୟବାନ ଦ୍ୱିଜ କିଭଳି ଦିଗ୍‌ଦର୍ଶନ ଦେଲେ ସଂସାରକୁ ?

ବ୍ରାହ୍ମଣ ଉବାଚ

**ନ-ଅୟଂ ଜନୋ ମେ ସୁଖ ଦୁଃଖ ହେତୁଃ**

**ନ ଦେବତା-ଆତ୍ମା ଗ୍ରହ କର୍ମ କାଳାଃ ।**

**ମନଃ ପରଂ କାରଣଂ ଆମନନ୍ତି**

**ସଂସାର ଚକ୍ରଂ ପରିବର୍ତ୍ତୟେତ୍ ଯତ୍ ।।୪୩।।**

ଉ. ସେ ମହାଶୟ ଘୋଷଣା କଲେ ଯେ ମନୁଷ୍ୟର ସୁଖ ଦୁଃଖର କାରଣ (ହେତୁ) ଦୁର୍ଜନ ଲୋକ, ଦୈବ, ପରମେଶ୍ୱର (ଆତ୍ମା), ଦୁଷ୍ଟ ଗ୍ରହ ଚଳନ, ଭାଗ୍ୟ (କର୍ମ) କିମ୍ୱା କାଳ (ଅନୁକୂଳ କିମ୍ୱା ପ୍ରତିକୂଳ ସମୟ) କେହି ନୁହନ୍ତି । ନିଜ ନିଜର ମନ ହିଁ ତାର ସୁଖ ଦୁଃଖର ଅସଲି କାରଣ । ସାରା ସଂସାରର ସକଳ ମନୁଷ୍ୟ, ଜୀବଜନ୍ତୁ, ଦେବୀଦେବତା ସମସ୍ତେ ଏହି ଅଲଙ୍ଘନୀୟ ନିୟମର ଅଧୀନସ୍ଥ (ପରିବର୍ତ୍ତୟେତ୍ ଯତ୍) ।

ପ୍ରଶ୍ନ-୩୧ : ବିଷୟୀ ମନୁଷ୍ୟର ମନ ଅତ୍ୟନ୍ତ ଚଞ୍ଚଳ ପୁଣି ବଳବାନ୍ । ଏପରିକି ଇନ୍ଦ୍ର, ଚନ୍ଦ୍ର, ବ୍ରହ୍ମା, ଶଙ୍କର ଆଦିଙ୍କର ଶାସନ କର୍ତ୍ତା ସେଇ ମନ । ମନର ଶାସକ କେହି ନାହାନ୍ତି ବିବେକ, ଶୁଦ୍ଧ ବୁଦ୍ଧି ବା ପରମାତ୍ମାଙ୍କ ବ୍ୟତୀତ । ମନ ଶୁଦ୍ଧିରେ କର୍ମ କଲେ ଜୀବର ଉର୍ଦ୍ଧ୍ୱ ଗତି ହୁଏ ସେ ନରରୁ ଦେବତା, ଋଷି, ବ୍ରାହ୍ମଣ ଏବଂ ବୈଷ୍ଣବ ହୁଏ । ମନ ଅଶୁଦ୍ଧିରେ କର୍ମ କଲେ ମନୁଷ୍ୟ ଅସୁର, ରାକ୍ଷସ, ଭୂତ, ପ୍ରେତ, ପିଶାଚ, ପଶୁ ପକ୍ଷୀ ଆଦି ନିଚ ଯୋନିକୁ ଯାଏ । ଏହି ମନର ଶୁଦ୍ଧି ଅଶୁଦ୍ଧି ପୁଣି ହୁଏ କେମିତି ?

**ମନୋ ଗୁଣାନ୍ ବୈ ସୃଜତେ ବଳୀୟଃ**

**ତତଃ ଚ କର୍ମାଣି ବିଲକ୍ଷଣାନି ।**

**ଶୁକ୍ଳାନି କୃଷ୍ଣାନି-ଅଥ ଲୋହିତାନି**

**ତେଭ୍ୟଃ ସବର୍ଣ୍ଣାଃ ସୃତୟୋ ଭବନ୍ତି ।।୪୪।।**

ଉ. ମନୁଷ୍ୟ ମନ ରୂପୀ ଆତ୍ମାଙ୍କୁ ଭୁଲି ବିଷୟ ସୁଖ ଲାଳସାରେ ମାୟାର ତିନିଗୁଣ ପ୍ରାବଲ୍ୟରେ ଇନ୍ଦ୍ରିୟ ତୃପ୍ତି ଲାଗି କର୍ମ କରେ । ମାୟାଙ୍କର ସତ୍ୱଗୁଣରେ (ଶୁକ୍ଳାନି), ତମୋଗୁଣରେ (କୃଷ୍ଣାନି) କିମ୍ୱା ରଜୋଗୁଣରେ (ଲୋହିତାନି) ଯଥାକ୍ରମେ କର୍ମ, ବିକର୍ମ, ଅକର୍ମ କରି ସ୍ୱର୍ଗ, ମର୍ତ୍ତ୍ୟ, ନରକ ଲୋକରେ ଜନ୍ମ ପରେ ଜନ୍ମ ସ୍ଥାନିତ

ହୁଏ ସୁଖ ଦୁଃଖ ଭୋଗିବାକୁ (ସ୍ମୃତୟୋ ଭବନ୍ତି) । ଶେଷରେ ଈଶ୍ୱରଙ୍କୁ ପ୍ରସନ୍ନ କରିବାକୁ ଗୁରୁ ଆଜ୍ଞାରେ ଭକ୍ତିମୂଳକ କର୍ମ (ବିଲକ୍ଷଣାନି) କରି ମୁକ୍ତ ହୋଇଥାଏ ।

ପ୍ରଶ୍ନ-୩୨ : ସେଇ ମନକୁ ସଂଯମ କରିବାକୁ ଦାନ, ଧର୍ମ, ତୀର୍ଥ, ବ୍ରତ, ଜପ, ତପ ଇତ୍ୟାଦି ଶୁଭ କର୍ମ କରିବାକୁ ହୁଏ । କାହାରି କାହାରି ମତରେ ଦାନ, ଧର୍ମ, ତୀର୍ଥ ଆଦି କରିହୁଏ କେବଳ ମନ ଶୁଦ୍ଧ ଥିଲେ । ଏଭଳି ଅଡୁଆ ସୂତାର ଖିଅ ବାହାର କରିବାକୁ ହେଲେ ସାଧକ କାହାକୁ ସାଧନ ମାନିଲେ ସେ କେଉଁ ସାଧ୍ୟ ଫଳ ପ୍ରାପ୍ତ ହେବ ?

**ସମାହିତଂ ଯସ୍ୟ ମନଃ ପ୍ରଶାନ୍ତଂ**
**ଦାନ-ଆଦିଭିଃ କିଂବଦ ତସ୍ୟ କୃତମ୍ ।**
**ଅସଂଯତଂ ତସ୍ୟ ମନୋ ବିନଶ୍ୟତ୍**
**ଦାନ-ଆଦିଭିଃ ଚେତ୍ ପରଂ କିଂ ଏଭିଃ ||୪୭||**

ଉ. ଭଗବାନ ବୁଝାଇ କହୁଛନ୍ତି, ''ଉଦ୍ଧବ, ମନ ସଂଯମ ଥିଲେ ଦାନ, ଧର୍ମ ଆଦିରେ କି ପ୍ରୟୋଜନ ? ପୁଣି ମନ ଅସଂଯତ ଥିଲେ ଏସବୁ କରି କି ଲାଭ ?''

ପ୍ରଶ୍ନ-୩୩: ଦୁର୍ଜୟମନକୁ ଜୟ ନକରି କାହାକୁ ଶତ୍ରୁ ମିତ୍ର, ଭଲ, ମନ୍ଦ ଦୋଷ ଗୁଣ ବିଚାରରେ ମୂର୍ଖ ଲୋକମାନେ ବନ୍ଧନରେ ପଡ଼ନ୍ତି । ମନ, ବୁଦ୍ଧି, ଅହଂକାର ଜୟ କରି ସେଇ ସଂସାରି କର୍ମମାନ ମଧ କରି ଭକ୍ତ ଅଫୁରନ୍ତ ଆନନ୍ଦ ପାଉଥାଏ । ସେ ମହାତ୍ମା ଦୁଷ୍ଟ ପିଲାମାନଙ୍କଠାରୁ ଏତେ ନିର୍ଯାତନା ପାଇ ମଧ ସେମାନଙ୍କୁ ଦାୟୀ ନକରି ନିଜ ମନକୁ ଏଥିପାଇଁ କିପରି ଦାୟୀ କଲେ ପରବର୍ତ୍ତୀ ଛଅ ଶ୍ଳୋକରେ ?

**ଜନଃ ତୁ ହେତୁଃ ସୁଖ ଦୁଃଖୟୋଃ ଚେତ୍**
**କିଂ ଆତ୍ମନଃ ଚ-ଅତ୍ର ହି ଭୌମୟୋଃ ତତ୍ ।**
**ଜିହ୍ୱାଂ କ୍ୱଚିତ୍ ସଂଦଶତି ସ୍ୱଦତ୍ଭିଃ**
**ତଦ୍ ବେଦନାୟାଂ କତମାୟ କୁପ୍ୟେତ୍ ||୫୧||**

ଉ. ସେ ଅନୁଭବ କଲେ ଯେ ଦେହ ଜଡ଼ ପୁଣି ଆତ୍ମା ନିର୍ବିକାର (ଭୌମୟୋଃ) । ସୁଖ ଦୁଃଖ ଅନୁଭବ ନିଜ ଦେହ କିମ୍ବା ଆତ୍ମାଙ୍କୁ ହୁଏ ନାହିଁ । ହୁଏ କେବଳ ନିଜ ମନକୁ । ନିଜର ମନ ବିଶ୍ୱାତ୍ମାଙ୍କ ମନର ଏକ ଅଂଶମାତ୍ର ଏତିକି ବୁଝିବା ଦରକାର । ଭୋଜନବେଳେ ଜଣକର ଦାନ୍ତ ଯଦି ନିଜ ଜିହ୍ୱାକୁ କାମୁଡ଼ି ଦିଏ ତେବେ

କିଏ କଷ୍ଟ ଦିଏ ପୁଣି କାହାକୁ ବା ଦିଏ ? ଦଣ୍ଡ କିଏ ପାଇବ ପୁଣି କିଏ କାହାକୁ ଦଣ୍ଡ ଦେବ (କୁପ୍ୟେତ) ? ଏଥିପାଇଁ ଜଣେ ଯଦି ଷଣ୍ଢୁଆସିରେ ନିଜ ଦାନ୍ତ ଉପାଡ଼ିବାକୁ ଉଦ୍ୟତ ହୁଏ ସେ କ'ଣ ବିବେକୀ ଲୋକ କି ? ଠିକ୍ ସେଇ ନ୍ୟାୟରେ ଆମ ନିଜ ମନକୁ ଯଦି ଆମ ବିବେକ ଦ୍ୱାରା ବୁଝାଇଦେବା ଯେ ଦୁର୍ଜନର ମନ ଓ ଆମ ସମସ୍ତଙ୍କ ଦେହ ଓ ମନ ସେଇ ବିଶ୍ୱ ଦେହ ଓ ବିଶ୍ୱ ମନର ଏକ ଏକ ଭେଦଶୂନ୍ୟ ଅଭିନ୍ନ ଅଂଶ ମାତ୍ର ତେବେ ପିଲାମାନଙ୍କର ଏଥିରେ ଦୋଷ କେଉଁଠି ରହିଲା ?

ପ୍ରଶ୍ନ-୩୪: ପ୍ରତ୍ୟେକ ଜୀବ ଦେହରେ ସେଇ ଏକ ନାରାୟଣ ଦେବ ପରମାତ୍ମା ରୂପରେ ଅଛନ୍ତି । ସେଇ ଦେବଙ୍କର ଅଂଶସବୁ ଦେବତା ନାମ ଧରି ଜୀବର ଭିନ୍ନ ଭିନ୍ନ ଅଙ୍ଗରେ ସଦା ବିଦ୍ୟମାନ । ଯଥା ଜୀବ ପାଦର ଦେବତା ବିଷ୍ଣୁ, ମସ୍ତକର ବ୍ରହ୍ମା, ଜିହ୍ୱାର ବରୁଣ, ହାତର ଇନ୍ଦ୍ର, ଚକ୍ଷୁର ଦେବତା ସୂର୍ଯ୍ୟ ଓ ମନର ଦେବତା ଚନ୍ଦ୍ର ଇତ୍ୟାଦି । କୌଣସି ଅଙ୍ଗରେ ପୀଡ଼ା ହେଲେ ବା ଜୀବ ସୁଖ ଦୁଃଖ ପାଇଲେ ସେ କିପରି ଦେବତାମାନଙ୍କୁ କାରଣ ବୋଲି କହିବ ନାହିଁ ?

**ଦୁଃଖସ୍ୟ ହେତୁଃ ଯଦି ଦେବତାଃ ତୁ**
**କିଂ ଆତ୍ମନଃ ତତ୍ର ବିକାରୟୋଃ ତତ୍ ।**
**ଯତ୍ ଅଙ୍ଗଂଅଙ୍ଗେନ ନିହନ୍ୟତେ କ୍ୱଚିତ୍**
**କ୍ରୁଧ୍ୟେତ କସ୍ମୈ ପୁରୁଷଃ ସ୍ୱଦେହେ ॥୫୨॥**

ଉ. ଭାଗବତରେ ବଢ଼ିଆ ଦୃଷ୍ଟାନ୍ତଟିଏ ଏଠାରେ ଖଞ୍ଜାଯାଇଛି କଥାଟିକୁ ପ୍ରାଞ୍ଜଳ କରିବା ନିମିତ୍ତ । ଏକ ଦେବଙ୍କର ଅଂଶ ସେଇ ସେଇ ଦେବତାମାନେ । ଦେବାଃ ନାରାୟଣ ଅଙ୍ଗଜାଃ । ଦେବତାମାନେ ଗୋଟିଏ ଗୋଟିଏ ଅଙ୍ଗରେ ରହୁଥିବା ବେଳେ ନାରାୟଣ ସମଗ୍ର ଶରୀରରେ ଚିନ୍ମୟ ରୂପ ଧରି ନିତ୍ୟ ବାସ କରୁଛନ୍ତି । ଅତଏବ କୁହନ୍ତୁ ଦେଖି ଗୋଡ଼କୁ ହାତ ଚିମୁଟିଲେ କାହା ଆଗରେ ଫେରାଦ କରିବା ?

ପ୍ରଶ୍ନ-୩୫: ଜୀବ ଭୋଗୁଥିବା ସୁଖ ଦୁଃଖର କାରଣ ନାରାୟଣ (ଆତ୍ମା) ହୋଇପାରନ୍ତି କି ?

**ଆତ୍ମା ଯଦି ସ୍ୟାତ୍ ସୁଖ ଦୁଃଖ ହେତୁଃ**
**କିଂ ଅନ୍ୟତଃ ତତ୍ର ନିଜ ସ୍ୱଭାବଃ ।**
**ନ ହି-ଆତ୍ମନୋଽନ୍ୟତ୍ ଯଦି ତତ୍ ମୃଷା ସ୍ୟାତ୍**
**କ୍ରୁଧ୍ୟେତ କସ୍ମାତ୍ ନ ସୁଖଂ ନ ଦୁଃଖମ୍ ॥୫୩॥**

ଉ. ଏଭଳି ସମ୍ଭାବନା ଏକାନ୍ତ ଅସମ୍ଭବ । ନାରାୟଣଙ୍କ ସ୍ୱଭାବ ଯଦି ଜୀବକୁ ସର୍ବଦା ସଂସାରରେ ଜନ୍ମଦେଇ ସୁଖ ଦୁଃଖ ଦେବା ତେବେ ଜଣେ ସୁଖ ଦୁଃଖରୁ ଉପରକୁ ଉଠି ପରମ ଆନନ୍ଦମୟ ସ୍ଥିତି ଲାଭ କରିବ କିପରି ? ଆତ୍ମା (ନାରାୟଣ) ଜୀବର ସୁଖ ଦୁଃଖର କାରଣ ଏ ଭାବନା ସର୍ବଥା ମିଥ୍ୟା (ମୃଷା) ଅଟେ ।

ପ୍ରଶ୍ନ-୩୬: ଲୋକେ ଦୁଃଖରେ ପଡ଼ିଲେ ଗ୍ରହଶାନ୍ତି ପାଇଁ ହୋମ ଯଜ୍ଞ ଆଦି କରନ୍ତି । ସୁଖ ଦୁଃଖର କାରଣ ଏହି ଶୁଭ ଅଶୁଭ ଗ୍ରହମାନେ ହୋଇ ଥାଆନ୍ତି କି ?

**ଗ୍ରହା ନିମିତ୍ତଂ ସୁଖ ଦୁଃଖୟୋଃ ଚେତ୍**
**କିଂ ଆତ୍ମନୋଽଜସ୍ୟ ଜନସ୍ୟ ତେ ବୈ ।**
**ଗ୍ରହୈଃ ଗ୍ରହସ୍ୟ-ଏବ ବଦନ୍ତି ପୀଡ଼ାଂ**
**କ୍ରୁଧ୍ୟେତ କସ୍ମୈ ପୁରୁଷଃ ତତୋଽନ୍ୟଃ ॥୫୪॥**

ଉ. ସେ କଥା ମଧ ଠିକ୍ ନୁହେଁ । ବୈଦିକ ଜ୍ୟୋତିଷ ଶାସ୍ତ୍ର ଅନୁସାରେ ଗ୍ରହମାନେ କେବଳ ଦେହର (ଗ୍ରହସ୍ୟ) ପୀଡ଼ାର କାରଣ । ଦେହର ସିନା ଜନ୍ମମରଣ ଅଛି । ଆତ୍ମା ପରା ଅଜନ୍ମା (ଅଜସ୍ୟ) । ଆତ୍ମା ଓ ଦେହ ଅଲଗା ଅଲଗା ତତ୍ତ୍ୱ । ଆତ୍ମା ଚେତନ ଓ ଦେହ ଜଡ଼ । ଜଡ଼ ଗ୍ରହ କିପରି ଜଡ଼ ଦେହକୁ ପୀଡ଼ାର ଅନୁଭବ କରେଇ ପାରିବ ?

ପ୍ରଶ୍ନ-୩୭: ତାହାହେଲେ ମନୁଷ୍ୟ ଶୁଭ ଅଶୁଭ କର୍ମ ବା ପାପ ପୁଣ୍ୟ କର୍ମ କରି ସୁଖ ଦୁଃଖ ଭୋଗିଥାଏ କି ?

**କର୍ମାଃ ତୁ ହେତୁଃ ସୁଖ ଦୁଃଖୟୋଃ ଚେତ୍**
**କିଂ ଆତ୍ମନଃ ତତ୍ ହି ଜଡ଼-ଅଜଡ଼ତ୍ତ୍ୱେ ।**
**ଦେହଃ ତୁ-ଅଚିତ୍ ପୁରୁଷୋଽୟଂ ସୁପର୍ଣ୍ଣଃ**
**କ୍ରୁଧ୍ୟେତ କସ୍ମୈ ନ ହି କର୍ମମୂଳମ୍ ॥୫୫॥**

ଉ. ଶାସ୍ତ୍ର ମତରେ କର୍ମ ସ୍ୱୟଂ ଜଡ଼ । ଦେହ ମଧ ଜଡ଼ । ଆତ୍ମା କିନ୍ତୁ ଚେତନ (ଅଜଡ଼ତତ୍ତ୍ୱ) । ଦେହରୂପୀ ଜଡ଼ ବୃକ୍ଷରେ ଆତ୍ମା ପରମାତ୍ମା ଦୁଇ ଚେତନ ଚଢ଼େଇ (ସୁପର୍ଣ୍ଣଃ) ବାସ କରୁଛନ୍ତି । ପରମ-ଆତ୍ମା କେବଳ ଦ୍ରଷ୍ଟା । କର୍ତ୍ତା କିମ୍ବା ଭୋକ୍ତା ନୁହନ୍ତି । ଚେତନ ଆତ୍ମା କିନ୍ତୁ ନିର୍ବିକାର । ଜଡ଼ କର୍ମ କିପରି ଚେତନ ଆତ୍ମାଙ୍କୁ ସୁଖ ଦୁଃଖ ଦେଇ ବିକାରଗ୍ରସ୍ତ କରିପାରିବ ?

ପ୍ରଶ୍ନ-୩୮ : ଛଅ କାରଣ ମଧ୍ୟରୁ ଶେଷ କାରଣ କାଳ ନିଶ୍ଚୟ ସେ ଅବନ୍ତୀ ବ୍ରାହ୍ମଣ ମହାତ୍ମାଙ୍କୁ ସୁଖ ଦୁଃଖ ଦେଉଥିବ କି ?

**କାଳଃ ତୁ ହେତୁଃ ସୁଖ ଦୁଃଖୟୋଃ ଚେତ୍**

**କିଂ ଆତ୍ମନଃ ତତ୍ର ତଦା-ଆତ୍ମକୋଽସୌ ।**

**ନ-ଅଗ୍ନେଃ ହି ତାପୋ ନ ହିମସ୍ୟ ତତ୍ସ୍ୟାତ୍**

**କ୍ରୁଧ୍ୟେତ କସ୍ମୈ ନ ପରସ୍ୟ ଦ୍ୱନ୍ଦ୍ୱମ୍ ॥୫୬॥**

ଉ. ତେବେ ସୁଖ ଦୁଃଖ, ଭଲ ମନ୍ଦ, ଧର୍ମ ଅଧର୍ମ, ଦୋଷ ଗୁଣ(ପରସ୍ୟ ଦ୍ୱନ୍ଦମ୍) ଆତ୍ମାଙ୍କୁ ଅନୁଭବ ହୁଏ କେମିତି ? କାଳ ଆତ୍ମାଙ୍କର ଏକ ଶକ୍ତି । ଆତ୍ମା ମୂଳ ଶକ୍ତିମାନ ହେଲେ କାଳ ତାଙ୍କର ଅଂଶ । ଆତ୍ମା କାରଣ ହେଲେ କାର୍ଯ୍ୟ କାଳ ହେଲା । କାର୍ଯ୍ୟ କ'ଣ କେବେ କାରଣକୁ ନଷ୍ଟ କରିପାରିବ ବା ପ୍ରଭାବିତ କରିପାରିବ ? ଅନେକ ଦୃଷ୍ଟାନ୍ତ ମଧ୍ୟରୁ ଏଠାରେ ଦୁଇଟି ସୁନ୍ଦର ଦୃଷ୍ଟାନ୍ତ ଦେଇଛନ୍ତି ସେ ମହାତ୍ମା । ଅଗ୍ନି ଓ ଶୀତଳତା ଉଭୟେ କାରଣ । ଉତ୍ତାପ ଓ ବରଫ ଯଥାକ୍ରମେ ସେ ଦୁହିଁଙ୍କର କାର୍ଯ୍ୟ । ଉତ୍ତାପ ସମସ୍ତଙ୍କୁ ଜଳେଇ ପାରିବ କିନ୍ତୁ ନିଜର କାରଣ ଅଗ୍ନିକୁ ଜଳାଇ ପାରିବ କି ? ବରଫ କ'ଣ କେବେ ବି ଶୀତଳତାକୁ ଶୀତଳ କରାଇ ପାରିବ ବା ପ୍ରଭାବିତ କରିପାରିବ କି ? ଠିକ୍ ସେଇ ଭଳି ବୀଜ କ'ଣ କେବେ ବୃକ୍ଷକୁ ନଷ୍ଟ କରିପାରିବ ? ହାତ ସମସ୍ତଙ୍କୁ ସିନା ଧରିପାରିବ ନିଜ ଧରିବା ଶକ୍ତି ଦ୍ୱାରା କେବେ କଅଣ ହାତକୁ ଧରିପାରିବ କି ?

ସୁତରାଂ ଭଲ ମନ୍ଦ, ସୁଖ ଦୁଃଖ, ଦୋଷ ଗୁଣ ଦର୍ଶନର ଅସଲି କାରଣଟି ଦର୍ଶେଇ ଦିଆଯିବ ପରବର୍ତ୍ତୀ ଶ୍ଳୋକରେ ସେ ମହାତ୍ମାଙ୍କ ଅନୁଭବାତ୍ମକ ତତ୍ତ୍ୱଜ୍ଞାନକୁ ପାଥେୟ କରି ।

ପ୍ରଶ୍ନ-୩୯ : ଜୀବର ଦ୍ୱନ୍ଦ୍ୱ ଅନୁଭୂତି (ଦୋଷ ଗୁଣ ଦର୍ଶନ) ଆଦି ଯୋଗୁ ଜନ୍ମ-ମରଣ ଚକ୍ରରେ ଘୂରିବାର ମୂଳ (ସଂସୃତି) କାରଣ ତେବେ କିଏ ?

**ନ କେନଚିତ୍ କ୍ୱ-ଅପି କଥଂଚନ-ଅସ୍ୟ**

**ଦ୍ୱନ୍ଦ୍ୱ-ଉପରାଗଃ ପରତଃ ପରସ୍ୟ ।**

**ଯଥା-ଅହମଃ ସଂସୃତି ରୂପିଣଃ ସ୍ୟାତ୍**

**ଏବଂ ପ୍ରବୃଦ୍ଧୋ ନ ବିଭେତି ଭୂତୈଃ ॥୫୭॥**

ଉ. ଜୀବର ସୁଖ ଦୁଃଖର କାରଣ କଦାପି ପିଲାଏ, ଦେବତା, ଭଗବାନ ,କାଳ ଓ କର୍ମ ନୁହନ୍ତି । ମନୁଷ୍ୟର ମନ ହିଁ ବିଷୟ ଭୋଗ ଲାଳସାରେ ବିଷୟ ଆଡ଼କୁ ଧାଇଁବାରୁ ନିଜକୁ ଦେହ ଭାବେ । ମୁଁ ମୋର ଅହନ୍ତା, ମମତା ରାଗ-ଦ୍ୱେଷ ଆଦି ସେଇ ମନରେ ଜନ୍ମ ନିଅନ୍ତି । ଅହଂକାର ସେମାନଙ୍କ ସେନାପତି । ସେଇ ଅହଂକାର (ଅହମଃ) ହିଁ ସୁଖ ଦୁଃଖ, ଭଲ ମନ୍ଦ ଦୋଷ ଗୁଣ ବିଚାର ଆଦିର କର୍ତ୍ତା ଓ ଭୋକ୍ତା ଉଭୟ । ଜଡ଼ ଦେହ (ପରତଃ) ନୁହେଁ କିମ୍ବା ନିର୍ବିକାରୀ ଚେତନ ଆତ୍ମା (ପରସ୍ୟ) ନୁହନ୍ତି । ଶେଷ ନିଷ୍କର୍ଷ ହେଲା ନିଜ ମନ ମଧ୍ୟସ୍ଥିତ ଅହଂକାର ସୁଖ ଓ ଦୁଃଖ ଉଭୟର କାର୍ଯ୍ୟ ଓ କାରଣ ବା କର୍ତ୍ତା ଓ ଭୋକ୍ତା ଉଭୟ ।

ଏଇ ରହସ୍ୟ ସଦ୍‌ଗୁରୁଙ୍କ ଆଶ୍ରୟରେ ରହି ବୁଝିନେବା ହିଁ ତତ୍ତ୍ୱଜ୍ଞାନ ପ୍ରାପ୍ତି । ସେତେବେଳେ ଜୀବ ଆଉ ମାୟାଧୀନ ନ ହୋଇ ମାୟାତୀତ (ପ୍ରବୃଦ୍ଧଃ) ହୋଇଯାଏ । ଅହଂକାର ଶୂନ୍ୟ ଶୁଦ୍ଧ ମନରେ ତେଣିକି ସେ ଦୁର୍ଜନକୁ ଦେବତାଙ୍କୁ, କାଳକୁ, କର୍ମକୁ ଗ୍ରହଙ୍କୁ ଓ ଆତ୍ମା ଇତ୍ୟାଦି କୌଣସି ପ୍ରାଣୀଙ୍କୁ (ଭୂତେଃ) ଭୟ ନକରି, ନିର୍ଭୟ ହୋଇ ( ନ ବିଭେତି) ସାଧୁ, ବୈଷ୍ଣବ ନାମରେ ଧରାପୃଷ୍ଠରେ ପରମ ଆନନ୍ଦରେ ହରିଭଜନ କରି କରି ବିଚରଣ କରିଥାଏ ।

ପ୍ରଶ୍ନ-୪୦: ଏ ପର୍ଯ୍ୟନ୍ତ ବିଶଦ ଭାବରେ ୬୦ ଶ୍ଳୋକରେ ବର୍ଣ୍ଣିତ ତତ୍ତ୍ୱଜ୍ଞାନ ବିଷୟକୁ ସଂକ୍ଷେପରେ ଗୋଟିଏ ଶ୍ଳୋକରେ କିପରି କୁହାଯାଇପାରିବ ?

**ତସ୍ମାତ୍ ସର୍ବ-ଆତ୍ମନା ତାତ ନିଗୃହାଣ ମନୋଧିୟା ।**
**ମୟି-ଆବେଶିତୟା ଯୁକ୍ତ ଏତାବାନ୍ ଯୋଗ ସଂଗ୍ରହଃ ॥୬୧॥**

ଉ. ଅଧ୍ୟାୟ ଉପସଂହାର ଶ୍ଳୋକରେ ଭଗବାନ କହିଲେ, ‘‘ହେ, ପ୍ରିୟ ଉଦ୍ଧବ (ତାତ) ଏଣିକି (ତସ୍ମାତ୍) କାୟ ମନୋବାକ୍ୟରେ (ସର୍ବ-ଆତ୍ମନା) ମନ ଓ ବୁଦ୍ଧି ଉଭୟକୁ ମୋତେ ସଂପୂର୍ଣ୍ଣ ସମର୍ପଣ କରି (ନିଗୃହାଣ)ମୋର ଶରଣାଗତ ହୋଇଯାଅ । ତୁମର ସକଳ ଅହଂକାରକୁ ପ୍ରସାଦ ରୂପରେ ଗ୍ରହଣ କରିନେବି ବୋଲି ମୁଁ ଏହାର ଠିକା ନେଉଛି । ଏହାହିଁ ସକଳ ଯୋଗ (କର୍ମ, ଜ୍ଞାନ, ଭକ୍ତି) ମାନଙ୍କର ସାର କଥା (ଯୋଗ ସଂଗ୍ରହଃ) । ଅତଏବ ତତ୍ତ୍ୱ ଜ୍ଞାନ ପ୍ରାପ୍ତି ମଧ୍ୟ ସାରୁପ୍ୟ ମୁକ୍ତି ଓ ଈଶ୍ୱର ଶରଣାଗତିର ଏକ ସୁନ୍ଦର ମାର୍ଗ ।

# ଅଥ ୨୪ଶ ଅଧ୍ୟାୟଃ

## (ବୈରାଗ୍ୟ ଦ୍ୱାରା ସାଂଖ୍ୟ ଦର୍ଶନ ତତ୍ତ୍ୱ ଅନୁଭବ ଓ ମନ ସଂଯମ)

### ଶ୍ରୀ ଶୁକ ଉବାଚ

ପ୍ରଶ୍ନ-୪୧ : ଭିକ୍ଷୁ ଗୀତା ପ୍ରସଙ୍ଗ ଶୁଣାଇ ସାରି ଭଗବାନ ଦେଖିଲେ ଉଦ୍ଧବଜୀ ଏହାକୁ ପାଳନ କରିବାରେ କାନ୍ଧରୁ ଯୁଆଳି ଖସାଇଲେଣି । ଏଭଳି ଅମାନୁଷିକ ନିର୍ଯାତନା ସହି ତତ୍ତ୍ୱଜ୍ଞାନ ପ୍ରାପ୍ତିର ପାତ୍ର ସେ ନୁହନ୍ତି । ସୁତରାଂ ଆହୁରି ଏକ ସରଳତମ ଉପାୟ କିଛି ଅଧିକାରୀ ଲୋକଙ୍କ ପାଇଁ ତାଙ୍କ ନିଜ ପଟୁ ଉପଦେଶ ଦେଲେ । ଏହା ହିଁ ସାଂଖ୍ୟ (ବିବେକ) ଦର୍ଶନ ଅଧ୍ୟାୟର ବିଷୟ ବସ୍ତୁ । ଏଥିରେ କର୍ମ କରିବା, ଧର୍ମ, ଦାନ, ବ୍ରତ, ତପ, ଜପ, ତୀର୍ଥ, ସାଧୁ ସେବା ଆଦି କିଛି କରିବାକୁ ପଡ଼େନା । ଲୋଡ଼ା ପଡ଼େ ସୃଷ୍ଟି ପ୍ରଳୟର ତତ୍ତ୍ୱ ଚିନ୍ତନ କେବଳ । ତାର ନାମ ସାଂଖ୍ୟ ଦର୍ଶନ । ସ୍ରଷ୍ଟା ଓ ସୃଷ୍ଟି ପ୍ରଳୟ ବେଳେ ପୁଣି ପ୍ରଳୟ ପରେ ସୃଷ୍ଟିର ଆଦି ମନ୍ୱନ୍ତରର (ଆଦୌ) ଆଦିଯୁଗ ସତ୍ୟଯୁଗରେ (ଅଯୁଗେ) ଭିନ୍ନ ନ ଥାଇ (ଅବିକଳ୍ପିତଂ) ଅଭିନ୍ନ (ଏକଂ ଏବ) ବା ଏକ ଥାଆନ୍ତି । ସେତେବେଳେ ପ୍ରକଟ ହୋଇଥିବା ମୁନି, ଋଷି, ସାଧୁମାନେ ସମସ୍ତେ ସତ୍ତ୍ୱଗୁଣୀ (ବିବେକ ନିପୁଣା) ଥାଆନ୍ତି । ଅଭିନ୍ନ ସୃଷ୍ଟି ସ୍ରଷ୍ଟା ପୃଥକ ବା ଭିନ୍ନ ହୁଅନ୍ତି କାହିଁକି ?

**ଆସୀତ୍ ଜ୍ଞାନଂ ଅଥ-ହି-ଅର୍ଥ ଏକଂ ଏବ-ଅବିକଳ୍ପିତମ୍ ।**
**ଯଦା ବିବେକ ନିପୁଣା ଆଦୌ କୃତ ଯୁଗେଽଯୁଗେ ।।୨।।**

ଉ. ପରମାତ୍ମା ନାରାୟଣ ଲୀଳାମୟ ଓ ଇଚ୍ଛାମୟ । ସେ ଇଚ୍ଛା କରନ୍ତି ପ୍ରଳୟ ପରେ ସୃଷ୍ଟି ହେବାର ସମୟ ହେଲାଣି । ବ୍ରହ୍ମା, ବିଷ୍ଣୁ, ଶଙ୍କରଙ୍କୁ ନିଯୁକ୍ତ କରି ପୁଣି ଜୀବ କଲ୍ୟାଣ (ପ୍ରେମ ପ୍ରାପ୍ତି) ନିମିତ୍ତ ସେ ନିଜ ଦିବ୍ୟ ଅଙ୍ଗରୁ ଜଡ଼ମାୟାଶକ୍ତିକୁ ଭୋଗ୍ୟ ବ୍ରହ୍ମରୂପେ ଓ ଜୀବ ଶକ୍ତି ସମୂହକୁ ଭୋକ୍ତା ବ୍ରହ୍ମରୂପେ ପ୍ରକଟ କରାନ୍ତି । ଏକମାତ୍ର ଉଦ୍ଦେଶ୍ୟ (ଅର୍ଥ) ଜୀବକୁ ଦୁଃଖ-ସୁଖ ଲୋଭରୁ ମୁକ୍ତ କରି ସେମାନଙ୍କୁ ଆନନ୍ଦ ଦେଇ ନିଜେ ମଧ ଆନନ୍ଦ ପ୍ରାପ୍ତ କରିବା । ବାସ୍ ଅନ୍ୟ କୌଣସି ଉଦ୍ଦେଶ୍ୟ ତାଙ୍କର ନଥାଏ । ଏଥର ଭଗବାନ ସୃଷ୍ଟି ଓ ବିଲୟ ପ୍ରକ୍ରିୟା ବର୍ଣ୍ଣନ କରିବେ ।

ପ୍ରଶ୍ନ-୪୨ : ପ୍ରକୃତି ବା ମାୟା ସର୍ବଦା ସତ୍ତ୍ୱ, ରଜ, ତମୋରୂପୀ ତ୍ରିଗୁଣାତ୍ମିକା ପୁଣି ଜଡ଼ ଅଟନ୍ତି । ଜଡ଼ମାୟା କ୍ରିୟାଶୀଳ ହୋଇ ଯଥାକ୍ରମେ ଜ୍ଞାନଶକ୍ତି, କ୍ରିୟାଶକ୍ତି ଓ ଇଚ୍ଛାଶକ୍ତି ରୂପେ କାର୍ଯ୍ୟ ଆରମ୍ଭ କିପରି କରନ୍ତି ?

**ତମୋ ରଜଃ ସତ୍ତ୍ୱଂଇତି ପ୍ରକୃତେଃ ଅଭବତ୍ ଗୁଣାଃ ।**
**ମୟା ପ୍ରକ୍ଷୋଭ୍ୟମାଣାୟାଃ ପୁରୁଷ ଅନୁମତେନ ଚ ॥୫॥**

ଉ. ନାରାୟଣଙ୍କ ଦ୍ୱାରା (ମାୟା) ଈକ୍ଷଣ କରାଯାଆନ୍ତେ ପ୍ରକୃତିଙ୍କର ତିନି ଗୁଣରେ ବିକାର ଜାତ ହୁଏ (ପ୍ରକ୍ଷୋଭ୍ୟମାଣାୟାଃ) । ଅନ୍ୟ ଶବ୍ଦରେ ପ୍ରକୃତି କ୍ଷୁଭିତ ବା କ୍ରିୟାଶୀଳ ହୁଅନ୍ତି । ସୃଷ୍ଟି ପ୍ରକ୍ରିୟାର ଶୁଭାରମ୍ଭ ହୁଏ ।

ପ୍ରଶ୍ନ-୪୩: ଜ୍ଞାନ ଶକ୍ତି, କ୍ରିୟାଶକ୍ତି ଓ ଇଛା ଶକ୍ତିଙ୍କ ଅନ୍ୟନାମ ତିନି ମିଥ୍ୟା ଅହଂକାର । ସାତ୍ତ୍ୱିକ ଅହଂକାରରୁ ଏକାଦଶ ଇନ୍ଦ୍ରିୟଙ୍କ ଦେବତା, ରାଜସିକ ଅହଂକାରରୁ ଦଶ ଇନ୍ଦ୍ରିୟଙ୍କ ସହିତ ମନ ଓ ତାମସିକ ଅହଂକାରରୁ ପଞ୍ଚ ତନ୍ମାତ୍ରା ଓ ପଞ୍ଚ ମହାଭୂତ ଅଲଗା ଅଲଗା ସୃଷ୍ଟି ହୁଅନ୍ତି । ବ୍ରହ୍ମଙ୍କ ବ୍ୟତୀତ ସେମାନେ ନିଜ ନିଜ ଦାୟିତ୍ୱ ସମ୍ଭାଳିବାରେ ଅସମର୍ଥ ହୁଅନ୍ତେ ପ୍ରାଣ ବା ସୂତ୍ରାତ୍ମା ରୂପରେ ତନ୍ମଧ୍ୟରେ ନିଜେ ବ୍ରହ୍ମ ପ୍ରବେଶ କରି ସେମାନଙ୍କ ମଧ୍ୟରେ ସଂହତି ସ୍ଥାପନ କରିବାରୁ କି ଅବସ୍ଥା ହୁଏ ସୃଷ୍ଟିର ?

**ମୟା ସଂଚୋଦିତା ଭାବାଃ ସର୍ବେ ସଂହତି-ଅକାରିଣଃ ।**
**ଅଣ୍ଡଂ ଉତ୍ପାଦୟାମାସୁଃ ମମ-ଆୟତନଂ ଉତ୍ତମମ୍ ॥୯॥**

ଉ. ପରମାତ୍ମା ନାରାୟଣଙ୍କ କୃପାରୁ ଏକ ଦିବ୍ୟ ଅଣ୍ଡର ଉଦ୍ଭବ ବା ପ୍ରାକଟ୍ୟ ହେଲା । ସେହି ଅଣ୍ଡାଟି ନାରାୟଣଙ୍କର (ମମ) ନିବାସ ସ୍ଥଳ (ଆୟତନଂ) ଅଟେ । ନାର ଶବ୍ଦର ଅର୍ଥ ଦିବ୍ୟ ଅପ୍ରାକୃତ କାରଣ ଜଳଧି । ସେଥିରେ ଶୟନ କରନ୍ତେ ଶୟନକାରୀଙ୍କ ନାମ ନାରାୟଣ ହେଲା । ସେହି ସଗୁଣ ସାକାର ଭଗବାନଙ୍କ ନାଭି କମଳରୁ ଏକ ଅଲୌକିକ ପଦ୍ମ ପ୍ରକଟିତ ହେଲା । ତନ୍ମଧ୍ୟରୁ ଚତୁର୍ମୁଖୀ ବ୍ରହ୍ମା ପ୍ରକଟିତ ହୁଅନ୍ତେ ତାଙ୍କ ନାମ ପଦ୍ମଭବ ହେଲା ।

ପ୍ରଶ୍ନ-୪୪: ଏବେ ବ୍ରହ୍ମଦେବ ତପ ତପ ଶବ୍ଦ ଶ୍ରବଣ କରି ଗଭୀର ତପସ୍ୟାମଗ୍ନ ହେଲେ । ତାଙ୍କର ମୂଳସ୍ରୋତ ନାରାୟଣ କୃପାକରି (ଅନୁଗ୍ରହାତ୍) ତାଙ୍କୁ ଦର୍ଶନ ଦେଲେ । ସୃଷ୍ଟି ପ୍ରକଟ କରିବାର ଆଦେଶ ଦେଲେ । ବ୍ରହ୍ମାଜୀ ସେତେବେଳେ କିଭଳି ସୃଷ୍ଟି ନିର୍ମାଣର ଶ୍ରୀଗଣେଶ କଲେ ?

**ସୋଽସୃଜତ୍ ତପସାଯୁକ୍ତୋ ରଜସା ମତ୍ ଅନୁଗ୍ରହାତ୍ ।**
**ଲୋକାନ୍ ସପାଳାନ୍ ବିଶ୍ୱ-ଆତ୍ମା ଭୂଃ ଭୁବଃ ସ୍ୱଃ ଇତି ତ୍ରିଧା ॥୧୧॥**

ଉ. ବ୍ରହ୍ମଦେବ (ବିଶ୍ୱ-ଆତ୍ମା) ସର୍ବପ୍ରଥମେ ନର, ବାନର, ପଶୁ, ପକ୍ଷୀ, ବୃକ୍ଷ, ଲତା ଇତ୍ୟାଦି ମରଣଶୀଳ ସ୍ଥୂଳଦେହଧାରୀ ପ୍ରାଣୀ ମାନଙ୍କ ବସବାସ ନିମିତ୍ତ ଭୂଃଲୋକ ପ୍ରକଟ କଲେ । ଭୂତ, ପ୍ରେତ, ପିଶାଚ ଅଦି ବାୟୁ ତତ୍ତ୍ୱଧାରୀ ଜୀବଙ୍କ ପାଇଁ ଭୁବଃ ଲୋକ ଓ ଦେବତା, ଋଷି, ମୁନି ଆଦିଙ୍କ ବାସ ନିମିତ୍ତ ସ୍ୱଲୋକ ନିର୍ମାଣ କଲେ ।

ପ୍ରଶ୍ନ-୪୫: ପୁଣି ପୃଥିବୀର ନିମ୍ନରେ ସପ୍ତପାତାଳ ଲୋକରେ ଅସୁର, ନାଗ ଆଦିଙ୍କ ଲାଗି ସପ୍ତପାତାଳ ବ୍ରହ୍ମାଜୀ ସୃଷ୍ଟି କଲେ । ଏହି ଭୂଃ, ଭୁବଃ ଓ ସ୍ୱଃ ତିନିଲୋକରେ ପାପ, ପୁଣ୍ୟ କିମ୍ବା ଉଭୟ କର୍ମ କରି ଫଳ ଭୋଗିବାକୁ ଜୀବମାନେ ଉଠ ପଡ଼ ହେବେ । ନିଷ୍କାମ କର୍ମଯୋଗୀଙ୍କ ପାଇଁ ସେ କି ବ୍ୟବସ୍ଥା କଲେ ?

**ଯୋଗସ୍ୟ ତପସା ଚ-ଏବ　　ନ୍ୟାସସ୍ୟ ଗତୟୋଽମଳାଃ ।**
**ମହଃ ଜନଃ ତପଃ ସତ୍ୟଂ　　ଭକ୍ତି ଯୋଗସ୍ୟ ମଦ୍‌ଗତିଃ ॥୧୪॥**

ଉ. ବ୍ରହ୍ମଚାରୀଙ୍କ ନିମିତ୍ତ (ଯୋଗସ୍ୟ) ମହଲୋକ, ବାନପ୍ରସ୍ଥୀଙ୍କ ପାଇଁ ଜନଲୋକ, ସନ୍ନ୍ୟାସୀଙ୍କ ପାଇଁ ତପଲୋକ ଓ ଭକ୍ତମାନଙ୍କ ପାଇଁ (ମନ୍ତଗତିଃ) ବୈକୁଣ୍ଠ ବା ସତ୍ୟଲୋକ ପ୍ରକଟ କରିଦେଲେ ।

## ସପ୍ତଲୋକବାସୀଙ୍କ ବିବରଣୀ

| କ୍ର.ସଂ | ସପ୍ତସ୍ୱର୍ଗର ନାମ | ମନ ଦୋଷ କିମ୍ବା ଗୁଣ ଯୁକ୍ତ | କାହାର ବାସସ୍ଥାନ |
|---|---|---|---|
| ୧. | ସତ୍ୟ | ମନ ଭକ୍ତିଯୁକ୍ତ ଥିଲେ | ବ୍ରହ୍ମା, ବିଷ୍ଣୁ, ଶଙ୍କର ଓ ତାଙ୍କ ଭକ୍ତଗଣ |
| ୨. | ତପଃ | କେବଳ ଈର୍ଷା ଅବଶିଷ୍ଟ ଥିଲେ | ନିଜ ଭକ୍ତମାନଙ୍କ ସହ ସିଦ୍ଧଗଣ |
| ୩. | ଜନଃ | ଈର୍ଷା ଓ ଗର୍ବ (ମଦ) ଥିଲେ | ମୁନି, ଋଷି ଗଣ |
| ୪. | ମହଃ | ଈର୍ଷା, ଗର୍ବ ଓ ମୋହ ଥିଲେ | ବ୍ରହ୍ମଚାରୀଗଣ |
| ୫. | ସ୍ୱଃ | ଷଡ଼ରିପୁ ଥାଇ କାମ ପ୍ରବଳ ଥିଲେ | ଦେବ, ଗନ୍ଧର୍ବ, କିନ୍ନର ଆଦି |
| ୬. | ଭୁବଃ | ଷଡ଼ରିପୁ ଥାଇ କ୍ରୋଧ ପ୍ରବଳ ଥିଲେ | ଅସୁରଗଣ ଓ ଭୂତ, ପ୍ରେତ |
| ୭. | ଭୂଃ | ଷଡ଼ରିପୁ ଥାଇ ଲୋଭ ପ୍ରବଳ ଥିଲେ | ନରଗଣ ଓ ଇତର ଗଣ |

ପ୍ରଶ୍ନ-୪୬: ଚତୁର୍ଦ୍ଦଶ ଭୁବନ (ସପ୍ତ ସ୍ୱର୍ଗ ଓ ସପ୍ତ ପାତାଳ) ମଧ୍ୟରେ ସକଳ ଜଡ଼ ଚେତନ ଓ ଚର ଅଚରଙ୍କ ରହିବା ବ୍ୟବସ୍ଥା ହେଲା । ପୁଣି ପିମ୍ପୁଡ଼ି ଠାରୁ ବ୍ରହ୍ମା ପର୍ଯ୍ୟନ୍ତ ଓ କ୍ଷୁଦ୍ର ଗୁଳ୍ମଠାରୁ ବୃକ୍ଷ ପର୍ଯ୍ୟନ୍ତ ସମସ୍ତଙ୍କ ଜଡ଼ ଦେହରେ ଚେତନ ଆତ୍ମା ବିରାଜମାନ କଲେ ।

ଯାହା ଦିନେ ପରମାତ୍ମାଙ୍କ ଦେହରେ ଅଦୃଶ୍ୟ ଥିଲା ଏବେ ତାହା ଅସଂଖ୍ୟ ନାମ ରୂପରେ ଦୃଶ୍ୟମାନ ହେଲା । ସମସ୍ତଙ୍କର ସେଇ ଗୋଟିଏ ଲକ୍ଷ୍ୟ କର୍ମ ଜ୍ଞାନର ସିଡ଼ି ଚଢ଼ିବେ । ପରମାତ୍ମାଙ୍କ ଶରଣାଗତ ହୋଇ ଭକ୍ତି କରିବେ ଓ ଚରମ ପରମ ଆନନ୍ଦ ପ୍ରାପ୍ତ ହେବେ । ଏକ ପରମାତ୍ମାଙ୍କ ଆଶ୍ରୟରେ ରହି ବ୍ରହ୍ମା, ବିଷ୍ଣୁ, ଶଙ୍କର ଆଦି ଦେବୀ ଦେବତା ଗଣ ନିଜେ ଭକ୍ତି କରି ଅନ୍ୟକୁ ଭକ୍ତି କରାଇ ନାରାୟଣଙ୍କୁ ପ୍ରସନ୍ନ କରିବେ । ସୃଷ୍ଟି ପାଳନ, ସଂହାର କ୍ରିୟାରେ ଭାଗ ନେଉଥିବା ଭଗବତ ଅଂଶକୁ ତତ୍ତ୍ୱ କୁହାଗଲେ ପରମେଶ୍ୱର (ବିରାଟମୟ-ଅସାଦ୍ୟ) ରୂପୀ ଆଶ୍ରୟ ବା ଆଧାରଙ୍କୁ ତେବେ କ'ଣ କୁହାଯିବ ?

**ବିରାଟ୍‌ମୟ-ଆସାଦ୍ୟମାନୋ ଲୋକ କଳ୍ପ ବିକଳ୍ପକଃ ।**
**ପଞ୍ଚତ୍ୱାୟ ବିଶେଷାୟ କଳ୍ପତେ ଭୁବନୈଃ ସହ ॥୨୧॥**

ଉ. ଭକ୍ତମାନଙ୍କ ପାଇଁ ଯେ ନାରାୟଣ, ବିରାଟ, ବିଷ୍ଣୁ, ରାମ, କୃଷ୍ଣ ଭଗବାନ (ସଃ), ଜ୍ଞାନୀମାନଙ୍କ ଦୃଷ୍ଟିରେ ସେ ତତ୍ ଅଟନ୍ତି । ତାଙ୍କୁ ଆଶ୍ରୟ କରି (ଆସାଦ୍ୟମାନେ) ଅନନ୍ତକାଳରୁ ଏହି ସୃଷ୍ଟି କ୍ରିୟା । (କଳ୍ପ) ବିଲୟକ୍ରିୟା (ବିକଳ୍ପ) ବାରମ୍ବାର ଚାଲୁ ରହିଛି । ଚତୁର୍ଦ୍ଦଶ ଭୁବନାତ୍ମକ ସୃଷ୍ଟିରୁ ପ୍ରଳୟକୁ (ପଞ୍ଚତ୍ୱାୟ) ଓ ପ୍ରଳୟରୁ ସୃଷ୍ଟି ପ୍ରକଟ ହେବାକୁ (ବିଶେଷାୟ) ତତ୍ତ୍ୱଜ୍ଞାନ, ବିବେକଜ୍ଞାନ ବା ସାଂଖ୍ୟ ଦର୍ଶନ କୁହାଯାଏ ।

ପ୍ରଶ୍ନ-୪୭: ଭଗବାନ ଶ୍ରୀ ଶୁକଦେବଜୀ ଏତେ ଦୀର୍ଘ (୨୧) ଶ୍ଳୋକରେ ସୃଷ୍ଟି ପ୍ରକ୍ରିୟା ବର୍ଣ୍ଣନା କରି ଏବେ ବିଲୟ ପ୍ରକ୍ରିୟା ବର୍ଣ୍ଣନର ଶୁଭାରମ୍ଭ କଲେ କେମିତି ?

**ଅପ୍‌ସୁ ପ୍ରଲୀୟତେ ଗନ୍ଧ ଆପଃ ଚ ସ୍ୱଗୁଣେ ରସେ ।**
**ଲୀୟତେ ଜ୍ୟୋତିଷି ରସୋ ଜ୍ୟୋତିଃ ରୂପେ ପ୍ରଲୀୟତେ ॥୨୩॥**

ଉ. ପ୍ରଳୟ ପ୍ରକ୍ରିୟା ଆରମ୍ଭ ହୁଏ ସୂର୍ଯ୍ୟଙ୍କ ପ୍ରଚଣ୍ଡ ଅଗ୍ନିତେଜର ବର୍ଷାରେ । ସେତେବେଳକୁ ସ୍ଥୂଳ ପଦାର୍ଥ ସବୁ ମିଳେଇ ଯାଇଥାନ୍ତି ଜଳ ତତ୍ତ୍ୱରେ । ଏବେ ଜଳତତ୍ତ୍ୱ ମିଶିଯାଏ ଅଗ୍ନି ତତ୍ତ୍ୱରେ ଓ ପରେ ପରେ ଅଗ୍ନି ବାୟୁରେ ଓ ବାୟୁ ଆକାଶ

ତତ୍ତ୍ୱରେ ମିଶି ମହାଶୂନ୍ୟ ରୂପ ଧାରଣ କରେ ।

ପଞ୍ଚ ମହାଭୂତ ଅଦୃଶ୍ୟ ହୁଅନ୍ତି ପଞ୍ଚତନ୍ମାତ୍ରାରେ ମିଶି । ପଞ୍ଚ ତନ୍ମାତ୍ର ଧାରଣ କରନ୍ତି ତାମସ ଅହଂକାରର ରୂପ । ଏକାଦଶ ଇନ୍ଦ୍ରିୟ ରାଜସ ଅହଂକାରରେ ଓ ସେମାନଙ୍କ ଦେବତା ସାତ୍ତ୍ୱିକ ଅହଂକାର ରୂପ ଧାରଣ କରନ୍ତି । ତିନି ଅହଂକାର ମହତତ୍ତ୍ୱରେ ଓ ମହତତ୍ତ୍ୱ ପ୍ରକୃତିରେ ପରିଣତ ହୁଅନ୍ତି । ସମଷ୍ଟି ପ୍ରକୃତି ଓ ସମଷ୍ଟି ଆତ୍ମା ପୁଣି ପରମାତ୍ମାଙ୍କ ଠାରେ ଅଦୃଶ୍ୟ ହୁଅନ୍ତି । ଏହିଭଳି ସଂପୂର୍ଣ୍ଣ ହୁଏ ବିଳୟ ପ୍ରକ୍ରିୟା ।

ପ୍ରଶ୍ନ-୪୮ : ବିବେକ ବୈରାଗ୍ୟ ଦ୍ୱାରା ଏହି ସୃଷ୍ଟି ପ୍ରଳୟ କ୍ରିୟାକୁ ତତ୍ତ୍ୱତଃ ବୁଝିଗଲେ (ଏବଂ ଅନ୍ୱୀକ୍ଷମାଣସ୍ୟ) ସାଧକର ମନ ଓ ହୃଦୟରେ କି ବିଲକ୍ଷଣ ପରିବର୍ତ୍ତନ ହୁଏ ?

**ଏବଂ ଅନ୍ୱୀକ୍ଷମାଣସ୍ୟ କଥଂ ବୈକଳ୍ପିକୋ ଭ୍ରମଃ ।**
**ମନସୋ ହୃଦି ତିଷ୍ଟତେ ବ୍ୟୋମ୍ନି ବା-ଅର୍କ-ଉଦୟେ ତମଃ ॥୨୮॥**

ଉ. ଯେଉଁ ତତ୍ତ୍ୱଜ୍ଞାନ ଅଭାବରେ ଜ୍ଞାନୀର ମନ, ବୁଦ୍ଧି ଚଞ୍ଚଳ ହେଉଥିଲେ, ଦ୍ୱୈତ ଅଦ୍ୱୈତ ଝମେଲାରେ ସନ୍ତୁଳିତ ହେଉଥିଲେ ଏବଂ ଭ୍ରମିତ ହେଉଥିଲେ ସେ ଭ୍ରମ ସୁଖ-ଦୁଃଖ, ଭଲ-ମନ୍ଦ, ଦୋଷ-ଗୁଣ, ଧର୍ମ-ଅଧର୍ମ ଦ୍ୱନ୍ଦ୍ୱ ଏହି ତତ୍ତ୍ୱଜ୍ଞାନ ଦ୍ୱାରା ସଂପୂର୍ଣ୍ଣ ଦୂରିଭୂତ ହୋଇଯାଏ । ଆକାଶରେ ଯଦି ସୂର୍ଯ୍ୟ ଉଦୟ ହୁଅନ୍ତି ତେବେ ଆଉ ଅନ୍ଧକାର ରହିବାକୁ ସ୍ଥାନ ପାଇପାରେ କି ? ଅର୍ଥାତ୍ ପାଇପାରେନା ।

ଭକ୍ତ ସାଧନା ଆରମ୍ଭ କରେ ଦ୍ୱୈତ ଉପାସନାରୁ ପହଞ୍ଚେ ଅଦ୍ୱୈତ ଚିନ୍ତନରେ । ବିପରୀତ ପକ୍ଷେ ଜ୍ଞାନମାର୍ଗୀ ସାଧନ ଆରମ୍ଭ କରେ ଅଦ୍ୱୈତ ଚିନ୍ତନରୁ ଓ ପହଞ୍ଚୁଥାଏ ଦ୍ୱୈତ ଉପାସନାରେ । ଅତଏବ ଦ୍ୱୈତ-ଅଦ୍ୱୈତର ମଧୁର ସମନ୍ୱୟ ଏହି ତତ୍ତ୍ୱଜ୍ଞାନ ଉପଲବ୍ଧି । ଏହି ଉପଲବ୍ଧି ପରେ ଜ୍ଞାନୀ ଭକ୍ତ ଆଉ ଏଣିକି ସାରୂପ୍ୟ ମୁକ୍ତି ନ ଚାହିଁ କୃଷ୍ଣପ୍ରେମ ଆଡ଼କୁ ମୁହାଁଏ ।

# ୪୦.ସାରୂପ୍ୟ ମୁକ୍ତି ପ୍ରକରଣ ସାର

## ଅଧ୍ୟାୟ ୧୯ଶ-୨୪ଶ

ଶ୍ରୀକୃଷ୍ଣଙ୍କର ମାଧୁର୍ଯ୍ୟ ରସର ଅନଧିକାରୀ ସାଧକ ସ୍ୱତଃ ଭଗବାନ ନାରାୟଣଙ୍କ ଐଶ୍ୱର୍ଯ୍ୟ ପ୍ରତି ଆକୃଷ୍ଟ ହୁଏ । ସୌଭାଗ୍ୟକ୍ରମେ ଯଦି ବିଚରା ସାଯୁଜ୍ୟମୁକ୍ତି ହାବୁଡ଼ରୁ ଖସିଯାଏ ତେବେ ଐଶ୍ୱର୍ଯ୍ୟ ଜାଲରେ ପଡ଼ିଥାଏ । ସାଲୋକ୍ୟ ଓ ସାମୀପ୍ୟ ମୁକ୍ତି ଲାଳସାର ଉପରକୁ ଉଠି ଏବେ ସାଧକ ମହାଶୟ ଲକ୍ଷ୍ମୀ ନାରାୟଣଙ୍କ ଦରବାରରେ ସାରୂପ୍ୟ ମୁକ୍ତି ପାହାଚରେ ପହଞ୍ଚିଛନ୍ତି ।

ଛଅ ଅଧ୍ୟାୟ ବିଶିଷ୍ଟ ଏହି ପ୍ରକରଣର ପ୍ରଥମ ଦୁଇ ଅଧ୍ୟାୟ କର୍ମ-ଜ୍ଞାନ-ଭକ୍ତିର ବିଶେଷ ଆଲୋଚନା କରିଛନ୍ତି । ପ୍ରଥମେ ସାଧନା ଅବସ୍ଥା ଓ ପରେ ସିଦ୍ଧ ଅବସ୍ଥାକୁ କେନ୍ଦ୍ର କରି । ଜୀବ ଚାରି ଲକ୍ଷ ନର ବାନର ଯୋନିରେ ଅନେକ ଜନ୍ମ ଜନ୍ମାନ୍ତର ଦୁଃଖ କଷ୍ଟ ଭୋଗ କରି ତମଗୁଣର ଆବେଗରୁ ମୁକ୍ତ ହେଲେ ସତ୍ତ୍ୱ ରଜୋ ଗୁଣୀ ସ୍ୱଭାବ ହେତୁ ସେ ନିଷ୍କାମ କର୍ମ କରିବାର ପ୍ରେରଣା ପାଏ । ତାଙ୍କୁ ସେହି କର୍ମଯୋଗ ସ୍ତରର ଗୁରୁ ମାର୍ଗଦର୍ଶନ କରନ୍ତି, ନାରାୟଣଙ୍କର ଐଶ୍ୱର୍ଯ୍ୟ ଦେଖାନ୍ତି ସତ କିନ୍ତୁ ଦେବତା ହୋଇ ସ୍ୱର୍ଗରେ ବିଳାସ କରିବାକୁ ନୁହେଁ । ବରଂ ନିଷ୍କାମ କର୍ମ କରି ସେ ଅନ୍ତଃକରଣ ଶୁଦ୍ଧ କରୁ । ଯଦି ତୀବ୍ର ବୈରାଗ୍ୟ ଉତ୍ପନ୍ନ ହେଲା ତ ଜ୍ଞାନ ମାର୍ଗ ସାଧନାରେ ଲାଗୁ ନଚେତ କର୍ମଯୋଗକୁ ଭକ୍ତି ଯୋଗରେ ରୂପାନ୍ତରଣ କରିଦେଉ ।

ସ୍ୱରୂପରେ କର୍ମ ତ୍ୟାଗ କରୁ କିମ୍ବା ନକରି ନାରାୟଣଙ୍କ ଐଶ୍ୱର୍ଯ୍ୟ ଲୋଭରେ ବିଭୂତି ଚିନ୍ତନରେ ମନ ଲଗାଇ ସେ ଅଧ୍ୟାତ୍ମମାର୍ଗରେ ଅଗ୍ରସର ହୁଏ ନିଶ୍ଚୟ । ମହାବୈକୁଣ୍ଠରେ ଐଶ୍ୱର୍ଯ୍ୟ ଦରବାର ତାକୁ ଅନେକ କାଳ ଧରି ବାନ୍ଧିଥାଏ ଅବଶ୍ୟ କିନ୍ତୁ ସବୁଦିନ ପାଇଁ ନୁହେଁ । ଭକ୍ତର ସାମୀପ୍ୟ ମୁକ୍ତି କଦାପି ସାମାନ୍ୟ ମୁକ୍ତି ନୁହେଁ । ସେଠାରେ ବହୁତ ଉଚ୍ଚସ୍ତରର ଆନନ୍ଦ ପ୍ରାପ୍ତ ହୁଏ ସାଧକ । ସାଧକ ବିଚାର କରେ ବାସ୍ତବରେ ଏ ଦିବ୍ୟ ଦରବାରରେ ସେବା ଅଭିଳାଷୀ ଭକ୍ତମାନେ କେବଳ ସାରୂପ୍ୟ ମୁକ୍ତିର ଭରପୂର ଆନନ୍ଦ ଉଠାଇପାରୁଛନ୍ତି । ଅତଏବ ତୀବ୍ର ସେବା ଅଭିଳାଷ ସାଧକକୁ ଭଗବାନଙ୍କ କୃପାର ପାତ୍ର କରିଦିଏ । ଭଗବାନ ନାରାୟଣ ସର୍ବାନ୍ତର୍ଯ୍ୟାମୀ ଓ ସର୍ବସମର୍ଥ । ଶେଷରେ ତାଙ୍କ କୃପାରୁ ଭକ୍ତକୁ ସଚ୍ଚିଦାନନ୍ଦ ସ୍ୱରୂପର ମୁକ୍ତି ମିଳିଯାଏ ।

ତୃତୀୟ ଅଧ୍ୟାୟରେ କର୍ମ, ଜ୍ଞାନ ଓ ଭକ୍ତିର ଅପାତ୍ର ସକାମ କର୍ମୀଙ୍କ ପାଇଁ ବେଦରେ ଦୋଷ-ଗୁଣ ସଂସାର ବ୍ୟବହାର ପାଇଁ, ଶୁଦ୍ଧି-ଅଶୁଦ୍ଧି ଧର୍ମ ଅର୍ଜନ ପାଇଁ

ଏବଂ ଶୁଭ-ଅଶୁଭ ଜୀବନ ନିର୍ବାହ ପାଇଁ କର୍ମ-ଅକର୍ମ-ବିକର୍ମ ବିଚାର କର୍ମ କରିବାବେଳେ ସତର୍କ ହେବା ପାଇଁ ଖଞ୍ଜାଯିବା ରହସ୍ୟ ଭଗବାନ ଉଦ୍ଧବଙ୍କୁ ବୁଝାଇଛନ୍ତି ।

ଆଧ୍ୟାତ୍ମ ସାଧନାରେ ନରଦେହର ଭୌତିକ ରୂପ ବଦଳୁ ନଥିଲେ ମଧ୍ୟ ସାଧନା କାଳଯାକ ତାର ଅନ୍ତଃକରଣ ମନ-ବୁଦ୍ଧି-ଚିତ୍ତ-ଅହଂକାରର ରୂପ ବଦଳୁଥାଏ । ଏହାକୁ ବୁଝାଇବାକୁ ଯାଇ ଭଗବାନ ପ୍ରକୃତି ପୁରୁଷ ବିବେକ ରୂପୀ ତତ୍ତ୍ୱ ଆଲୋଚନା କରିଛନ୍ତି । ସର୍ବଦା ପ୍ରକୃତି ମଧ୍ୟରେ ପୁରୁଷ ବିଦ୍ୟମାନ ପୁଣି ପୁରୁଷ ମଧ୍ୟ ସର୍ବଦା ପ୍ରକୃତିକୁ ଆଶ୍ରୟ କରି ନିଜର ସତ୍ତା ଜାହିର କରୁଛି । ଜନ୍ମ-ମୃତ୍ୟୁ ଯଦି ମିଥ୍ୟା ତେବେ ଜୀବର ଅନୁଭବରେ ଆସୁଛି କିପରି ? ଭଗବାନ ରୋକଠୋକ ଉଦ୍ଧବଙ୍କୁ ଶୁଣାଇ କହିଛନ୍ତି ଏହା ହିଁ ତ ଚରମ ଅବିବେକ ପଣିଆ । ବିଷୟ ଧ୍ୟାନକାରୀ ସର୍ବଥା ଅଜ୍ଞାନୀ ଓ ପରମାତ୍ମା ଧ୍ୟାନକାରୀ କେବଳ ତତ୍ତ୍ୱଜ୍ଞାନୀ ବା ବିବେକୀ ।

ବଡ଼ ସୁନ୍ଦର ଢ଼ଙ୍ଗରେ ଭିକ୍ଷୁଗୀତା ପ୍ରସଙ୍ଗଟିକୁ ଏଠାରେ ଭଗବାନ ଦୃଷ୍ଟାନ୍ତ ରୂପେ ଶୁଣାଇଛନ୍ତି । ଜଣେ ସାଧକ ଯଦି କର୍ମ ଜ୍ଞାନ ଭକ୍ତିର ଏକାନ୍ତ ଅନଧିକାରୀ ତଥାପି ମଧ୍ୟ ତା ପାଇଁ ସୁଚିନ୍ତିତ ମାର୍ଗଟିଏ ପରମାତ୍ମା ଖଞ୍ଜିଛନ୍ତି । ତାର ନିଜର ଶରୀର, ମନ ଓ ବୁଦ୍ଧି ପ୍ରତି କରାଯିବା ଅପମାନ, ନିର୍ଯାତନା, ଅତ୍ୟାଚାର, ଦୁରାଚାର ଜନିତ କଷ୍ଟକୁ ବିନା ପ୍ରତିବାଦରେ ସହିଯିବା । ଏଥିପାଇଁ କାହାରିକୁ ଦୋଷ ନଦେଇ ନିଜ କୃତକର୍ମର ଫଳ ବୋଲି ଭାବିନେଲେ ବିବେକ ଉଦ୍ରେକ ହେବ ହିଁ ହେବ । ଜ୍ଞାନ, ବୈରାଗ୍ୟ ଓ ଭକ୍ତି ସମସ୍ତେ ଜୀବର ଚିତ୍ତ ଭୂମିରେ ବସିବାକୁ ଆସନ ଖୋଜିବେ ।

ଥରେ ବିବେକ ଜାଗ୍ରତ ହେଲେ ସାଧକର ମନରେ ଆଉ ଦ୍ୱନ୍ଦ୍ୱ ଭାବ ରହିପାରେନା । ଆକାଶରେ ସୂର୍ଯ୍ୟ ଉଦୟ ହେଲେ ଅନ୍ଧକାର ରହିବ କିପରି ? ତେଣୁ ସଂସାରରେ ଗୁଣ ଦୋଷ ଦେଖିବା ବନ୍ଦ ହୁଏ । ସବୁକିଛି ଭଲ ମନ୍ଦ ବସ୍ତୁ, ବ୍ୟକ୍ତି ପରିସ୍ଥିତିକୁ ସେ ଭଗବତ ଲୀଳାର ଅଂଶ ବୋଲି ମନକୁ ବୁଝାଇଦିଏ । ଭକ୍ତ ଭଗବାନ ଉଭୟେ ଏଥର ତାକୁ ଭକ୍ତ ପଞ୍ଜିକାରେ ତାଲିକାଭୁକ୍ତ କରନ୍ତି ।

ଅଶୁଦ୍ଧ ମନର ଶୁଦ୍ଧିକରଣ ବା ଦିବ୍ୟ ରୂପାନ୍ତରଣ ହିଁ ସାରୁପ୍ୟ ମୁକ୍ତି ପଦବାଚ୍ୟ । ପରବର୍ତ୍ତୀ ସଂବାଳୁଆ ଖୋଳ ରୂପୀ ଭକ୍ତର ଅନ୍ତିମ ମୁକ୍ତି ସାର୍ଷ୍ଟିକଥା ଆଲୋଚିତ ହେବ ପରବର୍ତ୍ତୀ ଛଅ ଅଧ୍ୟାୟରେ ।

# ପ୍ରକରଣ-୪୧ ସାର୍ଷ୍ଟିମୁକ୍ତି(ଅଧ୍ୟାୟ ୨୫ଶ-୩୧ଶ)

## ଅଥ ୨୫ଶ ଅଧ୍ୟାୟଃ

### (ପ୍ରକୃତିର ତିନି ଗୁଣ ଲକ୍ଷଣ, କାର୍ଯ୍ୟ ଓ ଗୁଣାତୀତ ହେବାର ଉପାୟ)

ପ୍ରଶ୍ନ-୪୯ : ମାୟା କବଳରୁ ମୁକ୍ତି ଲାଭ ପାଇଁ କେବଳ ସୃଷ୍ଟି ପ୍ରଳୟ ତତ୍ତ୍ୱ ଚିନ୍ତନ ଉପାୟ ବଢ଼ିଆ ଲାଗିଲା ଉଦ୍ଧବଙ୍କୁ । ସେ ଭାବିଲେ କି ଦୁଃଖର କଥା ଏମିତି ସରଳ ସାଧନା ଅନ୍ୟମାନେ କାହିଁକି କରୁ ନାହାନ୍ତି । ଭଗବାନ ଏବେ ବୁଝାଇବେ ଉପାୟ ସିନା ସହଜ ହେଲେ ଅଧିକାରୀ ତ ଦୁର୍ଲ୍ଲଭ । ମନୁଷ୍ୟର ମନ, ବୁଦ୍ଧି, ଚିତ୍ତ ଓ ଅହଂକାର ଏ ଚାରି ଚିଜ କାଳେ କାଳେ ସତ୍ତ୍ୱଗୁଣୀ, ରଜୋଗୁଣୀ, ତମୋଗୁଣୀ କିମ୍ବା ଏକାଧିକ ଗୁଣର ସମିଶ୍ରଣ ଅଟନ୍ତି । କେବଳ ଏହି କାରଣରୁ ଦୁଇ ଦୋଷ ‘ମୁଁ’ ଏବଂ ‘ମୋର’ ମନୁଷ୍ୟର ମନ ବୁଦ୍ଧିକୁ ଟଣା ଓଟରା କରୁଛନ୍ତି । ମନୁଷ୍ୟର ଲକ୍ଷ୍ୟ ଚାରିଟି ହେଲା ଧର୍ମ, ଅର୍ଥ, କାମ ଓ ମୋକ୍ଷ । ମୋକ୍ଷକୁ ଭୁଲି ମଣିଷ ଅନ୍ୟ ତିନି ଲକ୍ଷ୍ୟ ପଛରେ ଦୌଡ଼ିବାରୁ ସତ୍ତ୍ୱଗୁଣୀ କର୍ମ କରି ସ୍ୱଧର୍ମ ପାଳନ କରୁଛି । ରଜୋଗୁଣ ବେଗରେ ସକାମ ବୈଦିକ ଯଜ୍ଞ କରି ସ୍ୱର୍ଗ ଯିବାକୁ ଅଣ୍ଟା ଭିଡୁଛି । ତମୋଗୁଣୀ କର୍ମ କରି ଖାଓ, ପିଓ, ମଉଜ ଉଡ଼ାଅ ଲକ୍ଷ୍ୟ ଦିଗରେ ଜନ୍ମ ଜନ୍ମାନ୍ତର ସେ ଧାବମାନ । ଜଣେ ଗୃହସ୍ଥର କେଉଁ କେଉଁ ଲକ୍ଷଣ ଦେଖି ତାକୁ ସତ୍ତ୍ୱଗୁଣୀ, ରଜୋଗୁଣୀ ଓ ତମୋଗୁଣୀ ସାଧକ କହିବା ?

ଶ୍ରୀ ଭଗବାନ ଉବାଚ

**ପୁରୁଷଃ ସତ୍ତ୍ୱ ସଂଯୁକ୍ତଂ ଅନୁମୀୟାତ୍ ଶମ-ଆଦିଭିଃ ।**
**କାମ-ଆଦିଭିଃ ରଜୋଯୁକ୍ତଂ କ୍ରୋଧ-ଆଦୈଃ ତମସା ଯୁକ୍ତମ ॥୯॥**

ଉ. ଏକାଦଶ ଇନ୍ଦ୍ରିୟ ସଂଯମୀ (ଶମ ଦମ ଆଦି) ନାରାୟଣ ପୂଜକ (ପୁରୁଷଃ) ସତ୍ତ୍ୱଗୁଣୀ ବୋଲି ବୁଝାଯିବ (ଅନୁମୀୟତ୍) । ସକାମ କର୍ମ କରି ସାନ ସାନ ଦେବୀ ଦେବତା ପୂଜନ କରି ଇହ-ପର ଲୋକ ସୁଖ ଲୋଲୁପ ସାଧକ ରଜୋଗୁଣୀ ଓ ପ୍ରେତ, ପିଶାଚ ଆଦି ତନ୍ତ୍ର ପୂଜା କରି କ୍ରୋଧରେ ନିଜ ସୁଖ ପ୍ରାପ୍ତି ଲାଗି ଅନ୍ୟକୁ ପୀଡ଼ା ଦେବାକୁ ଇଚ୍ଛୁକ ସାଧକକୁ ତମୋଗୁଣୀ କୁହାଯାଏ ।

ପ୍ରଶ୍ନ-୫୦ : ସାଧକର ମନ, ବୁଦ୍ଧି, ଚିତ୍ତ, ଅହଂକାର ଭିନ୍ନ ଭିନ୍ନ ଗୁଣର ପ୍ରାବଲ୍ୟରେ (ଏଧମାନେ) କି କି ଶକ୍ତି ପ୍ରାପ୍ତ ହୋଇ ନିଜ ନିଜ ଜୀବନକୁ ଭୁଲରେ ସାର୍ଥକ ବୋଲି ଭାବନ୍ତି ?

**ଏଧମାନେ ଗୁଣେ ସତ୍ତ୍ୱେ ଦେବାନାଂ ବଳଂ ଏଧତେ ।**
**ଅସୁରାଣାଂ ଚ ରଜସି ତମସି-ଉଦ୍ଧବ ରକ୍ଷସାମ୍ ॥୧୯॥**

ଉ. ସତ୍ତ୍ୱଗୁଣ ବୃଦ୍ଧିରେ ସେମାନେ ଦେବତାମାନଙ୍କ ବଳ, ରଜୋଗୁଣ ବୃଦ୍ଧିରେ ଅସୁରମାନଙ୍କ ବଳ ଓ ତମୋଗୁଣ ବୃଦ୍ଧିରେ ରାକ୍ଷସମାନଙ୍କ ବଳ ପାଆନ୍ତି । ଫଳରେ ଦମ୍ଭ, ଦର୍ପ, ଅହଂକାର, ହିଂସା, ପାଖଣ୍ଡ ଦୋଷରେ ସେମାନଙ୍କର ମନବୁଦ୍ଧି ଦୂଷିତ ହୋଇଯାଏ ।

ପ୍ରଶ୍ନ-୫୧ : ଏଭଳି ସାଧକମାନଙ୍କର ମରଣାନ୍ତେ କି ପ୍ରକାର ଗତିସବୁ ହୁଏ ?

**ସତ୍ତ୍ୱେ ପ୍ରଲୀନାଃ ସ୍ୱଃ ଯାନ୍ତି ନରଲୋକଂ ରଜୋ ଲୟାଃ ।**
**ତମୋ ଲୟାଃ ତୁ ନିରୟଂ ଯାନ୍ତି ମାଂ ଏବ ନିର୍ଗୁଣାଃ ॥୨୨॥**

ଉ. ଭଗବାନ କହିଲେ, ''ଜୀବର ମରଣବେଳେ (ପ୍ରଲୀନାଃ) ଅନ୍ତଃକରଣରେ ସତ୍ତ୍ୱଗୁଣ ପ୍ରାବଲ୍ୟ ଥିଲେ ସ୍ୱଃ, ମହ, ଜନ, ତପ ଓ ସତ୍ୟାଦି ଉର୍ଦ୍ଧ୍ୱଲୋକ, ରଜୋଗୁଣରେ ମୃତ୍ୟୁଲୋକ ଓ ତମୋଗୁଣରେ ନରକ ଲୋକ (ନିରୟଂ) ପ୍ରାପ୍ତିହୁଏ । ସାଧକର ଅନ୍ତଃକରଣ ଯଦି ଏ ତିନିଗୁଣ ଅତୀତ ହୋଇଥାଏ (ନିର୍ଗୁଣାଃ) ତେବେ ସେ ବୈକୁଣ୍ଠ କିମ୍ୱା ଗୋଲକରେ ମୋତେ (ଭଗବାନଙ୍କୁ) ପ୍ରାପ୍ତ ହୋଇପାରେ ।''

ପ୍ରଶ୍ନ-୫୨ : ଚାରି ପ୍ରକାର ଗତି ପାଇଁ କେଉଁ କେଉଁ ଚାରି ପ୍ରକାର କର୍ମ ସେମାନେ କରିଥାଆନ୍ତି ?

**ମଦ୍ ଅର୍ପଣଂ ନିଷ୍ଫଳଂ ବା ସାତ୍ତ୍ୱିକଂ ନିଜ କର୍ମ ତତ୍ ।**
**ରାଜସଂ ଫଳ ସଂକଳ୍ପଂ ହିଂସା ପ୍ରାୟ-ଆଦି ତାମସମ୍ ॥୨୩॥**

ଉ. ସମସ୍ତେ ତ କର୍ମ କରନ୍ତି । କର୍ମ କରିବାର ଉଦ୍ଦେଶ୍ୟ ଭଗବାନ ଦେଖି ଭିନ୍ନ ଭିନ୍ନ ଫଳ ପ୍ରଦାନ କରିଥାନ୍ତି ଏକା କର୍ମ କରିଥିଲେ ମଧ୍ୟ । ନିଜେ କର୍ମ ଫଳ ପ୍ରାପ୍ତି ଆଶା ନରଖି ନିଷ୍କାମ କର୍ମ କଲେ କିମ୍ୱା ଫଳ ଭଗବତ ଅର୍ପିତ ହୋଇଥିଲେ କର୍ତ୍ତା ସାତ୍ତ୍ୱିକ ଓ କର୍ମ ସାତ୍ତ୍ୱିକ । ନିଜେ କର୍ମଫଳ ପାଇବାକୁ ଆଶା କରିଥିଲେ କର୍ମ ରାଜସ ଓ ଅନ୍ୟପ୍ରତି ହିଂସା, ଦ୍ୱେଷ ଆଦି ଲକ୍ଷ୍ୟରେ କର୍ମ କଲେ ତାହା ତାମସ କର୍ମରେ ବିବେଚିତ ହୁଏ ।

କର୍ମ କରିବାବେଳେ ଅନ୍ତଃକରଣର ଭାବ ସତ୍ତ୍ୱଗୁଣୀ ଥିଲେ ଜୀବର ଜାଗରଣ ଅବସ୍ଥା, ରଜୋଗୁଣୀ ଗୁଣୀ ଥିଲେ ସ୍ୱପ୍ନ ଅବସ୍ଥା ଓ ତମୋଗୁଣୀ ଥିଲେ ନିଦ୍ରା ଅବସ୍ଥା

କୁହାଯାଏ । ସାଧୁ, ସନ୍ଥ, ସଦ୍‌ଗୁରୁ, ବୈଷ୍ଣବଙ୍କ ଭଳି ଗୁଣାତୀତ ଅନ୍ତଃକରଣ ହୋଇଥିଲେ ତାକୁ ଅନ୍ତଃକରଣର ତୁରୀୟ (ଚତୁର୍ଥ) ବା ଦିବ୍ୟ ଅବସ୍ଥା କୁହାଯାଏ ।

ପ୍ରଶ୍ନ-୫୩: ମନ ବୁଦ୍ଧି ଶୁଦ୍ଧ କିମ୍ବା ଅଶୁଦ୍ଧ ହେଲେ ଜ୍ଞାନ ମଧ ସେହିଭଳି ହୁଏ । ସାଧକ ପାଇଁ ଜ୍ଞାନ କିଭଳି ଚାରି ପ୍ରକାର ହୋଇଥାଏ ?

**କୈବଲ୍ୟଂ ସାତ୍ତ୍ୱିକଂ ଜ୍ଞାନଂ ରଜୋ ବୈକଳ୍ପିକଂ ଚ ଯତ୍ ।**
**ପ୍ରାକୃତଂ ତାମସଂ ଜ୍ଞାନଂ ମତ୍‌ନିଷ୍ଠଂ ନିର୍ଗୁଣଂ ସ୍ମୃତମ୍ ।।୨୪।।**

ଉ. କେବଳ ଅଦ୍ୱୈତ, ଆତ୍ମାଙ୍କୁ ସତ୍ୟ ମାନୁଥିବା ଜ୍ଞାନ ସାତ୍ତ୍ୱିକ (ଆଧ୍ୟାତ୍ମିକ) । କେବଳ ଦ୍ୱୈତ ଆତ୍ମାଙ୍କୁ ମାନି ଅଦ୍ୱୈତକୁ ନ ମାନିବା ଜ୍ଞାନ ରାଜସିକ (ଆଧିଦୈବିକ) । ଆତ୍ମାକୁ ଆଦୌ ନ ମାନି ସବୁ କିଛିକୁ ଜଡ଼ ପ୍ରକୃତି ମାନିବା ଜ୍ଞାନ ତାମସିକ (ଆଧିଭୌତିକ)ଜ୍ଞାନ । ଦ୍ୱୈତ ଓ ଅଦ୍ୱୈତ ବା ଭେଦ ଓ ଅଭେଦ ଉଭୟଙ୍କୁ ସ୍ୱୀକାର କରି ନାରାୟଣଙ୍କୁ ଭକ୍ତି କରିବା ନିର୍ଗୁଣ ଜ୍ଞାନ ଅଟେ ।

ପ୍ରଶ୍ନ-୫୪: ସାଧକର ରହିବା ବାସସ୍ଥାନକୁ କିଭଳି ଚାରି ଭେଦ କରାଯାଏ ?

**ବନଂ ତୁ ସାତ୍ତ୍ୱିକୋ ବାସୋ ଗ୍ରାମୋ ରାଜସ ଉଚ୍ୟତେ ।**
**ତାମସଂ ଦ୍ୟୂତ ସଦନଂ ମତ୍‌ନିକେତନଂ ତୁ ନିର୍ଗୁଣମ୍ ।।୨୫।।**

ଉ. ବନରେ ବା ବାନପ୍ରସ୍ଥରେ ରହିବା ସାତ୍ତ୍ୱିକ, ଗ୍ରାମରେ ବା ଗୃହରେ ରହିବା ରାଜସ, ଜୁଆଆଡା ବା ଆଖଡ଼ା ହୋଟେଲ ଘର ଆଦିରେ ରହିବାକୁ ତାମସ ବାସ କୁହାଯାଏ । ସଦ୍‌ଗୁରୁ ସଦନରେ, ମଠରେ ବା ମନ୍ଦିରରେ ରହିବା ନିର୍ଗୁଣ ବାସ ସ୍ଥାନର ଅନ୍ତର୍ଗତ ।

ପ୍ରଶ୍ନ-୫୫: ସାଧକର ମନ ବୁଦ୍ଧିର ଶୁଦ୍ଧି ଅଶୁଦ୍ଧି ବିଚାରରେ କର୍ତ୍ତା (କାରକୋ) କେତେ ପ୍ରକାରର ?

**ସାତ୍ତ୍ୱିକଃ କାରକୋଽସଙ୍ଗୀ ରାଗ-ଅନ୍ଧୋ ରାଜସଃ ସ୍ମୃତଃ ।**
**ତାମସଃ ସ୍ମୃତି ବିଭ୍ରଷ୍ଟୋ ନିର୍ଗୁଣୋ ମଦ୍‌ଅପାଶ୍ରୟଃ ।।୨୬।।**

ଉ. ସଂପୂର୍ଣ୍ଣ ଭୋଗ ସଂଗ୍ରହ ଆସକ୍ତି ଶୂନ୍ୟ ହେଲେ (ଅସଙ୍ଗୀ) କର୍ତ୍ତା ସାତ୍ତ୍ୱିକ, ବିଷୟ ସୁଖ କାମୀ ହେଲେ ରାଜସ, ପାପ ପୁଣ୍ୟ ବିଚାର ନକରି କାମ କରିବା ଲୋକ ତାମସ ଓ ଭଗବାନଙ୍କ ଶରଣାଗତ ହୋଇ ତାଙ୍କ ପ୍ରସନ୍ନତା ପାଇଁ କାମ କରୁଥିବା କର୍ତ୍ତା ନିର୍ଗୁଣୀ ବୋଲାନ୍ତି ।

ପ୍ରଶ୍ନ-୫୬: ଗେରୁ ବସ୍ତ୍ର, ତିଲକ, ଚନ୍ଦନ, ଦଣ୍ଡ କମଣ୍ଡଲୁ ଆଦି ବାହ୍ୟ ବେଶଭୂଷା ଦେଖି କର୍ତ୍ତାଙ୍କୁ ସାତ୍ତ୍ୱିକ, ରାଜସିକ, ତାମସିକ ବୋଲି ଜାଣିବା ଅସମ୍ଭବ । ସେମାନଙ୍କୁ ଚିହ୍ନିବାର କିଛି ବିଶେଷ ଉପାୟ ଅଛି କି ?

**ପଥ୍ୟଂ ପୂତଂ ଅନାୟସ୍ତଂ ଆହାର୍ଯ୍ୟଂ ସାତ୍ତ୍ୱିକଂ ସ୍ମୃତମ୍ ।**
**ରାଜସଂ ଚ ଇନ୍ଦ୍ରିୟ ପ୍ରେଷ୍ଟଂ ତାମସଂ ଚ ଆର୍ତ୍ତିଦ-ଅଶୁଚି ॥୨୮॥**

ଉ. ନିଶ୍ଚୟ ବଢ଼ିଆ ଉପାୟଟିଏ ଅଛି । ତାଙ୍କର ପ୍ରିୟ ଖାଦ୍ୟ ସାତ୍ତ୍ୱିକ, ରାଜସ, ତାମସ, ନିର୍ଗୁଣ ହେଲେ କର୍ତ୍ତା ନିଶ୍ଚୟ ସେହି ସେହି ଗୁଣର ହେବେ । ଆୟୁ, ବଳ, ଆରୋଗ୍ୟ ବର୍ଦ୍ଧକ ପବିତ୍ର ଖାଦ୍ୟକୁ ସାତ୍ତ୍ୱିକ, ଜିହ୍ୱା ଲାଳସା ତୃପ୍ତି ପାଇଁ ଖାଇବା ଖାଦ୍ୟ ରାଜସ ଓ ବାସି, ଦୁର୍ଗନ୍ଧଯୁକ୍ତ, ଅପବିତ୍ର ଖାଦ୍ୟ ତାମସ ଅଟେ । ଶିବ କିମ୍ବା ବିଷ୍ଣୁ ମନ୍ଦିରର ପ୍ରସାଦ ନିର୍ଗୁଣ ଭୋଜନ ଅଟେ ।

ପ୍ରଶ୍ନ-୫୭: ଏହି ନ୍ୟାୟରେ ବିଚାର କଲେ ସଂସାରରେ ସକଳ ସ୍ଥାନ, କାଳ, ପାତ୍ର (କାରକ) ବସ୍ତୁକୁ କଅଣ ଚାରିଭାଗରେ ବିଭକ୍ତ କରିବାକୁ ହେବ ?

**ଦ୍ରବ୍ୟଂ ଦେଶଃ ଫଳଂ କାଳୋ ଜ୍ଞାନଂ କର୍ମ ଚ କାରକଃ ।**
**ଶ୍ରଦ୍ଧା-ଅବସ୍ଥା-ଆକୃତି ନିଷ୍ଠା ତ୍ରୈର୍ଗୁଣ୍ୟଃ ସର୍ବ ଏବ ହି ॥୩୦॥**

ଉ. ବିଲକୁଲ ସବୁକୁ ଏହିଭଳି ବିଚାର କରି ସାଧକ ସଂସାରରେ ଚଳିବ । ସକଳ ବସ୍ତୁ (ଦ୍ରବ୍ୟଂ), ସ୍ଥାନ (ଦେଶ), କର୍ମଫଳ (ଫଳଂ), ସମୟ, ଜ୍ଞାନ, କର୍ମ, କର୍ତ୍ତା, ଶ୍ରଦ୍ଧା, ମନ-ବୁଦ୍ଧିର ଚେତନା (ଅବସ୍ଥା), ମନୁଷ୍ୟ-ପଶୁ-ପକ୍ଷୀ-ବୃକ୍ଷଲତା ଜନ୍ମଜାତ ଶରୀର (ଆକୃତି) ଓ ମୃତ୍ୟୁପରେ ମିଳୁଥିବା ଗତି (ନିଷ୍ଠା)କୁ ଚାରି ପ୍ରକାର ମାନିବାକୁ ହୁଏ ।

ପ୍ରଶ୍ନ-୫୮: ସଂସାରରେ କରାଯାଉଥିବା କ୍ରିୟା ଦେଖିବା, ଶୁଣିବା, ଚିନ୍ତନ କରିବା, ସ୍ମରଣ କରିବା, ଖେଳିବା, ବୁଲିବା ଆଦି ସକଳ କ୍ରିୟା କଳାପ ମଧ ଏହି ଚାରିଗୁଣରେ ବିଭକ୍ତ କରି ସାବଧାନ ହୋଇ କର୍ମ କଲେ ସାଧକ କେଉଁ ସ୍ଥିତିରେ ଶେଷରେ ପହଞ୍ଚିବ ?

**ନିଃସଙ୍ଗୋ ମାଂ ଭଜେତ୍ ବିଦ୍ୱାନ୍ ଅପ୍ରମତ୍ତୋ ଜିତେନ୍ଦ୍ରିୟଃ ।**
**ରଜଃ ତମଃ ଚ-ଅଭିଜୟେତ୍ ସତ୍ତ୍ୱସଂସେବୟା ମୁନିଃ ॥୩୪॥**

ଉ. କୁସଙ୍ଗ ତ୍ୟାଗ କରି ସତ୍‌ସଙ୍ଗ ଆଶ୍ରୟରେ ହରି ଭଜନ କଲେ ଭକ୍ତ ବିଦ୍ୱାନ, ସାବଧାନ (ଅପ୍ରମତ୍ତୋ) ଓ ଜିତେନ୍ଦ୍ରିୟ ହେବ । ଅନ୍ତଃକରଣରେ ସତ୍ତ୍ୱଗୁଣ ଉତ୍ପନ୍ନ କରାଇ ରଜ ଓ ତମଗୁଣ ଉଭୟ ଉପରେ ବିଜୟ ଲାଭ କରିପାରିବ ।

ପ୍ରଶ୍ନ-୫୯: ସତ୍ତ୍ୱଗୁଣକୁ ଜିଣି ଜଣେ ସାଧକ ନିର୍ଗୁଣ ସ୍ଥିତି ଲାଭ କରିବ କେମିତି ?

**ସତ୍ତ୍ୱଂ ଚ-ଅଭିଜୟେତ୍ ଯୁକ୍ତୋ ନୈରପେକ୍ଷ୍ୟେଣ ଶାନ୍ତଧୀଃ ।**
**ସଂପଦ୍ୟତେ ଗୁଣୈଃ ମୁକ୍ତୋ ଜୀବୋ ଜୀବଂ ବିହାୟ ମାମ୍ ।।୩୫।।**

ଉ. ଏକଥା ସତ୍ୟ ଯେ ସତ୍ତ୍ୱଗୁଣ ମଧ ସାଧକକୁ କମ ଅହଂକାରୀ କରେ ନା ସେ ଅଷ୍ଟାଙ୍ଗ ଯୋଗୀ, ବେଦାନ୍ତି କିମ୍ୱା ଭକ୍ତ ଯାହା ବି ହେଉ । ଏ ସ୍ଥିତିରେ ଯୋଗୀ ସମାଜରେ ନାନା ଚମତ୍କାର ଦେଖାଇ ସମ୍ପତ୍ତି, ସମ୍ମାନ ଲୋଭରେ ନିଜେ ଅଶାନ୍ତ ହୋଇପାରେ । ବେଦାନ୍ତୀ ମଧ ଜ୍ଞାନର ଡ଼ିଣ୍ଡିମ ପିଟି ତର୍କ, ବିତର୍କ, କୁତର୍କରେ ମାତି ହାରିଗଲେ କ୍ଷୁବ୍‌ଧ ହୁଏ । ଅଶାନ୍ତ ହୁଏ । କର୍ମଯୋଗୀ କିନ୍ତୁ ସତ୍ତ୍ୱ ଗୁଣୀ ହେଲେ ଭକ୍ତିରେ ଲାଗିପଡ଼େ । ସଦା ଗୁରୁଙ୍କ ଆଶ୍ରୟରେ ରହି ସତ୍‌ସଙ୍ଗ କରି ଅସତ୍‌ସଙ୍ଗରୁ ଦୂରରେ ରହି ପାରେ । ଭକ୍ତ କିନ୍ତୁ ସହଜରେ ନିର୍ଗୁଣ ସ୍ଥିତି (ଗୁଣୈର୍ମୁକ୍ତଃ) ପ୍ରାପ୍ତ ହୁଏ (ସଂପଦ୍ୟତେ) । ଜନ୍ମବନ୍ଧନ ଭୟକୁ ସେ ଅକ୍ଲେଶରେ ତ୍ୟାଗ କରିପାରେ (ଜୀବଂ ବିହାୟ) । କାରଣ ଭକ୍ତ ଏବେ ନିଜ ପାଇଁ କିଛି ନ କରି କରୁଛି କେବଳ ଭଗବାନଙ୍କ ପ୍ରସନ୍ନତା ନିମିତ୍ତ ।

ପ୍ରଶ୍ନ-୬୦: କର୍ମଯୋଗ ସାଧନାରେ ଡ଼ୋରି ବନ୍ଧା ହୁଏ କୃତକୃତ୍ୟ ହେଲେ ବା କରିବା ଧର୍ମ ଇତିହେଲେ । ଜ୍ଞାନଯୋଗ ସମାପ୍ତ ହୁଏ ଜ୍ଞାତ ଜ୍ଞାତବ୍ୟ ହେଲେ ବା ଆତ୍ମା-ପରମାତ୍ମାଙ୍କ ଭେଦ ଅଭେଦ ଜାଣି ସାରି ହରି ଭଜନରେ ଲାଗିପଡ଼ିଲେ । ଭକ୍ତି ସାଧନାରେ ଭକ୍ତ ଏମିତି କ'ଣ ପାଏ ଯେ ସେ ପ୍ରାପ୍ତ ପ୍ରାପ୍ତବ୍ୟ ସ୍ଥିତିରେ ପହଞ୍ଚିପାରେ ?

**ଜୀବୋ ଜୀବ ବିନିର୍ମୁକ୍ତୋ ଗୁଣୈଃ ଚ-ଆଶୟ ସମ୍ଭବୈଃ ।**
**ମୟା-ଏବ ବ୍ରହ୍ମଣା ପୂର୍ଣ୍ଣୋ ନ ବହିଃ ନ-ଅନ୍ତରଃ ଚରେତ୍ ।।୩୬।।**

ଉ. ଭକ୍ତି ଯୋଗ ସାଧକ ଥରେ ଜୀବନ୍ ମୁକ୍ତିର ସ୍ୱାଦ ଅନୁଭବ କଲେ (ଜୀବ ବିନିର୍ମୁକ୍ତୋ) । ତାର ହୃଦୟରେ ପ୍ରେମ ଭକ୍ତି ଲହଡ଼ି ମାରେ (ଆଶୟ ସମ୍ଭବୈଃ) । ସେ ମସ୍ତିଷ୍କ ବାହାରେ ଦୈହିକ ସୁଖ (ବହିଃ) ଖୋଜିବନି କିମ୍ୱା ଅଚଞ୍ଚଳ ମନରେ ମଧ ମାନସିକ ଶାନ୍ତି ଖୋଜିବନି (ଅନ୍ତରଃ ଚରେତ୍) । ସେ ତ ଧର୍ମ, ଅର୍ଥ, କାମ, ମୋକ୍ଷ ଲକ୍ଷ୍ୟକୁ ତୁଚ୍ଛ ଭାବି ଜୀବନ୍ମୁକ୍ତ ସ୍ଥିତିରେ ନିତ୍ୟ ବିହାର କରିବ । ତା ପାଇଁ ଜନ୍ମ-ମରଣ, ପାପପୁଣ୍ୟ ବନ୍ଧନ ଯମ ଦଣ୍ଡର ଭୟ ସବୁ ମିଥ୍ୟା ହୋଇଯିବ ।

# ଅଥ ୨୬ଶ ଅଧ୍ୟାୟଃ

## (ଐଳ ଗୀତ-ଇଳାଙ୍କ ପୁତ୍ର ପୁରୂରବାଙ୍କ ସଂସାର ବୈରାଗ୍ୟ)

ପ୍ରଶ୍ନ-୬୧: ଭାଗବତଙ୍କ ମଧ୍ୟରେ ଥିବା ୧୦ଗୀତ ବା ଗୀତା ମଧ୍ୟରେ (୧.କପିଳ ଗୀତ, ୨.ବେଣୁଗୀତ, ୩.ଗୋପୀ ଗୀତ, ୪.ଯୁଗଳ ଗୀତ, ୫.ଭ୍ରମର ଗୀତ, ୬.ମହିଷୀ ଗୀତ, ୭.ଅବଧୂତ ଗୀତା, ୮.ହଂସ ଗୀତା, ୯.ଭିକ୍ଷୁ ଗୀତା ଓ ୧୦.ଐଳ ଗୀତ) । ଐଳ ଗୀତ ଭାଗବତଙ୍କର ଶେଷ ଗୀତ ଅଟେ । ଅତ୍ରି ଅନୁସୂୟାଙ୍କ ପୁତ୍ର ଚନ୍ଦ୍ର ଦେବଙ୍କର ମିଳନ ହୋଇଥିଲା ସପ୍ତମ ମନୁ ବୈବସ୍ୱତଙ୍କ କନ୍ୟା ସହିତ । ଫଳରେ ଜନ୍ମ ହୋଇଥିଲେ ବୁଧ । ଏହି ବୁଧଙ୍କର ପୁତ୍ରଙ୍କ ନାମ ପୁରୂରବା । ସେ ଚନ୍ଦ୍ରବଂଶରେ ଜଣେ ବହୁ କୀର୍ତ୍ତିମାନ ପ୍ରଭାବଶାଳୀ ସ୍ୱନାମ ଧନ୍ୟ ରାଜା । ସେ କେବଳ ଭାରତ ଖଣ୍ଡର ରାଜା ନ ହୋଇ ନବଖଣ୍ଡ ମେଦିନୀ ସମେତ ସମଗ୍ର ଜମ୍ବୁଦ୍ୱୀପର ସମ୍ରାଟ ଥିଲେ । ସେ ଦେବ ଅଂଶରେ ଜନ୍ମ ହୋଇ ଆଜନ୍ମ ହରି ଭକ୍ତ ଥିଲେ । ତାଙ୍କ ଦୃଷ୍ଟାନ୍ତ ଦେଇ ଭଗବାନ ପୂର୍ବ ଅଧ୍ୟାୟରେ ଭକ୍ତିମାର୍ଗ ପ୍ରସଙ୍ଗରେ ସତ୍‌ସଙ୍ଗ କରିବାକୁ ଓ କୁସଙ୍ଗ (ଅସତ୍‌ସଙ୍ଗ) ନ କରିବାକୁ କାହିଁକି କହିଥିଲେ ଉଦ୍ଧବଜୀଙ୍କୁ ?

ଶ୍ରୀ ଭଗବାନ ଉବାଚ

**ସଙ୍ଗଂ ନ କୁର୍ଯ୍ୟାତ୍ ଅସତାଂ ଶିଶ୍ନ-ଉଦର ତୃପାଂ କ୍ୱଚିତ୍ ।**
**ତସ୍ୟ-ଅନୁଗଃ ତମସି-ଅନ୍ଧେ ପତନ୍ତି-ଅନ୍ଧ-ଅନୁଗ-ଅନ୍ଧବତ୍ ।।୩।।**

ଉ. ଅତ୍ୟନ୍ତ କାମବାସନା (ଶିଶ୍ନ ତୃପାଂ) କିମ୍ବା ଅତ୍ୟନ୍ତ ଭୋଜନ ଲାଳସା ଥିବା ଲୋକମାନେ ଭକ୍ତି ମାର୍ଗର ସାଧକ ପାଇଁ ଭୟଙ୍କର ବିପଦର କାରଣ । ସେମାନଙ୍କର ସଙ୍ଗ କରିବା ଅତ୍ୟନ୍ତ ଦୁର୍ଭାଗ୍ୟଜନକ । ଜଣେ ଅନ୍ଧର ଅନୁଗମନ କଲେ ଅନ୍ୟ ଜଣେ ଚକ୍ଷୁଷ୍ମାନ୍ ମଧ୍ୟ ଖାଲରେ ପଡ଼ିପାରେ (ପତନ୍ତି-ଅନ୍ଧ-ଅନୁଜ) ।

ପ୍ରଶ୍ନ-୬୨: ମହାମହିମ ଐଳ ସମ୍ରାଟ୍ ପୁରୂରବା ଅବସ୍ଥା ଚକ୍ରରେ ପଡ଼ି ସ୍ୱର୍ଗରାଜ୍ୟର ସୁନ୍ଦରୀ ଅପ୍‌ସରାଙ୍କ ରୂପରେ ମୁଗ୍‌ଧ ହୋଇ ତାଙ୍କ ସହ କାମ ଭୋଗ ବିଳାସରେ ମାତିଲେ । ହରିଭଜନ ସଂପୂର୍ଣ୍ଣ ଭୁଲିଗଲେ । ତାଙ୍କର ବିଷୟ ଭୋଗ ଅନ୍ଧ କୂପରେ ପତନର କାରଣ ହେଲେ ସେହି ଅସାମାନ୍ୟା ସ୍ୱର୍ଗ ସୁନ୍ଦରୀ ଉର୍ବଶୀ । ଭଗବାନଙ୍କ କୃପାରୁ ରାଜାଙ୍କର ସଂସାର ବୈରାଗ୍ୟ ଉତ୍ପନ୍ନ ହୁଅନ୍ତେ ସେ କିଭଳି ଅନୁତାପ କଲେ ଓ ସୁଧୁରିଗଲେ ?

ଐଳ ଉବାଚ

**ଅହୋ ମେ ଆତ୍ମ ସମ୍ମୋହୋ ଯେନ-ଆତ୍ମା ଯୋଷିତାଂ କୃତଃ ।**
**କ୍ରୀଡ଼ାମୃଗଃ ଚକ୍ରବର୍ତ୍ତୀ ନରଦେବ ଶିଖାମଣିଃ ||୯||**

ଉ. ରାଜା ନିଜକୁ ନିଜେ ସ୍ୱଗତୋକ୍ତିରେ କହିଲେ,''ହାୟ, ମୁଁ ଏତେବଡ଼ ପୃଥିବୀର ଶକ୍ତିଶାଳୀ ସମ୍ରାଟ ତା ସହିତ ସାର୍ବଭୌମ ଓ ଚକ୍ରବର୍ତ୍ତୀ ହୋଇ ମଧ୍ୟ ଗୋଟିଏ କେଳା ଦ୍ୱାରା ଭାଲୁ ମାଙ୍କଡ଼ ନାଚିବା ଭଳି ଉର୍ବଶୀ ଭଳି ଜଣେ ନାରୀଙ୍କର କ୍ରୀଡ଼ା ପଶୁ ହୋଇଗଲି । ଧିକ୍ ମୋର ବଳ, ବିଦ୍ୟା, କୁଳ, ଗୌରବ ଆଦିକୁ ।''

ପ୍ରଶ୍ନ-୬୩: ଉର୍ବଶୀଙ୍କ ସ୍ୱର୍ଗ ଫେରିବା ସମୟ ଉପସ୍ଥିତ ହୋଇଛି । ସେ ରାଜାଙ୍କ ଐଶ୍ୱର୍ଯ୍ୟ, ବୈଭବକୁ ତୁଚ୍ଛ କରି ଚାଲିଯାଉଛନ୍ତି । ରାଜା ତାଙ୍କ ପଛେ ପଛେ ରହ ରହ ବୋଲି ଅନୁରୋଧ କରି ଦୌଡୁଛନ୍ତି । ସେ ପୂର୍ଣ୍ଣ ବେହୋସ । ଦେହରେ ବସନ ଭୂଷଣ ନାହିଁ । ଅନେକ ବର୍ଷ ଧରି ଉର୍ବଶୀଙ୍କର ଅଧର ଅମୃତ ପାନ କରି ମଧ୍ୟ ସେ ଏବେ ବି ଅତୃପ୍ତ । ସଂସାର ବୈରାଗ୍ୟ ଆସନ୍ତେ ସେ ପତିତ ରାଜା କାହାକୁ ପୁଣି ଆଶ୍ରୟ କଲେ ?

**ପୁଂଶ୍ଚଲ୍ୟା-ଅପହୃତଂ ଚିତ୍ତଂ କୋ ନୁ-ଅନ୍ୟୋ ମୋଚିତୁଂ ପ୍ରଭୁଃ ।**
**ଆତ୍ମାରାମଃ ଈଶ୍ୱରଂ ଋତେ ଭଗବନ୍ତଂ ଅଧୋକ୍ଷଜମ୍ ||୧୫||**

ଉ. ରାଜା ଦେଖିଲେ ଜଣେ ସ୍ୱର୍ଗବେଶ୍ୟା (ପୁଂଶ୍ଚଲ୍ୟା) ଉର୍ବଶୀ ତାଙ୍କ ମନ ଓ ବୁଦ୍ଧି ଉଭୟକୁ (ଚିତ୍ତଂ) କବ୍‌ଜା କରିଦେଇଛି । ଏହାତ କିଛି ବହିର୍ଜଗତର ବ୍ୟାପାର ନୁହେଁ । ସୁତରାଂ କେବଳ ଭଗବାନ ସର୍ବଅନ୍ତର୍ଯ୍ୟାମୀ ଆତ୍ମାରାମ ପରମେଶ୍ୱରଙ୍କ (ଅଧୋକ୍ଷଜମ) ବ୍ୟତୀତ (ଋତେ) ମନ ବୁଦ୍ଧିକୁ ଶୁଦ୍ଧ କରି ହରିଭଜନ କରାଇ ଗୁଳାରେ ପକାଇ ପାରିବେ ।

ପ୍ରଶ୍ନ-୬୪: ରାଜାଙ୍କର ଏଭଳି ଭୟଙ୍କର ପତନ ପାଇଁ ସେ ନିଶ୍ଚୟ ଉର୍ବଶୀଙ୍କୁ ଦାୟି କରିଥିବେ ?

**କିଂ ଏତୟା ନୋଽପକୃତଂ ରଜ୍ଜ୍ୱା ବା ସର୍ପ ଚେତସଃ ।**
**ଦ୍ରଷ୍ଟୁଃ ସ୍ୱରୂପ-ଅବିଦୁଷୋ ଯୋଽହଂ ଯତ୍ ଅଜିତେନ୍ଦ୍ରିୟଃ ||୧୭||**

ଉ. ପୁରୂରବା ଆଦୌ ସେ କଥା କଲେ ନାହିଁ । ଭାବିଲେ ଉର୍ବଶୀଙ୍କର କି ଦୋଷ (କିଂ ଏତୟା) । ସେ ନିଜେ ମଲା ଔଷଧ ବେକରେ ବାନ୍ଧିଛନ୍ତି । ମନ ବୁଦ୍ଧିର

ଚଞ୍ଚଳତାରେ ବିଷାକ୍ତ ସର୍ପକୁ ଦଉଡ଼ି ବୋଲି ଭାବି ବିପଦରେ ସ୍ୱୟଂ ପଡ଼ିଛନ୍ତି । ସେ ନିଜକୁ ଆତ୍ମା ବୋଲି ମନେ ନ କରି ଦେହ ଭାବିଛନ୍ତି (ସ୍ୱରୂପ-ଅବିଦୂଷୋ) । ଦେହ ସୁଖ ପ୍ରାପ୍ତି ଲାଗି ନିଜ ଦର୍ଶନ ଇନ୍ଦ୍ରିୟ ଓ ସ୍ପର୍ଶ ଇନ୍ଦ୍ରିୟ ମାନଙ୍କୁ ଆଗୁଳି ରଖିପାରିନାହାନ୍ତି । ଉଦା ଛାଡ଼ିଦେଇଛନ୍ତି । ତାର ବିଷମୟ ଫଳ ତାଙ୍କୁ ହିଁ ଭୋଗିବାକୁ ପଡ଼ିବ ।

ପ୍ରଶ୍ନ-୬୫: ସଂସାର ବୈରାଗ୍ୟର ପ୍ରଭାବରେ ସେ ଏବେ ମନୁଷ୍ୟ ଦେହର ବାସ୍ତବିକ ସ୍ୱରୂପ ଜାଣିପାରିଛନ୍ତି । ପୁତିଗନ୍ଧମୟ ରକ୍ତ, ମାଂସ, ଅସ୍ଥି, ପୂଜ ପୂରିତ ନର ଦେହକୁ ପୁଷ୍ପର ସୌନ୍ଦର୍ଯ୍ୟ, କୋମଳତା ଓ ସୁଗନ୍ଧର ପୁଟ ଦେଇ ଅପ୍ସରା ନାରୀର ନାମ ଦିଆଯାଇଛି । ସେଭଳି ତୁଚ୍ଛ ଚିଜକୁ କବିମାନେ ଆହା ତାର କେଶ, ନାସିକା, ନାଭି ବକ୍ଷ କେତେ ସୁନ୍ଦର ଲୋଭନୀୟ ଇତ୍ୟାଦି ବର୍ଣ୍ଣନା କରୁଛନ୍ତି । ବିଷୟୀ ଜୀବ ତାର ବିଦ୍ୱତା, ପଦମର୍ଯ୍ୟାଦାକୁ ଭୁଲି ତାର ସଙ୍ଗ ପ୍ରାପ୍ତି ପାଇଁ କେବଳ କାମୁକ ଭାବନା କରିବା କ'ଣ କୁସଙ୍ଗର ସ୍ୱରୂପ ?

**ତସ୍ମାତ୍ ସଙ୍ଗୋ ନ କର୍ତ୍ତବ୍ୟଃ ସ୍ତ୍ରୀଷୁ ସ୍ତ୍ରୈଣେଷୁ ଚ ଇନ୍ଦ୍ରିୟୈଃ ।**
**ବିଦୁଷାଂ ଚ-ଅପି-ଅବିସ୍ରବ୍ଧଃ ଷଟ୍‌ବର୍ଗଃ କିଂଉ ମାଦୃଶମ୍ ॥୨୪॥**

ଉ. ପୁରୂରବା କହିଲେ, ''ମୋ ଭଳି ଲୋକ (ମାଦୃଶଂ) କେବଳ ସୁନ୍ଦରୀ ନାରୀ ସଙ୍ଗ କିମ୍ବା ନାରୀ ସଙ୍ଗ କରୁଥିବା ପୁରୁଷ ସଙ୍ଗ କରିବା ଅନୁଚିତ କେବଳ ଏକଥା ସତ୍ୟ ନୁହେଁ ବରଂ କାମ, କ୍ରୋଧ, ଲୋଭ, ମୋହ, ମଦ, ମାତ୍ସର୍ଯ୍ୟ ଏହି ଷଟ୍ ଶତ୍ରୁଙ୍କ ଠାରୁ ଦୂରେଇ ରହିବା ପାଣ୍ଡିତ୍ୟର (ବିଦୁଷାଂ) ନିଦର୍ଶନ । କାରଣ ଏଇ ଛଅଜଣ କାମ ରୂପୀ ମାୟାସେନପତିଙ୍କର ବଳବାନ ସୈନ୍ୟବାହିନୀ ସୁତରାଂ ବଡ଼ ଅବିଶ୍ୱାସୀ (ଅବିସ୍ରବ୍ଧଃ) ।

ପ୍ରଶ୍ନ-୬୬: ଶେଷରେ ଉର୍ବଶୀର ସଙ୍ଗ ତ୍ୟାଗ କରି (ଅଥୋ ବିହାୟ) ସକଳ ନର ଓ ଦେବତା ମଧ୍ୟରେ ଶ୍ରେଷ୍ଠ(ନୃପଦେବଦେବଃ) ଏହି ବୈରାଗ୍ୟପୂର୍ଣ୍ଣ ଗୀତ (ଐଳ ଗୀତ) ଗାନ କରି କି କି ମାନସିକ ସ୍ଥିତିରେ ପହଞ୍ଚିଲେ ବୋଲି ଭଗବାନ ଉଦ୍ଧବଙ୍କୁ ଶୁଣାଇଲେ ?

ଶ୍ରୀ ଭଗବାନ ଉବାଚ

**ଏବଂ ପ୍ରଗାୟନ୍ ନୃପଦେବ ଦେବଃ**
**ସ ଉର୍ବଶୀ ଲୋକଂ ଅଥୋ ବିହାୟ ।**
**ଆତ୍ମାନଂ ଆତ୍ମନି-ଅବଗମ୍ୟ ମାଂ ବୈ**
**ଉପାରମତ୍ ଜ୍ଞାନ ବିଧୂତମୋହଃ ॥୨୫॥**

ଉ. ରାଜାଙ୍କ ହୃଦୟରେ ତୀବ୍ର ବୈରାଗ୍ୟର ଉଦୟ ହେଲା । ଗଭୀର ଧ୍ୟାନ କରି ସେ ପରମାତ୍ମାଙ୍କ ଦର୍ଶନ ପ୍ରାପ୍ତ ହେଲେ (ଅବଗମ୍ୟ ମାଂ) । ତାଙ୍କର ସକଳ ସଂସାର ମୋହ ନାଶଗଲା । ଦିବ୍ୟଜ୍ଞାନ ଉଦୟ ହେଲା । ଶେଷରେ ସେ ପରମଶାନ୍ତି ପ୍ରାପ୍ତ ହେଲେ (ଉପାରମତ୍) ।

ପ୍ରଶ୍ନ-୬୭: ମହାରାଜ ଐଳଙ୍କ ଦୃଷ୍ଟାନ୍ତରୁ ବୁଝାଗଲା ଯେ ଭକ୍ତି ସାଧକ ସଦାସର୍ବଦା କୁସଙ୍ଗଠାରୁ ଦୂରରେ ରହିବ । ଅତଏବ ସେ ଯେଉଁ ସାଧୁ ସଙ୍ଗ କରିବ ସେଭଳି ସାଧୁଙ୍କୁ ସେ କେଉଁ କେଉଁ ଲକ୍ଷଣ ଦେଖି ଚିହ୍ନିପାରିବ ?

**ସନ୍ତୋଽନପେକ୍ଷାଃ ମତ୍‌ଚିତ୍ତାଃ ପ୍ରଶାନ୍ତାଃ ସମଦର୍ଶିନଃ ।**
**ନିର୍ମମା ନିରହଂକାରା ନିର୍ଦ୍ୱନ୍ଦ୍ୱା ନିଷ୍ପରିଗ୍ରହାଃ ॥୨୬॥**

ଉ. ସେ ସାଧୁ ଭୌତିକ ବସ୍ତୁପ୍ରତି ଆକର୍ଷିତ ହେଉ ନଥିବେ, (ଅନପେକ୍ଷାଃ) ମନ ବୁଦ୍ଧିରେ ବିଷ୍ଣୁ ବୈଷ୍ଣବ ଚିନ୍ତନ କରୁଥିବେ, ପ୍ରଶାନ୍ତ, ସମଦୃଷ୍ଟି, ମମତା ଶୂନ୍ୟ, ଅହଂକାର ଶୂନ୍ୟ, ସୁଖ-ଦୁଃଖ-ଶୋକ-ମୋହ ଆଦି ଦ୍ୱନ୍ଦ୍ୱରେ ଅବିଚଳିତ ଓ ଭୌତିକ ଦ୍ରବ୍ୟ ସଂଗ୍ରହରେ ଲୋଭଶୂନ୍ୟ ହୋଇଥିବେ । ବାସ୍ ଏଇତ ସଚ୍ଚା ସାଧୁ ଲକ୍ଷଣ ।

ପ୍ରଶ୍ନ-୬୮: ସାଧୁ ବୈଷ୍ଣବମାନଙ୍କର ସ୍ୱଭାବ ହେଲା ନିରନ୍ତର ହରିଭଜନ କରିବା । ସାଧକ ସେମାନଙ୍କର ସଙ୍ଗ କରି ହରି ନାମ, ଲୀଳା, ଗୁଣ ଶ୍ରବଣ କୀର୍ତ୍ତନ କରି ନିଜ ନିଜର ପାପ ନାଶ କରିଥାଆନ୍ତି । ଏପରିକି ଯେଉଁମାନେ ସତ୍‌ସଙ୍ଗ କରିବାକୁ ଅନ୍ୟକୁ ପ୍ରବର୍ତ୍ତାନ୍ତି କିମ୍ବା ଭଲ କଥା ବୋଲି ଅନୁମୋଦନ କରନ୍ତି ସେମାନେ ମଧ୍ୟ ପାପମୁକ୍ତ ହୁଅନ୍ତି । ସାଧୁସଙ୍ଗ ଦ୍ୱାରା ହୃଦୟରେ ହରି ଭକ୍ତି ଉତ୍ପନ୍ନ କରାଇ ପାରିଲେ ସାଧକର ଆଉ କେଉଁ ଦୁର୍ଲ୍ଲଭ ପଦାର୍ଥ ସ୍ୱର୍ଗ ଭୋଗ, ସିଦ୍ଧି ପ୍ରାପ୍ତି, ସମାଧି ସୁଖ ଆଦିର ଅଭାବ ରହେ କି ? ଜଣେ ଅଗ୍ନିଦେବତାଙ୍କ (ବିଭାବସୁଂ) ପାଖରେ ପହଞ୍ଚିଗଲେ ତାର ଶୀତକଷ୍ଟ ଓ ଅନ୍ଧକାର ଦୂରହେଲା ବେଳେ ସତ୍‌ସଙ୍ଗ କଲେ କ'ଣ ଦୂର ହୁଏ ସାଧକର ?

**ଯଥା-ଉପଶ୍ରୟମାଣସ୍ୟ ଭଗବନ୍ତଂ ବିଭାବସୁମ୍ ।**
**ଶୀତଂ ଭୟଂ ତମୋଽପ୍ୟେତି ସାଧୂନ୍ ସଂସେବତଃ ତଥା ॥୩୧॥**

ଉ. ଠିକ୍ ସେହିଭଳି ସାଧୁଙ୍କ ପାଖକୁ ଗଲେ (ଉପଶ୍ରମାଣସ୍ୟ) ଜୀବନର ସକଳ ଆଳସ୍ୟ, ପାପଭୟ ଓ ଅବିଦ୍ୟା ଅନ୍ଧକାର ଦୂର ହୋଇଥାଏ ।

ପ୍ରଶ୍ନ-୬୯ : ନଦୀ, ସମୁଦ୍ର ଜଳରେ ବୁଡ଼ିଯାଉଥିବା ଲୋକକୁ ଯେପରି ନୌକା ଉଦ୍ଧାର କରିପାରେ ସେଇମିତି ସଂସାର ସିନ୍ଧୁରେ ବୁଡ଼ିଯାଉଥିବା ପତିତ ଅସହାୟ ଲୋକକୁ ସାଧୁସଙ୍ଗ ଉଦ୍ଧାର କରିଥାଏ । ବଞ୍ଚିଥିବା ବେଳେ ଅନ୍ନ ଯେଭଳି ପ୍ରାଣୀମାନଙ୍କର ଜୀବନ ରକ୍ଷାର ଆଶ୍ରୟ, ଭଗବାନ ନାରାୟଣ (ଅହଂ), ଦୁଃଖୀଲୋକର (ଆର୍ତ୍ତନାଂ) ଆଶ୍ରୟ, ମଲାବେଳେ (ପ୍ରେତ୍ୟ) ଧନ ରୂପକ ଧର୍ମ ହିଁ ମନୁଷ୍ୟର ଆଶ୍ରୟ ହେବାବେଳେ ସାଧୁସଙ୍ଗ ବା ସତ୍‌ସଙ୍ଗ କାହାର ଆଶ୍ରୟ ହୋଇଥାଏ ?

**ଅନ୍ନଂ ହି ପ୍ରାଣୀନାଂ ପ୍ରାଣ ଆର୍ତ୍ତାନାଂ ଶରଣଂ ତ୍ୱ-ଅହମ୍ ।**
**ଧର୍ମୋବିତ୍ତଂ ନୃଣାଂ ପ୍ରେତ୍ୟ ସନ୍ତୋଽର୍ବାକ୍ ବିଭ୍ୟତୋଽରଣମ୍ ॥୩୩॥**

ଉ. ପଶୁ ପକ୍ଷୀ ଆଦି ନୀଚ ଯୋନିକୁ ଯିବାକୁ ଡ଼ରୁଥିବା (ବିଭ୍ୟତୋ) ଲୋକର ଆଶ୍ରୟ (ଅରଣଂ) ବୈଷ୍ଣବସଙ୍ଗ ଅଟେ ।

ପ୍ରଶ୍ନ-୭୦: ସୂର୍ଯ୍ୟଦେବତା (ଅର୍କଃ) ଉଦୟ ହୋଇ (ସମ୍ମୁତ୍‌ଥିତଃ) ଜୀବ ଜଗତକୁ ସଂସାର ଦେଖାନ୍ତି । ସେହିଭଳି ସାଧୁ ଲୋକ ସମାଜର କେଉଁ ଅତ୍ୟୁଚ୍ଚ ଉପକାର କରିଥାଆନ୍ତି ?

**ସନ୍ତୋ ଦିଶନ୍ତି ଚକ୍ଷୂଂସି ବହିଃ ଅର୍କଃ ସମ୍ମୁତ୍‌ଥିତଃ ।**
**ଦେବତା ବାନ୍ଧବାଃ ସନ୍ତଃ ସନ୍ତ ଆତ୍ମା-ଅହଂ ଏବ ଚ ॥୩୪॥**

ଉ. ସାଧୁ ମନୁଷ୍ୟର ପ୍ରଜ୍ଞା ଚକ୍ଷୁକୁ ଉନ୍ମୀଳନ କରନ୍ତି । ଭଗବାନଙ୍କ ଭକ୍ତ ସାଧକର ପୂଜନୀୟ ଦେବତା, ସୁହୃତ୍ (ବାନ୍ଧବାଃ) ସଦୃଶ । ସନ୍ଥଙ୍କ ହୃଦୟରେ ଭଗବାନ (ଅହଂ ଏବ) ସଦା ସର୍ବଦା ବାସ କରିଥାଆନ୍ତି ।

ପତିତ ରାଜା ଐଳ ସମ୍ରାଟ୍ ପୁରୁରବା ଜୀବନରେ ନିରନ୍ତର ସାଧୁ ସଙ୍ଗ କରି ଆତ୍ମାରାମ ହୋଇ ସଂସାରରେ ବିଚରଣ କଲେ ଏବଂ ପରିଶେଷରେ ମାୟାମୁକ୍ତ ହୋଇ ଜୀବନାନ୍ତେ ନାରାୟଣ ଲୋକ ସାର୍ଷ୍ଟି ମୁକ୍ତିକୁ ପ୍ରାପ୍ତ ହୋଇଥିଲେ ।

# ଅଥ ୨୭ଶ ଅଧ୍ୟାୟଃ

## (ବୈଦିକ କର୍ମକାଣ୍ଡର ଅନ୍ତିମ ପରିଣତି ହରି ଭଜନ)

ପ୍ରଶ୍ନ-୭୧ : ବିଗତ ୨୬ ଅଧ୍ୟାୟରେ ମୁକ୍ତି ପ୍ରସଙ୍ଗ ଆଲୋଚନାରେ ବକ୍ତା ଶ୍ରୀକୃଷ୍ଣ ଓ ଶ୍ରୋତା ଉଦ୍ଧବଜୀ । ଆଉ ମାତ୍ର ୫ ଅଧ୍ୟାୟ ପରେ ମୁକ୍ତି ଆଲୋଚନାର ବିରାମ ଘଟିବ । ଉଦ୍ଧବଙ୍କୁ ଭାଗବତରେ ପ୍ରଚାର ପ୍ରସାର ଦାୟିତ୍ୱ ଦେଇ ଗୋବିନ୍ଦ ସ୍ୱଧାମ ଗୋଲୋକ ଗମନ କରିବେ । ସୁତରାଂ ଏ ଅଧ୍ୟାୟରେ ଉଦ୍ଧବଜୀ ପଚାରିଛନ୍ତି ଯେ ଯଦି ପୂଜନ ରୂପ ଭକ୍ତି କରିବା ହିଁ ଜୀବର ଅନ୍ତିମ ଲକ୍ଷ୍ୟ ତେବେ ଭଗବାନ ଏପରି କିଛି ଉପାୟ ବତାନ୍ତୁ ଯାହାକୁ ମନୁଷ୍ୟ ମାତ୍ରେ କରିପାରିବେ । ଜ୍ଞାନ ମାର୍ଗ ପାଇଁ ଯଦି ପୂର୍ଣ୍ଣ ସଂସାର ବୈରାଗ୍ୟ ଲୋଡ଼ା ପୁଣି ଭକ୍ତି ମାର୍ଗ ପାଇଁ ଅଳ୍ପ ହେଲେ ମଧ୍ୟ ବୈରାଗ୍ୟ ଲୋଡ଼ା ତେବେ ଆଦୌ ବୈରାଗ୍ୟ ନଥିବା ଲୋକ ପୂଜନ କରିବ କେମିତି ?

ଶ୍ରୀଭଗବାନ ଉବାଚ

**ନ ହି-ଅନ୍ତୋଽନନ୍ତପାରସ୍ୟ କର୍ମକାଣ୍ଡସ୍ୟ ଚ-ଉଦ୍ଧବ ।**
**ସଂକ୍ଷିପ୍ତଂ ବର୍ଣ୍ଣୟିଷ୍ୟାମି ଯଥାବତ୍ ଅନୁପୂର୍ବଶଃ ॥୬॥**

ଉ. ଏହି ପୂଜାବିଧି ବା କର୍ମକାଣ୍ଡ ପ୍ରଥମେ ନାରାୟଣ ବ୍ରହ୍ମାଙ୍କୁ ଓ ବ୍ରହ୍ମା ତାଙ୍କ ପୁତ୍ର ସନକାଦି ମୁନିମାନଙ୍କୁ ଓ ଭୃଗୁ ଆଦି ଋଷିମାନଙ୍କୁ ବତାଇଥିଲେ । ଶଙ୍କରଜୀ ମଧ୍ୟ ନିଜ ପତ୍ନୀ ପାର୍ବତୀଙ୍କୁ କହିଥିଲେ । ପୂଜାର ମାହାତ୍ମ୍ୟ ପ୍ରଶଂସା ଦେବର୍ଷି ନାରଦ, ମୁନିଶ୍ରେଷ୍ଠ ବ୍ୟାସ ଓ ଦେବଗୁରୁ ବୃହସ୍ପତି କହିଥିବା କଥା ଉଦ୍ଧବଙ୍କଠାରୁ ଶୁଣି ଭଗବାନ ପୂଜାର ବିଧାନ ବୈଦିକ କର୍ମକାଣ୍ଡରେ ୮୦,୦୦୦ମନ୍ତ୍ରରେ ବର୍ଣ୍ଣିତ ବୋଲି କହିଲେ । ବ୍ରହ୍ମାଙ୍କ ପ୍ରଚାରିତ ମନ୍ତ୍ର ମାର୍ଗରେ ପରମାତ୍ମା ନାରାୟଣଙ୍କର ମାନସିକ ପୂଜନ କରିବାକୁ ହୁଏ । ସ୍ଥୁଳ ମୂର୍ତ୍ତି ପୂଜନ ବ୍ୟବସ୍ଥା ନଥାଏ ସେଥିରେ । କେବଳ ମନ୍ତ୍ର ଜପ ସହିତ ରୂପ ଲୀଳା ଆଦିର ଧ୍ୟାନ କରାଯାଏ । ଶଙ୍କରଜୀଙ୍କ ଉପଦିଷ୍ଟ ସ୍ଥୁଳ ପୂଜା ବା ତନ୍ତ୍ର ମାର୍ଗ ନାରଦ ପାଞ୍ଚରାତ୍ର ଓ ଗୌତମୀୟ ତନ୍ତ୍ର ଆଦିରେ ବର୍ଣ୍ଣିତ । ଏହା ଏତେ ସହଜ ଓ ସରଳ ଯେ ବଣ ଜଙ୍ଗଲର ଆଦିବାସୀ ସମାଜଠାରୁ ଆରମ୍ଭ କରି ଶୂଦ୍ର ଓ ସ୍ତ୍ରୀ ମାନେ ମଧ୍ୟ ଆଜି ଏହି ତନ୍ତ୍ର ମାର୍ଗର ଅଧିକାରୀ ।

ପ୍ରଶ୍ନ-୭୨ : ଭଗବାନଙ୍କ ପୂଜନ ବିଧି ବୈଦିକ, ତାନ୍ତ୍ରିକ ଓ ମିଶ୍ର ତ୍ରିବିଧ ହେଲେ ମଧ୍ୟ ଉଦ୍ଧବଙ୍କୁ ସେ ମିଶ୍ର ବିଧିର ବିଶଦ ବ୍ୟାଖ୍ୟା ଶୁଣାଉଛନ୍ତି । ବ୍ରାହ୍ମଣ,

କ୍ଷତ୍ରିୟ, ବୈଶ୍ୟ ଦ୍ୱିଜାତି ସଂସ୍କାର ପରେ ବୈଦିକ ପୂଜନ କରିବା ବିଧି । ଗୁରୁ ବରଣ କରି, ଦୀକ୍ଷା ସହିତ ମନ୍ତ୍ର ଗ୍ରହଣ କରି ଗାୟତ୍ରୀ ମନ୍ତ୍ରରେ ଶୁଭାରମ୍ଭ କରେ ବ୍ରହ୍ମଚାରୀ । ସ୍ନାନ, ଦନ୍ତ ଧାପନ, ସଂଧ୍ୟା ବନ୍ଦନ ପରେ ପୂଜାର ଫଳକୁ ଭଗବାନଙ୍କୁ ପ୍ରଥମେ ସମର୍ପଣ କରି ପୂଜାରମ୍ଭ ହୁଏ । ପୂଜାରେ କେଉଁ କେଉଁ ମୂର୍ତ୍ତିଙ୍କୁ ଉପାସନା କରାଯାଏ ?

**ଶୈଳୀ ଦାରୁମୟୀ ଲୌହୀ ଲେପ୍ୟା ଲେଖ୍ୟା ଚ ସୈକତୀ ।**
**ମନୋମୟୀ ମଣିମୟୀ ପ୍ରତିମା-ଅଷ୍ଟବିଧା ସ୍ମୃତା ॥୧୨॥**

ଉ. ପଥର (ଶୈଳୀ), କାଠ, ଧାତୁ, ଚନ୍ଦନ କିମ୍ବା ମାଟି (ଲେପ୍ୟା), ଚିତ୍ରପଟ, ବାଲୁକା (ସୈକତୀ), ମନରେ ଧ୍ୟାନ କରିଥିବା (ମନୋମୟୀ), ବା ମୂଲ୍ୟବାନ ମଣିମୟୀ ପ୍ରତିମାକୁ ମିଶାଇ ଆଠପ୍ରକାର ପ୍ରତିମା ପୂଜନ କରାଯାଏ ।

ମନ୍ଦିର ସ୍ଥାପିତ ମୂର୍ତ୍ତିଙ୍କୁ ଅଚଳ ପ୍ରତିମା ଓ ଅନ୍ୟତ୍ର ପୂଜିତ ପ୍ରତିମାଙ୍କୁ ଚଳ ପ୍ରତିମା ବୋଲି କୁହାଯାଏ । ସ୍ଥାୟୀ ଠାକୁରଙ୍କର ଆବାହନ ବିସର୍ଜନ ଆଦି କରାଯାଏ ନାହିଁ କିନ୍ତୁ ଅସ୍ଥାୟୀଙ୍କର ଏସବୁ କରିବାକୁ ହୁଏ । ମନ୍ଦିରସ୍ଥିତ ସ୍ଥାୟୀ ବିଗ୍ରହଙ୍କର ନିତ୍ୟ ସ୍ନାନ କରାଇବାକୁ ପଡ଼େ । ମାଟି, ଚନ୍ଦନ, ଚିତ୍ର ଠାକୁରଙ୍କୁ କେବଳ କନାରେ ପୋଛି ଦେଇ ତୁଳସୀ ସହ ଫୁଲକୁ ଜଳରେ ବୁଡ଼ାଇ ସିଞ୍ଚନ କରିବାକୁ ହୁଏ ।

ପ୍ରଶ୍ନ-୭୩: ଶ୍ରଦ୍ଧା ବିଶ୍ୱାସ ସହିତ ନିଷ୍କପଟ ଭାବରେ ସହଜ ଲବ୍ଧ ସାମଗ୍ରୀ ଦ୍ୱାରା, ନ ମିଳିଲେ ମାନସିକ ଅର୍ପଣ କରିବାକୁ ହେବ । ମନ୍ଦିର ମୂର୍ତ୍ତିଙ୍କୁ ସ୍ନାନ, ବସ୍ତ୍ର ଅଳଙ୍କାର ଦେଇ, ମାଟି ପ୍ରତିମାଙ୍କୁ କରନ୍ୟାସ ଅଙ୍ଗନ୍ୟାସ କରି, ଅଗ୍ନିଙ୍କୁ ଆହୂତି ଦେଇ, ଗଙ୍ଗା ଆଦିଙ୍କୁ ଜଳ ତର୍ପଣ କରି, ସୂର୍ଯ୍ୟଙ୍କୁ ଗାୟତ୍ରୀ ମନ୍ତ୍ରରେ ଜଳଦାନ ସହିତ ନମସ୍କାର କରି ଓ ବିଷ୍ଣୁଙ୍କୁ ଜଳ ତୁଳସୀ କିମ୍ବା ଶଙ୍କରଙ୍କୁ ଜଳ ଓ ବେଲପତ୍ରରେ ପୂଜା କରିବା ଉଚିତ । ଉପଚାର ପଞ୍ଚ, ଷୋହଳ ଯାହା ବି ହେଉ । ଶାସ୍ତ୍ର, ବିଧି ଅନୁଯାୟୀ ସ୍ନାନ ଶୌଚ ହୋଇ ଆସନରେ ବସି ପାଦ୍ୟ, ଅର୍ଘ୍ୟ ଆଚମନୀୟ ଆଦିକୁ ଅଭିମନ୍ତ୍ରିତ କରି ସମର୍ପଣ କରି ଠାକୁରଙ୍କୁ ମନେ ମନେ ସାଧକ ଧ୍ୟାନ କରିବ । ଭଗବାନଙ୍କୁ ପୂଜା କରି ନାରଦ ଆଦି ତାଙ୍କ ପାର୍ଷଦ, ଆୟୁଧ ଓ ପାର୍ଶ୍ୱଦେବତାଙ୍କୁ ମଧ୍ୟ ପୂଜା କରିବ । ପୁରୁଷ ସୂକ୍ତ ମନ୍ତ୍ରରେ ପଇତା, ଗହଣା, ତିଳକ, ଫୁଲମାଳ, ଧୂପ, ସୁଗନ୍ଧିତ ତୈଳ, ଦୀପ ଆଦି ନେଇ କି କି ନୈବେଦ୍ୟ ବ୍ୟବସ୍ଥା କରିବାକୁ ପଡ଼ିବ ?

**ଗୁଡ଼ ପାୟସ ସର୍ପୀଂ ଚ ଶଷ୍କୁଲୀ-ଆପୂପ ମୋଦକାନ୍ ।**
**ସଂଯାବ ଦଧି ସୂପାନ୍ ଚ ନୈବେଦ୍ୟଂ ସତି କଳ୍ପୟେତ୍ ।।୩୪।।**

ଉ. ସୁମିଷ୍ଟ ଦ୍ରବ୍ୟ, କ୍ଷିରୀ, ଘୃତ (ସର୍ପୀଂଚ), ଚାଉଳ ପିଠା (ଶଷ୍କୁଲୀ) ସୁସ୍ୱାଦୁ ବ୍ୟଞ୍ଜନ (ଆପୂପ), ଲଡୁ, ପଞ୍ଚାମୃତ, ଦଧି ଇତ୍ୟାଦିର ବନ୍ଦୋବସ୍ତ କରିବ । କୌଣସି ଦ୍ରବ୍ୟ ଅପ୍ରାପ୍ତିରେ ମାନସିକ ଭୋଗ ଚଢ଼ାଇବାକୁ ପଡ଼ିବ । ପ୍ରତିଦିନ ଅଗ୍ନିହୋତ୍ର କରି ହୋମ ଯଜ୍ଞ କରି ସାରି ନାରାୟଣଙ୍କ ରୂପ ଧ୍ୟାନରେ ମନକୁ ଲଗାଇବ । ବାସ ଏଇତ ପୂଜା ବିଧି ।

ପ୍ରଶ୍ନ-୭୪: ଧ୍ୟାନ ଶେଷରେ ନମସ୍କାର କରି, ବିଧି ଜନିତ ତ୍ରୁଟି ଲାଗି କ୍ଷମା ଯାଚନା କରିବ । ଶେଷରେ ସ୍ତୁତି ମନ୍ତ୍ର ଗାଇ, ନାଚି, ଲୀଳା ଅଭିନୟ ଆଦି କରି ବାଜା ବଜେଇ, ହରି କଥା ଶୁଣି, ଶୁଣାଇ ଉତ୍ସବ ପାଳନ କରିବାକୁ ପଡ଼େ ଅତି କମରେ ପର୍ବ ବା ଉତ୍ସବ ଦିନ ମାନଙ୍କରେ । ଦିନ ପରେ ଦିନ, ମାସ ପରେ ମାସ, ବର୍ଷ ପରେ ବର୍ଷ, ଜନ୍ମ ପରେ ଜନ୍ମ ପୂଜନ କରି କରି ଶେଷରେ ସକଳ ବ୍ୟକ୍ତିରେ, ଜୀବରେ, ବସ୍ତୁରେ ଓ ନିଜ ଆତ୍ମା ମଧ୍ୟରେ ମାନସିକ ପୂଜନ କରିବା ଜାରି ରଖିଲେ ଏହି କ୍ରିୟା ଯୋଗ ପଥରେ କି ଫଳ ମିଳେ ସାଧକକୁ ?

**ଏବଂ କ୍ରିୟାଯୋଗ ପଥୈଃ ପୁମାନ୍ ବୈଦିକ ତାନ୍ତ୍ରିକୈଃ ।**
**ଅର୍ଚ୍ଚନ୍ ଉଭୟତଃ ସିଦ୍ଧିଂ ମତ୍ତୋ ବିନ୍ଦତି-ଅଭୀପ୍ସିତାମ୍ ।।୪୯।।**

ଉ. ବୈଦିକ କର୍ମକାଣ୍ଡ, ତାନ୍ତ୍ରିକ ପୂଜନ ବା ମିଶ୍ର ବିଧିରେ କରାଯାଉଥିବା ଉପାସନା ହିଁ କ୍ରିୟାଯୋଗ । ଏହି ଅର୍ଚ୍ଚନା ଦ୍ୱାରା ଭଗବାନଙ୍କଠାରୁ (ମତ୍ତୋ) ଇହଲୋକ ଓ ପରଲୋକ (ଉଭୟତଃ) ସୁଖ ସମୃଦ୍ଧି ସହିତ ପାଞ୍ଚ ପ୍ରକାର ମୁକ୍ତି ପୁଣି ଜୀବନ୍ମୁକ୍ତି ବା କୃଷ୍ଣପ୍ରେମ ପ୍ରାପ୍ତି ପର୍ଯ୍ୟନ୍ତ ସାଧକକୁ ମିଳିଥାଏ (ବିନ୍ଦତି) ।

ପ୍ରଶ୍ନ-୭୫: ଥରେ ହରିଭକ୍ତି ସାଧକ ହୃଦୟରେ ଉତ୍ପନ୍ନ ହେଲେ ଭବ୍ୟ ମନ୍ଦିରଟିଏ ନିର୍ମାଣ କରିବା, ଅର୍ଚ୍ଚା ବିଗ୍ରହ ସ୍ଥାପନ କରିବା, ସୁନ୍ଦର ଫୁଲ ବଗିଚାଟିଏ କରିବା, ଯାନି ଯାତ୍ରା ପର୍ବପର୍ବାଣୀ ଉତ୍ସାହ ସହକାରେ ପାଳନ କରିବା ଏହି ଭାଗବତ ଧର୍ମର ଅନ୍ତର୍ଗତ । ଭବିଷ୍ୟତରେ ପୂଜା ବିଧି ଚାଲୁ ରଖିବା ପାଇଁ ଭୂମି, ଧନ ଇତ୍ୟାଦି ଖଞ୍ଜିଦେଲେ, ଉତ୍ସବ ପର୍ବପର୍ବାଣି ଖର୍ଚ୍ଚ ବ୍ୟବସ୍ଥା କରିଦେଲେ, ଭୂମିଦାନ, ପୂଜା ସାମାନ ବିକ୍ରୀ ଦୋକାନ ଖୋଲିଦେଲେ ପୂଜକମାନଙ୍କ ରହିବା ଲାଗି ସାହି, ଗ୍ରାମ ଆଦି

ବସାଇଲେ ବୈକୁଣ୍ଠ ବାସ ସହିତ ନାରୟଣଙ୍କ ଐଶ୍ୱର୍ଯ୍ୟ ପ୍ରାପ୍ତି ହୁଏ । ଏ ସବୁ ହେଲା ପ୍ରଗାଢ଼ ଭକ୍ତିର କଥା । ଯଦି ଜଣେ ସକାମ ଭବରେ ସମାନ୍ୟ ନାରାୟଣ ଭକ୍ତି କରେ ତାକୁ କି ଫଳ ପ୍ରାପ୍ତିହେବ ?

**ପ୍ରତିଷ୍ଠୟା ସାର୍ବଭୌମଂ ସଦ୍ମ ନା ଭୁବନ ତ୍ରୟମ୍ ।**
**ପୂଜାଦିନା ବ୍ରହ୍ମଲୋକଂ ତ୍ରିଭିଃ ମତ୍ ସାମ୍ୟତାଂ ଇୟାତ୍ ॥୫୨॥**

ଉ. କାହାର ମନ୍ଦିରରେ ମୂର୍ତ୍ତିଟିଏ ନିଜ ଖର୍ଚ୍ଚରେ କିଣି ପ୍ରତିଷ୍ଠା କରିଦେଲେ ପରଜନ୍ମରେ ସାରା ଭୂମଣ୍ଡଳରେ ସମ୍ରାଟ ପଦବୀ ମିଳେ । ଭବ୍ୟ ମନ୍ଦିରଟିଏ ନିର୍ମାଣ କରିଦେଲେ (ସଦ୍ମନା) ଭୂ, ଭୁବଃ ଓ ସ୍ୱ ତ୍ରିଲୋକର ଅଧିପତି ହୁଏ ସେ ସକାମ ଭକ୍ତ । ଜୀବନସାରା ବିଗ୍ରହ ସେବା ଆଦିରେ କାଳ କଟାଇଦେଲେ ବ୍ରହ୍ମଲୋକ ପ୍ରାପ୍ତି ହୁଏ । ପୁଣି କେହି ଏହି ତିନିକଥା ଯାକ କଲେ ନାରାୟଣଙ୍କ ବୈକୁଣ୍ଠଲୋକରେ ସାରୂପ୍ୟ ବା ସାର୍ଷ୍ଟିମୁକ୍ତି ପର୍ଯ୍ୟନ୍ତ ମିଳିଯାଏ ।

ପ୍ରଶ୍ନ-୭୬: ଯଦି ସକାମ ଭାବରେ ନାରାୟଣ ଭକ୍ତିରେ ଏତେ ବଡ଼ ବଡ଼ ଫଳ ପ୍ରାପ୍ତିହୁଏ ତେବେ ତାଙ୍କ ନିଷ୍କାମ ଭକ୍ତିରେ (ନୈରପେକ୍ଷେଣ) କି ସୌଭାଗ୍ୟର ଅଧିକାରୀ ହୁଏ ସାଧକ ?

**ମାଂ ଏବ ନୈରପେକ୍ଷ୍ୟେଣ ଭକ୍ତି ଯୋଗେନ ବିନ୍ଦତି ।**
**ଭକ୍ତି ଯୋଗଂ ସ ଲଭତେ ଏବଂ ଯଃ ପୂଜୟତେ ମାମ୍ ॥୫୩॥**

ଉ. ପୂର୍ବୋକ୍ତ ପ୍ରକାରେ ନିଷ୍କାମ ପ୍ରେମର ଫଳ ହେଲା କୃଷ୍ଣପ୍ରେମ ଓ କୃଷ୍ଣଭକ୍ତ ସେବା ସୁଯୋଗ ପ୍ରାପ୍ତି ଯାହାର ସୁଯୋଗ ସ୍ୱର୍ଗର ଇନ୍ଦ୍ର, ଚନ୍ଦ୍ର, ବ୍ରହ୍ମା, ଶଙ୍କର, ମହାଲକ୍ଷ୍ମୀ ଓ ମହାସରସ୍ୱତୀଙ୍କୁ ମଧ୍ୟ ମିଳି ନଥାଏ ।

ଭାଗବତ ଧର୍ମରେ କିଛି ସତର୍କତା ମଧ୍ୟ ଅବଲମ୍ବନ କରିବାକୁ ହୁଏ । ଜାଣତରେ ବା ଅଜାଣତରେ ଦେବସ୍ୱ, ବ୍ରହ୍ମସ୍ୱ କେହି ଅପହରଣ କଲେ ତାର କୁଫଳ ଜନ୍ମ ଜନ୍ମାନ୍ତର ଧରି ଭୋଗିବାକୁ ହୁଏ ତାହା ପୁଣି କୃମି କୀଟ ଜନ୍ମରେ । କେହି ପ୍ରତ୍ୟକ୍ଷ ରୂପରେ ହେଉ ବା ପରୋକ୍ଷରେ କାହାକୁ ଏ ପାପ କାର୍ଯ୍ୟରେ ସାହାଯ୍ୟ କଲେ କିମ୍ବା ସେ ଭଳି କାର୍ଯ୍ୟର ଅନୁମୋଦନ କଲେ ସେହିଭଳି ଜନ୍ମ ଜନ୍ମାନ୍ତର କଷ୍ଟମୟ ଜୀବନ ଭୋଗିବାକୁ ହୁଏ ଜୀବକୁ ବାଧ୍ୟ ବାଧକତାରେ ।

# ଅଥ ୨୮ଶ ଅଧ୍ୟାୟଃ

## (ବୈଦିକ କର୍ମକାଣ୍ଡର ଅନ୍ତିମ ପରିଣତି-ହରିଭଜନ)

## ଶ୍ରୀ ଭଗବାନ ଉବାଚ

ପ୍ରଶ୍ନ-୭୭: ବୈଦିକ କର୍ମକାଣ୍ଡରେ ଅନ୍ୟର କର୍ମର ଗୁଣ ଦେଖି ପ୍ରଶଂସା କରାଗଲାବେଳେ ବୈଦିକ ଜ୍ଞାନ କାଣ୍ଡରେ ଅନ୍ୟର ଜ୍ଞାନ ଦେଖି ଦୋଷ ଦେଖି ନିନ୍ଦା କରାଯାଇଥାଏ । ପୂର୍ବରୁ ୧୯ଶ ଅଧ୍ୟାୟରେ ଭଗବାନ ଭକ୍ତ ଦୋଷ ଗୁଣ ଉଭୟ ଦେଖିବାକୁ ଦୋଷ ବୋଲି କହିଥିଲେ । ଏବେ ଆଠ ଅଧ୍ୟାୟ ହେଲା ସେଇ କଥା ବୁଝାଇଲେ ମଧ୍ୟ ଉଦ୍ଧବ କଥାର ରହସ୍ୟ ଆଦୌ ଧରି ପାରୁନାହାନ୍ତି । ଅନ୍ୟର ସ୍ୱଭାବ ଦେଖି ପ୍ରଶଂସା କିମ୍ବା ନିନ୍ଦା କଲେ ଭକ୍ତର କି କ୍ଷତିହୁଏ ବୋଲି ଭଗବାନ କହିଲେ ?

**ପର ସ୍ୱଭାବ କର୍ମାଣି ଯଃ ପ୍ରଶଂସତି ନିନ୍ଦତି ।**
**ସ ଆଶୁ ଭ୍ରଶ୍ୟତେ ସ୍ୱାର୍ଥାତ୍ ଅସତ୍ୟ-ଅଭିନିବେଶତଃ ॥୨॥**

ଉ. ଭକ୍ତି ମାର୍ଗୀ ସାଧକର ଅସଲି ସ୍ୱାର୍ଥ ହେଲା ପରମାର୍ଥ ପ୍ରାପ୍ତି । ତେଣୁ ତାର ସର୍ବତ୍ର ଆତ୍ମାଙ୍କୁ ଦର୍ଶନ କରିବା କଥା । ମାୟା ଦର୍ଶନ ବା ଚିନ୍ତନ ତା ପକ୍ଷେ କ୍ଷତି କାରକ । ଅନ୍ୟର ସ୍ୱଭାବ ବା କର୍ମରେ ଦୋଷ ଗୁଣ ଦର୍ଶନ କରିବା ଅର୍ଥ ମାୟାକୁ ସ୍ୱୀକାର କରିବା (ଅସତି)ହେଲା । ଫଳତଃ ସେ ନିଜ ସାଧନାରୁ ଚଟାପଟ (ଆଶୁ) ଭ୍ରଷ୍ଟ ହୁଏ (ଭ୍ରଶ୍ୟତେ) । ସେ କର୍ମକାଣ୍ଡୀ ହେଉ ବା ଜ୍ଞାନ କାଣ୍ଡୀ ଯାହା ବି ହେଉ । ଅଭିନିବେଶ ଅର୍ଥ ମୃତ୍ୟୁଭୟ । କର୍ମକାଣ୍ଡୀ ଓ ଜ୍ଞାନକାଣ୍ଡୀ ସାଧକ ମାୟାକୁ ସ୍ୱୀକାର କରନ୍ତେ ତାକୁ ଶରୀର ସଂସାର ଯାହା ଅସତ୍ (ଅସତି) ତାକୁ ସତ୍ ମନେ ହେବ ହିଁ ହେବ ସେ ତୁଣ୍ଡରେ ଯେତେ କହୁ ସଂସାର ମିଥ୍ୟା ବୋଲି । ସୁତରାଂ ସେ ନିଜ ମୃତ୍ୟୁକୁ ନିଶ୍ଚୟ ଭୟ କରିବ । ଭକ୍ତର ମୃତ୍ୟୁଭୟ ଆସିବ କାହୁଁ?

ପ୍ରଶ୍ନ-୭୮: ଶରୀର ଓ ସଂସାର ଉଭୟ ଦୃଶ୍ୟମାନ ସତ କିନ୍ତୁ ଭଗବାନ ତାକୁ ଅସତ୍ ନିତ୍ୟ ପରିବର୍ତ୍ତନଶୀଳ ବୋଲି କେଉଁ କେଉଁ ଦୃଷ୍ଟାନ୍ତ ଦେଇ ବୁଝାଇଲେ ?

**ଛାୟା ପ୍ରତ୍ୟାହ୍ୱୟ-ଆଭାସା ହି-ଅସନ୍ତୋଽପି-ଅର୍ଥକାରିଣଃ ।**
**ଏବଂ ଦେହ-ଆଦୟୋ ଭାବା ଯଚ୍ଛନ୍ତି-ଆମୃତ୍ୟୁତୋ ଭୟମ୍ ॥୪॥**

ଉ. ସୂର୍ଯ୍ୟର ପ୍ରତିବିମ୍ବ ଜଳରେ, ଶବ୍ଦର ପ୍ରତିଧ୍ୱନି ଆକାଶରେ, ପଦାର୍ଥର ପ୍ରତିବିମ୍ବ ଦର୍ପଣରେ ଦିଶନ୍ତି । ଏମାନଙ୍କର ବ୍ୟାବହାରିକ ସତ୍ୟତା ଥାଆନ୍ତି (ଅର୍ଥ

କାରିଣଃ) କିନ୍ତୁ ପାରମାର୍ଥିକ ସତ୍ୟତା ନଥାନ୍ତି (ଅସନ୍ତା) । ସେହିଭଳି (ଏବଂ) ମନୁଷ୍ୟର ଶରୀର ଓ ସଂସାର (ଦେହଆଦୟୋ) ମୃତ୍ୟୁ ପର୍ଯ୍ୟନ୍ତ ସାଧକକୁ ଡ଼ରାଇଥାଆନ୍ତି । କର୍ମକାଣ୍ଡୀ ଜ୍ଞନକାଣ୍ଡୀ ଉଭୟ ମୃତ୍ୟୁକୁ ଭୟକଲାବେଳେ ଭକ୍ତ କିନ୍ତୁ ସଂପୂର୍ଣ୍ଣ ଭୟମୁକ୍ତ ହୋଇ ବେପରୁଆ ବୁଲିପାରେ ସଂସାରରେ ପକେଟରେ ହାତ ପୁରାଇ ।

ପ୍ରଶ୍ନ-୭୯ : ମୃତ୍ୟୁ ବିଷୟକ ଆହୁରି ଏକ ଅତ୍ୟନ୍ତ ଅଡୁଆ ପ୍ରଶ୍ନଟିଏ ଉଦ୍ଧବ କି ଭଳି ଶବ୍ଦରେ ଉପସ୍ଥାପନ କଲେ ?

ଉଦ୍ଧବ ଉବାଚ

**ନ-ଏବ-ଆତ୍ମନୋ ନ ଦେହସ୍ୟ ସଂସୃତିଃ ଦ୍ରଷ୍ଟୃ ଦୃଶ୍ୟୟୋଃ ।**
**ଅନାତ୍ମ ସ୍ୱ ଦୃଶୋଃ ଈଶ କସ୍ୟ ସ୍ୟାତ୍ ଉପଲଭ୍ୟତେ ॥୧୦॥**

ଉ. ଆତ୍ମା ଦ୍ରଷ୍ଟା ସତ, ପୁଣି ଚିତ୍‌ମୟ, ଆନନ୍ଦମୟ, ଅଜର, ଅମର ଅଜନ୍ମା ମଧ । ଦେହ ଦୃଶ୍ୟ ଜଡ଼, ଅଚେତନ (ଅନାତ୍ମ) । ତେବେ ଆତ୍ମା ଓ ଦେହ ଉଭୟ ଜନ୍ମମରଣ ଚକ୍ରରେ ଘୂରିବା (ସଂସୃତି) ଅସମ୍ଭବ ବ୍ୟାପାର । ଉଦ୍ଧବ କହିଲେ, ''ହେ ଭଗବନ୍ (ଈଶ), ସଂସାରରେ ଜନ୍ମ-ମରଣ ନିତି ହେବାର ଆମେ ଅନୁଭବ କରୁଛୁ (ଉପଲଭ୍ୟତେ) କିପରି ? ଏହାହିଁ ପ୍ରଶ୍ନର ଅଡୁଆ ସୂତା ଖିଅ ।

ପ୍ରଶ୍ନ-୮୦ : ଭଗବାନ ଖୁବ୍ ସୁନ୍ଦର ଶବ୍ଦରେ ମାର୍ମିକ ପ୍ରଶ୍ନଟିର ସମାଧାନ କଲେ କିଭଳି ଉତ୍ତର ଦେଇ ?

ଶ୍ରୀଭଗବାନ ଉବାଚ

**ଅର୍ଥେ ହି-ଅବିଦ୍ୟମାନେଽପି ସଂସୃତିଃ ନ ନିବର୍ତ୍ତତେ ।**
**ଧ୍ୟାୟତୋ ବିଷୟାନ୍ ଅସ୍ୟ ସ୍ୱପ୍ନେଽନର୍ଥ-ଆଗମୋ ଯଥ ॥୧୩॥**

ଉ. ମନୁଷ୍ୟର ଶରୀର ଓ ସଂସାରର ପାରମାର୍ଥିକ ସତ୍ୟତା ନଥିଲେ ମଧ (ଅର୍ଥେ ହି-ଅବିଦ୍ୟମାନେଽପି) ସେ ଜନ୍ମମରଣ ଚକ୍ରରୁ ଖସି ପାରେନା (ନ ନିବର୍ତ୍ତତେ) । କାରଣ ହେଲା ସତ୍ (ପରମାତ୍ମା) ଧ୍ୟାନ ବଦଳରେ ଅସତ୍ (ବିଷୟ ସୁଖ ଲାଳସା ଆଶା) ଧ୍ୟାନ, ଚିନ୍ତନ ଓ ସେ ସବୁ ପ୍ରାପ୍ତି ଲାଗି ଇନ୍ଦ୍ରିୟମାନଙ୍କୁ ବିଷୟ ଭୋଗ ସଂଗ୍ରହ ପଛରେ ଦଉଡ଼ାଇବା । ବାସ୍ ଏତିକି ସାମାନ୍ୟ କାରଣରୁ ଏତେ ବଡ଼ ବିପତ୍ତି !

ପ୍ରଶ୍ନ-୮୧ : ସ୍ୱପ୍ନରେ ମୁଣ୍ଡ କଟିଗଲେ, ସାପ କାମୁଡ଼ିଦେଲେ ସ୍ୱପ୍ନଦ୍ରଷ୍ଟା ମନୁଷ୍ୟକୁ କେତେ ଦୁଃଖ ଅନୁଭବ ହୁଏ ମନରେ କିନ୍ତୁ ଜାଗ୍ରତ ହେଲେ ସେ ଦୁଃଖ ଆଉ ନଥାଏ । ସେହିଭଳି ବିଷୟ ସୁଖର ମଧ ଅନୁଭବ ହୁଏ ମନୁଷ୍ୟକୁ । ତେବେ ଶୋକ,

ହର୍ଷ, ଭୟ, କ୍ରୋଧ, ଲୋଭ, ମୋହ, ରାଗ-ଦ୍ୱେଷ (ସ୍ପୃହା-ଆଦୟଃ), ସୁଖ-ଦୁଃଖ, ଭଲ ମନ୍ଦର ଅନୁଭବ ହୁଏ କାହାକୁ ?

**ଶୋକ ହର୍ଷ ଭୟ କ୍ରୋଧ ଲୋଭ ମୋହ ସ୍ପୃହା-ଆଦୟଃ ।**
**ଅହଂକାରସ୍ୟ ଦୃଶ୍ୟନ୍ତେ ଜନ୍ମ ମୃତ୍ୟୁଃ ଚ ନ-ଆତ୍ମନଃ ॥୧୫॥**

ଉ. ଏସବୁ ଅନୁଭବ ହୁଏ କେବଳ ମନକୁ (ଅହଂକାରସ୍ୟ) । ନା ଦେହର ନା ଆତ୍ମାଙ୍କର ଜନ୍ମ ମୃତ୍ୟୁ ସମ୍ଭବ ହୋଇଥାଏ ।

ଯେଉଁ ଜୀବ ଆତ୍ମା ବା ବ୍ରହ୍ମ ମଙ୍ଗଳମୟ ଶିବରୂପୀ ସେ ଏହି ବିଷୟ ଭୋଗର ଲାଳସା ବା ଆକର୍ଷଣରେ ଅହଂକାର ନାମ ଧରେ । ମନ ବୁଦ୍ଧିଙ୍କୁ ଟାଣି ସୁଖ ଦୁଃଖ, ଜନ୍ମମରଣ ଆଦି ଅନୁଭବ କରାଏ ।

ପ୍ରଶ୍ନ-୮୨: ତ୍ରିକାଣ୍ଡ ବିଷୟା ବେଦା ନିଷ୍ପତ୍ତି କରିଛନ୍ତି ଯେ ଦୋଷ ଗୁଣର ବିଚାର କେବଳ ୪ବର୍ଣ୍ଣ ଓ ୪ଆଶ୍ରମର ଧର୍ମ (ସ୍ୱଧର୍ମ) ପାଳନ ଲାଗି । ସୁତରାଂ ଦୋଷ ଗୁଣ, ନିନ୍ଦା ପ୍ରଶଂସା ବିଚାର ସାଧକ ଜୀବନରେ କେଉଁ ପର୍ଯ୍ୟନ୍ତ ରହିବାକୁ ବାଧ ?

**ତଥାପି ସଙ୍ଗଃ ପରିବର୍ଜନୀୟୋ**
**ଗୁଣେଷ୍ଣୁ ମାୟା ରଚିତେଷ୍ଣୁ ତାବତ୍ ।**
**ମଦ୍‌ଭକ୍ତି ଯୋଗେନ ଦୃଢ଼େନ ଯାବତ୍**
**ରଜୋ ନିରସ୍ୟେତ ମନଃ କଷାୟଃ ॥୨୭॥**

ଉ. ଜଣେ ଅଧ୍ୟାତ୍ମ ସାଧକ ସତ୍‌ସଙ୍ଗ କରିବା ଓ କୁସଙ୍ଗ ପରିତ୍ୟାଗ କରିବା ବେଦଙ୍କ ଅନୁଶାସନ । ମନୁଷ୍ୟର ମନ ବୁଦ୍ଧି ଅହଂକାର ସବୁ ସତ୍ତ୍ୱ, ରଜୋ ଓ ତମୋଗୁଣୀ । ସୁତରାଂ ସାଧନ ବେଳେ ସତ୍ତ୍ୱଗୁଣ ଆଶ୍ରୟରେ ଅନ୍ୟ ଦୁଇ ଗୁଣକୁ ପ୍ରଥମେ ଦୂର କରାଯାଏ (ନିରସ୍ୟେତ), ରଜୋ ଗୁଣର ବେଗକୁ ଶାନ୍ତ କରିବା ଯାଏଁ ଦୋଷ ଗୁଣ ବିଚାର କର୍ତ୍ତବ୍ୟ । ଥରେ ପକ୍‌କା ସଂସାର ବୈରାଗ୍ୟ ଉତ୍ପନ୍ନ ହେଲେ (ମନଃ କଷାୟଃ) ସହିତ ପରମେଶ୍ୱରଙ୍କଠାରେ ଅବିଚଳ ଭକ୍ତି ଉତ୍ପନ୍ନ ହୋଇଗଲେ ତେଣିକି ଆଉ ଦୋଷଗୁଣ, ନିନ୍ଦା ପ୍ରଶଂସା ଆଦିକୁ ଭୟ କରିବା ଅଦରକାରୀ ।

ପ୍ରଶ୍ନ-୮୩: ପ୍ରଥମରୁ ଜ୍ଞାନମାର୍ଗୀ ସାଧକ ଶରୀର ସଂସାର ଲୋଭ ତ୍ୟାଗ କରି ଅତ୍ୟନ୍ତ କଠିନ ସାଧନ କରିଥାଏ । ଯଦି ଆଧି ବ୍ୟାଧିର ଶିକାର ହୁଏ ତେବେ ସେ କ'ଣ ଜ୍ଞାନ ମାର୍ଗ ଛାଡ଼ି ଅନ୍ୟ ମାର୍ଗକୁ ପଳାଇବା ବା ଆଶ୍ରୟ କରିବା ଉଚିତ କି ?

**ଯୋଗ ଧାରଣୟା କାଂଶ୍ଚିତ୍ ଆସନୈଃ ଧାରଣା-ଅନ୍ୱିତୈଃ ।**
**ତପୋ ମନ୍ତ୍ର-ଔଷଧୈଃ କାଂଶ୍ଚିତ୍ ଉପସର୍ଗାନ୍ ବିନିର୍ଦ୍ଦହେତ୍ ॥୩୯॥**

ଉ. ନା, ନା ସେ କଥା ଆଦୌ କରିବା ଉଚିତ ନୁହେଁ । ସେ ସେଇ ଜ୍ଞାନ ମାର୍ଗରେ ସାଧନା ଜାରି ରଖିବ । ପ୍ରାଣାୟାମ, ଆସନ, ଧାରଣା, ତପସ୍ୟା, ମନ୍ତ୍ରଜପ, ତୁଟକା ମୁଟ୍‌କା ଜଡ଼ି ବୁଟି ଔଷଧ ଆଦି ସେବନ କରି ଈଶ୍ୱରଙ୍କର ଶରଣାପନ୍ନ ହେବ । ଏହା ହେଲା ବ୍ୟାଧି ଦୂରୀକରଣ ଉପାୟ ।

ମାନସିକ ଅଶାନ୍ତି (ଆଧି) ଦୂର କରିବାକୁ ସାଧୁ ସେବା, ଭଜନ, କୀର୍ତ୍ତନ ଗୁରୁ ସେବା ଆଦି ସାହାଯ୍ୟରେ ସେ କଷ୍ଟରୁ ମୁକ୍ତ ହେଉଥିବ । କାୟା କଳ୍ପ ଆଦି ସିଦ୍ଧି ଲାଗି ଯତ୍ନ ନକରି କିମ୍ବା ଆୟୁଷ ବୃଦ୍ଧି ଲାଗି ଚେଷ୍ଟା ନକରି ସ୍ୱାଭାବିକ ମୃତ୍ୟୁକୁ ସହର୍ଷ ସ୍ୱୀକାର କରିବ । ତାର ସ୍ୱାଭାବିକ ହରିଭଜନ ତାକୁ ଜନ୍ମ-ଜନ୍ମାନ୍ତର, ଲୋକ-ଲୋକାନ୍ତର ଭ୍ରମଣ କରାଇବ । ଶେଷରେ ଉଚିତ ମାର୍ଗଦର୍ଶନ ମଧ କରାଇବ କୃଷ୍ଣପ୍ରେମ ପ୍ରାପ୍ତି ଲାଗି ।

## ଅଥ ୨୮ଶ ଅଧ୍ୟାୟଃ

## (ବୈଦିକ ଉପାସନା କାଣ୍ଡର ଚରମ ପରିଣତି-ହରିଭଜନ)

ପ୍ରଶ୍ନ-୮୪: ବୈଦିକ କର୍ମକାଣ୍ଡ ଓ ଜ୍ଞାନ କାଣ୍ଡର ବିଶଦ ବ୍ୟାଖ୍ୟାନ ଶ୍ରବଣ କରି ଏବେ ଉଦ୍ଧବଜୀ ନିବେଦନ କରୁଛନ୍ତି ଯେ କଳି ଯୁଗୀ ଲୋକେ ସ୍ୱଭାବତଃ ଅସଂଯତ ଚିତ୍ତ ହେବେ । ସେମାନଙ୍କ ଦ୍ୱାରା ଏହା ଅତ୍ୟନ୍ତ ଦୁଷ୍କର ହେବ । ମନ ଅସଂଯତ ହେତୁ ସେମାନେ କି ଭଳି ଦାରୁଣ ଦୁଃଖ କଷ୍ଟ ଆଧି ବ୍ୟାଧିରେ ପଡ଼ି ତ୍ରାହି ତ୍ରାହି ଡ଼ାକନ୍ତି ସେ ସବୁ ତାଙ୍କୁ ଜଣାଥିଲା । କର୍ମ କରି କର୍ମକାଣ୍ଡୀ ଗର୍ବୀ ହୁଏ ଜ୍ଞାନ ପାଉ ପାଉ ଜ୍ଞାନୀ ଅହଂକାରୀ ହୋଇଯାଏ । ଶରଣାଗତ ହୋଇ କିନ୍ତୁ ଭକ୍ତ ସୁଖ ଦୁଃଖ ଉପରକୁ ଉଠେ । ପରମ ଆନନ୍ଦ ସାଗରରେ ବିହାର କରେ । ରାମାୟଣ ଯୁଗରେ ଯୋଗୀମାନେ ମଧ ପର ଜନ୍ମକୁ ଅପେକ୍ଷା କଲେ କୃଷ୍ଣ ପ୍ରେମ ପାଇବେ ବୋଲି । ସେମାନଙ୍କ ମଧ୍ୟରୁ ଅନେକ ଭାଲୁ ମର୍କଟ ଜନ୍ମପାଇ ମଧ ଶରଣାଗତ ହୋଇ ପ୍ରଭୁ ପ୍ରେମ ପ୍ରାପ୍ତ ହୋଇଥିଲେ । ଉଦ୍ଧବ ଦୁଇ ହାତଯୋଡ଼ି କିଛି ଆହୁରି ସରଳ ଉପାୟ ବତାଇବାକୁ କହିବାରୁ ଭଗବାନ କ'ଣ କହିଲେ ସେତେବେଳେ ?

ଶ୍ରୀ ଭଗବାନ ଉବାଚ

**ହନ୍ତ ତେ କଥୟିଷ୍ୟାମି ମମ ଧର୍ମାନ୍ ସୁମଙ୍ଗଳାନ୍ ।**
**ଯାନ୍ ଶ୍ରଦ୍ଧୟା-ଆଚରନ୍ ମର୍ତ୍ତ୍ୟୋ ମୃତ୍ୟୁଂ ଜୟତି ଦୁର୍ଜୟମ୍ ॥୮॥**

ଉ. ଭଗବାନ କହିଲେ, 'ହଉ ତେବେ (ହନ୍ତ) ଏବେ ପରମ କଲ୍ୟାଣ କାରକ ଭାଗବତ ଧର୍ମ (ମମ ଧର୍ମାନ୍) କହୁଛି । ଶ୍ରବଣ କର । ଯାହାକୁ ଶ୍ରଦ୍ଧା ବିଶ୍ୱାସ ସହିତ ଆଚରଣ କଲେ ମନୁଷ୍ୟର ଦୁଃଖ କଷ୍ଟ ସହିବା କଥା କ'ଣ କହୁଛ ସେ ମରଣ ଭୟକୁ ମଧ୍ୟ ଅତିକ୍ରମ କରିପାରିବ ।''

ପ୍ରଶ୍ନ-୮୫: ସଂକ୍ଷେପରେ ବୁଝିବାକୁ ଗଲେ ସେ ସରଳ ଭାଗବତ ଧର୍ମ କଅଣ ଅଟେ ?

**କୁର୍ଯ୍ୟାତ୍ ସର୍ବାଣି କର୍ମାଣି ମଦ୍‌ଅର୍ଥଂ ଶନକୈଃ ସ୍ମରନ୍ ।**
**ମୟି-ଅର୍ପିତ ମନଃ ଚିତ୍ତୋ ମତ୍ ଧର୍ମ-ଆତ୍ମ ମନୋ ରତି ॥୯॥**

ଉ. ସକଳ କାୟିକ, ମାନସିକ ଓ ବାଚିକ କର୍ମ ଯାହାକୁ ବେଦ ସ୍ୱଧର୍ମ ପାଳନ ବୋଲି କହନ୍ତି ସେସବୁକୁ ଭଗବାନଙ୍କ ନାମ, ରୂପ, ଲୀଳା, ଜପ ଧ୍ୟାନ ସ୍ମରଣ କରି ପାଳନ କରିବା ଭାଗବତ ଧର୍ମ ଅଟେ । ମନ ବୁଦ୍ଧି ଚିତ୍ତ ଅହଂକାର କୃଷ୍ଣ ଅର୍ପିତ ହେଲେ ସେଥିରୁ ମିଳୁଥିବା ଫଳ ମଧ୍ୟ କୃଷ୍ଣାର୍ପିତ ହୋଇଯାଏ । ଏହି ଧର୍ମରେ ମନୁଷ୍ୟର କର୍ମଫଳର ବନ୍ଧନ ଫିଟେ ସିନା ସେ ବାନ୍ଧି ହୁଏନା । ତାର କ୍ରିୟମାଣ ସକଳ କର୍ମର ଫଳ ଭକ୍ତିରେ ପରିଣତ ହୁଏ ।

ପ୍ରଶ୍ନ-୮୬: ସାଧକ ତମୋଗୁଣୀ ରଜୋଗୁଣୀ ସ୍ଥାନ ବା ଦେଶ ତ୍ୟାଗ କରି ସତ୍ତ୍ୱଗୁଣୀ ଗୃହରେ ବାସ କରେ । ସତ୍‌ସଙ୍ଗ କରି ଅଫୁରନ୍ତ ଆନନ୍ଦ ପାଏ । କୁସଙ୍ଗରୁ ନିଜକୁ ଦୂରେଇ ରଖେ । ତେଣିକି ଏକା ଏକା ଘରେ କିମ୍ବା ଅନ୍ୟଭକ୍ତମାନଙ୍କ ସହ ମିଳି ମିଶି ଭଗବାନଙ୍କ ଜନ୍ମ ଉତ୍ସବ, ଦୋଳ, ଝୁଲଣ ଉତ୍ସବ, ଗୀତା ଜୟନ୍ତୀ, ଭାଗବତ ଜନ୍ମ ଆଦି ଯାତ୍ରା ମହୋତ୍ସବ ମହାଆଡ଼ମ୍ବର ସହକାରେ କରିବାରେ ଲାଗି ପଡ଼ନ୍ତେ କି ଲାଭ ମିଳେ ଭକ୍ତକୁ ?

**ମାଂ ଏବ ସର୍ବ ଭୂତେଷୁ ବହିଃ ଅନ୍ତଃ ଅପାବୃତମ୍ ।**
**ଇକ୍ଷେତ-ଆତ୍ମନି ଚ-ଆତ୍ମାନଂ ଯଥା ଖଂ ଅମଳ-ଆଶୟଃ ॥୧୨॥**

ଉ. ଆକାଶ (ଖଂ) ମେଘ ମୁକ୍ତ ହେଲେ ସମସ୍ତ ଗ୍ରହ ତାରାଗଣ ସୂର୍ଯ୍ୟ ଚନ୍ଦ୍ର

ନିର୍ମଳ ଦେଖାଯାଆନ୍ତି । ଅନ୍ତଃକରଣ ଶୁଦ୍ଧ ହୋଇଗଲେ (ଅମଳ-ଆଶୟଃ) ପ୍ରତ୍ୟେକ ଜୀବ ହୃଦୟରେ ପରମାତ୍ମାଙ୍କ ଦିବ୍ୟ ସ୍ୱରୂପ ଭକ୍ତକୁ ଦେଖାଯାଏ । ପୁଣି ଭକ୍ତ ଦେଖେ ସକଳ ଜୀବ ଅନ୍ତରରେ ଓ ବାହାରେ ସେଇ ପରମାତ୍ମା ହିଁ କେବଳ ବିଦ୍ୟମାନ ଯାହା ଦିନେ ସେ ନିଜ ଅନ୍ତରରେ ଦର୍ଶନ କରିଥିଲା । ସଂକ୍ଷେପରେ ତାର ପ୍ରଥମର ଦ୍ୱୈତ ଜ୍ଞାନ ଏବେ ଅଦ୍ୱୈତ ଜ୍ଞାନରେ ପରିପୁଷ୍ଟ ହେଲା । ସେ ଏବେ ଠାକୁରଙ୍କ ଜ୍ଞାନୀ ଭକ୍ତ ।

ପ୍ରଶ୍ନ-୮୭: ଭେଦ ଓ ଅଭେଦ ଉଭୟ ଦୃଷ୍ଟିରେ ଭକ୍ତ ସଂସାରକୁ କିପରି ଦର୍ଶନ କରେ ?

**ବ୍ରାହ୍ମଣେ ପୁଲ୍‌କସେ ସ୍ତେନେ ବ୍ରହ୍ମଣ୍ୟେଽର୍କେ ସ୍ଫୁଲିଙ୍ଗକେ ।**
**ଅକ୍ରୂରେ କ୍ରୂରକେ ଚ-ଏବ ସମଦୃକ୍ ପଣ୍ଡିତୋ ମତଃ ॥୧୪॥**

ଉ. ସଦାଚାରୀ ବ୍ରାହ୍ମଣ ଓ ଦୁରାଚାରୀ (ପୁଲ୍‌କସେ) ଚାଣ୍ଡାଳ, ଅପବିତ୍ର ଚୋର (ସ୍ତେନେ) ଓ ପବିତ୍ର ବ୍ରାହ୍ମଣ ସେବକ, କ୍ଷୁଦ୍ରାଦପି କ୍ଷୁଦ୍ର ଅଗ୍ନିକଣା (ସ୍ଫୁଲିଙ୍ଗକେ) ଓ ଅତିବୃହତ୍ ସୂର୍ଯ୍ୟ, ଅକ୍ରୋଧଶୂନ୍ୟ ସାଧୁ ଓ କ୍ରୂର ସଇତାନ ସମସ୍ତଙ୍କ ପ୍ରତି ସମଦୃଷ୍ଟି ରଖି ସେମାନଙ୍କ ସହିତ ସଂସାରରେ ସେହି ଭକ୍ତ ଚଳ ପ୍ରଚଳ ହେବ ।

ପ୍ରଶ୍ନ-୮୮: ସମସ୍ତଙ୍କ ପ୍ରତି ସମବ୍ୟବହାରରେ ସେ ସହଜରେ ଅହନ୍ତା, ମମତା, ରାଗ-ଦ୍ୱେଷ ଓ ଅଭିନିବେଶରୁ ମୁକ୍ତ ହୋଇପାରିବ । ଜଣେ ସାଧକ ନିନ୍ଦା, ପ୍ରଶଂସା, ଦର୍ପ, ଦମ୍ଭ, ଅସୂୟା, ଅସହିଷ୍ଣୁତା, କାମ, କ୍ରୋଧ, ଲୋଭ ଆଦି ଦୋଷମୁକ୍ତ ହେଲାଣି ବୋଲି ସଂସାର ଭଗବତ ଭକ୍ତକୁ ଚିହ୍ନିବ କିପରି ?

**ବିସୃଜ୍ୟ ସ୍ମୟମାନାନ୍ ସ୍ୱାନ୍ ଦୃଶଂ ବ୍ରୀଡ଼ାଂ ଚ ଦୈହିକୀମ୍ ।**
**ପ୍ରଣମେତ୍ ଦଣ୍ଡବତ୍ ଭୂମୌ ଅଶ୍ୱ ଚାଣ୍ଡାଳ ଗୋ ଖରମ୍ ॥୧୬॥**

ଉ. ଭକ୍ତ ଏବେ ଦେହ ଭାବରୁ ଊର୍ଦ୍ଧ୍ୱରେ ଅବସ୍ଥାନ କରୁଛି । ତାର ଆତ୍ମୀୟମାନେ (ସ୍ୱାନ୍) ଦେହଭାବ ଯୁକ୍ତ ହୋଇଥିବାରୁ (ଦୃଶଂ ଦୈହିକୀମ୍) ତାକୁ ଦେଖି ତା ଆଚାର ବ୍ୟବହାର ଦେଖି ମୁରକି ହସିବେ (ସ୍ମୟମାନାନ୍) । ଟାହି ଟାପରା କରିବେ । ଲାଜରା ହେବା ଭଳି ଟୀକା ଟିପ୍‌ପଣୀ ମଧ୍ୟ କରିବେ । ଭକ୍ତ କିନ୍ତୁ ସେ ସବୁକୁ ଅଣଦେଖା କରିବ (ବିସୃଜ୍ୟ) । ଲୋକ ଲଜ୍ଜାକୁ ବେଖାତିର କରି କୁକୁର (ଶ୍ୱ), ଚାଣ୍ଡଳ, ଗାଈ ଗୋରୁ ଓ ଗଧକୁ ଦେଖୁ ଦେଖୁ ସେମାନଙ୍କ ମଧ୍ୟରେ ତାର ଇଷ୍ଟ ସ୍ୱୟଂ ଶ୍ରୀକୃଷ୍ଣ ବିରାଜମାନ ଥିବା ଦେଖି ସେମାନଙ୍କୁ ଭୂମିଷ୍ଠ ପ୍ରଣାମ କରିବ । ସେଇ ତାର

ଉପାସନା ବିଧି ଯାହା କର୍ମକାଣ୍ଡୀ ଏବଂ ଜ୍ଞାନକାଣ୍ଡୀ ଉଭୟଙ୍କର ଅବୋଧ ।

ପ୍ରଶ୍ନ-୮୯ : ସାଧକର ଅନ୍ତଃଦୃଷ୍ଟି ବ୍ରହ୍ମମୟ (ଆତ୍ମ ମନୀଷୟା) ଓ ବହିଃ ଦୃଷ୍ଟି ବ୍ରହ୍ମାକାର (ସର୍ବ ବ୍ରହ୍ମାତ୍ମକଂ) ହୋଇଗଲେ କି ଲାଭ ମିଳେ ତାକୁ ?

**ସର୍ବଂ ବ୍ରହ୍ମ-ଆତ୍ମକଂ ତସ୍ୟ ବିଦ୍ୟୟା-ଆତ୍ମ ମନୀଷୟା ।**
**ପରିପଶ୍ୟନ୍ ଉପରମେତ୍ ସର୍ବତୋ ମୁକ୍ତ ସଂଶୟଃ ।।୧୮।।**

ଉ. ବିଚରାର ମନରୁ ସଂସାର ଆସକ୍ତି ହଜିଯାଏ (ଉପରମେତ୍ ସର୍ବତୋ) । ଅନ୍ୟର ଗୁଣ ଦୋଷ, ଭଲମନ୍ଦ,ଧର୍ମ ଅଧର୍ମ ବିଚାର ସବୁ ଆଉ ତାର ବୁଦ୍ଧିକୁ କରିବାକୁ ପଡ଼େ ନାହିଁ (ମୁକ୍ତ ସଂଶୟଃ) । ତାର ଦୃଷ୍ଟି କେବଳ ସମଦର୍ଶୀ ନୁହେଁ ବରଂ ଭଗବତ୍ ଦୃଷ୍ଟି ବା ଦିବ୍ୟ ଦୃଷ୍ଟି (ପରିପଶ୍ୟନ୍) । ଏଇ ତ ଭକ୍ତି ମହାରାଣୀଙ୍କ କମାଲ ।

ପ୍ରଶ୍ନ-୯୦: ଭାଗବତ ଭକ୍ତି ଧର୍ମ ପାଳନ କଲାବେଳେ ଯଦି କିଛି ବାଧା ବିଘ୍ନ କିମ୍ବା ଅନ୍ତରାୟ ଆସି ପହଞ୍ଚେ ତେବେ ଭକ୍ତ କଅଣ ଭକ୍ତିମାର୍ଗ ତ୍ୟାଗ କରି କର୍ମ କିମ୍ବା ଜ୍ଞାନ ମାର୍ଗକୁ ଆଶ୍ରୟ କରିବ କି ?

**ନ ହି-ଅଙ୍ଗ-ଉପକ୍ରମ ଧ୍ୱଂସୋ ମତ୍‌ଧର୍ମସ୍ୟ-ଉଦ୍ଧବ-ଅଣୁ-ଅପି ।**
**ମୟା ବ୍ୟବସ୍ଥିତଃ ସମ୍ୟକ୍ ନିର୍ଗୁଣତ୍ୱାତ୍ ଅନାଶିଷଃ ।।୨୦।।**

ଉ. ଭଗବାନ କହିଲେ, ''ହେ ପ୍ରିୟ (ଅଙ୍ଗ) ଉଦ୍ଧବ, ଏହି ଭାଗବତ ଧର୍ମ (ମତ୍ ଧର୍ମ) ବା ଭକ୍ତି ଥରେ ଆରମ୍ଭ କଲେ (ଉପକ୍ରମେ) ଏଥିରେ ସାମାନ୍ୟ ମାତ୍ରାରେ (ଅଣୁ-ଅପି) ହାନୀ (ଧ୍ୱଂସୋ) ହୁଏ ନାହିଁ । ଅଧା ଲକ୍ଷ୍ୟରେ ପହଞ୍ଚିଲେ ମଧ ସେ ଭକ୍ତି ତକ ଭକ୍ତ ଜନ୍ମ ଜନ୍ମାନ୍ତରରେ ଓ ଲୋକ ଲୋକାନ୍ତର ସାଙ୍ଗରେ ଧରି ବୁଲୁଥାଏ । ମୁଁ ଭଗବାନ ସ୍ୱୟଂ ମାୟାଧୀଶ ଓ ମାୟାତୀତ ହୋଇ ନିର୍ଗୁଣ ଓ ନିଷ୍କାମ (ଅନାଶିଷ) ହୋଇ ଶହେ ପଚିଶ ବର୍ଷ ଏହି ଧର୍ମ ଆଚରଣ କରିଛି ପାଳନ କରିଛି, ଭକ୍ତମାନଙ୍କୁ ପାଳନ କରାଉଅଛି (ମୟା ବ୍ୟବସ୍ଥିତ ସମ୍ୟକ୍) । ତେଣୁ ସିନା ତୁମ ପାଇଁ ଅନୁମୋଦନ କରୁଛି ।''

ପ୍ରଶ୍ନ-୯୧ : ସଂସାରର ଯାବତୀୟ ଲୌକିକ ବୈଦିକ କର୍ମର ଫଳକୁ ଭଗବତ ଅର୍ପଣ କରିବାକୁ ଭକ୍ତି ଧର୍ମରେ ଗଣାଯାଏ । ମନରେ ହସ, କାନ୍ଦ, ଭୟ, ଶୋକ, ହତାଶ ଭଳି ଅବାଞ୍ଛିତ ବା ବ୍ୟର୍ଥ କର୍ମର ଫଳକୁ କଅଣ ଭଗବତ ଅର୍ପଣ କରାଯାଇ ପାରିବ କି ?

**ଯୋ ଯୋ ମୟି ପରୋ ଧର୍ମଃ କଳ୍ପ୍ୟତେ ନିଷ୍ଫଳାୟତେ ।**
**ତତ୍ ଆୟସୋ ନିରର୍ଥଃ ସ୍ୟାତ୍ ଭୟ-ଆଦେଃ ଇବ ସତ୍ତମ ॥୨୧॥**

ଉ. ନିଶ୍ଚୟ କରାଯାଇପାରିବ । ସେ ସବୁ ନିଷ୍କାମ ଭାବରେ ଭଗବାନଙ୍କୁ ଅର୍ପିତ ହେଲେ (କଳ୍ପ୍ୟତେ ନିଷ୍ଫଳାୟ ଚେତ୍), ନିରର୍ଥକ ହୋଇଥିଲେ ତାର ଫଳ ମଧ୍ୟ ସିଧା ସଳଖ ଭଗବାନଙ୍କ ନିଜ ଭକ୍ତି ଖାତାରେ ଲେଖାଯାଇଥାଏ । କାରଣ ଭକ୍ତ ପାଇଁ କର୍ମ ଫଳର ଖାତା ଭଗବାନ ଖୋଲନ୍ତି ନାହିଁ । ସୁତରାଂ ଏ ଧର୍ମର ନାମ ଭାଗବତ ଧର୍ମ (ପରୋ ଧର୍ମଃ) ରଖାଯାଇଛି ।

ପ୍ରଶ୍ନ-୯୨ : ଭଗବାନ ନିଜ ଶ୍ରୀମୁଖରେ ଏହି ଭାଗବତ ଧର୍ମର ପ୍ରଶଂସା କରି କହିଛନ୍ତି ଯେ ବୁଦ୍ଧିମାନଙ୍କର ବୁଦ୍ଧିର ସାର୍ଥକତା, ଚତୁର (ଜ୍ଞାନୀ) ବ୍ୟକ୍ତି ମାନଙ୍କର ପରମ ଚତୁରତା (ମନୀଷା) ହେଲା ମରଣୀଳ ଅନିତ୍ୟ ଶରୀରରେ ନିତ୍ୟ ସତ୍‌ଚିତ୍ ଆନନ୍ଦମୟ ଭଗବତ ପ୍ରେମ ପ୍ରାପ୍ତି । ଏହାର ଅନ୍ୟ ଏକ ନାମ ମୃତ୍ୟୁ ଉପରେ ବିଜୟ । ଏହା ପୁଣି ଦେବ ଲୋକରେ ମଧ୍ୟ ଦୁର୍ଲ୍ଲଭ । କାରଣ ସ୍ୱର୍ଗରେ କେବଳ ପୂର୍ବ ପୂର୍ବ ଜନ୍ମର ଅର୍ଜିତ ସୁଖ ଫଳ ଭୋଗ କରିବାର ସୁଯୋଗ ମିଳିଥାଏ । ଏହି ଦିବ୍ୟ ପଦାର୍ଥ ରୂପୀ ଭାଗବତ ଧର୍ମକୁ ଜଣେ ସନ୍ଥ, ପ୍ରବଚକ ଅନ୍ୟକୁ ଠିକ୍ ଠିକ୍ (ସୁପୁଷ୍କଳଂ) ଦାନ କଲେ (ସମ୍ପ୍ରଦ୍ୟାତ) ଭଗବାନ ତାକୁ (ବ୍ରହ୍ମଦାୟସ୍ୟ) କଅଣ ଦେଇ ପୁରସ୍କୃତ କରନ୍ତି ?

**ଯ ଏତତ୍ ମମ ଭକ୍ତେଷୁ ସମ୍ପ୍ରଦଦ୍ୟାତ୍ ସୁପୁଷ୍କଳମ୍ ।**
**ତସ୍ୟ-ଅହଂ ବ୍ରହ୍ମଦାୟସ୍ୟ ଦଦାମି-ଆତ୍ମାନଂ ଆତ୍ମନା ॥୨୬॥**

ଉ. ଭଗବାନ ସେଇ ବ୍ରହ୍ମ ସତ୍ତ୍ୱାଧିକାରୀକୁ କଅଣ ଆଉ ଦିଅନ୍ତେ ? ନିଜକୁ ନିଜେ (ଆତ୍ମାନଂ ଆତ୍ମନା) ଦେଇ ପକାନ୍ତି । ପାଞ୍ଚ ଶ୍ଳୋକରେ ଭଗବାନ ଏହି ଭାଗବତ ଧର୍ମର ଫଳଶ୍ରୁତି ଶୁଣାଇଛନ୍ତି । ଏହାକୁ ପାଳନ କରିବା ଓ ଚିନ୍ତନ କରିବା ଲୋକ ନିଶ୍ଚୟ ବୈକୁଣ୍ଠ ପ୍ରାପ୍ତ ହୁଏ । ଅନ୍ୟକୁ ବୁଝାଇଦେବା ଲୋକ ଦିନକୁ ଦିନ ପାପ ମୁକ୍ତ ହେଉଥାଏ । ଦୃଷ୍ଟାନ୍ତ ସହ କାହାକୁ ଏହାର ମାହାତ୍ମ୍ୟ ବୁଝାଇ ବିଶ୍ୱାସ କରାଇ ପାରିଲେ ତାର ଜନ୍ମ ଜନ୍ମାନ୍ତରର ଅବିଦ୍ୟାଗ୍ରନ୍ଥୀ ଭେଦନ ହୁଏ । କେବଳ, ପଠନ, ପାଠନ, ଶ୍ରବଣ, କିମ୍ବା ଶ୍ରବଣ ଲାଗି ଅନୁମୋଦନ କଲେ ମଧ୍ୟ ସେଭଳି ସାଧକର ସଂସାର ବନ୍ଧନ ଆଉ ହୋଇପାରେ ନାହିଁ ।

ପ୍ରଶ୍ନ-୯୩: ଅନେକ ଦେଶୀ ବିଦେଶୀ ଲୋକଙ୍କୁ ଅଜଣା, ଅଶୁଣା ଏହି ଦିବ୍ୟ ଭାଗବତ ଧର୍ମର ଅଧିକାରୀ କ'ଣ ମଣିଷ ମାତ୍ରେ ସମସ୍ତେ କି ?

**ନ-ଏତତ୍ ତ୍ୱୟା ଦାମ୍ଭିକାୟ ନାସ୍ତିକାୟ ଶଠାୟ ଚ ।**
**ଅଶୁଶ୍ରୂଷୋଃ ଅଭକ୍ତାୟ ଦୁର୍ବିନୀତାୟ ଦୀୟତାମ୍ ।।୩୦।।**

ଉ. ଭଗବାନ ଏ ବିଷୟରେ ରୋକଠୋକ୍ ଶୁଣାଇ କହିଲେ, ''ଉଦ୍ଧବ, ୧. ବର୍ଣ୍ଣ-ଆଶ୍ରମ ଧର୍ମର ପାଳନ ବିମୁଖ ଲୋକ (ଦାମ୍ଭିକାୟ), ୨. କର୍ମ-ଜ୍ଞାନ-ଭକ୍ତି ଯୋଗ ପରାଙ୍ମୁଖ (ନାସ୍ତିକାୟ),୩. କେବଳ ଧର୍ମ, ଅର୍ଥ ଓ କାମ ଯାହାର ଲକ୍ଷ୍ୟ ଓ ଭବ ବନ୍ଧନରୁ ମୋକ୍ଷ ଯାହାର ଲକ୍ଷ୍ୟ ନୁହେ, ୪. ଏହାକୁ ଶ୍ରବଣ କରିବାକୁ ଯାହାର ଇଚ୍ଛା ହୁଏନା, ୫. ଭଗବାନଙ୍କ ଭକ୍ତି ଦ୍ରୋହୀ ଲୋକ ଓ ଶେଷରେ, ୬.ଭକ୍ତିକୁ ନିନ୍ଦା କରି ଯେ ସାଯୁଜ୍ୟ ମୁକ୍ତି ଚାହୁଁଥାଏ ଏଭଳି ଛଅ ପ୍ରକାର ଲୋକ କେବଳ ଏହାର ଅନଧିକାରୀ ।

ଏ ଛଅ ଦୋଷଶୂନ୍ୟ, ବିଷ୍ଣୁ ବୈଷ୍ଣବ ସେବା ଉନ୍ମୁଖ ଭଗବତ ପ୍ରେମୀ ଯଦି ଶୂଦ୍ର କିମ୍ବା ନାରୀ ହୋଇଥାଏ ତେବେ ସେ ଏହାର ଅଧିକାରୀ ନିଶ୍ଚୟ । ଏହି ଭାଗବତ ଜ୍ଞାନକୁ ଜାଣିଗଲେ ମନୁଷ୍ୟର ଆଉ ଜାଣିବା ଲାଗି କିଛି ମାତ୍ର ବାକୀ ରହେ ନାହିଁ । ଏ ଭାଗବତ ଅମୃତ ରସକୁ ପାନ କଲେ ସଂସାରର ଅନ୍ୟ ସକଳ ହାସ୍ୟ, ଶୃଙ୍ଗାର ଆଦି ସୁରସ ସକଳ ସଙ୍ଗେ ସଙ୍ଗେ ଅରସ, ବିରସ କିମ୍ବା ପାଣିଚିଆ ହୋଇଯାଏ ।

ପ୍ରଶ୍ନ-୯୪: କର୍ମଯୋଗ, ଜ୍ଞାନ ଯୋଗ, ଧ୍ୟାନ ଯୋଗ ସହିତ ଚାରି ବର୍ଣ୍ଣ, ଚାରି ଆଶ୍ରମରେ ଯେଉଁ ଧର୍ମ-ଅର୍ଥ-କାମ-ମୋକ୍ଷ ଚାରି ପ୍ରକାର ଫଳ ମିଳିଥାଏ ଭାଗବତ ଧର୍ମ ପାଳନରେ ଏଥିରୁ କେଉଁ ଫଳ ଗୋଟିକ ମିଳିଥାଏ ?

**ଜ୍ଞାନେ କର୍ମଣି ଯୋଗେ ଚ ବାର୍ତ୍ତାୟାଂ ଦଣ୍ଡ ଧାରଣେ ।**
**ଯାବାନ୍ ଅର୍ଥୋ ନୃଣାଂ ତାତ ତାବାନ୍ ତେଽହଂ ଚତୁର୍ବିଧଃ ।।୩୩।।**

ଉ. ଭଗବାନ କହିଲେ, ''ହେ, ଗେଲବସର ପିତା (ତାତ) ଉଦ୍ଧବ, ଗୋଟିଏ ଫଳ କଥା କଅଣ କହୁଛ, ଏ ଚାରି ଫଳ ତ ମୋ ଭକ୍ତକୁ ଅନାୟସରେ ମିଳେ । ଭାଗ୍ୟରେ ଥିଲେ, ସେ ସଦ୍‌ଗୁରୁଙ୍କୁ ଆଶ୍ରୟ କରିଥିଲେ ଏ ଚାରି ଫଳ ଠାରୁ ଅଧିକ ବିଲକ୍ଷଣ ଫଳ ତାକୁ ମିଳିଥାଏ । ଭକ୍ତି ମାର୍ଗରେ ଏହାକୁ କହନ୍ତି ଅନର୍ପିତଂ ଚରିଂ ଚିରାତ୍ କୃଷ୍ଣପ୍ରେମ ପ୍ରାପ୍ତି ବା ବୈଷ୍ଣବ ସେବା ସୁଯୋଗ ପ୍ରାପ୍ତି ରୂପୀ ଅନ୍ତିମ ଫଳ ।

ପ୍ରଶ୍ନ-୯୫: କର୍ମ, ଜ୍ଞାନ, ଧ୍ୟାନରେ ସ୍ୱଧର୍ମ ପାଳନ ଜରୋରୀ ସିନା ଭକ୍ତି ଧର୍ମରେ ସ୍ୱଧର୍ମ ତ୍ୟାଗ ଆବଶ୍ୟକ । ଭକ୍ତିଧର୍ମ ଶରଣାଗତି ପରାୟଣ ହେଲା ବେଳେ ଅନ୍ୟ ତିନି ଧର୍ମ ପୁରୁଷାର୍ଥ ପରାୟଣ । ଉଦ୍ଧବ ଶେଷରେ ଏ କଥା ବୁଝିଯିବାରୁ

ଦୁଇହାତକୁ ଯୋଡ଼ି ବାଷ୍ପ ଗଦଗଦ କଣ୍ଠ ଓ ଅଶ୍ରୁପୂର୍ଣ୍ଣ ଲୋଚନରେ ପ୍ରେମ ବିହ୍ୱଳିତ ହେଲେ । ନିଜକୁ ଅତ୍ୟନ୍ତ ସୌଭାଗ୍ୟଶାଳୀ ଭାବି ନିଜ ମସ୍ତକ ଅବନତ କରି ଠାକୁରଜୀଙ୍କୁ ଦୁଇ ଚରଣକମଳକୁ ସ୍ପର୍ଶ କରାଇଲେ । ଭଗବାନଙ୍କ ଆଶ୍ରୟ ହିଁ ଜୀବର ଚରମ ପରମ ଆଶ୍ରୟ ବୋଲି ସ୍ୱୀକାର କରି କହିଲେ, ‘‘ପ୍ରଭୋ, ମୋର ଅଜ୍ଞାନ ଅନ୍ଧକାର ସିନା ଦୂର ହୋଇଥିଲା । ଏବେ ଆପଣଙ୍କ କୃପାରୁ ମୋ ଜ୍ଞାନ ରୂପୀ ଅହଂକାର-ଅନ୍ଧକାର ମଧ୍ୟ ଦୂରୀଭୂତ ହୋଇଗଲା । ସୂର୍ଯ୍ୟ ଦେବଙ୍କ ସନ୍ନିଧିକୁ ଗଲେ କାହାରି ଶୀତକଷ୍ଟ, ଅନ୍ଧକାର ଜନିତ ଭୟ କ'ଣ କେବେ ରହିପାରେ ? ମୋ ଜ୍ଞାନର ଅହଂକାର ଯେଉଁ କୃଷ୍ଣପ୍ରେମକୁ ମୋଠାରୁ ଛଡ଼ାଇ ନେଇଥିଲା ଆପଣ ଆଜି ତାକୁ ମୋତେ ଫେରାଇ ଦେଇଛନ୍ତି । ଯେଉଁ ଶରୀର ସଂସାରର ମୋହ ଆସକ୍ତି ଆପଣ ଲଗାଇ ଦେଇଥିଲେ ଆଜି ସେଇ ବନ୍ଧନକୁ ନିଜେ ଛିନ୍ନ କରିଦେଇଛନ୍ତି ।’’ଏଭଳି ମାର୍ମିକ କୃତଜ୍ଞତା ଜଣାଇସାରି ଉଦ୍ଧବଜୀ ତାଙ୍କଠାରୁ ବିଦାୟ ନେବା ପୂର୍ବରୁ କ'ଣ ମାଗୁଣି କଲେ ?

**ନମୋଽସ୍ତୁ ତେ ମହାଯୋଗିନ୍ ପ୍ରପନ୍ନଂ ଅନୁଶାଧି ମାମ୍ ।**
**ଯଥା ତ୍ୱତ୍ ଚରଣ-ଅମ୍ଭୋଜେ ରତିଃ ସ୍ୟାତ୍ ଅନପାୟିନୀ ॥୪୦॥**

ଉ. ଅପ୍ୟୟ କହିଲେ ପ୍ରଳୟ ହେବାକୁ, କ୍ଷୟ ବା ନଷ୍ଟ ହେବାକୁ ବୁଝାଏ । ଅନପାୟିନୀ କୁହାଯାଏ ଜନ୍ମଜନ୍ମାନ୍ତରେ, କଳ୍ପ କଳ୍ପାନ୍ତରେ, ଦେଶ ଦେଶାନ୍ତରେ, ଦେହ ଦେହାନ୍ତରେ ନଷ୍ଟ ହେଉନଥିବା ଚିଜ । ଉଦ୍ଧବଜୀ ନିଜର ସର୍ବସ୍ୱ ଜ୍ଞାନ ଅହଙ୍କାରକୁ ସମର୍ପଣ କରି ଶରଣାଗତ ହେଲେ (ପ୍ରପନ୍ନଂ) । ଶେଷରେ ତାଙ୍କର ପରମ କଲ୍ୟାଣକାରୀ କୃଷ୍ଣ ଚରଣକମଳରେ ଅବିନଶ୍ୱର, ନିତ୍ୟ ନବନାୟକମାନ, ନିତ୍ୟ ବର୍ଦ୍ଧନଶୀଳ କୃଷ୍ଣପ୍ରେମକୁ ହିଁ ପ୍ରାର୍ଥନା କଲେ ।

ପ୍ରଶ୍ନ-୯୬: ଉଦ୍ଧବଙ୍କ ପ୍ରେମପୂର୍ଣ୍ଣ ଶରଣାଗତିରେ ଭଗବାନଙ୍କ ହୃଦୟ ବିଦ୍ରାବିତ ହୋଇଯାଇଛି । ସେ ଉଦ୍ଧବଜୀଙ୍କୁ ଏଥର ଗୃହସ୍ଥାଶ୍ରମ ତ୍ୟାଗ କରି ବାନପ୍ରସ୍ଥାଶ୍ରମରେ ବଦ୍ରି ବିଶାଳବନର ନରନାରାୟଣ ଆଶ୍ରମକୁ ଯିବାକୁ ଆଦେଶ କରିଛନ୍ତି । ସେଠାରେ ସେ ପୁଣ୍ୟତୋୟା ଅଳକାନନ୍ଦା ନଦୀର ଦର୍ଶନ, ଜଳସ୍ପର୍ଶ, ଆଚମନ, ସ୍ନାନ ଓ ତର୍ପଣ କରିବେ । ବଣ ଫଳ ମୂଳ ଆହାର କରି ଗୃହସ୍ଥାଶ୍ରମର ଆରାମ, ଆଳସ୍ୟ, ବିଳାସ ଆଶା ତ୍ୟାଗ କରି ଯୋଗୀ ଜୀବନ ଆଦରି ନେବେ । ସମଦର୍ଶୀ, କଷ୍ଟସହିଷ୍ଣୁ, ସୁଶୀଳ, ସଂଯତ, ମନ, ବୁଦ୍ଧି ଇନ୍ଦ୍ରିୟ ପ୍ରାଣାୟାମ ପରାୟଣ ହୋଇ ତତ୍ତ୍ୱଜ୍ଞାନ ସହିତ କୃଷ୍ଣପ୍ରେମ

ପ୍ଳୁତ ହେବେ । ଦୀର୍ଘ ଶହେ ଚଉଦବର୍ଷ ଭଗବତ (କୃଷ୍ଣ) ସଙ୍ଗ ପରେ (ମତ୍ତୋଽନୁଶିକ୍ଷିତଂ) ମଧ ଭାଗବତ ଧର୍ମ ପାଳନ ରୂପୀ ସତ୍‌ସଙ୍ଗ କରିବାକୁ (ମତ୍‌ଧର୍ମ ନିରତୋଭବ) ଭଗବାନ ପୁଣି କାହିଁକି କହିଲେ ?

**ମତ୍ତୋଽନୁଶିକ୍ଷିତଂ ଯତ୍‌ତେ ବିବିକ୍ତଂ ଅନୁଭାବୟନ୍ ।**
**ମୟି-ଆବେଶିତ ବାକ୍ ଚିତ୍ତୋ ମତ୍‌ଧର୍ମ ନିରତୋ ଭବ ।**
**ଅତିବ୍ରଜ୍ୟ ଗତିଃ ତିସ୍ରୋ ମାଂ ଏଷ୍ୟସି ତତଃ ପରମ୍ ॥୪୪॥**

ଉ. ଠାକୁରଜୀ ରୋକଠୋକ ଶୁଣାଇ କହିଲେ, ‘‘ପ୍ରିୟ, ଉଦ୍ଧବ, ତୁମେ ଆଜୀବନ ଭାଗବତ ଧର୍ମ ମୋଠାରୁ, ଅନ୍ୟ ଋଷିମାନଙ୍କଠାରୁ ଅନେକ ଥର ଖାଲି ଶୁଣିଛ କେବଳ । ଏବେ ଏକାନ୍ତ ସ୍ଥାନରେ ରହି (ବିବିକ୍ତଂ) ତାକୁ ପାଳନ କର । ମୋ ନାମ ରୂପ, ଲୀଳା ଗୁଣ ସ୍ମରଣ କର (ଅନୁଭାବୟନ୍) । କାୟ, ମନୋ, ବାକ୍ୟରେ ତୁମ ମନ ବୁଦ୍ଧିକୁ ମୋତେ ଅର୍ପଣ କର । ମୁଁ ଏବେ ତୁମକୁ ତତ୍ତ୍ୱଜ୍ଞାନ ଅଂଶ ଓ ପ୍ରେମ ଅଂଶକୁ ଦୁଇଭାଗ କରି ଦୁଇ ଦେହ ଦେଉଛି । ଏକ ଦିବ୍ୟ ଦେହରେ ତତ୍ତ୍ୱଜ୍ଞାନ ଅଂଶରେ ତୁମେ ବଦ୍ରିନାଥ ଧାମରେ ଜ୍ଞାନ ସାଧନା କରି ଜ୍ଞାନ ମାର୍ଗୀଙ୍କୁ ଉଚିତ ମାର୍ଗ ଦର୍ଶନ କରିବ । ମୋତେ ପାଇବ (ମାଂ ଏଷ୍ୟସି) । ପୁଣି ଅନ୍ୟ ଏକ ଦିବ୍ୟ ଦେହରେ ପ୍ରେମ ଅଂଶରେ ରହି ତୁମେ ବୃନ୍ଦାବନ ସ୍ଥିତ ଗୋବର୍ଦ୍ଧନ ପର୍ବତ ତଳହଟିରେ କୁସୁମ ସରୋବରଠାରେ ନିଜକୁ ଅଦୃଶ୍ୟରୂପରେ ଲୁଚାଇ ରଖ । ମୋ ପ୍ରେମୀ ଲୋକଙ୍କୁ (ତତଃ ପରମ୍) ଘୋର କଳି ଯୁଗରେ ମଧ ପ୍ରେମ ପ୍ରଦାନ କର ।

କୃଷ୍ଣଙ୍କୁ ପାଇବା ଓ କୃଷ୍ଣ ପ୍ରେମର ଗ୍ୟାରେଣ୍ଟି ପାଇବା ପରେ ଭଗବାନଙ୍କ ପାଦୁକା ଯୋଡ଼ିକ ମୁଣ୍ଡରେ ଥୋଇ ବାରମ୍ବାର ଭୂମିଷ୍ଠ ପ୍ରଣାମ କରି କରି ଅନିଚ୍ଛା ବିୟୋଗକୁ ଆଦରି ନେଲେ । ସେହିଦିନଠାରୁ ଉଦ୍ଧବ ଦୁଇ ସ୍ଥାନରେ ଆଜି ଯାଏ ଅବସ୍ଥାନ କରୁଛନ୍ତି । ଗର୍ଗ ସଂହିତା ଓ ସ୍କନ୍ଦ ପୁରାଣ ଭାଗବତ ମାହାତ୍ମ୍ୟ ଅଂଶରେ ଏହି ପ୍ରେମଦାନ ଲୀଳା ବିସ୍ତୃତ ବର୍ଣ୍ଣିତ ହୋଇଛି ।

‘ଅତିବ୍ରଜ୍ୟ ଗତିଃ ତିସ୍ରୋ’ ଅଂଶର ପାଞ୍ଚ ପାଞ୍ଚଟି ସୁନ୍ଦର ଭାବ ନିମ୍ନପ୍ରକାରେ ଭଗବାନ ଉପସ୍ଥପନା କରିଛନ୍ତି ଉଦ୍ଧବଜୀଙ୍କ ନିକଟରେ ଏହି ସୁନ୍ଦର ଶ୍ଳୋକରେ ।

୧. ମାୟାଙ୍କର ତିନି ଗୁଣରୁ ମୁକ୍ତ ହୋଇ ମାୟାତୀତ ହୁଅ ।
୨. କର୍ମକାଣ୍ଡିର ସ୍ୱର୍ଗପ୍ରାପ୍ତି, ଧ୍ୟାନୀର ସିଦ୍ଧିପ୍ରାପ୍ତି ଓ ଜ୍ଞାନକାଣ୍ଡୀର ମୁକ୍ତି ପ୍ରାପ୍ତି ଲକ୍ଷ୍ୟମାନଙ୍କୁ ଅତିକ୍ରମ କରି କୃଷ୍ଣପ୍ରେମ ପ୍ରାପ୍ତିକର ।

୩. ସ୍ୱର୍ଗ, ବୈକୁଣ୍ଠ ଓ ମହାବୈକୁଣ୍ଠ ନ ଯାଇ ଗୋଲୋକ ଯାଅ ।

୪. ଦ୍ୱାରିକା, ମଥୁରା, ଗୋକୁଳ ପ୍ରେମ ପ୍ରତି ଆସକ୍ତ ନହୋଇ ବୃନ୍ଦାବନର ଦିବ୍ୟ ଗୋପୀପ୍ରେମ ପ୍ରାପ୍ତ ହୁଅ ।

୫. ଭୂଃଲୋକ, ଭୁବଃ ଲୋକ ଓ ସ୍ୱର୍ଗଲୋକ ନ ଯାଇ ଗୋଲୋକ ଯାଇ ମୋ ଲୀଳାରେ ଯୋଗ ଦିଅ ।

## ଅଥ ୩୦ଶ ଅଧ୍ୟାୟଃ

## (ଯଦୁବଂଶ ଧ୍ୱଂସ ଲୀଳା)

ପ୍ରଶ୍ନ-୯୭: ମହାଭାଗବତ ଉଦ୍ଧବ ଦ୍ୱାରକାରୁ ପ୍ରସ୍ଥାନ କରନ୍ତେ ଦ୍ୱାରକା ନଗରୀର ଦିବି, ଭୂବି, ଅନ୍ତରୀକ୍ଷରେ ଯୁଗ ପ୍ରଳୟର ନାନାବିଧ ଅଶୁଭ ସଂକେତ ବା ଲକ୍ଷଣମାନ ଦୃଶ୍ୟ ହେଲା । ଯାଦବମାନଙ୍କଠାରୁ ଏସବୁ ଶ୍ରବଣ କରି ଯଦୁବଂଶ ଶିରୋମଣି ଭଗବାନ ସେମାନଙ୍କୁ ତୁରନ୍ତ ଦ୍ୱାରକା ତ୍ୟାଗ କରିବା ପାଇଁ ଉପଦେଶ ଦେଲେ । ସ୍ତ୍ରୀ, ବାଳକ, ବୃଦ୍ଧ ମାନଙ୍କୁ ଶଙ୍ଖୋଦ୍ଧାର କ୍ଷେତ୍ରକୁ ଯିବାକୁ ଓ ଅନ୍ୟ ଯଦୁବଂଶୀଙ୍କୁ ପ୍ରଭାସ ତୀର୍ଥ ଯାଇ ଦେବ, ଦ୍ୱିଜ ଓ ଗୋପୂଜନ ଆଦି ପୁଣ୍ୟ କର୍ମ କରିବାକୁ ପରାମର୍ଶ ଦେଲେ । ତତ୍କ୍ଷଣାତ୍ ଯାଦବମାନେ ଆଜ୍ଞାପାଳନ କଲେ । ସେମାନେ ପ୍ରଭାସ କ୍ଷେତ୍ରରେ ପହଞ୍ଚି ସ୍ନାନ ଶୌଚ ହୋଇ ଦାନ, ଧର୍ମ, ଦେବ ପୂଜନ ଆଦି କଲେ । ଋଷି ଅଭିଶାପରୁ ଭଗବାନଙ୍କ ଇଛାରେ ଯାଦବମାନଙ୍କର ବୁଦ୍ଧି ଭ୍ରଷ୍ଟ ହେଲା । ସେମାନେ ମୈରେୟକ ନାମକ ମଦ୍ୟପାନ କରି କି ଅଶୁଭ ଏବଂ ଅମଙ୍ଗଳମୟ କାଣ୍ଡ କଲେ ?

**ଶ୍ରୀଶୁକ ଉବାଚ**

**ମହାପାନ-ଅଭିମତ୍ତାନାଂ ବୀରାଣାଂ ଦୃପ୍ତ ଚେତସାଂ ।**
**କୃଷ୍ଣମାୟା ବିମୂଢ଼ାନାଂ ସଂଘର୍ଷଃ ସୁମହାନ୍ ଅଭୂତ ॥୧୩॥**

ଉ. ଅତ୍ୟଧିକ ମଦ୍ୟପାନ କରି ସେମାନେ ଉଦ୍ଧତ ଉତ୍ପାତ କାଣ୍ଡ କରିବସିଲେ । କୃଷ୍ଣମାୟାରେ ମୋହିତ ହୋଇ ମହାମୂର୍ଖଙ୍କ ଭଳି ନିଜ ନିଜ ମଧ୍ୟରେ ମହାସଂଘର୍ଷ କଲେ । ମହାବୀର ପ୍ରଦ୍ୟୁମ୍ନଙ୍କ ସହ, ଅକ୍ରୂର ଭୋଜ ବଂଶୀଙ୍କ ସହ, ଅନିରୁଦ୍ଧ ସାତ୍ୟକୀଙ୍କ

ସହିତ, ସୁମିତ୍ରା ସୁରଥଙ୍କ ସହ ପୁଣି କୃଷ୍ଣଙ୍କ ଭାଇ ଗଦଙ୍କ ସହ କୃଷ୍ଣଙ୍କ ପୁତ୍ର ଯୁଦ୍ଧରେ ମାତିଗଲେ । ଦାଶାର୍ହ, ବୃଷ୍ଣି, ଅନ୍ଧକ ଓ ସାତ୍ୱତ ଆଦି ସକଳ ଯଦୁବଂଶୀଙ୍କୁ କୃଷ୍ଣ ବଳରାମ ଯୁଦ୍ଧରୁ ବିରତ ରହିବାକୁ ଅନେକ ବୁଝାଇଲେ । ସେମାନେ କି ସହଜେ ଛାଡ଼ିବା ଜନ୍ତୁ । ଓଲଟି ସେମାନେ କୃଷ୍ଣ ବଳରାମଙ୍କୁ ଆକ୍ରମଣ କରିବାକୁ ବାହାରିଲେ । ପରସ୍ପର ହତ୍ୟା କରୁ କରୁ ଶର ଶେଷ ହୋଇଗଲା, ଧନୁ ସବୁ ଭାଙ୍ଗିଗଲା । ମୁଦ୍‌ଗର, ଖଣ୍ଡା ଇତ୍ୟାଦି ସକଳ ଅସ୍ତ୍ର ଶସ୍ତ୍ର ନଷ୍ଟ ହୋଇଗଲା । ପାଖରେ ଥିବା ଏରକା ବନରୁ ଏଣିକି ବୃକ୍ଷ ଦଣ୍ଡ ଆଣି ସେମାନେ ପରସ୍ପର ପ୍ରାଣ ନେବାରେ ଲାଗିଲେ ।

ପ୍ରଶ୍ନ-୯୮: ଚାହୁଁ ଚାହୁଁ ବାଉଁଶ ବଣରୁ ପାକଳ ବାଉଁଶ ପରସ୍ପର ଘଷି ହୋଇ ବନ ଅଗ୍ନି ବାହାରି ସମଗ୍ର ବାଉଁଶ ବଣକୁ ଧ୍ୱଂସ କଲା ସଦୃଶ ସମଗ୍ର ଯଦୁବଂଶ ଧ୍ୱଂସ ହୋଇଗଲା କେବଳ ଉଦ୍ଧବ, ବଜ୍ରନାଭ ଓ କୃଷ୍ଣ ବଳରାମଙ୍କୁ ଛାଡ଼ି । ମହାପ୍ରଭୁ ବଳରାମଜୀ କୃଷ୍ଣଲୀଳା ସମାପ୍ତ ପ୍ରାୟ ହେବା ଦେଖି କଅଣ କଲେ ?

**ରାମଃ ସମୁଦ୍ର ବେଳାୟାଂ ଯୋଗଂ ଆସ୍ଥାୟ ପୌରୁଷମ୍ ।**
**ତତ୍ୟାଜ ଲୋକଂ ମାନୁଷ୍ୟଂ ସଂଯୋଜ୍ୟ-ଆତ୍ମାନଂ ଆତ୍ମନି ॥୨୬॥**

ଉ. ବଳଦେବଜୀ (ରାମଃ) ସେହି ସମୁଦ୍ର କୂଳରେ ଯୋଗାସନରେ ବସିଗଲେ । ନିଜର ଆତ୍ମା (ମନ)କୁ ପରମାତ୍ମା ଧ୍ୟାନରେ ସଂଯୋଗ କରି ଶରୀର ଓ ସଂସାର ତ୍ୟାଗ କରିଦେଲେ । ନିଜ ପାତାଳ ଲୋକରେ ପ୍ରବେଶ କରିଗଲେ । ନିଜ ଭୌତିକ ଦେହଟିକୁ କିନ୍ତୁ ଛାଡ଼ିଗଲେ ।

ପ୍ରଶ୍ନ-୯୯: ଭଗବାନ ଶ୍ରୀକୃଷ୍ଣ ଏହା ଦେଖି ଆଉ ଅଧିକ କାଳ ବିଳମ୍ବ ନକରି ଚତୁର୍ଭୁଜ ରୂପରେ ନିକଟସ୍ଥ ଏକ ଅଶ୍ୱତ୍ଥ ବୃକ୍ଷ ମୂଳରେ ବାମ ପଦକୁ ଦକ୍ଷିଣ ଜଙ୍ଘ ଉପରେ ରଖି ବସିଯାଆନ୍ତେ ଚାହୁଁ ଚାହୁଁ କେଉଁ ଅଘଟଣ ଘଟିଗଲା ?

**ମୂଷଳ-ଅଂଶ ଲୌହ ଖଣ୍ଡ କୃତ-ଇଷୁଃ ଲୁବ୍ଧକୋ ଜରା ।**
**ମୃଗସ୍ୟ-ଆକାରଂ ଚରଣଂ ବିବ୍ୟାଧ ମୃଗ ଶଙ୍କୟା ॥୩୩॥**

ଉ. ଋଷି ଶାପରୁ ଉତ୍ପନ୍ନ ମୂଷଳକୁ ଘର୍ଷଣ କରି ଉତ୍ପନ୍ନ କରାଯାଇଥିବା ଚୂର୍ଣ୍ଣରୁ ଏରକା ବୃକ୍ଷ ଯଦୁବଂଶ ଧ୍ୱଂସର କାରଣ ହୋଇଥିଲା । ଅବଶିଷ୍ଟ ଲୌହ ମୂଷଳ ଅଂଶରୁ ପ୍ରସ୍ତୁତ ଶରମୁନ ପ୍ରସ୍ତୁତ କରି ଜରା ନାମକ ଶବର (କାହାରି ମତରେ ବାଳିପୁତ୍ର ଅଙ୍ଗଦ ବା ଅନ୍ୟ କାହାରି ମତରେ ନାରାୟଣଙ୍କ ବକ୍ଷରେ ପାଦ ପ୍ରହାର କରିଥିବା ଭୃଗୁମୁନି) ଠାକୁରଜୀଙ୍କ ଚରଣ କମଳକୁ ଏକ ମୃଗ କର୍ଣ୍ଣ ଭାବି ବିନ୍ଧିଦେଲେ

(ବିବ୍ୟାଧ ମୃଗ ଶଙ୍କୟା) । ପାଖକୁ ଆସି ବ୍ୟାଧ ଦେଖିଲେ ଏକ ମହାନ୍ ଅନର୍ଥ କରିଛନ୍ତି ସେ । ଦେଖିଲେ ତାଙ୍କ ଶର ଲକ୍ଷ୍ୟ ଭେଦ କରିଛି ହରିଣ କାନ ବଦଳରେ ଦ୍ୱାରକାଧୀଶ ଭଗବାନଙ୍କ କୋମଳ ଚରଣ କମଳ । କାନ୍ଦି କାନ୍ଦି ପାଦ ତଳେ ଗଡ଼ି ଗଡ଼ି କ୍ଷମା ମାଗନ୍ତେ କୃପାମୟ ଭଗବାନ ହସି ହସି ତାଙ୍କୁ ପ୍ରଥମେ ଅଭୟ ଦେଲେ ପରେ ପରେ ସ୍ୱଦେହରେ ସ୍ୱର୍ଗ ଯାଅ ବୋଲି ବର ମଧ୍ୟ ଦେଲେ ।

ପ୍ରଶ୍ନ-୧୦୦: ମହାପାପୀ ଜରା ଶବରକୁ କଅଣ ସତରେ ପୁଣ୍ୟାତ୍ମାମାନଙ୍କୁ ମିଳୁଥିବା ସ୍ୱର୍ଗ ମିଳିଗଲା କି ?

**ଇତି-ଆଦିଷ୍ଟୋ ଭଗବତା କୃଷ୍ଣେନ-ଇଚ୍ଛା ଶରୀରିଣା ।**
**ତ୍ରିଃ ପରିକ୍ରମ୍ୟ ତଂ ନତ୍ୱା ବିମାନେନ ଦିବଂ ଯଯୌ ।।୪୦।।**

ଉ. ଭଗବାନ ସତ୍ୟ ସଂକଳ୍ପ । ତାଙ୍କ ଇଚ୍ଛାରୁ ସଙ୍ଗେ ସଙ୍ଗେ ଏକ ସ୍ୱର୍ଗୀୟ ବିମାନ ସେଠାରେ ପ୍ରକଟ ହେଲା । ଭଗବାନଙ୍କୁ ତିନିଥର ପରିକ୍ରମା କରି ଦଣ୍ଡବତ୍ ପ୍ରଣାମ ଜଣାଇ (ନତ୍ୱା) ଜରା ବିମାନ ଆରୋହଣ କଲେ । ସ୍ୱର୍ଗରାଜ୍ୟରେ ଦେବତା ଭାବରେ ସ୍ଥାନ ପାଇଲେ (ଦିବଂ ଯଯୌ ) ।

ପ୍ରଶ୍ନ-୧୦୧: ଆଖି ପିଛୁଳାକେ ଏତେ ସବୁ ଲୀଳା ଘଟିଗଲା । ଭଗବାନଙ୍କ ଲୀଳା ଆହୁରି ଆଗକୁ ବଢୁଥାଏ । ବର୍ତ୍ତମାନ ତାଙ୍କର ସାରଥୀ ଦାରୁକ ଗରୁଡ଼ ପତାକା ଚିହ୍ନିତ ରଥ ଧରି ସେ ସ୍ଥାନରେ ପହଞ୍ଚିଗଲେ । ଠାକୁରଜୀଙ୍କ ଅଦ୍ଭୁତ ଲୀଳା ରହସ୍ୟ ସେ ବା କାହୁଁ ବୁଝନ୍ତେ ? କାନ୍ଦି କାନ୍ଦି ଭଗବାନଙ୍କ ପାଦ ତଳେ ଗଡ଼ିଗଲେ । ଦେଖୁ ଦେଖୁ ତାଙ୍କ ରଥ ଶୂନ୍ୟେ ଶୂନ୍ୟେ ଅଶ୍ୱ ସହିତ ଉପରକୁ ଉଠିଗଲା । ତାଙ୍କର ଚାରି ଦିବ୍ୟ ଆୟୁଧ ଶଙ୍ଖ, ଚକ୍ର, ଗଦା ଓ ପଦ୍ମ ପଛେ ପଛେ ଆକାଶରେ ଅଦୃଶ୍ୟ ହୋଇଗଲେ । ସେତେବେଳେ ଲୀଳାମୟ ଠାକୁରଜୀ ପ୍ରିୟ ସାରଥୀ ଦାରୁକଙ୍କୁ କି ଆଦେଶ ଦେଲେ ?

**ଦ୍ୱାରକାୟାଂ ଚ ନ ସ୍ଥେୟଂ ଭବଦ୍‌ଭିଃ ଚ ସ୍ୱ ବନ୍ଧୁଭିଃ ।**
**ମୟା ତ୍ୟକ୍ତାଂ ଯଦୁପୁରୀଂ ସମୁଦ୍ରଃ ପ୍ଲାବୟିଷ୍ୟତି ।।୪୭।।**

ଉ. ଭଗବାନ ଅତ୍ୟନ୍ତ ମଧୁର କଣ୍ଠରେ କହିଲେ, "ପ୍ରିୟ ଦାରୁକ, ତୁମେ ତୁରନ୍ତ ଦ୍ୱାରକା ଯାଅ । ୫୬କୋଟି ଯଦୁବୀର ଓ ବଳରାମଙ୍କ ସହିତ ମୋର ଅବସ୍ଥା ସମ୍ପର୍କରେ ଜଣାଇଦିଅ । ମୁଁ ଦ୍ୱାରକା ଛାଡ଼ିଲେ ସଙ୍ଗେ ସଙ୍ଗେ ସମୁଦ୍ର ଜଳପ୍ଲାବିତ ହେବ ସମଗ୍ର ଦ୍ୱାରକାପୁରୀ । ଅବଶିଷ୍ଟ ଦ୍ୱାରକାବାସୀମାନଙ୍କ ମଧ୍ୟରୁ କେହି ଯେପରି ସେଠାରେ ନ ରହନ୍ତି । ଆମର ପିତାମାତା ଗୁରୁଜନ ଲଘୁଜନ ସମସ୍ତଙ୍କୁ ନେଇ ·

ମହାବୀର ଅର୍ଜୁନ ଇନ୍ଦ୍ରପ୍ରସ୍ଥରେ ପହଞ୍ଚାଇ ଦିଅନ୍ତୁ । ତୁମେ ନିଜେ ଭାଗବତ ଧର୍ମ ପାଳନ କରି ଆତ୍ମାରାମ ଆପ୍ତକାମ ହୋଇଯାଅ ।'' ଲୀଳାମୟ ପ୍ରଭୁଙ୍କ ବିରହ ନିଶ୍ଚିତ ଜାଣି ଅତ୍ୟନ୍ତ ମନକଷ୍ଟରେ ଦାରୁକ କୃଷ୍ଣପାଦ ଯୁଗଳରେ ନିଜ ମଥା ସ୍ପର୍ଶ କରାଇ ତାଙ୍କୁ ତ୍ରିବାର ପରିକ୍ରମା କରି ଦ୍ୱାରକା ପ୍ରସ୍ଥାନ କଲେ ।

## ଅଥ ୩୧ଶ ଅଧ୍ୟାୟଃ

### (ଭଗବାନ ଶ୍ରୀକୃଷ୍ଣଙ୍କ ସ୍ୱଧାମ ଗମନ ଲୀଳା)

ପ୍ରଶ୍ନ-୧୦୨: ଭଗବାନଙ୍କ ସାରଥୀ ଦାରୁକ ବିଦାୟ ନେଉ ନେଉ ଭୂଃ ଭୁବଃ ଆଦି ସପ୍ତଲୋକରେ ସତର୍କ ଘଣ୍ଟି ବାଜି ଉଠିଲା । ଏକ କଳ୍ପରେ ୪୩୨କୋଟି ବର୍ଷରେ ଥରେ ମାତ୍ର ଅଭିନୀତ ହେଉଥିବା ଗୋଲୋକଧାମବାସୀ କୃଷ୍ଣ ଲୀଳା ଶେଷ ହେବ । ଅଲୌକିକ ଦିବ୍ୟ ପୁରୁଷଙ୍କ ଲୀଳାର ଅନ୍ତିମ ଅଧ୍ୟାୟର ଅନ୍ତିମ ଦୃଶ୍ୟ ଅଭିନୟ ଦର୍ଶନ କରିବାକୁ କେଉଁ କେଉଁ ଦେବୀ ଦେବତା ସବୁ ଠାକୁରଜୀଙ୍କ ନିକଟରେ ପ୍ରକଟ ହେଲେ ?

ଶ୍ରୀ ଶୁକ ଉବାଚ

**ଅଥ ତତ୍ର-ଆଗମତ୍ ବ୍ରହ୍ମା ଭବାନ୍ୟା ଚ ସମଂ ଭବଃ ।**
**ସୁରେନ୍ଦ୍ର ପ୍ରମୁଖା ଦେବା ମୁନୟଃ ସପ୍ରଜେଶ୍ୱରାଃ ।।୧।।**

ଉ. ସୃଷ୍ଟିକର୍ତ୍ତା ବ୍ରହ୍ମଦେବ, ଶିବ ପାର୍ବତୀ, ଇନ୍ଦ୍ର, ଚନ୍ଦ୍ର, ସୂର୍ଯ୍ୟ ଆଦି ଅନନ୍ତ ସଂଖ୍ୟକ ଦେବୀ ଦେବତାଗଣ, ଋଷି, ମୁନିଙ୍କ ସହିତ ମରୀଚି ଆଦି ପ୍ରଜାପତି, ପିତର, ସିଦ୍ଧ, ଗନ୍ଧର୍ବ, ବିଦ୍ୟାଧର, ଚାରଣ, ଯକ୍ଷ, ରକ୍ଷ, ନାଗ, କିନ୍ନର ଓ ଅପ୍ସରାଗଣ ମଣ୍ଡଳ ଆକାରରେ ନିଜ ନିଜ ସୂକ୍ଷ୍ମ ଶରୀର ଧରି ଘେରିଗଲେ ଠାକୁରଜୀଙ୍କୁ ।

ପ୍ରଶ୍ନ-୧୦୩: ସାମସଙ୍ଗୀତ ଗାନରେ ମୁଖରିତ ହେଲା ସେଠାକାର ବାତାବରଣ । ଦିବ୍ୟ ପୁଷ୍ପବୃଷ୍ଟି, ଦୁନ୍ଦୁଭି ବାଦନ, ଗନ୍ଧର୍ବଙ୍କ ଗାନ ଓ ଅପ୍ସରାମାନଙ୍କ ନୃତ୍ୟରେ ଭଗବାନଙ୍କ ବିଦାୟ ବେଳାକୁ ଆହୁରି ରସମୟ କରିଦିଅନ୍ତେ ଭଗବାନ

ସମସ୍ତଙ୍କୁ ଥରେ ତାଙ୍କ ଦିବ୍ୟନେତ୍ରରେ ଚାହିଁ ଦେଇ ନିଜର ଦୁଇ ନେତ୍ରକୁ ବନ୍ଦ କରନ୍ତେ ପୁଣି କି ଅଦ୍ଭୁତ ଲୀଳା ଦେଖିବାକୁ ମିଳିଲା ?

**ଲୋକ-ଅଭିରାମାଂ ସ୍ୱତନୁଂ ଧାରଣା ଧ୍ୟାନ ମଙ୍ଗଳମ୍ ।**
**ଯୋଗ ଧାରଣୟା-ଆଗ୍ନେୟା ଅଦଗ୍ଧ୍ୱା ଧାମ-ଆବିଶତ୍ ସ୍ୱକମ୍ ।।୬।।**

ଉ. ଠାକୁରଜୀ ତାଙ୍କର ଯୋଗୀମାନଙ୍କର ଧ୍ୟେୟ ବିଶ୍ୱମୋହନ ରୂପ (ଲୋକ-ଅଭିରାମାଂ) ବିଶିଷ୍ଟ ଚିନ୍ମୟ ଦେହକୁ (ସ୍ୱତନୁଂ) ଯୋଗ ସିଦ୍ଧ ମୁନି ଋଷିମାନଙ୍କ ସଦୃଶ ଯୋଗ ପ୍ରଜ୍ୱଳିତ ଅଗ୍ନିରେ ଦହନ ନକରି (ଅଦଗ୍ଧ୍ୱା) ନିଜ ଦିବ୍ୟ ଗୋଲୋକ ଧାମରେ ସ୍ୱଦେହରେ ପ୍ରବେଶ କରିଗଲେ । ସମସ୍ତେ ସ୍ୱଚକ୍ଷୁରେ ଦେଖିଲେ ଏହି ଅପ୍ରକଟ ଲୀଳା ।

ପ୍ରଶ୍ନ-୧୦୪: ସଙ୍ଗେ ସଙ୍ଗେ ଆକାଶରୁ ଦିବ୍ୟ ସୁମନ ବର୍ଷଣ ହେଲା । ପୁନର୍ବାର ଦୁନ୍ଦୁଭି ବାଦ୍ୟ ବାଜି ଉଠିଲା । ତାଙ୍କ ସହିତ ଆସିଥିବା ପୃଥିବୀରେ ଥିବା ସ୍ୱତନ୍ତ୍ର କଳା ଗୁଡ଼ିକ ସତ୍ୟ, ଧର୍ମ, ଧୃତି, କୀର୍ତ୍ତି ଓ ଶ୍ରୀଦେବୀ ତାଙ୍କ ଅନୁଗମନ କଲେ । ବ୍ରହ୍ମା, ଶଙ୍କର, ଇନ୍ଦ୍ରାଦି ଦେବଗଣ ତାଙ୍କର ପ୍ରସ୍ଥାନ ମାର୍ଗର ଇତିବୃତ୍ତି କାହିଁକି ବୁଝିପାରିଲେ ନାହିଁ ?

**ସୌଦାମନ୍ୟା ଯଥା-ଆକାଶେ ଯାନ୍ତି-ଅହିତ୍ୱା-ଅଭ୍ରମଣ୍ଡଳମ୍ ।**
**ଗତିଃ ନ ଲକ୍ଷ୍ୟତେ ମର୍ତ୍ତ୍ୟୈଃ ତଥା କୃଷ୍ଣସ୍ୟ ଦୈବତୈଃ ।।୯।।**

ଉ. ଆକାଶରେ କଳାମେଘ ମଧ୍ୟରେ ବିଜୁଳି (ସୌଦାମନ୍ୟା) କେଉଁ ବାଟେ ଆସେ ପୁଣି କୁଆଡ଼େ ଯାଇ ଅଦୃଶ୍ୟ ହୋଇଯାଏ ସାଧାରଣ ମନୁଷ୍ୟ ବୁଦ୍ଧିରେ ଏ ବିଷୟ ରହସ୍ୟମୟ ହୋଇ ଅଗମ୍ୟ ରହିଯାଏ । ଠିକ୍ ସେଇ ପ୍ରକାର ଭଗବାନଙ୍କର ଅଲୌକିକ ପ୍ରସ୍ଥାନ ବିଷୟରେ ବ୍ରହ୍ମାଶଙ୍କର ଆଦି ବଡ଼ ବଡ଼ ଦେବତାମାନେ (ଦୈବତୈଃ) ମଧ୍ୟ ଟେର ପାଇପାରିଲେ ନାହିଁ ।

ପ୍ରଶ୍ନ-୧୦୫: ବ୍ରହ୍ମା ରୁଦ୍ର ଆଦି ଦେବଗଣ ନିଜ ନିଜ ଲୋକକୁ ପ୍ରସ୍ଥାନ କଲେ । ଭଗବାନଙ୍କର ଏ ଦୁର୍ବୋଧ ପ୍ରସ୍ଥାନ ଲୀଳା ବିଷୟରେ ରାଜା ପରୀକ୍ଷିତ ସ୍ୱଦେହରେ ଗୋଲୋକ ଯିବା ଅବିଶ୍ୱାସ କରିପାରନ୍ତି ଭାବନା କରି ଭଗବାନଙ୍କର ଶକ୍ତି ସଂପୂର୍ଣ୍ଣ ଅଲୌକିକ ବୋଲି ପ୍ରମାଣ ଦେବାକୁ ଯାଇ ବକ୍ତା ମହାଶୟ କି କି ଦୃଷ୍ଟାନ୍ତମାନ ସବୁ ଦେଲେ ?

**ମର୍ତ୍ତ୍ୟେନ ଯୋ ଗୁରୁ ସୁତଂ ଯମଲୋକ-ଆନୀତମ୍**
**ତ୍ୱାଂ ଚ-ଆନୟତ୍ ଶରଣଦଃ ପରମାସ୍ତ୍ର ଦଗ୍ଧମ୍ ।**
**ଜିଗ୍ୟେଽନ୍ତକ-ଅନ୍ତକଂ ଅପି-ଈଶଂ ଅସୌ ଅନୀଶଃ**
**କିଂ ସ୍ୱ-ଅବନେ ସ୍ୱଃ ଅନୟତ୍ ମୃଗୟୁଂ ସଦେହମ୍ ॥୧୨॥**

ଉ. ପ୍ରଥମରେ ଯେଉଁ ଶ୍ରୀକୃଷ୍ଣ ଯମଲୋକକୁ ଯାଇ ତାଙ୍କଠାରୁ ନିଜ ଗୁରୁପୁତ୍ରଙ୍କୁ ନିଜଦେହରେ (ମର୍ତ୍ତ୍ୟେନ) ଆଣିଥିଲେ, ପୁଣି ପରୀକ୍ଷିତ ମାତୃଗର୍ଭରେ ବ୍ରହ୍ମାସ୍ତ୍ରରେ ଦଗ୍ଧ ହୋଇଥିଲାବେଳେ ତାଙ୍କୁ ଦିବ୍ୟଶକ୍ତି ବଳରେ ଦେହଟିଏ ଦେଇପାରିଥିଲେ, ବାଣାସୁରଙ୍କ ସହିତ ଯୁଦ୍ଧ କଲାବେଳେ ମୃତ୍ୟୁଞ୍ଜୟ (ଅନ୍ତକ-ଅନ୍ତକଂ) ଶଙ୍କରଜୀଙ୍କୁ ଜୟ କରିଥିଲେ ପୁଣି ଜରା ଶବରକୁ (ମୃଗୟୁଂ) ନିଜ ଦେହରେ ସ୍ୱର୍ଗକୁ ପଠାଇ ପାରିଥିଲେ ତାଙ୍କ ଚିନ୍ମୟ ଦେହକୁ ସିଧା ସଳଖ ନେଇ ଗୋଲୋକ ଗମନ କରିବା କେଉଁ ଆଶ୍ଚର୍ଯ୍ୟର କଥା ? ଅର୍ଥାତ୍ ତାଙ୍କ ପକ୍ଷେ ଏହା ନିଶ୍ଚୟ ସମ୍ଭବ । ନିଜ ଦେହ ରକ୍ଷା କରିବାରେ (ସ୍ୱ-ଅବନେ) ତାଙ୍କୁ ଅସମର୍ଥ (ଅନୀଶ) ଭାବିବା ମନୁଷ୍ୟ ବୁଦ୍ଧିରେ ଏକ ଅଯୌକ୍ତିକ କଳ୍ପନା ବା କୁତର୍କ ମାତ୍ର । ସମଗ୍ର ବିଶ୍ୱବ୍ରହ୍ମାଣ୍ଡରେ ସେ କେବଳ ସମସ୍ତଙ୍କର ଶରଣଦାତା (ଶରଣଦ) । ଯାହାର କେହି ଶରଣଦାତା ନାହାନ୍ତି ସେଇ ସର୍ବୋଚ୍ଚ ଶାସକ ପାଳକଙ୍କର ନାମ ଭଗବାନ ଗୋଲକବିହାରୀ ଗୋପୀଜନ ବଲ୍ଲଭ ଶ୍ରୀକୃଷ୍ଣ ।

ପ୍ରଶ୍ନ-୧୦୬: ଇତି ମଧରେ ଦାରୁକ ଦ୍ୱାରକାରେ ପହଞ୍ଚି ଏହି ଦାରୁଣ ସମ୍ବାଦ ଜଣାଇଦେଲେ । ବୃଷ୍ଣି ବଂଶର ଚରମ ଦୁର୍ଦ୍ଦଶାର କାହାଣୀ ଶୁଣୁ ଶୁଣୁ ଅନେକ ଯଦୁବଂଶୀ ମୂର୍ଚ୍ଛିତ ହୋଇ ପଡ଼ିଲେ । ଉଠିବା ପରେ ଭୂଇଁରେ ମୁଣ୍ଡ ପିଟି କରୁଣ କ୍ରନ୍ଦନ କଲେ । ଦେବକୀ, ରୋହିଣୀ, ବସୁଦେବ ଆଦି ଅନେକ ଦ୍ୱାରକାବାସୀ ସେ ଯୁଦ୍ଧ ପ୍ରାଙ୍ଗଣରେ ପହଞ୍ଚି ପ୍ରଥମେ ଚେତା ହରାଇଲେ ଏବଂ ପରେ ପରେ ପ୍ରାଣ ହରାଇଲେ । ରୁକ୍ମିଣୀ, ସତ୍ୟଭାମା, ଜାମ୍ବବତୀ ଆଦି କୃଷ୍ଣପତ୍ନୀମାନଙ୍କର କି ଦୁରବସ୍ଥା ହେଲା ?

**ରାମ ପତ୍ନ୍ୟଃ ଚ ତତ୍ ଦେହଂ ଉପଗୁହ୍ୟ-ଅଗ୍ନିଂ ଆବିଶତ୍ ।**
**ବସୁଦେବ ପତ୍ନ୍ୟଃ ତଦ୍‌ଗାତ୍ରଂ ପ୍ରଦ୍ୟୁମ୍ନ-ଆଦୀନ୍ ହରେଃ ସ୍ନୁଷାଃ ।**
**କୃଷ୍ଣ ପତ୍ନ୍ୟୋଽଽବିଶତ୍ ଅଗ୍ନିଂ ରୁକ୍ମିଣୀ-ଆଦ୍ୟାଃ ତତ୍ ଆତ୍ମିକାଃ ॥୨୦॥**

ଉ. ବଳରାମଙ୍କ ପତ୍ନୀ ମା ରେବତୀ ବଳରାମଙ୍କ ଦେହକୁ କୁଣ୍ଢାଇ ଅଗ୍ନିପ୍ରବେଶ କଲେ । ବସୁଦେବଙ୍କର ଅନ୍ୟ ପତ୍ନୀଗଣ ବସୁଦେବଙ୍କ ଦେହକୁ ଓ ତାଙ୍କ ପୁତ୍ର ବଧୂ,

କୃଷ୍ଣଙ୍କର ପତ୍ନୀ ଓ ପୁତ୍ରବଧୂଗଣ (ହରେଃ ସ୍ନୁଷାଃ) ନିଜ ନିଜର ପତିଙ୍କ ଶରୀରମାନଙ୍କୁ ଧରି ଚିତାଗ୍ନିରେ ପଶି ସତୀ ହେଲେ। ଜଗତମାତା ରୁକ୍ମିଣୀ ସତ୍ୟଭାମା ଆଦି କୃଷ୍ଣପତ୍ନୀମାନେ ଦେଖିଲେ ପତିଦେବ ନିଜ ଚିନ୍ମୟ ଶରୀର ନେଇ ଗୋଲୋକ ପ୍ରସ୍ଥାନ କରିସାରିଲେଣି ତାଙ୍କ ପାଇଁ ଆଉ ମୃଣ୍ମୟ ଦେହ ନାହିଁ। ସୁତରାଂ ସେମାନେ ଶ୍ରୀକୃଷ୍ଣଙ୍କ ରୂପ ଧ୍ୟାନ ସ୍ମରଣ କରି ଅଗ୍ନି ପ୍ରବେଶ କରି ସତୀ ପଦରେ ନାମ ଲେଖାଇଲେ।

ପ୍ରଶ୍ନ-୧୦୭: କୃଷ୍ଣସଖା ଅର୍ଜୁନ ଦାରୁକଙ୍କ ଠାରୁ ପ୍ରାପ୍ତ ଭଗବାନଙ୍କ ଆଦେଶ ପାଳନ କଲେ। ସେ ଗୀତାଜ୍ଞାନ ସ୍ମରଣ କରି ନିଜ ଶୋକ ସମ୍ବରଣ କଲେ। ମୃତ ଯଦୁବଂଶୀମନଙ୍କ ନିମନ୍ତେ ଅର୍ଜୁନ କ'ଣ କଲେ?

**ବନ୍ଧୂନାଂ ନଷ୍ଟ ଗୋତ୍ରାଣାଂ ଅର୍ଜୁନଃ ସାମ୍ପରାୟିକମ୍।**
**ହତାନାଂ କାରୟାମାସ ଯଥାବତ୍ ଅନୁପୂର୍ବଶଃ ॥୨୨॥**

ଉ. ଅର୍ଜୁନ ଦେଖିଲେ ଯେ ଯେଉଁମାନଙ୍କ କୁଳରେ କେହି ନାହାନ୍ତି, ସମସ୍ତେ ମୃତ ସେମାନଙ୍କର ସାମୂହିକ ପିଣ୍ଡଦାନ ଓ ଶ୍ରାଦ୍ଧକ୍ରିୟା ଆଦି (ସାମ୍ପରାୟିକମ୍) ଅର୍ଜୁନ ନିଜେ କଲେ କରାଇଲେ ବିଧିବତ୍ ଶାସ୍ତ୍ର ନିୟମ ଅନୁସାରେ।

ପ୍ରଶ୍ନ-୧୦୮: ଦ୍ୱାରକାରେ ସବୁ କ୍ରିୟା କର୍ମ ସରିବା ପରେ ଅର୍ଜୁନ ବଞ୍ଚିଥିବା ବାକି ଆବାଳ ବୃଦ୍ଧ ବନିତାଙ୍କୁ ବାହାରକୁ ଆଣି ନିରାପଦ ସ୍ଥାନରେ ପହଞ୍ଚାଇବା ପରେ ଭଗବାନଙ୍କର କେଉଁ ଶେଷ ଇଛା ପୂରଣ ହେଲା?

**ଦ୍ୱାରକାଂ ହରିଣାଂ ତ୍ୟକ୍ତା ସମୁଦ୍ରୋଽପ୍ଲାବୟତ୍ କ୍ଷଣାତ୍।**
**ବର୍ଜୟିତ୍ୱା ମହାରାଜ ଶ୍ରୀମତ୍ ଭଗବତ ଆଳୟମ୍ ॥୨୩॥**

ଉ. ଅର୍ଜୁନଙ୍କ ଦେଖୁ ଦେଖୁ ସମୁଦ୍ର ସମଗ୍ର ଦ୍ୱାରକା ନଗୀରକୁ ସଂପୂର୍ଣ୍ଣ ଜଳମଗ୍ନ କରିଦେଲେ। କେବଳ ଛାଡ଼ିଦେଲେ (ବର୍ଜୟିତ୍ୱା) ଭଗବାନ ଶ୍ରୀକୃଷ୍ଣଙ୍କର ବାସଭବନରୂପୀ ଦିବ୍ୟ ମନ୍ଦିରଟିକୁ। ଆଜି ସେହି କୃଷ୍ଣଙ୍କ ଅଣନାତି ବଜ୍ରନାଭଙ୍କ ସ୍ଥାପିତ ମନ୍ଦିର ଜଗତ୍‌ମନ୍ଦିର ବା ଶ୍ରୀଦ୍ୱାରକାଧୀଶ ମନ୍ଦିର (ଭଗବତ ଆଳୟମ୍) ନାମରେ ଘଟଣାର ମୂକ ସାକ୍ଷୀ ରୂପେ ବିଦ୍ୟମାନ। କୃଷ୍ଣ ଭକ୍ତମାନେ ସମୁଦ୍ରସ୍ନାନ କରି ଶ୍ରଦ୍ଧାଞ୍ଜଳି ଅର୍ପଣ କରିଥାନ୍ତି ସେଇ ଠାକୁରଜୀଙ୍କୁ ଯାହାଙ୍କ ବିଗ୍ରହରେ ସାଧ୍ୱୀ ମୀରାବାଈ ସଶରୀରେ ପ୍ରବେଶ କରିଯାଇଛନ୍ତି।

ଶୁକଦେବ ପରମହଂସ ଏକାଦଶ ସ୍କନ୍ଧର ଉପସଂହାର କରି କହିଲେ, ''ହେ,

ଭାଗ୍ୟବାନ୍ ରାଜା, କୃଷ୍ଣ ସଖା ଅର୍ଜୁନ ଅବଶିଷ୍ଟ ଦ୍ୱାରକାବାସୀଙ୍କୁ ଇନ୍ଦ୍ରପ୍ରସ୍ଥ ମଥୁରାରେ ପହଞ୍ଚାଇ ସମସ୍ତଙ୍କ ଥଇଥାନ ବ୍ୟବସ୍ଥା କଲେ । ବଜ୍ରନାଭଙ୍କୁ ମଥୁରା ସିଂହାସନ ଓ ତୁମକୁ ଇନ୍ଦ୍ରପସ୍ଥ ସିଂହାସନରେ ଅଭିଷିକ୍ତ କରି ତୁମ ପିତାମହ ଯୁଧିଷ୍ଠିର ଅନ୍ୟମାନଙ୍କ ସହ ଉତ୍ତର ଦିଗକୁ ମହାଯାତ୍ରା କଲେ ବୀର ସନ୍ନ୍ୟାସ ଅବଲମ୍ବନ କରି । ଏ ସବୁ ଗତ ତିରିଶ ବର୍ଷ ତଳର କଥା ।''

**ଫଳଶ୍ରୁତି:-** ଏହି ଦିବ୍ୟ କୃଷ୍ଣ ଲୀଳାର ସଶ୍ରଦ୍ଧ କୀର୍ତ୍ତନ କଲେ ଜୀବର ପାପ ବନ୍ଧନ ନଷ୍ଟ ହୁଏ । ଶ୍ରବଣ କଲେ ପାପ-ପୁଣ୍ୟ ଉଭୟ ବନ୍ଧନ ନଷ୍ଟ ହୋଇ ଠିକ୍ ଭଗବାନ ଶ୍ରୀକୃଷ୍ଣଙ୍କ ଭଳି ମୃତ୍ୟୁଭୟ ଜୟ କରି ଜୀବନ୍ମୁକ୍ତି ପ୍ରାପ୍ତି ହୁଏ । ଏହା ହିଁ ମୁକ୍ତିରୁ ମିଳୁଥିବା ମହାମୁକ୍ତି ବା ଶ୍ରୀ ରାଧାକୃଷ୍ଣଙ୍କ ସେବା ପ୍ରେମ ପ୍ରାପ୍ତି ।

## ୪୧.ସାର୍ଷ୍ଟିମୁକ୍ତି ପ୍ରକରଣ ସାର

### ଅଧ୍ୟାୟ୨୫ଶ-୩୧ଶ

ବୈକୁଣ୍ଠ ବିହାରୀ ବିଷ୍ଣୁଙ୍କ ଭକ୍ତ ବୈଷ୍ଣବ । ମହାବୈକୁଣ୍ଠ ବିହାରୀ ମହାବିଷ୍ଣୁ ବା ନାରାୟଣଙ୍କ ଭକ୍ତ ମଧ୍ୟ ବୈଷ୍ଣବ । ପୁଣି ଗୋଲୋକ ବିହାରୀ ଶ୍ରୀକୃଷ୍ଣଙ୍କ ଭକ୍ତ, ମଧ୍ୟ ବୈଷ୍ଣବ । ତଥାପି ଐଶ୍ୱର୍ଯ୍ୟ ମାଧୁର୍ଯ୍ୟ ରସ ଆସ୍ୱାଦନର ତାରତାମ୍ୟକୁ ନେଇ ଭକ୍ତି ଧର୍ମରେ ସେମାନଙ୍କୁ ଭିନ୍ନ ଦୃଷ୍ଟିରେ ଦେଖାଯାଏ ।

ଏହି ସାର୍ଷ୍ଟିମୁକ୍ତି ପ୍ରକରଣର ୧ମ ଅଧ୍ୟାୟ (୨୫ଶ)ରେ ବର୍ଣ୍ଣିତ ହେଲା ଯେ ସୃଷ୍ଟିରେ ସପ୍ତପାତାଳ ଓ ସପ୍ତସ୍ୱର୍ଗ ଅନ୍ତର୍ଭୁକ୍ତ ସକଳ ବସ୍ତୁ, ପ୍ରାଣୀ ମାୟାଧୀନ ଏବଂ ତ୍ରିଗୁଣାତ୍ମକ । ଜୀବର ଅନ୍ତଃକରଣ ଗୁଣାତୀତ ନ ହେବା ପର୍ଯ୍ୟନ୍ତ ଜୀବ ପ୍ରକୃତିର ଐଶ୍ୱର୍ଯ୍ୟ ଆଡ଼କୁ ହାତ ବଢ଼ାଇବ । ଐଶ୍ୱର୍ଯ୍ୟ ନ ପାଇଲେ ଦୁଃଖୀ ହେବ ପାଇଲେ ଗର୍ବ ଅହଂକାର ବଢ଼ାଇ ନିଜ ପତନର ପଥ ପରିଷ୍କାର କରିବ । ସୁତରାଂ ଐଶ୍ୱର୍ଯ୍ୟବାନ ହୋଇ ବାସ୍ତବରେ ଜୀବ ଲାଭବାନ ହୋଇପାରେନା । ଚକ୍ରବର୍ତ୍ତୀ ସମ୍ରାଟ ପୁରୂରବାଙ୍କ ଚରିତ ଅତ୍ୟନ୍ତ ପ୍ରଣିଧାନ ଯୋଗ୍ୟ । ସେ ଜଣେ ବିଶ୍ୱବିଜୟୀ ଧାର୍ମିକ ମହାରାଜା ଥିଲେ । ଭାଗବତ ଧର୍ମ ଆଶ୍ରୟରେ ରହି ନଥିବାରୁ ସେଇ ବିଶ୍ୱବିଜୟୀ ସମ୍ରାଟ୍ ଉର୍ବଶୀ

ଅପ୍‌ସରାର କାମ ଜାଲରେ ବନ୍ଦୀ ହେଲେ । ସକଳ ପୃଥିବୀର ଐଶ୍ୱର୍ଯ୍ୟ ତାଙ୍କ ପାଖରେ ଥାଇ ମଧ୍ୟ ତାଙ୍କୁ ହରିଉନ୍‌ମୁଖ କରାଇ ପାରିଲା ନାହିଁ । ପୁରୂରବା ଯଦି ସାଧୁ ବୈଷ୍ଣବ ସଙ୍ଗ କରୁଥାନ୍ତେ ତେବେ ସେ ନିଶ୍ଚୟ କାମକୁ ପରାଜିତ କରିପାରିଥାଆନ୍ତେ ।

ସୌଭାଗ୍ୟକ୍ରମେ ଶେଷ ଜୀବନରେ ପୁରୂରବାଙ୍କର ପୂର୍ଣ୍ଣ ସଂସାର ବୈରାଗ୍ୟ ଉତ୍ପନ୍ନ ହୋଇଛି । ସେ ନିଜ ଦେହକୁ ମଳମୂତ୍ର ଭରା ଥଳିଟିଏ ବୋଲି ଜାଣିପାରିଛନ୍ତି । ଦେହ ସୁଖ, ଇନ୍ଦ୍ରିୟ ସୁଖ, ମାନସିକ ସୁଖଠାରୁ ଆତ୍ମସୁଖ କେତେ ମୂଲ୍ୟବାନ ସେ ବୁଝିପାରିଛନ୍ତି । ଐଶ୍ୱର୍ଯ୍ୟ ବା ସାର୍ଷ୍ଟି ପ୍ରଲୋଭନରୁ ନିଜକୁ ମୁକ୍ତ କରିପାରିଛନ୍ତି ସେଇ ଭାଗବତ ଧର୍ମ ଆଚରଣ କରି ।

ପରବର୍ତ୍ତୀ ଅଧ୍ୟାୟରେ ବୈଦିକ କର୍ମକାଣ୍ଡକୁ କ୍ରିୟାଯୋଗରେ ପରିଣତ କରାଇବା କଥା ବର୍ଣ୍ଣିତ ହୋଇଛି । ଆଠ ପ୍ରକାର ପ୍ରତିମା ପ୍ରଥମେ ସ୍ଥୁଳ ଭାବରେ ପୂଜନ କରି ଶେଷରେ ମାନସିକ ପୂଜାରେ ପହଞ୍ଚିଲେ କର୍ମକାଣ୍ଡର ପରିଣତି ପହଞ୍ଚିଯାଏ ସେଇ ଭାଗବତ ନିର୍ଦ୍ଦେଶିତ ନିରନ୍ତର ହରିଭଜନରେ । ସାଧକ ସଂସାରର ସକଳ ଐଶ୍ୱର୍ଯ୍ୟକୁ ମଧ୍ୟ ନିଜ ପ୍ରଭୁମୟ ଦେଖି ଆନନ୍ଦରେ ଆତ୍ମହରା ସିନା ହୁଏ ଐଶ୍ୱର୍ଯ୍ୟକୁ ଭୋଗ କରିବାକୁ ଲାଳସା କରି ନଥାଏ । କାରଣ ସେତେବେଳକୁ ତାର ଜ୍ଞାନ ସହିତ ବୈରାଗ୍ୟ ଓ ଭକ୍ତି ମିଶି ସାରିଥାନ୍ତି ।

ଜ୍ଞାନ କାଣ୍ଡର ଅନ୍ତିମ ଅବସ୍ଥା ସଂସାରର ସବୁ ଲୌକିକ ବୈଦିକ କର୍ମ ତ୍ୟାଗ କରି ନିରନ୍ତର ଓଁ ଚିନ୍ତନ କରି ସମାଧିସ୍ଥ ହେବା । ଶେଷରେ ଅଣିମା, ମହିମା, ଲଘିମା ଆଦି ସିଦ୍ଧି ପହଞ୍ଚନ୍ତି ସାଧକକୁ ଐଶ୍ୱର୍ଯ୍ୟ ବିମଣ୍ଡିତ କରିବା ଲାଗି । ମାୟା ମହାରାଣୀଙ୍କର ଏଇତ ଶେଷ ଯନ୍ତା ଜୀବକୁ ଅହଂକାର ଜାଲରେ ବନ୍ଧନ କରିବାକୁ । ସାଧକ ଯଦି ଜଣେ ସିଦ୍ଧ ସଦ୍‌ଗୁରୁଙ୍କ ଆଶ୍ରୟରେ ଥିବେ ସେ ନିଶ୍ଚୟ ଏ ଐଶ୍ୱର୍ଯ୍ୟ ଲୋଭକୁ ଏଡ଼ାଇ ପାରିବେ ଓ ଭାଗବତ ଧର୍ମ ଆଶ୍ରୟ ପ୍ରାପ୍ତ ହେବେ ।

ବୈଦିକ ଉପାସନା କାଣ୍ଡର ଅନ୍ତିମ ପରିଣତି ସହଜେ ତ ସେଇ ଭାଗବତଙ୍କ ବର୍ଣ୍ଣିତ ନିରନ୍ତର ହରିଭଜନ । ଭକ୍ତର ପରାବୈରାଗ୍ୟ ନ ଥାଇ ଅଳ୍ପ ବୈରାଗ୍ୟରେ କାମ ଚଳିଯାଏ । ସଂସାର ଆସକ୍ତ କର୍ମକାଣ୍ଡୀ ଭଳି ଏତେ ମାତ୍ରାରେ ସଂସାର ବୈରାଗ୍ୟ ନଥାଇ କିଛି କିଛି ଥିବାରୁ ଐଶ୍ୱର୍ଯ୍ୟର ପ୍ରଲୋଭନକୁ ଭକ୍ତି ମାର୍ଗୀ ସାଧକ ଅକ୍ଳେଶରେ ଗୁରୁ ଗୋବିନ୍ଦଙ୍କ ଠାରେ ଶ୍ରଦ୍ଧା ବିଶ୍ୱାସ ବଳରେ ଦୂରକୁ ଠେଲିଦେଇପାରେ । ଭକ୍ତ ଜାଣିପାରେ ସକଳ ସଂସାରୀ ଐଶ୍ୱର୍ଯ୍ୟର ମାଲିକ ସେଇ ଜଣେ ଭଗବାନ ଶ୍ରୀକୃଷ୍ଣ ।

॥ ଅପଣ୍ଡିତ ଦାମୋଦର ବଳୀୟାରସିଂହ ॥

ତାଙ୍କୁ ପ୍ରସନ୍ନ କରିବାର ସେଇ ଗୋଟିଏ ମାତ୍ର ସରଳ ମାର୍ଗ ଭାଗବତ ଧର୍ମ ବା ଭକ୍ତି ମାର୍ଗ । ନଚେତ ସାର୍ଷ୍ଟିମୁକ୍ତିକୁ ସେ ତୁଚ୍ଛ ଭାବନ୍ତା କିପରି ?

ଚବିଶ ଅଧ୍ୟାୟ ବିଶିଷ୍ଟ ଏହି କୃଷ୍ଣ-ଉଦ୍ଧବ ସମ୍ବାଦ ସେଇ ପ୍ରକୃତିର ଚବିଶ ତତ୍ତ୍ୱ ବିଶିଷ୍ଟ ଐଶ୍ୱର୍ଯ୍ୟ ପ୍ରଲୋଭନ ଏଡ଼ାଇବା ମାର୍ଗ ପ୍ରଦର୍ଶନ ଲାଗି ବର୍ଣ୍ଣିତ ହୋଇଛନ୍ତି । ମହାଜ୍ଞାନୀ ଉଦ୍ଧବ ଏହି ତତ୍ତ୍ୱଜ୍ଞାନର ଅଧିକାରୀ ହୁଅନ୍ତେ ଭଗବାନ ତାଙ୍କୁ ଏକ ଅତ୍ୟନ୍ତ ଗୁରୁ ଦାୟିତ୍ୱ ଅର୍ପଣ କଲେ । ତାଙ୍କର ପ୍ରେମ ଅଂଶ ଠାରୁ ଜ୍ଞାନ ଅଂଶକୁ ପୃଥକ କରିଦେଲେ । ପ୍ରେମ ଅଂଶକୁ ବୃନ୍ଦାବନ ଧାମର ଗିରିରାଜ ଗୋବର୍ଦ୍ଧନ ପର୍ବତର କୁସୁମ ସରୋବର ନାମକ ସ୍ଥାନରେ ଗୋପନ କରିନେବାକୁ ଆଦେଶ ଦେଲେ । ଏହାର ପ୍ରମାଣ ସ୍କନ୍ଦ ପୁରାଣର ଭାଗବତ ମାହାତ୍ମ୍ୟ ବର୍ଣ୍ଣନରେ ମିଳେ (ଯାହାର ଆଲୋଚନା ଏହି ଲେଖକ ସ୍ୱତନ୍ତ୍ର ଭାବରେ କରିଛି ଅନ୍ୟ ଏକ ଗ୍ରନ୍ଥ **ଶ୍ରୀବୃନ୍ଦାବନ ଧାମ ମାହାତ୍ମ୍ୟ** ଆକାରରେ) ଉଦ୍ଧବଙ୍କର ଜ୍ଞାନ ଅଂଶକୁ ଏବେ ନିଜର ଚରଣ ପାଦୁକା ଦୁଇଟି ପ୍ରଦାନ କରି ଆଦେଶ କଲେ ବଦ୍ରି ବିଶାଳକୁ ଗମନ କରିବାକୁ । ଭବିଷ୍ୟତରେ ସତ୍ୟଯୁଗର ଜ୍ଞାନ ମାର୍ଗର ପ୍ରଚାର ପ୍ରସାର ଲାଗି ଉଦ୍ଧବଜୀ ସେଠାରେ ସୂକ୍ଷ୍ମ ଦେହରେ ସାଧନା ଜାରି ରଖିବେ ଏବଂ ଆତ୍ମଗୋପନ କରିବେ । ଅଧିକାରୀ ଜ୍ଞାନ ମାର୍ଗୀ ଶିଷ୍ୟମାନଙ୍କୁ ଭାଗବତ ଗ୍ରନ୍ଥ ନିର୍ଦ୍ଦେଶିତ ମାର୍ଗରେ ଚଳାଇ ମୁକ୍ତିଲୋଭୀ, ଭକ୍ତି ଲୋଭୀ ସାଧକଙ୍କୁ ଜୀବନ ମୁକ୍ତିର ପଥ ପ୍ରଦର୍ଶନ କରିବା ଲାଗି ।

ସାର୍ଷ୍ଟି ମୁକ୍ତି ବା ଐଶ୍ୱର୍ଯ୍ୟ କବଳରୁ ମୁକ୍ତିର ଉପସଂହାର ହୋଇଛି ୩୦ତମ ଅଧ୍ୟାୟରେ ଯଦୁବଂଶୀମାନଙ୍କର ସକଳ ଭୌତିକ ଐଶ୍ୱର୍ଯ୍ୟ ଲୋଭ ତ୍ୟାଗ କରି ଦାୟିତ୍ୱ ମୁକ୍ତ ହୋଇ ନିଜ ନିଜ ଧାମ ଗମନ ଲୀଳାର ବିସ୍ତୃତ ବର୍ଣ୍ଣନରେ । ସର୍ବଶେଷରେ ଅନ୍ତିମ ୩୧ତମ ଅଧ୍ୟାୟ ସକଳ ଐଶ୍ୱର୍ଯ୍ୟ ମାଧୁର୍ଯ୍ୟର ଘନୀଭୂତ ବିଗ୍ରହ ମାୟାପତି ଶ୍ରୀକୃଷ୍ଣଙ୍କର ଜୀବନ୍ମୁକ୍ତିର ପ୍ରମାଣ ଦେବା ନିମିତ୍ତ ଉଦ୍ଦିଷ୍ଟ ସ୍ୱଦେହରେ ଗୋଲୋକଧାମ ପ୍ରବେଶ ଦିବ୍ୟ ଲୀଳା ବର୍ଣ୍ଣନ କରି ଧନ୍ୟ ହୋଇଛି ।

ଭକ୍ତି-ଭକ୍ତ-ଭଗବାନଙ୍କର ଜୟ ହେଉ ।

**ଇତି ଶ୍ରୀମତ୍ ଭଗବତେ ମହାମୁନି କୃତେ ମହାପୁରାଣେ ବୈୟାସିକ୍ୟାଂ ଅଷ୍ଟାଦଶ ସାହସ୍ର୍ୟାଂ ପାରମହଂସ୍ୟାଂ ସଂହିତାୟାଂ ଏକାଦଶ ସ୍କନ୍ଧଃ ସମାପ୍ତଃ ।**

**। ।ହରିଃ ଓଁ ତତ୍ ସତ୍ । ।**

**ଶ୍ରୀକୃଷ୍ଣାର୍ପଣଂ ଅସ୍ତୁ ।**

॥ ଅପଣ୍ଡିତ ଦାମୋଦର ବଳିୟାରସିଂହ ॥

## ୨୭ମ ନକ୍ଷତ୍ର ରେବତୀ

# ୧୨ଶ ସ୍କନ୍ଧଃ

## (ଅଧ୍ୟାୟ-୧୩, ଶ୍ଳୋକ-୫୬୫)

## ପ୍ରକରଣ-୪୨

## ସଗୁଣ ସାକାର ବ୍ରହ୍ମଙ୍କ ଆଶ୍ରୟ(ଅଧ୍ୟାୟ୧ମ-୬ଷ୍ଠ)

# ଅଥ ପ୍ରଥମ ଅଧ୍ୟାୟଃ

## (କେବଳ ପୁରୁଷାର୍ଥ ଆଶ୍ରୟର ଅନ୍ତିମ ପରିଣତି ମରଣାନ୍ତକ ବିପଦ)

ପ୍ରଶ୍ନ-୧ : ବିଗତ ଏକାଦଶ ସ୍କନ୍ଧରେ ୩୧ଶ ଅଧ୍ୟାୟସାରା ରାଜା ପରୀକ୍ଷିତ କୌଣସି ପ୍ରଶ୍ନ ପଚାରି ନାହାନ୍ତି । ଏହି ୧୨ଶ ସ୍କନ୍ଧର ଏ ଅଧ୍ୟାୟ ଓ ଏହାର ପରବର୍ତ୍ତୀ ଅଧ୍ୟାୟରେ ମଧ୍ୟ ଆଉ ପ୍ରଶ୍ନ ପଚାରିବାର ଅବକାଶ ପାଇନାହାନ୍ତି ରାଜା । ଶୁକଦେବ ନନ୍ ଷ୍ଟପ ବର୍ଣ୍ଣନା କରିଚାଲିଛନ୍ତି । ମୁକ୍ତି ସ୍କନ୍ଧର ପାଞ୍ଚ ପ୍ରକରଣ ସରିଗଲାଣି । ଭଗବାନଙ୍କ ସ୍ୱଧାମ ଲୀଳା ମଧ୍ୟ ସମାପ୍ତ ହୋଇଛନ୍ତି । ଏବେ ଶୁଭାରମ୍ଭ ହୋଇଛି 'ଆଶ୍ରୟ' ଲକ୍ଷଣ ବର୍ଣ୍ଣନର ବିଷୟବସ୍ତୁ । **ଦଶମସ୍ୟ ବିଶୁଦ୍ଧି ଅର୍ଥଂ ନବାନାଂ ଇହ ଲକ୍ଷଣମ୍ ।** ଏହି ଦଶମ ଲକ୍ଷଣ 'ଆଶ୍ରୟ' ବିଷୟଟିକୁ ବୁଝାଇବା ଲାଗି ପୂର୍ବ ପୂର୍ବର ନ ଲକ୍ଷଣ ବର୍ଣ୍ଣିତ ଏଗାର ସ୍କନ୍ଧଙ୍କୁ କହିବାକୁ ପଡ଼ିଛି ବକ୍ତା ମହାଶୟଙ୍କୁ । ସାତ ଦିନ ନ ଖାଇ, ନ ପିଇ ଓ ନ ଶୋଇ ପରୀକ୍ଷିତ ଭାଗବତ କଅଣ ଶ୍ରବଣ କଲେ ? କ'ଣ ବୁଝିଲେ ? ସେ ସଗୁଣ ବ୍ରହ୍ମ କି ନିର୍ଗୁଣ ବ୍ରହ୍ମ ଆଶ୍ରୟ କଲେଣି ଏଇ କଥା ଜାଣିବାକୁ ଶୁକଦେବଜୀ ଅତ୍ୟନ୍ତ ବ୍ୟଗ୍ର । କଥାର ବିରାମ ବିଶ୍ରାମ କିଛି କରୁ ନାହାନ୍ତି । ଏ ସ୍କନ୍ଧ ସାରା ଦ୍ୱାଦଶ ଅଧ୍ୟାୟରେ ପରମ ଆଶ୍ରୟ ଭଗବାନଙ୍କୁ ଭୁଲି କେବଳ କାଳାଶ୍ରୟ, ରାଜାଶ୍ରୟ, ଧନ ଆଶ୍ରୟ, କର୍ମ-ଜ୍ଞାନ-ଧ୍ୟାନ ଆଦିର ସାଧନ ଆଶ୍ରୟ, ବଳ ଆଶ୍ରୟ, ବୁଦ୍ଧି ଆଶ୍ରୟ, ମୁକ୍ତି ଆଶ୍ରୟ, ଭାଗ୍ୟ ଆଶ୍ରୟ, ଦୈବୀ ଆଶ୍ରୟ, ତପସ୍ୟା ଆଶ୍ରୟ ଓ ଗୁରୁ ଆଶ୍ରୟ ଆଦି ବର୍ଣ୍ଣିତ ହୋଇଛନ୍ତି । ସଂକ୍ଷେପରେ କାଳ ଆଶ୍ରୟ ବିଷୟରେ ଶୁକଦେବଜୀ ମୁମୂର୍ଷୁ ପରୀକ୍ଷିତଙ୍କୁ (ଯାହାଙ୍କର ଆୟୁଷ ମାତ୍ର ଆଉ କେତ ମିନିଟ ବାକି ଥାଏ) କ'ଣ ଶୁଣାଇଥିଲେ ?

ଶ୍ରୀ ଶୁକ ଉବାଚ

**ଯୋଽନ୍ତ୍ୟଃ ପୁରଞ୍ଜୟୋ ନାମ ଭବିଷ୍ୟୋ ବାରହଦ୍ରଥଃ ।**
**ତସ୍ୟ-ଅମାତ୍ୟଃ ତୁ ଶୁନକୋ ହତ୍ୱା ସ୍ୱାମିନଂଆତ୍ମଜମ୍ ॥୨॥**

ଉ. ଶୁକଦେବଜୀ କହିଲେ, ''ପରୀକ୍ଷିତଜୀ, ମୁଁ ପୂର୍ବେ (ନବମ ସ୍କନ୍ଧରେ) ଭାରତକୁ ଶାସନ କରିବାକୁ ଥିବା ମାଗଧ ବଂଶର ରାଜା ବୃହଦ୍ରଥଙ୍କ (ବାରହଦ୍ରଥଃ) କଥା ବର୍ଣ୍ଣନା କରିଥିଲି । ସେତେବେଳେର ଶେଷ ରାଜା ପୁରଞ୍ଜୟଙ୍କ ମନ୍ତ୍ରୀଙ୍କ ନାମ ଶୁନକୋ । କଳିକାଳର ପ୍ରଭାବରେ ସେ ରାଜ୍ୟର ମନ୍ତ୍ରୀ ହୋଇ ମଧ ଷଡ଼ଯନ୍ତ୍ର କରି ରାଜାଙ୍କୁ ହତ୍ୟା କରି ନିଜ ପୁତ୍ର ପ୍ରଦ୍ୟୋତଙ୍କୁ ସିଂହାସନରେ ଅଭିଷେକ କରିବେ । କାଳ କ୍ରମେ ଭାରତ ବର୍ଷରେ ସେ ବଂଶର ଶାସନ ୧୩୮ ବର୍ଷ ଚାଲିବ । ତତ୍‌ପରେ ଶିଶୁନାଗ ବଂଶୀ ରାଜମାନେ ୩୬୦ବର୍ଷ ଶାସନ କରିବେ । ପରେ ପରେ ୧୩୭ବର୍ଷ ଭାରତକୁ ଶାସନ କରିବେ ମୌର୍ଯ୍ୟବଂଶର ରାଜାମାନେ । ତାପରେ ୧୦୦ବର୍ଷ ଶାସନ କରିବେ ଶୁଙ୍ଗ ବଂଶୀୟ ରାଜାଗଣ । କାଣ୍ୱବଂଶୀ ଶାସନ ଚାଲିବ ୩୪୫ବର୍ଷ ଧରି । ଶୂଦ୍ରବଂଶୀ ରାଜାମାନେ ୪୫୬ବର୍ଷ ଶାସନ କଲାପରେ ଆଭୀର ଜାତିର ସପ୍ତପୁରୁଷ ଓ ତତ୍‌ପରେ କଙ୍କ ଜାତିର ଷୋଳ ପୁରୁଷ ଭାରତର ଶାସନଭାର ହାତକୁ ନେବେ । ଏମାନଙ୍କ ଶାସନ ୧୦୯୯ବର୍ଷ । ଶେଷ ବେଳକୁ ରାଜା ଓ ପ୍ରଜା ଉଭୟେ ବୈଦିକ ନିୟମ କାନୁନ୍ ଅବଜ୍ଞା କରି ଜୀବନ ବିତାଇବେ ।

ପ୍ରଶ୍ନ-୨ : ଭାରତ ଭୂମିରେ ଅବୈଦିକ ରାଜା ପ୍ରଜାମାନେ ଅଧ୍ୟାତ୍ମ୍ୟ ମାର୍ଗକୁ ହତାଦର କରି ଆଧିଭୌତିକ ମାର୍ଗରେ ଚାଲନ୍ତେ କିଭଳି ଅବ୍ୟବସ୍ଥା ଦେଖାଯିବ ସେତେବେଳେ ?

**ତୁଲ୍ୟକାୟା ଇମେ ରାଜନ୍ ମ୍ଳେଚ୍ଛପ୍ରାୟାଃ ଚ ଭୂଭୃତଃ ।**
**ଏତେଽଧର୍ମ-ଅନୃତ ପରାଃ ଫଲ୍‌ଗୁଦାଃ ତୀବ୍ର ମନ୍ୟବଃ ॥୪୦॥**

ଉ. ଶୁକଦେବଜୀ କହିଲେ, ''ହେ ରାଜନ୍, ଭାରତ ଭୂମି ଖଣ୍ଡ ଖଣ୍ଡ ହୋଇଯିବ (ତୁଲ୍ୟ କାୟା ଇମେ) । ଆମିଷ ପ୍ରିୟ ଲୋକେ (ମ୍ଳେଚ୍ଛପ୍ରାୟାଃ) ଲୋକେ ଶାସନଭାର ହାତକୁ ନେଇ ରାଜା (ଭୂଭୃତଃ) ବୋଲାଇବେ । ଅଧର୍ମ, ଅସତ୍ୟ (ଅନୃତ)ର ରାଜୁତି ଚାଲିବ । ଅଳ୍ପ ଦାନ ଦେଇ (ଫଲ୍‌ଗୁଦାଃ) ନିଜକୁ ବଡ଼ ଦାନୀ ମାନିବେ (ତୀବ୍ର ମନ୍ୟବଃ) ଭାରତର ଲୋକେ ଓ ଭାରତରେ ଶାସକ ଗୋଷ୍ଠୀ ।

ଏଭଳି ଭାରତ ବର୍ଷର ରାଜା ବା ଶାସକ ଗଣ ନିର୍ଦ୍ଦୋଷ ସ୍ତ୍ରୀ, ବାଳକ, ଗୋ,

ବ୍ରାହ୍ମଣ, ବୈଷ୍ଣବ ଦ୍ରୋହୀ ହେବେ । ସେମାନଙ୍କୁ ଦଣ୍ଡିତ କରିବେ । ହତ୍ୟା ମଧ୍ୟ କରିବେ । ରାଜା, ପ୍ରଜା ସମସ୍ତେ ମନ ବୁଦ୍ଧିର ରଜୋ ତମୋଗୁଣୀ ପ୍ରଭାବରେ ନାନା ଉପଦ୍ରବ ଓ ଉତ୍ପାତ କରିବେ ।''

# ଅଥ ଦ୍ୱିତୀୟ ଅଧ୍ୟାୟଃ

## (ବିନା ହରି ଶରଣାଗତିରେ ପୁରୁଷାର୍ଥର ଚରମ ଦୁର୍ଦ୍ଦଶା)

ପ୍ରଶ୍ନ-୩: ରାଜା ପ୍ରଜା ଉଭୟଙ୍କ ସାଂସ୍କୃତିକ ଏବଂ ଆଧ୍ୟାତ୍ମିକ ପତନ କଳିଯୁଗର ଲକ୍ଷଣ । ଧର୍ମର ଅବକ୍ଷୟ ଓ ସତ୍ୟର ଅବକ୍ଷୟ ହେଲା ବୋଲି କଳିଯୁଗରେ କିପରି ଜଣାଯିବ ?

ଶ୍ରୀ ଶୁକ ଉବାଚ

**ତତଃ ଚ-ଅନୁଦିନଂ ଧର୍ମଃ ସତ୍ୟଂ ଶୌଚଂ କ୍ଷମା ଦୟା ।**
**କାଳେନ ବଳିନା ରାଜନ୍ ନଙ୍କ୍ଷତି-ଆୟୁଃ ବଳଂ ସ୍ମୃତିଃ ॥୧॥**

ଉ. କଳି କାଳର ପ୍ରଭାବରେ (କାଳେନ ବଳିନା) ଦିନକୁ ଦିନ ଧର୍ମ, ସତ୍ୟ, ମନର ଓ ଦେହର ପବିତ୍ରତା (ଶୌଚ), କ୍ଷମା, ଦୟା, ଆୟୁ, ବଳ (ଦୈହିକ, ମାନସିକ ଓ ବୌଦ୍ଧିକ) ସହିତ ସ୍ମରଣ ଶକ୍ତି ମଧ୍ୟ ଦୁର୍ବଳ ହେବାରେ ଲାଗିବ ।

ପ୍ରଶ୍ନ-୪: ସତ୍ୟ, ଧର୍ମ, ନ୍ୟାୟକୁ ନିରାଦର କଲେ ମନୁଷ୍ୟର ମାନବିକତା ଓ ମହାନୁଭବତାର ମାପକାଠି କିଏ ହେବ ?

**ବିତ୍ତଂ ଏବ କଳୌ ନୃଣାଂ ଜନ୍ମ-ଆଚାର ଗୁଣ-ଉଦୟଃ ।**
**ଧର୍ମ ନ୍ୟାୟ ବ୍ୟବସ୍ଥାୟାଂ କାରଣଂ ବଳଂ ଏବ ହି ॥୨॥**

ଉ. ବଢ଼ିଆ ମାପଦଣ୍ଡ ଧରିବେ ଜନତା ଜନାର୍ଦ୍ଦନ । ଧନୀଲୋକର ଜନ୍ମକୁ, ଆଚରଣକୁ ଓ ଗୁଣକୁ ବିନା ବାଛ ବିଚାରରେ ପ୍ରଶଂସା କରିବାକୁ ବାଧ୍ୟ ହେବେ । ଧନବାନ୍, ବଳବାନ୍ ଲୋକେ କେବଳ ଧାର୍ମିକ ନ୍ୟାୟବାନ ବୋଲାଇବେ । **ଲାଠି ଜିସକୀ ଭୈଂସ ଉସକୀ** । ବଳ ଯାହାର ମୁଲକ ତାହାର ହେବ ।

ପ୍ରଶ୍ନ-୫: ସଫଳ ଦାମ୍ପତ୍ୟ ଜୀବନ, ପରିବାର ଜୀବନ ଓ ସମୃଦ୍ଧ ସମାଜ ବୋଲି କାହାକୁ କୁହାଯିବ ?

**ଦାମ୍ପତ୍ୟେଽଭିରୁଚିଃ ହେତୁଃ ମାୟା-ଏବ ବ୍ୟାବହାରିକେ ।**
**ସ୍ତ୍ରୀତ୍ୱେ ପୁଂସ୍ତ୍ୱେ ଚ ହି ରତିଃ ବିପ୍ରତ୍ୱେ ସୂତ୍ରଂ ଏବ ହି ।।୩।।**

ଉ. ଦେହ ଆକର୍ଷଣରେ ସୀମିତ ରହିବ ଦାମ୍ପତ୍ୟ ଜୀବନ । ତାହା ପୁଣି ଛନ୍ଦ କପଟପୂର୍ଣ୍ଣ ହେବ । ପତି ପତ୍ନୀକୁ ଓ ପତ୍ନୀ ପତିକୁ ଲୁଚାଇ କାମ ଭୋଗ କରି ନିଜ ନିଜ ଚତୁରତାର ଫାଇଦା ଲୁଟିବେ । ସ୍ତ୍ରୀତ୍ୱ ଓ ପୁରୁଷତ୍ୱ ଭଗବାନଙ୍କ ଉନ୍ମୁଖତାରେ ବିଚାର କରାନଯାଇ କେବଳ କାମୁକତାରେ ନିରୂପିତ ହେବ ଓ ସୀମିତ ହେବ । ପଇତା ଖଣ୍ଡିକ ବ୍ରାହ୍ମଣତ୍ୱର ଚିହ୍ନ ହୋଇ ରହିଯିବ ଠାକୁର ପୂଜା ନୁହେଁ ।

ପ୍ରଶ୍ନ-୬: ଘୋର କଳି କାଳରେ ଚିକ୍କଣ କଥା ଚାତୁରୀ, ବାକ୍ୟ ଆଡ଼ମ୍ବର ପାଣ୍ଡିତ୍ୟର ଲକ୍ଷଣ ହେବ । ଗରୀବ ଜୀବନକୁ ଆଳସ୍ୟ, ଅସାଧୁତା, ଅପବିତ୍ରତା, ମୂର୍ଖତା, ଅନୈତିକତା, ବ୍ୟର୍ଥତା ଓ ପାରିବାର ପଣିଆ ଅଭାବ ବୋଲି ଲୋକେ ସମାଜରେ କହି ବୁଲିବେ । ବିବାହ, ହୋମ ଓ ଯଜ୍ଞ ଅନୁଷ୍ଠାନ ଆଦି ପ୍ରାୟତଃ ଲୁପ୍ତ ହେବ । କେବଳ କାଗଜ ଦସ୍ତଖତ କଲେ ବିବାହ ହେଲା । ପ୍ରତିଦିନ ସ୍ନାନ କରିବା (ଆଜିର ଇଉରୋପୀୟ ସମାଜ ଭଳି) ଅଦରକାରୀ ହେବ । ଚନ୍ଦନ, ତିଳକ, କସ୍ତୁରୀ, ହଳଦୀ ବଦଳରେ ପରଫ୍ୟୁମ ପସନ୍ଦ କରିବେ ଲୋକେ । ତୀର୍ଥସ୍ଥାନମାନ ସଂପୂର୍ଣ୍ଣ ଅବହେଳିତ ହେବ । ଗଙ୍ଗା ଆଦି ନଦୀ ଭୟଙ୍କର ଭାବେ ପ୍ରଦୂଷିତ ହେବେ । କେଶ ପରିଚର୍ଯ୍ୟା କରିବେ ନାରୀମାନେ କାମୁକତାର ଚିହ୍ନ ପ୍ରକାଶ ବା ବିଜ୍ଞାପନ ଲାଗି । ପୁରୁଷମାନଙ୍କର ଜୀବନର ଏକମାତ୍ର ଲକ୍ଷ୍ୟ ହେବ ଯେନତେନ ପ୍ରକାରେଣ ପେଟ ପୋଷିବା ଓ କୁଟୁମ୍ବ ପୋଷିବା । ଲୋଭୀ, ବିଳାସୀ, ନିର୍ଦ୍ଦୟ ଶାସକମାନଙ୍କ ଦ୍ୱାରା ନିରୀହ ପ୍ରଜାଗଣ ଅଶେଷ ଶୋଷଣର ଶିକାର ହେବେ । ସେମାନେ ଅତ୍ୟନ୍ତ ଦୈହିକ ମାନସିକ ପୀଡ଼ାରେ ତ୍ରାହି ତ୍ରାହି ଡ଼ାକିବେ । ସାଧୁ ଲୋକେ ନିଜ ଧନ, ନିଜ ପତ୍ନୀ ହରାଇ ବଣ ଜଙ୍ଗଲରେ ଚକ୍କର କାଟିବେ । ନାନା ଦୈବୀ ଦୁର୍ବିପାକ ସବୁ ମାଡ଼ି ଆସିବେ । ପାପ ସଂସ୍କାର, ଭୌତିକ ପ୍ରକୃତିର କୋପ, ଦୂଷିତ ଜଳ, ଦୂଷିତ ଖାଦ୍ୟ, ଦୂଷିତ ବାୟୁ ପ୍ରଭାବରେ ମନୁଷ୍ୟର ଆୟୁଷ କମି କମି କୋଡ଼ିଏ ତିରିଶ ବର୍ଷକୁ ଖସି ଆସିଲେ ଦେହଟି ମାନ କେଡ଼େ କେଡ଼େ ହେବେ ?

**କ୍ଷୀୟମାଣେଷୁ ଦେହେଷୁ ଦେହିନାଂ କଳିଦୋଷତଃ ।**
**ବର୍ଣ୍ଣ-ଆଶ୍ରମବତାଂ ଧର୍ମେ ନଷ୍ଟେବେଦ ପଥେ ନୃଣାମ୍ ॥୧୨॥**

ଉ. ବେଦ ବର୍ଣ୍ଣିତ ବର୍ଣ୍ଣ ଆଶ୍ରମ ଧର୍ମ କ୍ଷୟ ହୋଇଗଲେ ଲୋକେ ପ୍ରାୟତଃ ନାସ୍ତିକ ହୋଇଯିବେ । ବେଦ ପୂଜା ହୋମ ଯଜ୍ଞ ବନ୍ଦ ହୋଇଗଲେ ଦେବତାମାନେ ଶକ୍ତିହୀନ ହେବେ । ମନୁଷ୍ୟଙ୍କର ଉଚ୍ଚତା ମାତ୍ର ଦେଢ଼ ଦୁଇ ଫୁଟ ହେବ । ଗାଈ ମହିଷି ଛେଳି ମେଣ୍ଢା ଭଳି ହେବେ । ସକଳ ପଶୁପକ୍ଷୀ, ବୃକ୍ଷ ଲତା କ୍ଷୁଦ୍ରାତିକ୍ଷୁଦ୍ର ହେବେ । ବୃକ୍ଷଲତାମାନେ ମଧ ଔଷଧୀୟ ଗୁଣ ଶୂନ୍ୟ ହେବେ ।

ପ୍ରଶ୍ନ-୭: ସମଗ୍ର ଚର ଅଚରାତ୍ମକ ସୃଷ୍ଟି ଧ୍ୱଂସମୁଖରେ ପଡ଼ିବା ବେଳେ ସେଥିରେ କଅଣ କିଛି ପରିବର୍ତ୍ତନ ଆଶା କରାଯାଇପାରିବନି ?

**ଶମ୍ଭଳ ଗ୍ରାମ ମୁଖ୍ୟସ୍ୟ ବ୍ରାହ୍ମଣସ୍ୟ ମହାତ୍ମନଃ ।**
**ଭବନେ ବିଷ୍ଣୁଯଶସଃ କଲ୍‌କିଃ ପ୍ରାଦୁର୍ଭବିଷ୍ୟତି ॥୧୮॥**

ଉ. ଉତ୍ତର ଭାରତରେ ଶମ୍ଭଳ ଗ୍ରାମରେ ବିଷ୍ଣୁଯଶା ନାମରେ ଜଣେ ନୈଷ୍ଠିକ ବ୍ରାହ୍ମଣଙ୍କ ଗୃହରେ ଭଗବାନଙ୍କର କଲ୍‌କୀ ଅବତାର ହେବ । ସେ ନିଜ ଦେବଦତ୍ତ ନାମକ ଅଶ୍ୱପିଠିରେ ଚଢ଼ି ହାତରେ ଖଣ୍ଡା ଧରି ନିଜ ଯୋଗଶକ୍ତି ବଳରେ ଖୋଜି ଖୋଜି ପାଖଣ୍ଡି ରାଜାଙ୍କୁ ବିନାଶ କରିବେ । ପ୍ରକୃତିକୁ ଶୋଧନ କରିବେ । ସମଗ୍ର ସୃଷ୍ଟିରେ ପୁଣି ସତ୍ତ୍ୱଗୁଣର ପ୍ରାଦୁର୍ଭାବ ହେବ । ସତ୍ତ୍ୱଗୁଣୀ ସନ୍ତାନମାନେ ଜନ୍ମ ନେବେ ।

ପ୍ରଶ୍ନ-୮ : ଘୋର କଳିକାଳର ଆୟୁଷ ଯଦି ୪,୩୨,୦୦୦ବର୍ଷ । ଏହାର ଆରମ୍ଭ କେବେ ହେଲା ଓ ଏହାର ଅନ୍ତ ଘଟିବ କେବେ ?

**ଯସ୍ମିନ୍ କୃଷ୍ଣୋ ଦିବଂ ଯାତଃ ତସ୍ମିନ-ଏବ ତତ୍ ଅହନି ।**
**ପ୍ରତିପନ୍ନଂ କଳିଯୁଗଂ ଇତି ପ୍ରାହୁଃ ପୁରା ବିଦଃ ॥୩୩॥**

ଉ. କାଳଗଣନା ବିଶେଷଜ୍ଞଙ୍କ ମତରେ (ପୁରାବିଦଃ) ଭଗବାନ କୃଷ୍ଣ ଯେଉଁଦିନ ମର୍ତ୍ତ୍ୟଲୋକ ତ୍ୟାଗ କରି ଗୋଲୋକ ଗମନ କଲେ ସେଇଦିନ ହିଁ କଳିକାଳ ତାର ପ୍ରଭାବ ବିସ୍ତାର କଲା । କଳିଯୁଗର ଶାସନ ପୁରା ୪,୩୨,୦୦୦ବର୍ଷ ଚାଲିବ ।

ପ୍ରଶ୍ନ-୯ : କଳିଯୁଗ ଶେଷରେ ସୂର୍ଯ୍ୟବଂଶ ଓ ଚନ୍ଦ୍ରବଂଶ ଆଦିର ପୁନଃ ସ୍ଥାପନ ହେବ କେମିତି ?

**ଦେବାପିଃ ଶାନ୍ତନୋଃଭ୍ରାତା ମରୁଃ ଚ-ଇକ୍ଷ୍ୱାକୁ ବଂଶଜଃ ।**
**କଳାପ ଗ୍ରାମ ଆସାତେ ମହାଯୋଗ ବଳ-ଅନ୍ୱିତୌ ॥୩୭॥**

ଉ. ଭାରତବର୍ଷରେ କଳାପ ନାମକ ଏକ ଗ୍ରାମ ଅଛି । ଚନ୍ଦ୍ରବଂଶୀ ରାଜା ଶାନ୍ତନୁଙ୍କ ଭାଇ ଦେବାପୀ ଓ ସୂର୍ଯ୍ୟବଂଶୀ ରାଜା ମରୁ ନାମକ ଯୋଗ ସାଧକ ଦୁହେଁ ଏବେ ସେଇ ଗ୍ରାମରେ ଅପ୍ରକଟ ଅବସ୍ଥାରେ ଯୋଗ ମଗ୍ନ ଅଛନ୍ତି । କଳିଯୁଗ ଶେଷରେ ଉଭୟେ ଯୋଗ ସମାଧିରୁ ଉଠିବେ । ସେ ଦୁହେଁ ଭଗବାନଙ୍କ ପ୍ରଦର୍ଶିତ ବର୍ଣ୍ଣ-ଆଶ୍ରମ ଧର୍ମର ପୁନଃ ପ୍ରଚାର କରିବେ । କୃତ, ତ୍ରେତା, ଦ୍ୱାପର ଓ କଳି ଏହି ଚାରି ଯୁଗର ସମୟର ଚକ୍ର ଗଡ଼ି ନନ୍‌ଷ୍ଟପ୍ ଚାଲିବ ।

ପ୍ରଶ୍ନ-୧୦: ସେ ଦୁଇଜଣ ରାଜା ଦ୍ୱାପର ଯୁଗ ଓ ତ୍ରେତାଯୁଗରୁ ରହିଥିବାବେଳେ ଅନ୍ୟାନ୍ୟ ଅସଂଖ୍ୟ ରାଜା ମହାରାଜାମାନଙ୍କର ସେତେବେଳେ କାହିଁକି ଓ କି ଦୁରବସ୍ଥା ହେଲା ?

**ରାଜନ୍ ଏତେ ମୟା ପ୍ରୋକ୍ତା ନରଦେବଃ ତଥା-ଅପରେ ।**
**ଭୂମୌ ମମତ୍ୱଂ କୃତ୍ୱା-ଅନ୍ତେ ହିତ୍ୱା-ଇମାଂ ନିଧନଂ ଗତାଃ ॥୪୦॥**

ଉ. ଶୁକଦେବଜୀ କହିଲେ, ''ହେ ରାଜନ, ଦୁଇଜଣ ଭଗବତ ଭକ୍ତଙ୍କ ନିତ୍ୟ ବିଦ୍ୟମାନତାର ଦୃଷ୍ଟାନ୍ତ ଦେଲି । ପୂର୍ବରୁ ଅନ୍ୟାନ୍ୟ ଅସଂଖ୍ୟ ଅଭକ୍ତ ରାଜା ମହାରାଜମାନଙ୍କ ଦୁରବସ୍ଥା କଥା କହିଲି । ସେମାନଙ୍କ ଦୁରବସ୍ଥାର କାରଣ ସେମାନେ ଭୂମିକୁ ଭଗବାନଙ୍କର ସ୍ୱରୂପ ନ ମାନି ପୂଜା ଭବନା ନକରି ଭୋଗ କରିବା ମତଲବ ହେତୁ ମୋ ଜମି, ମୋ ଭୂମି, ମୋ ରାଜ୍ୟ, ମୋ ସିଂହାସନ କହି କହି ମଲା ଗଲାବେଳେ ସବୁ ଧନ ସଂପତ୍ତି ଛାଡ଼ି ଯାଇଛନ୍ତି । ମୃତ୍ୟୁର ଏକ ନାମ ନିଧନ ବୋଲି କୁହାଯାଏ । ମଲାବେଳେ ଧନହୀନ ହେବାକୁ ଦେବତା ବା ମନୁଷ୍ୟ ବାଧ ବୋଲି । ସୁତରାଂ ଏହା ପ୍ରମାଣିତ କରୁଛି ଯେ ଜଣେ କୃଷ୍ଣ ଭକ୍ତ ସଦା ସୁରକ୍ଷିତ ଓ କୃଷ୍ଣ ଅଭକ୍ତ ସଦା ଅତୃପ୍ତ, ଅଶାନ୍ତ, ପୀଡ଼ିତ ଓ ମୃତ ହୁଏ ।''

ପ୍ରଶ୍ନ-୧୧: ମୃତ୍ୟୁ ପରେ ସେଇ ରାଜାମାନେ (ଭୂତପତୟୋ) ସଂପତ୍ତି ଇତ୍ୟାଦି ସାଙ୍ଗରେ ନେବା ତ ଦୂରର କଥା ନିଜ ଦେହଟିମାନ ନେବାରେ ଅକ୍ଷମ ହୋଇଛନ୍ତି । ସେମାନଙ୍କର ଗେଲବସର ଦେହ ସବୁଆଜି କୃମି, କୀଟ, ବିଲୁଆ, ଶାଗୁଣାଙ୍କ ଖାଦ୍ୟ ହୋଇ ଶେଷରେ ମାଟିରେ ମିଶିଯାଇଛି । ଭଗବାନଙ୍କ କୃପାକୁ ସ୍ୱୀକାର ନକରି ନିଜର ଶକ୍ତି ପରାକ୍ରମର ଅହଂକାରରେ (ଓଜସା) ବସୁଧାକୁ ଭୋଗ୍ୟ ଭାବି ସେମାନେ ସଂସାରକୁ କି ସନ୍ଦେଶ ଦେଇଯାଇଛନ୍ତି ?

**ଯେ ଯେ ଭୂପତୟୋ ରାଜନ୍ ଭୁଞ୍ଜତେ ଭୁବଂ-ଓଜସା ।**
**କାଳେନ ତେ କୃତାଃ ସର୍ବେ କଥାମାତ୍ରାଃ କଥାସୁ ଚ ।।୪୪।।**

ଉ. ଶୁକଦେବଜୀ ପ୍ରଶ୍ନ କରୁଛନ୍ତି ସତ୍‌ସଙ୍ଗ ସଭାରେ ଯେ କାହାନ୍ତି ଆଦି ସେଇ ଦୁର୍ଦ୍ଧର୍ଷ ହରିବିମୁଖ ବୈଷ୍ଣବ ସେବା ପରାଙ୍‌ମୁଖ ରାଜା ପ୍ରଜାଗଣ ? କାଳ ସେମାନଙ୍କୁ ସଂପୂର୍ଣ୍ଣ ଆତ୍ମସାତ କରିଛି । ଇତିହାସରେ ସେମନଙ୍କ ନାମ ଲେଖିବାକୁ କାଳ ଲଜ୍ଜିତ । ଅନ୍ୟ ପକ୍ଷରେ ରାଜା ହରିଶ୍ଚନ୍ଦ୍ର, ଶିବି, ଧ୍ରୁବ, ପ୍ରହ୍ଲାଦ, ପୃଥୁ, ଶ୍ରୀରାମ ଓ ତୁମ ପିତାମହ ଯୁଧିଷ୍ଠିର ଇତ୍ୟାଦିଙ୍କର ନାମ ସ୍ୱର୍ଣ୍ଣ ଅକ୍ଷରରେ ଲେଖି ପୃଥିବୀର ଇତିହାସ ପୁରାଣ ସାହିତ୍ୟ ସମୃଦ୍ଧ ହୋଇଛନ୍ତି । ଏହାର ବିସ୍ତୃତ ବର୍ଣ୍ଣନା ହେବ ପରବର୍ତ୍ତୀ ଅଧ୍ୟାୟରେ ।

# ଅଥ ତୃତୀୟ ଅଧ୍ୟାୟଃ

## (ହରି, ହରିନାମ ଶରଣାଗତିରେ ଜୀବର ଲାଭ)

ପ୍ରଶ୍ନ-୧୨ : ବୈଷ୍ଣବ ରାଜାମାନେ ବିଷ୍ଣୁ ଅଂଶୀ ବୋଲି ପୁରାଣମାନଙ୍କର ଉଦ୍‌ଘୋଷ । ତେବେ ହରି ବିମୁଖ ନିଜର ସନ୍ତାନ ସ୍ୱରୂପ ରାଜାମାନଙ୍କର ପତନ ଦେଖି ବସୁମାତା ମଧ ସ୍ୱୟଂ ଦୁଃଖିତ ହୁଅନ୍ତି କି ?

ଶ୍ରୀ ଶୁକ ଉବାଚ

**ଦୃଷ୍ଟ୍ୱା ଆତ୍ମନି ଜୟେ ବ୍ୟଗ୍ରାନ୍ ନୃପାନ୍ ହସତି ଭୂଃ ଇୟମ୍ ।**
**ଅହୋ ମା ବିଜିଗୀଷ୍ୟନ୍ତି ମୃତ୍ୟୋଃ କ୍ରୀଡ଼ନକା ନୃପାଃ ।।୧।।**

ଉ. ବକ୍ତା ମହାଶୟ ରାଜାଙ୍କୁ ଶୁଣାଇ କହୁଛନ୍ତି ଯେ ତାଙ୍କର ପ୍ରିୟ ସନ୍ତାନର ବିଳାସୀ ଓ ବିଷୟ ଭୋଗୀ ରାଜାଙ୍କ ନରକ ଗମନରେ ଭୂଦେବୀ ଦୁଃଖ ପ୍ରକାଶ ନକରି ବରଂ ହସି ଉଠିଛନ୍ତି । ତେଣୁ ସିନା ରାଜା କଂସର ଉଦ୍ଦଣ୍ଡତାରେ ଅତିଷ୍ଠ ହୋଇ ଦେବଗଣଙ୍କୁ ସାଙ୍ଗରେ ଧରି କ୍ଷୀର ସାଗର କୂଳରେ ଭଗବାନଙ୍କ ନିକଟରେ କଂସ ବିରୁଦ୍ଧରେ ଫେରାଦ କରିଥିଲେ । ନାରାୟଣ ଦେଖିଲେ କଂସ ଅତ୍ୟାଚାରରେ ସୃଷ୍ଟି

ଅବସ୍ଥା ଅସମ୍ଭାଳ । ବିଷ୍ଣୁ ନିନ୍ଦା ସହ୍ୟ ହୋଇପାରେ କିନ୍ତୁ ବୈଷ୍ଣବ ପୀଡ଼ା ତାଙ୍କ ପକ୍ଷେ ନିତାନ୍ତ ଅସହ୍ୟ । ସୁତରାଂ କୃଷ୍ଣ ଅବତାର ଯୋଜନା ପ୍ରସ୍ତୁତ ହେଲା । ଭୂଦେବୀ ଭାବନ୍ତି, ଆହା ! ! ଏହି ଈଶ୍ୱର ବିମୁଖ ରାଜାମାନେ ମୃତ୍ୟୁ ହାତର ଖେଳନା ହୋଇ ମୋତେ ଜୟ କରିବାକୁ, ଭୋଗ କରିବାକୁ ବ୍ୟଗ୍ରହେବା କେଡ଼େ ମୂର୍ଖାମୀର ପରିଚୟ ସତେ ! ! !

ପ୍ରଶ୍ନ-୧୩: କଳିଯୁଗରେ ରାଜା ପ୍ରଜା ନିଜ ନିଜ ଦେହକୁ ପାଣି ଫୋଟକା ବୋଲି ଆଦୌ ଭାବିପାରନ୍ତି ନାହିଁ । ଭାବନ୍ତି ଏ ଦେହ ଗୃହ ସବୁ ସ୍ଥାୟୀ ଓ ସତ୍ୟ । ପାଠ ପଢ଼ି ବିଦ୍ୱାନ ହେଲେ ମଧ୍ୟ ସେମାନଙ୍କର ମନେ ରହେନା ଯେ ସେମାନେ ଦିନେ ମରିବେ । ମାଟିରେ ମିଶିବେ । ଯେତେ ବଡ଼ ରାଜ୍ୟର ରାଜା ହେଲେ ମଧ୍ୟ ଭୋଗ ସଂଗ୍ରହ ଲୋଭରେ ସେମାନେ ବୋଇତ ନେଇ ସମୁଦ୍ର ପାର ହୋଇ ଅନ୍ୟ ରାଜ୍ୟକୁ ଆକ୍ରମଣ କରିଥାନ୍ତି । ଜୟ ଲାଭ କଲେ ସମ୍ରାଟ ବୋଲାନ୍ତି । ଭାବନ୍ତି ତାଙ୍କ ପୁଅ ନାତି ପାଇଁ ଅଜସ୍ର ସଂପତ୍ତି ଛାଡ଼ି ଯିବେ । ସେମାନେ ନିଜ ମନ ମଧ୍ୟସ୍ଥିତ କାମ କ୍ରୋଧ ଆଦି ରିପୁ ଜୟ କରି ଜନ୍ମ-ମଣର ଚକ୍ରରୁ ମୁକ୍ତ ହେବା ଲକ୍ଷ୍ୟ ତ୍ୟାଗ କରି ଏଭଳି ଅଜ୍ଞାନ (ଅବୁଦ୍ଧୟଃ) ହେବାର କାରଣ କଅଣ ?

**ଯାଂ ବିସୃଜ୍ୟ-ଏବ ମନବଃ ତତ୍‌ସୁତାଃ ଚ କୁରୁଦ୍‌ବହ ।**
**ଗତା ଯଥା-ଆଗତଂ ଯୁଦ୍ଧେ ତାଂ ମାଂ ଜେଷ୍ୟନ୍ତି-ଅବୁଦ୍ଧୟଃ ॥୬॥**

ଉ. ଶୁକଦେବଜୀ ଚେତାବନୀ ଶୁଣାଇ କହିଲେ, ''ହେ କୁରୁକୁଳ ଶ୍ରେଷ୍ଠ ପରୀକ୍ଷିତ (କୁରୁଦ୍‌ବହ), ମନର ଭୋଗ ବିଳାସ ସୁଖ ଇଛା ସେମାନଙ୍କୁ ମନେ ପକାଇ ଦିଏ ନା ଯେ ତାଙ୍କ ପୂର୍ବରୁ ଯେତେ ମଣିଷ ଓ ତାଙ୍କ ପିତା, ପିତାମହ ଆଦି ଆସିଛନ୍ତି ସେମାନେ ବହୁ ସମ୍ପତ୍ତି ରାଜ୍ୟର ମାଲିକ ହୋଇ ମଧ୍ୟ ମଲାବେଳକୁ ନିତାନ୍ତ ଅସହାୟ ଅବସ୍ଥାରେ ନିଜର ଅତିପ୍ରିୟ ଶରୀର, ସଂସାର ଓ ସିଂହାସନ ଛାଡ଼ି ଯାଇଛନ୍ତି ।''

ପ୍ରଶ୍ନ-୧୪: ଭୌତିକ ସଂପତ୍ତି ଲୋଭରେ ଅନ୍ୟ ରାଜା କଥା କ'ଣ ନିଜର ପିତା, ପୁତ୍ର, ଭ୍ରାତା ସମ୍ବନ୍ଧୀଙ୍କ ସହିତ ଲଢ଼େଇ, ଝଗଡ଼ା କରି ଅନ୍ୟକୁ ଜୀବନରେ ମାରିପକାନ୍ତି କିମ୍ବା ନିଜେ ମରିଥାଆନ୍ତି । ବସୁଧାକୁ ଜିଣିବାକୁ ଇଛା କରିଥିବା ୩୦ଜଣ ରାଜା ମହାରାଜାଙ୍କ ନାମ ଶୁକଦେବଜୀ ଏଠାରେ ଶୁଣାଇଛନ୍ତି । ଯଥା ପୃଥୁ, ପୁରୂରବା, ଗାଧି, ନହୂଷ, ଭରତ, ମାନ୍ଧାତା, ସଗର, ଶର୍ଯ୍ୟାତି, ଶାନ୍ତନୁ, ରାବଣ, କଂସ,

ହରିଣ୍ୟକଶିପୁ, ନମୁଚି, ଶମ୍ବର, ଭୌମ ଓ ତାରକ ଅସୁର ଆଦି । ଏମାନଙ୍କର ସବୁ ଦୁଇ ପ୍ରକାର ଅବସ୍ଥା ହୋଇଛି । ଯେଉଁମାନେ ହରିଭଜନ ବିରୋଧୀ ରାଜା ସେମାନେ ସମସ୍ତେ ଦାରୁଣ ଦୁଃଖ ଦୁର୍ଦ୍ଦଶା ଗ୍ରସ୍ତ ହୋଇ ମୃତ୍ୟୁକୁ ଆଲିଙ୍ଗନ କରିଛନ୍ତି ନିଜ ଇଛା ବିରୁଦ୍ଧରେ । ଅନ୍ୟ ପକ୍ଷରେ ଯେଉଁମାନେ ନିଜେ ହରିଭଜନ କରି ପ୍ରଜାମାନଙ୍କୁ ମଧ୍ୟ ହରିଭଜନ କରାଇଛନ୍ତି ସେମାନେ ହସି ହସି ଏ ସଂସାରରେ ଅସଂଖ୍ୟ କୀର୍ତ୍ତି, ଯଶ ସାଇତି ଯାଇଛନ୍ତି ତାଙ୍କ ପର ପୀଢ଼ି ମାନଙ୍କ ଗୌରବର ବିଜୟ ବୈଜୟନ୍ତୀ ରୂପେ । ରାଜା ପରୀକ୍ଷିତ ଜାଣି ସାରିଲେଣି ତାଙ୍କର ଜୀବନର ଅନ୍ତିମ ସମୟ ଉପସ୍ଥିତ । ସୁତରାଂ ପରୀକ୍ଷିତ ଜୀବନର କେଉଁ ଅନ୍ତିମ ପ୍ରଶ୍ନଟି ପଚାରି ମହାସତ୍‌ସଙ୍ଗର ଉପସଂହାରର ସୂଚନା ଦେଲେ ?

ରାଜା ଉବାଚ

**କେନ-ଉପାୟେନ ଭଗବନ୍ କଳେଃ ଦୋଷାନ୍ କଳୌ ଜନାଃ ।**
**ବିଧମିଷ୍ୟନ୍ତି-ଉପଚିତାନ୍ ତତ୍‌ମେ ବ୍ରୂହି ଯଥା ମୁନେ ॥୧୬॥**

ଉ. କଳିଯୁଗ ଅନେକ ଦୋଷ ଦୁର୍ବଳତାର ଯୁଗ ବୋଲି ସକଳ ଗ୍ରନ୍ଥ ସକଳ ସନ୍ଥ କହନ୍ତି । ସ୍ୱଭାବତଃ ସମସ୍ତେ ଦୁଃଖ ଦୁର୍ଦ୍ଦଶାଗ୍ରସ୍ତ । ତଥାପି ଭଗବତ ବିମୁଖ ଓ ବିଷୟ ଭୋଗ ଉନ୍ମୁଖ ରାଜାମାନଙ୍କର ଚରମ ଦୁର୍ଗତିର ଅବସ୍ଥା ବର୍ଣ୍ଣନା କରାଗଲା । ଭବିଷ୍ୟତ ଓ ପୀଢ଼ିର ରାଜା ପ୍ରଜା ସମସ୍ତଙ୍କ ହୃଦୟରେ ସଂସାର ବୈରାଗ୍ୟ ଉତ୍ପନ୍ନ କରିବା (ବିଧମିଷ୍ୟନ୍ତି) ଲକ୍ଷ୍ୟରେ । ତେବେ ସିନା ଜ୍ଞାନ ଭକ୍ତିଙ୍କର ମନ୍ଦିରଙ୍କର ନିର୍ମାଣ ସମ୍ଭବ ହେବ ସଦ୍‌ଗୁରୁଙ୍କ କୃପାରେ ଉପଯୁକ୍ତ ଶିଷ୍ୟ ହୃଦୟ କନ୍ଦରରେ । ସୁତରାଂ ରାଜାଙ୍କର ଶେଷ ପ୍ରଶ୍ନଟି ସଂସାର ବୈରାଗ୍ୟ ସଂପର୍କରେ ଉପସ୍ଥାପିତ ହୋଇଛି ।

ପ୍ରଶ୍ନ-୧୫: ଠିକଣା ସମୟରେ ଜୀବନର ଶେଷ ପ୍ରଶ୍ନଟି ପଚାରିଛନ୍ତି ମୁଖ୍ୟ ଭାଗବତ ଶ୍ରୋତା ରାଜର୍ଷି ଚକ୍ରବର୍ତ୍ତୀ ସମ୍ରାଟ ହୋଇ ମଧ୍ୟ (କଳି ସେହି ସକଳ ଦୋଷ, ଦୁର୍ବଳତା, ପାପର ପାହାଡ଼ ବା ଦୁଃଖର ସମୁଦ୍ର ହେଉପଛେ) ସେହି ପାପ ପାହାଡ଼ର ଧ୍ୱଂସ ବା ପାପ ସମୁଦ୍ରର ସନ୍ତରଣର ସରଳ ଉପାୟ ଟିକକ । ବିଧମିଷ୍ୟନ୍ତି ଶବ୍ଦର ଅର୍ଥ ଚେର ମୂଳ ସହିତ ପାପ ବୃକ୍ଷକୁ ବିନଷ୍ଟ କରିପକାଇବା । କଳେଃ ଦୋଷାନ୍ ଉପଚିତାନ୍‌ର ଅର୍ଥ ହେଲା କଳିଯୁଗର ସହଜାତ ପାପପ୍ରବଣତା । ଏଥି ସହିତ ଗଭୀର ଭାବେ ସଂଶ୍ଲିଷ୍ଟ ରାଜାଙ୍କର ଅନ୍ୟ ଶଙ୍କାଟି ହେଲା ଚାରି ଯୁଗର ଧର୍ମ, ଚାରି ଯୁଗର ଅବଧି ସହିତ ଚାରି ପ୍ରକାର ପ୍ରଳୟର ସ୍ୱରୂପ କିସ ବୋଲି ବକ୍ତା ମହାଶୟ ଶୁଣାଇଦେଲେ ?

**ଶ୍ରୀଶୁକ ଉବାଚ**

**କୃତେ ପ୍ରବର୍ତ୍ତତେ ଧର୍ମଃ ଚତୁଷ୍ପାତ୍ ତତ୍ ଜନୈଃ ଧୃତଃ ।**
**ସତ୍ୟଂ ଦୟା ତପୋ ଦାନଂ ଇତି ପାଦା ବିଭୋଃ ନୃପ ॥୧୮॥**

ଉ. ଚାରି ଯୁଗର ପ୍ରମୁଖ ଲକ୍ଷଣ ହେଲା ଧର୍ମ ରୂପୀ ବୃଷଭଙ୍କର ଚାରି ପାଦ ସତ୍ୟ, ଦୟା, ତପୋ ଓ ଦାନ । ଯୁଗ ଅନୁସାରେ ଧର୍ମଙ୍କର ଏକ ଏକ ପାଦ କ୍ଷୟ ହୁଏ ।

ପ୍ରଶ୍ନ-୧୬: ଏଠାରେ ଦାନ ଅର୍ଥ ଭୂଦାନ, ଗୋଦାନ, ଅନ୍ନଦାନ ବସ୍ତ୍ର ଦାନ ଆଦି ଭୌତିକ ପଦାର୍ଥ ଦାନ ନୁହେଁ । ମନୁଷ୍ୟର ଆଧ୍ୟାତ୍ମିକ ଚେତନା ଜାଗ୍ରତ କରାଇବା ଜ୍ଞାନ ବା ଭକ୍ତି ହିଁ ଏହି ଦାନର ଗୁପ୍ତ ଅର୍ଥ । ପ୍ରଥମ ଯୁଗ ସତ୍ୟ ଯୁଗରେ ଧର୍ମଙ୍କର ଉପରୋକ୍ତ ଚାରିପାଦ ଥାଏ । ଦାନ ପାଦଟି ବିଶେଷ ସକ୍ରିୟ ଥିବାରୁ ସତ୍ୟ ଯୁଗରେ ସାଧକମାନଙ୍କ ଠାରେ କେଉଁ କେଉଁ ଶୁଭ ଲକ୍ଷଣ ଦେଖାଯାଏ ?

**ସନ୍ତୁଷ୍ଟାଃ କରୁଣା ମୈତ୍ରାଃ ଶାନ୍ତା ଦାନ୍ତା ତିତିକ୍ଷବଃ ।**
**ଆତ୍ମାରାମାଃ ସମଦୃଶଃ ପ୍ରାୟଶଃ ଶ୍ରମଣା ଜନାଃ ॥୧୯॥**

ଉ. ସମସ୍ତଙ୍କ ଅନ୍ତକରଣରେ ସନ୍ତୁଷ୍ଟି, ଦୟା, ମୈତ୍ରୀ ଭାବ, ଶାନ୍ତ ସ୍ୱଭାବ, ଇନ୍ଦ୍ରିୟ ସଂଯମ, ସହିଷ୍ଣୁତା (ତିତିକ୍ଷବଃ), ସଦାପ୍ରସନ୍ନତା (ଆତ୍ମାରାମାଃ), ସମଦର୍ଶୀ ଇତ୍ୟାଦି ଦିବ୍ୟଗୁଣ ଥିବା ହେତୁ ସେମାନେ ଆଧ୍ୟାତ୍ମିକ ଚେତନଶୀଳ ଥାଇ ସାଧନା କରି କରି କୃତ କୃତ୍ୟ ହୁଅନ୍ତି ବୋଲି ସେ ଯୁଗର ନାମ କୃତ ଯୁଗ ଅଟେ । ଏ ଯୁଗରେ ସନ୍ନ୍ୟାସ ଆଶ୍ରମ ଓ ବ୍ରାହ୍ମଣ ବର୍ଣ୍ଣର ପ୍ରଧାନ୍ୟ ରହେ ।

ପ୍ରଶ୍ନ-୧୭: ତ୍ରେତ୍ରା ଯୁଗରେ ଧର୍ମଙ୍କର ଦାନ ପାଦଟି ଲୁଚିଯାଏ । ସତ୍ୟ, ତପ, ଦୟା ଗୁଣରେ କାଳ ଚକ୍ର ଗଡ଼ିଚାଲେ । ଏ ଯୁଗରେ (ତଦା) ଧର୍ମର କେଉଁ କେଉଁ ବିଶେଷ ଲକ୍ଷଣମାନେ ଦୃଶ୍ୟ ହୁଅନ୍ତି ?

**ତଦା କ୍ରିୟା ତପୋ ନିଷ୍ଠା ନ-ଅତିହିଂସ୍ରା ନ ଲମ୍ପଟାଃ ।**
**ତ୍ରୈବର୍ଗିକାଃ ତ୍ରୟୀ ବୃଦ୍ଧା ବର୍ଣ୍ଣା ବ୍ରହ୍ମ-ଉତ୍ତରା ନୃପ ॥୨୧॥**

ଉ. ସମସ୍ତେ ତପସ୍ୟା ଛାଡ଼ି ଯଜ୍ଞ କରି ବିଷୟ ଭୋଗ ଦ୍ରବ୍ୟ ସଂଗ୍ରହରେ ମାତନ୍ତି । କ୍ରୋଧୀ, କାମୀ ନହୋଇ ତିନି ବେଦ ପଢ଼ି କର୍ମକାଣ୍ଡୀ (ତ୍ରୈବର୍ଗିକାଃ ତ୍ରୟୀ) ହୋଇ ସମୃଦ୍ଧ ବାନ (ବୃଦ୍ଧା) ହୁଅନ୍ତି । ବାନପ୍ରସ୍ଥ ଆଶ୍ରମ ଓ କ୍ଷତ୍ରିୟ ବର୍ଣ୍ଣୀ ଲୋକମାନଙ୍କର ପ୍ରାଧାନ୍ୟ ରହେ ଏ ଯୁଗରେ ।

ପ୍ରଶ୍ନ-୧୮: ଦ୍ୱାପର ଯୁଗରେ ତୃତୀୟ ପାଦ ଦୟା ଲୁପ୍ତ ହୁଅନ୍ତି ଧର୍ମ ବୃଷଭଙ୍କର । ଅଧର୍ମ ଆକ୍ରମଣରେ ଧର୍ମଙ୍କର ଶକ୍ତି ଅଧାଅଧି ହ୍ରାସ ଘଟେ (ହ୍ରସ୍ୱତି) । କି କି ଅଶୁଭ ଲକ୍ଷଣ ଦେଖି ଦ୍ୱାପର ଯୁଗକୁ ଚିହ୍ନାଯାଏ ?

**ତପଃ ସତ୍ୟ ଦୟା ଦାନେ ଷ୍ୱ-ଅର୍ଦ୍ଧଂ ହ୍ରସ୍ୱତି ଦ୍ୱାପରେ ।**
**ହିଂସା-ଅତୁଷ୍ଟି-ଅନୃତ ଦ୍ୱେଷୈଃ ଧର୍ମସ୍ୟ-ଅଧର୍ମ ଲକ୍ଷଣୈଃ ॥୨୨॥**

ଉ. ଭୟଙ୍କର ଜୀବହିଂସା, କାମ ଭୋଗରେ ଅସନ୍ତୋଷ, ମିଥ୍ୟା ଭାଷଣ ଓ ଅନ୍ୟ ପ୍ରତି ଶତ୍ରୁତା ଭାବନା ଇତ୍ୟାଦିଙ୍କୁ ଅଧର୍ମ ଲକ୍ଷଣ କୁହାଯାଏ ଯାହା ଜୀବର ଧର୍ମଭାବନାକୁ ଦୁର୍ବଳ କରିଦିଏ । ଲୋକେ ବେଦ ଅଧ୍ୟୟନ କରନ୍ତି ଯଶ ଆକାଙ୍କ୍ଷାରେ, ଧନୀ ଓ କୁଟୁମ୍ବୀ ହେବା ଇଛାରେ । ସୁତରାଂ ଦ୍ୱାପର ଯୁଗରେ ଗୃହସ୍ଥ ଆଶ୍ରମ ଓ ବୈଶ୍ୟ ବର୍ଣ୍ଣର ପ୍ରାଧାନ୍ୟ ରହେ ।

ପ୍ରଶ୍ନ-୧୯: ଶେଷରେ କଳିଯୁଗ ପହଞ୍ଚିଥାଏ ଅଧର୍ମର ରୂପ ଧରି । ସତ୍ୟକୁ ଛାଡ଼ି ଅନ୍ୟ ତିନି ଲକ୍ଷଣ ଅଦୃଶ୍ୟ ହୋଇଥାଆନ୍ତି । କେଉଁ କେଉଁ ବିଶେଷ ଲକ୍ଷଣ ଦେଖି ଲୋକେ ଏହା କଳିଯୁଗର ପ୍ରାଦୁର୍ଭାବ ବୋଲି କହନ୍ତି ?

**କଳୌ ତୁ ଧର୍ମପାଦାନାଂ ତୁରୀୟ-ଅଂଶେଽଧର୍ମ ହେତୁଭିଃ ।**
**ଏଧମାନୈଃ କ୍ଷୀୟମାଣୋ ହି-ଅନ୍ତେ ସୋଽଅପି ବିନଙ୍କ୍ଷ୍ୟତି ॥୨୪॥**

ଉ. ଏ ଯୁଗ ପ୍ରାରମ୍ଭରେ ଧର୍ମର ପ୍ରଭାବ କେବଳ ଏକ ଚତୁର୍ଥ ଅଂଶ ଥାଏ । ଯୁଗଶେଷ ବେଳକୁ (ହି-ଅନ୍ତେ) ଅଧର୍ମ ଏତେ ବଢ଼ିଯାଏ (ଏଧମାନେ ଅଧର୍ମ) ଧର୍ମ ସଂପୂର୍ଣ୍ଣ ମୂଳପୋଛ ହୁଏ (ବିନଙ୍କ୍ଷ୍ୟତି) ।

କଳିଯୁଗରେ ହତଭାଗ୍ୟ ମଣିଷ ଲୋଭ, ଦୁରାଚାର, ନିର୍ଦ୍ଦୟତା, ଅଯଥା ଶତ୍ରୁତା, କଳି ଝଗଡ଼ା ଏବଂ ଦୁର୍ବାର ଭୋଗ ଲାଳସାର ଶିକାର ହୁଏ । ଫଳ ସ୍ୱରୂପ କଳିଯୁଗରେ ଶୂଦ୍ର ବର୍ଣ୍ଣର ପ୍ରାଧାନ୍ୟ ଦେଖାଯାଏ । କେବଳ ଗୃହସ୍ଥାଶ୍ରମ ହିଁ ରହେ । ଅନ୍ୟ ଆଶ୍ରମ ମାନଙ୍କର କେବଳ ଚିହ୍ନମାତ୍ର ରହନ୍ତି । ସାଧକ କେହି ନ ଥାନ୍ତି ।

ପ୍ରଶ୍ନ-୨୦: ଏକ ଯୁଗରୁ ଅନ୍ୟ ଯୁଗାନ୍ତର ରୂପୀ ପରିବର୍ତ୍ତନ ହୁଏ ଜୀବ ଜଗତର ଅନ୍ତଃକରଣରେ ସତ୍ତ୍ୱ, ରଜ, ତମୋ ଗୁଣର ନୂନ ଆଧିକ୍ୟରୁ । ସତ୍ତ୍ୱଗୁଣର ପ୍ରାବଲ୍ୟରେ ସତ୍ୟଯୁଗରେ ସାଧକ ମନରେ କି କି ଲକ୍ଷଣ ସବୁ ଦେଖାଯାଏ ?

**ପ୍ରଭବନ୍ତି ଯଦା ସତ୍ତ୍ୱେ ମନୋ ବୁଦ୍ଧି-ଇନ୍ଦ୍ରିୟାଣି ଚ ।**
**ତଦା କୃତଯୁଗଂ ବିଦ୍ୟାତ୍ ଜ୍ଞାନେ ତପସି ଯତ୍ ରୁଚିଃ ॥୨୭॥**

ଉ. ଏହି ଯୁଗରେ ଅତ୍ୟନ୍ତ ଶୁଭ ଲକ୍ଷଣର ଉଦୟ ହୁଏ ମନୁଷ୍ୟ ମନରେ । ଲୋକେ ବୈଦିକ ଜ୍ଞାନ ଓ ଭାଗବତ ପ୍ରାପ୍ତି ଉଦ୍ଦେଶ୍ୟରେ ତପସ୍ୟାରେ ମନ, ବୁଦ୍ଧି, ଚିତ୍ତ ଓ ଅହଂକାରକୁ କାମରେ ଲଗାନ୍ତି ।

ପ୍ରଶ୍ନ-୨୧: ରଜୋଗୁଣର ପ୍ରାବଲ୍ୟରେ ତ୍ରେତାଯୁଗର ଉପସ୍ଥିତି କିପରି ଜଣାପଡ଼େ ?

**ଯଦା କର୍ମେସୁ କାମ୍ୟେଷୁ ଭକ୍ତିଃ ଯଶସି ଦେହିନାମ୍ ।**
**ତଦା ତ୍ରେତା ରଜୋବୃତ୍ତିଃ ଇତି ଜାନୀହି ବୁଦ୍ଧିମନ୍ ॥୨୮॥**

ଉ. ଖୁବ୍ ଆଗ୍ରହ ଉତ୍ସାହରେ ରାଜସିକ କର୍ମ କରି ମନୁଷ୍ୟ ଦାନ, ଧର୍ମ ସହିତ ବୈଦିକ ଯଜ୍ଞ ଅନୁଷ୍ଠାନ କରେ । ଦେବୀ ଦେବତାଙ୍କୁ ସନ୍ତୁଷ୍ଟ କରି ଭୌତିକ ସୁଖ ସାଉଣ୍ଟିବାରେ ଲାଗି ପଡ଼େ । ଭଗବାନଙ୍କୁ ଖୋଜିବାକୁ ତାକୁ ସମୟ ମିଳେନା ।

ପ୍ରଶ୍ନ-୨୨: ରଜ ଓ ତମ ଉଭୟ ଗୁଣର ପ୍ରାବଲ୍ୟରେ ଦ୍ୱାପର ଯୁଗର ପ୍ରଭାବ କିପରି ଜାଣିପାରନ୍ତି ମହାପୁରୁଷ ଗଣ ?

**ଯଦା ଲୋଭଃ ତୁ-ଅସନ୍ତୋଷୋ ମାନୋ ଦମ୍ଭୋଽଥ ମତ୍ସରଃ ।**
**କର୍ମଣାଂ ଚ-ଅପି କାମ୍ୟାନାଂ ଦ୍ୱାପରଂ ତଦ୍ ରଜଃ ତମଃ ॥୨୯॥**

ଉ. ଅତ୍ୟଧିକ ଲୋଭ, ଅସନ୍ତୋଷ, ମିଥ୍ୟା ଅହଂକାର, ଦେଖାଇହେବାର ଆଡ଼ମ୍ବର ଓ ଈର୍ଷାଯୁକ୍ତ କାମ୍ୟ କର୍ମ କରିବା ଲକ୍ଷଣରୁ ଜଣାପଡ଼େ ଦ୍ୱାପର ଯୁଗ ଆସି ପହଞ୍ଚିଯାଇଛି ।

ପ୍ରଶ୍ନ-୨୩: ବିଶୁଦ୍ଧ ତମୋଗୁଣ ପ୍ରାବଲ୍ୟ ହେତୁ କଳି ଆସି ଯିବାରୁ କେଉଁ କେଉଁ ଯୁଗ ସଙ୍କେତ ସବୁ ଉପସ୍ଥିତ ହୁଅନ୍ତି ?

**ଯଦା ମାୟା-ଅନୃତଂ ତନ୍ଦ୍ରା ନିଦ୍ରା ହିଂସା ବିଷାଦନମ୍ ।**
**ଶୋକ ମୋହୌ ଭୟଂ ଦୈନ୍ୟଂ ସ କଳିଃ ତାମସଃ ସ୍ମୃତଃ ॥୩୦॥**

ଉ. କପଟ ଆଚରଣ (ମାୟା), ମିଥ୍ୟା ଭାଷଣ, ଆଳସ୍ୟ (ତନ୍ଦ୍ରା), ବହୁନିଦ୍ରା, ଜୀବ ହିଂସା, ସୁଖ ଭୋଗରେ ବାଧା ହେତୁ ଅଯଥା ବିଷାଦ, ଶୋକ, ଆସକ୍ତି (ମୋହ), ଭୋଗ ଲାଳସାରେ ଅତୃପ୍ତି , ମୃତ୍ୟୁ ଭୟ, ଦରିଦ୍ରତା, ଘୋର କଳି କାଳର ସଙ୍କେତ

ଦିଅନ୍ତି । ରାଜା ପୁଣି କହିଲେ ଯେ କଳିକାଳରେ ପୁରୁଷମାନେ ଉଦାର ଦୃଷ୍ଟି ହରାଇବେ । ହତଭାଗ୍ୟ ହୋଇ ଭୋଜନପ୍ରିୟ ଓ କାମୁକ ହେବେ । ନାରୀମାନେ ସ୍ୱୈରିଣୀ (ଲଗାମ ଛଡ଼ା) ଦେହ ଓ ମନରେ ଅସତୀ ହେବାକୁ ପସନ୍ଦ କରିବେ । ଦେଶର ଶାସନ କଳ ଚୋରି, ନାରୀ ଧର୍ଷଣ, ଡ଼କାୟତି ରୋକିବାରେ ଅସମର୍ଥ ହେବ । ନାସ୍ତିକ ପାଷାଣ୍ଡମାନେ ବେଦବେଦାନ୍ତର ହାସ୍ୟାସ୍ପଦ ବ୍ୟାଖ୍ୟା କରିବସିବେ । ରାଜାମାନେ ନାନା କର ଟିକସ ବସାଇ ପ୍ରଜାଙ୍କୁ ଶୋଷଣ କରିବେ । ଦ୍ୱିଜମାନେ ବେଦ, ଯଜ୍ଞ, ଆହୂତି ତ୍ୟାଗ କରି ଜନନେନ୍ଦ୍ରିୟ ଓ ଉଦରର ତୁଷ୍ଟି ପୁଷ୍ଟିରେ ଲାଗିବେ ।

ପ୍ରଶ୍ନ-୨୪: ଏଭଳି ଘୋର ପତନମୁଖୀ କଳି ଯୁଗରେ ଚାରି ବର୍ଣ୍ଣ ଚାରି ଆଶ୍ରମ ଧର୍ମ ପାଳନ ହେବ କିପରି ?

**ଅବ୍ରତା ବଟବୋଽଶୌଚା ଭିକ୍ଷବଃ ଚ କୁଟୁମ୍ବିନଃ ।**
**ତପସ୍ୱିନୋ ଗ୍ରାମବାସା ନ୍ୟାସିନୋଽତି-ଅର୍ଥଲୋଲୁପାଃ ॥୩୩॥**

ଉ. ସ୍ୱଧର୍ମ ପାଳନ ବ୍ୟବସ୍ଥାର ଚରମ ଦୁର୍ଗତି ହେବ । ଲୋକେ ବ୍ରହ୍ମଚାରୀ ବ୍ରତ ଧାରଣ ସିନା କରିବେ ଅପବିତ୍ର ହୋଇ ଗାୟତ୍ରୀ ଜପିବେ ନାହିଁ । ଗୃହସ୍ଥମାନେ (କୁଟୁମ୍ବିନଃ) ଭିକ୍ଷା ମାଗିବେ ସନ୍ନ୍ୟାସୀ ବେଶ ଧାରଣ କରି । ବାନପ୍ରସ୍ଥୀମାନେ ବଣ ଜଙ୍ଗଲରେ ନ ରହି ଗାଁ ଗଣ୍ଡାରେ ରହିବେ । ମଠ ମହନ୍ତମାନେ ଏବଂ ସନ୍ନ୍ୟାସବେଶ ଧାରୀମାନେ ଭୟଙ୍କର ଅର୍ଥ ଲୋଭର ଶିକାର ହୋଇ ଚରମ ନିର୍ଯ୍ୟାତନା ଭୋଗିବେ । ଅପଦସ୍ତ ହେବେ । ଜେଲ ଜୋରିମାନା ଦଣ୍ଡରେ ଦଣ୍ଡିତ ହେବେ ।

ନାରୀମାନେ କ୍ଷୁଦ୍ର କାୟ, ବହୁ ଆହାରି, ଅନେକ ସନ୍ତାନଙ୍କର ମାତା, ଲଜ୍ଜାଶୂନ୍ୟା, କଟୁ ଭାଷିଣୀ, କପଟୀ ଓ ଦୁଃସାହସୀ ହେବେ । ବ୍ୟାପାରୀମାନେ ମଦ, ଗଞ୍ଜାଇ, ଚରସ ଆଦି ବେପାର କରିବେ । ନାନା ଫନ୍ଦିଫିକର କରି ଅନ୍ୟକୁ ଠକିବେ । ବ୍ରାହ୍ମଣ, କ୍ଷତ୍ରିୟ ଜାତିର ଲୋକେ ମଧ୍ୟ ଜୋତା ଦୋକାନ ଖୋଲିବେ ଓ ନୀଚ କର୍ମ କରି ଧନ କମେଇବେ ।

ପ୍ରଶ୍ନ-୨୫: ସେଭଳି ଅବସ୍ଥାରେ ପାରିବାରିକ ଜୀବନ କିଭଳି ଦୁର୍ଦ୍ଦଶାଗ୍ରସ୍ତ ହେବ କଳିଯୁଗରେ ?

**ପତିଂ ତ୍ୟକ୍ଷ୍ୟନ୍ତି ନିର୍ଦ୍ରବ୍ୟଂ ଭୃତ୍ୟା-ଅପି-ଅଖିଳ-ଉତ୍ତମମ୍ ।**
**ଭୃତ୍ୟଂ ବିପନ୍ନଂ ପତୟଃ କୌଳଂ ଗାଃ ଚ-ଅପୟସ୍ୱିନୀଃ ॥୩୬॥**

ଉ.ଗୁଣବାନ ମାଲିକ ଗରିବ ହୋଇଗଲେ ସେବକମାନେ ଛାଡ଼ି ପଳାଇବେ । ମାଲିକ ମଧ୍ୟ ଅନେକ ପୀଢ଼ିର ସେବକର କୃତଜ୍ଞତା ଭୁଲି ବିନା କାରଣରେ ଘରୁ କାଢ଼ିଦେବେ । ଗାଈ ଦୁଧ ଦେଇ ନପାରିଲେ ଏବଂ ବଳଦ ହଳ କରିବାରେ ଅସମର୍ଥ ହେଲେ ମାଲିକ କଂସେଇକୁ ବିକିଦେବେ କିମ୍ବା ଘରୁ ତଡ଼ି ଦେବେ ।

କଳିଯୁଗରେ ନାରୀମାନଙ୍କ ଉଦ୍ଦଣ୍ଡ ଶାସନରେ ଘର ଚଳିବ । ପତି ପତ୍ନୀଙ୍କ କଥା ମାନି ପିତୃମାତୃ, ଭ୍ରାତା ଓ ବନ୍ଧୁ ସେବା ଛାଡ଼ିବେ । ଶଳା, ଶାଳୀ, ଶାଶୁ, ଶ୍ୱଶୁରଙ୍କୁ ପାଳିବେ, ପୋଷିବେ ତାଙ୍କ ବୋଲରେ ଚାଲିବେ ।

ଧର୍ମ ଅଧର୍ମ ବିଚାର ନକରି ଶୂଦ୍ରମାନେ ମଧ୍ୟ ଦାନ ନେବେ । ସନ୍ନ୍ୟାସୀ ବେଶ ଧରି ଲୋକେ ପେଟପୋଷିବେ । ଲୋକେ ଧର୍ମମାର୍ଗରେ ଚଳୁ ନଥିବାରୁ ସେମାନଙ୍କ ମନ ବୁଦ୍ଧି ସଦା ଅଶାନ୍ତ ରହିବ । ରାଜ୍ୟରେ ଘନ ଘନ ଅକାଳ ପଡ଼ିବ । କର ଟିକସ ଭାରରେ ପ୍ରଜାଗଣ ତ୍ରାହି ତ୍ରାହି ଡ଼ାକିବେ । ଅନାବୃଷ୍ଟି, ଅତିବୃଷ୍ଟି ଆଦିରେ ଘୋର ଶସ୍ୟହାନୀ ଘୋଟିବ । ବିନା ଅନ୍ନ, ବସ୍ତ୍ର, ପାନ, ଶୟନ, ପତ୍ନୀ ପତି ସମ୍ଭୋଗ, ସ୍ନାନ, ଅଳଙ୍କାର ଶୂନ୍ୟ ହୋଇ ଲୋକମାନେ କଙ୍କାଳ ସାର ହୋଇ ପିଶାଚ ଭଳି ଦିଶିବେ ।

ପ୍ରଶ୍ନ-୨୬: ଲୋକମାନେ ତୁଚ୍ଛ ବସ୍ତୁ, କାଣି କଉଡ଼ିକ ପାଇଁ ନିଜ ନିଜର ମିତ୍ର ବନ୍ଧୁ ସହ ଶତ୍ରୁତା କରିବେ । ସେମାନଙ୍କୁ ମାରିବେ ନଚେତ ମରିଯିବେ ପଛେ ହାତରୁ ଧନ ଛାଡ଼ିବେ ନାହିଁ । ପିତାମାତାଙ୍କୁ, ବୃଦ୍ଧ ବୃଦ୍ଧାଙ୍କୁ ଧରି ଯୌଥ ପରିବାରରେ କଳିଯୁଗରେ ଲୋକମାନେ ଚଳିବେ କେମିତି ?

**ନ ରକ୍ଷିଷ୍ୟନ୍ତି ମନୁଜାଃ          ସ୍ଥବିରୌ ପିତରୌ-ଅପି ।**
**ପୁତ୍ରାନ୍ ଭାର୍ଯ୍ୟାଂ ଚ କୁଳଜାଂ          କ୍ଷୁଦ୍ରାଃ ଶିଶ୍ନ-ଉଦରଂ ଭରାଃ ।।୪୨।।**

ଉ. ଲୋକେ ଏତେ ନୀଚ ସ୍ତରକୁ ଖସିଯିବେ (କ୍ଷୁଦ୍ରାଃ) ଯେ ବୃଦ୍ଧ, ବୃଦ୍ଧା (ସ୍ଥବିରୌ), ପିତା, ପୁତ୍ର, ଉତ୍ତମ କୁଳରେ ଜନ୍ମିତ ପତ୍ନୀର ସୁରକ୍ଷା କରିବେ ନାହିଁ (ନ ରକ୍ଷିଷ୍ୟନ୍ତି) । ସେମାନେ ସମସ୍ତେ କେବଳ ଜନନ ଇନ୍ଦ୍ରିୟ ସୁଖ ଓ ଜିହ୍ୱା ଲାଳସା ସୁଖ ଖୋଜିବେ ।

ଏଭଳି ନାସ୍ତିକ ଲୋକେ ଠାକୁର ପୂଜନ, ହରିଭଜନ ଓ ଠାକୁରଙ୍କୁ ପ୍ରସାଦ ଅର୍ପଣ କରିବା ଅଦରକାରୀ ମନେ କରିବେ । ମଲାବେଳେ ଯାହାଙ୍କ ନାମଟିଏ କହି କିମ୍ବା ଶୁଣି ସେମାନେ ଭବସାଗର, ପାପ ସଗର ପାର ହୋଇପାରନ୍ତେ ସେମାନେ ମଲାବେଳେ ହାୟ ପୁତ୍ର, ପତ୍ନୀ, ଧନ, ବୋଲି ସିନା ମୁଣ୍ଡ ପିଟିବେ ଅଥଚ ହାୟ ରାମ, ହାୟ କୃଷ୍ଣ ବୋଲି ତାଙ୍କ ତୁଣ୍ଡରେ ଫିଟିବ ନାହିଁ ।

ପ୍ରଶ୍ନ-୨୭: ଭଗବାନଙ୍କ ନାମ କୀର୍ତ୍ତନ, ଶ୍ରବଣ, ରୂପ ଧ୍ୟାନ, ବୈଷ୍ଣବ ସେବାରେ ଅଶେଷ ଜନ୍ମର ପାପ ନାଶ ହେଉଥିବା ଜାଣି ସୁଦ୍ଧା କଳିଯୁଗୀ ମଣିଷ କେଉଁ କାରଣରୁ ହରିଭଜନ ପରାଙ୍‌ମୁଖ ହେବେ ?

**ପୁଂସାଂ କଳିକୃତାନ୍ ଦୋଷାନ୍ ଦ୍ରବ୍ୟ ଦେଶ-ଆତ୍ମସମ୍ଭବାନ୍ ।**
**ସର୍ବାନ୍ ହରତି ଚିତ୍ତସ୍ଥୋ ଭଗବାନ୍ ପୁରୁଷୋତ୍ତମଃ ॥୪୫॥**

ଉ. ସେତେବେଳେ କଳିଯୁଗର ଦୋଷ ପ୍ରଭାବରେ ସକଳ ବସ୍ତୁ, ଦେଶ ବା ସ୍ଥାନ, ପରିସ୍ଥିତି, ମନୁଷ୍ୟର ମନ, ବୁଦ୍ଧି, ଚିତ୍ତ ଆଦି ଅଶୁଭ ଦୋଷଯୁକ୍ତ ହୋଇ ସାରିଥିବେ । ଭଲ ଉପଦେଶ ଦେବା ଲୋକଙ୍କୁ ସେମାନେ ଭେଲ ବୁଝି ତାଙ୍କୁ ଓଲଟି ମାରିଗୋଡ଼ାଇବେ । ସେଥିପାଇଁ କେବଳ ସେଇ ସେଇ ଲୋକଙ୍କୁ ସଂପୂର୍ଣ୍ଣ ଦାୟୀ କରାଯାଇ ପାରିବ ନାହିଁ । ଯୁଗର ପ୍ରଭାବ ତାଙ୍କୁ ସେଥିରେ ପ୍ରୋତ୍ସାହନ ଦେଉଥିବ ।

ପ୍ରଶ୍ନ-୨୮: ଜ୍ୱଳନ୍ତ ଅଗ୍ନି ମଧ୍ୟରେ ଅଶୁଦ୍ଧ ସୁନା ରଖିଲେ ସେ ଶୁଦ୍ଧ ହୁଏ । ତପସ୍ୟା, ବିଦ୍ୟା, ପ୍ରାଣାୟାମ, ତୀର୍ଥ, ବ୍ରତ, ଅଭିଷେକ, ଦାନ, ଜପ ଆଦି ଅନ୍ତଃକରଣକୁ ସେପରି ଶୁଦ୍ଧ କରିପାରିନଥାନ୍ତି ଯେପରି ହୃଦୟରେ ଭଗବାନ ନାରାୟଣ, ରାମ ଓ କୃଷ୍ଣଙ୍କ ରୂପ, ଲୀଳା ଧ୍ୟାନ ଦ୍ୱାରା ଶୁଦ୍ଧ କରିପାରନ୍ତି । ତେବେ ଶୁକଦେବ ପରମହଂସ ରାଜାଙ୍କୁ ଅନ୍ତିମ ଉପଦେଶରୂପେ କ'ଣ କରିବାକୁ କହିଲେ ?

**ତସ୍ମାତ୍ ସର୍ବ-ଆତ୍ମନା ରାଜନ୍ ହୃଦିସ୍ଥଂ କୁରୁ କେଶବମ୍ ।**
**ମ୍ରିୟମାଣୋ ହି-ଅବହିତଃ ତତୋ ଯାସି ପରାଂ ଗତିମ୍ ॥୪୯॥**

ଉ. କହିଲେ, ''ହେ ରାଜନ୍, ସୁତରାଂ (ତସ୍ମାତ୍) ମନ, ବୁଦ୍ଧି, ଚିତ୍ତ ଅହଂକାରକୁ ବର୍ତ୍ତମାନ ଏକାଗ୍ର କରି ହୃଦୟ କନ୍ଦରରେ ଠାକୁରଜୀଙ୍କୁ ଧ୍ୟାନ କର । ତାଙ୍କଠାରୁ ଯାହା ଚାହୁଁଛ ନିଶ୍ଚୟ ପାଇବ । କାରଣ ସେ ହିଁ କେବଳ ଆମ ଚର ଅଚର ଜଗତର ସର୍ବାଶ୍ରୟ, ସର୍ବନିୟନ୍ତା, ସର୍ବବ୍ୟାପୀ, ସର୍ବ ସମର୍ଥ, ସର୍ବଜନ ସୁଲଭ, ସର୍ବେଶ୍ୱର ଓ ସର୍ବଆତ୍ମା ।''

ପ୍ରଶ୍ନ-୨୯: କଳିଯୁଗର ଏତେ ସେତେ ଦୋଷ ଦର୍ଶନ କରାଇସାରି ଚାରି ଯୁଗ ମଧ୍ୟରେ କଳିଯୁଗ ସାର ବୋଲି କାହିଁକି ଶୁକଦେବ ସେ ପରିସ୍ଥିତିରେ ରାଜାଙ୍କୁ କହିଲେ ?

**କଳେଃ ଦୋଷନିଧେ ରାଜନ୍ ଅସ୍ତି ହି-ଏକୋ ମହାନ୍ ଗୁଣଃ ।**
**କୀର୍ତ୍ତନାତ୍ ଏବ କୃଷ୍ଣସ୍ୟ ମୁକ୍ତ ସଙ୍ଗଃ ପରଂ ବ୍ରଜେତ୍ ॥୫୧॥**

ଉ. କଳିଯୁଗ ଦୋଷମାନଙ୍କର ଖଣି ସତ ହେଲେ ଗୋଟିଏ ଅତ୍ୟନ୍ତ ଭଲ ଗୁଣ ତାଠାରେ ବିଦ୍ୟମାନ । କୃଷ୍ଣ ନାମ ଜପ ଓ କୃଷ୍ଣ ରୂପ ଧ୍ୟାନକୁ ଆଶ୍ରୟ କରି ମନୁଷ୍ୟ ଜୀବନ ନିର୍ବାହ କଲେ ସକଳ ସଂସାର ଆସକ୍ତି ଛିନ୍ନ କରି (ମୁକ୍ତ ସଙ୍ଗଃ) ଭକ୍ତ ବୈକୁଣ୍ଠ ପ୍ରାପ୍ତ ହୋଇପାରେ କେବଳ ଏହି କଳି ଯୁଗରେ । ଅନ୍ୟ ଯୁଗମାନଙ୍କରେ ଏକଥା ଅସମ୍ଭବ ବୋଲି ଏଭଳି କଳିଯୁଗକୁ ଶ୍ରୀ ଶୁକଦେବ ଗୋସ୍ୱାମୀ ପ୍ରଶଂସା କରିଥିଲେ ।

ପ୍ରଶ୍ନ-୩୦: ଯୁଗ ଅନୁସାରେ କେଉଁ କେଉଁ ସାଧନ କଲେ ମନୁଷ୍ୟ କୃତ-କୃତ୍ୟ, ଜ୍ଞାତ-ଜ୍ଞାତବ୍ୟ ଓ ପ୍ରାପ୍ତ-ପ୍ରାପ୍ତବ୍ୟ ସ୍ଥିତିରେ ପହଞ୍ଚିଥାଏ ?

**କୃତେ ଯତ୍ ଧ୍ୟାୟତୋ ବିଷ୍ଣୁଂ ତ୍ରେତାୟାଂ ଯଜତୋ ମଖୈଃ ।**
**ଦ୍ୱାପରେ ପରିଚର୍ଯ୍ୟାୟାଂ କଲୌ ତଦ୍ ହରିକୀର୍ତ୍ତନାତ୍ ॥୫୨॥**

ଉ. ସତ୍ୟଯୁଗରେ (କୃତେ) ନିରନ୍ତର ନାରାୟଣଙ୍କ ରୂପ ଧ୍ୟାନ କରି କରି, ତ୍ରେତା ଯୁଗରେ ହୋମ, ଯାଗ ଯଜ୍ଞ କରି ନାରାୟଣଙ୍କୁ ପ୍ରସନ୍ନ କର ଏବଂ ଦ୍ୱାପର ଯୁଗରେ ବିଷ୍ଣୁ ଉପାସନା କରି ଯାହା ପ୍ରାପ୍ତ କରାଯାଇପାରେ କଳିଯୁଗରେ ସେ ସବୁ ଝିନ୍‌ଝଟ୍ ଛାଡ଼ି କେବଳ କୃଷ୍ଣ ନାମ କୀର୍ତ୍ତନ କରି ସେସବୁକୁ ପ୍ରାପ୍ତ କରାଯାଇପାରେ । ଧନ୍ୟ କଳିଯୁଗ ! ଧନ୍ୟ ହରିନାମ, ରୂପ ଓ ଲୀଳା କୀର୍ତ୍ତନ !

# ଅଥ ଚତୁର୍ଥ ଅଧ୍ୟାୟଃ

## (ପିଣ୍ଡର ଦୁଇ ପ୍ରଳୟ ଓ ବ୍ରହ୍ମାଣ୍ଡର ଦୁଇ ପ୍ରଳୟ ବର୍ଣ୍ଣନ)

ପ୍ରଶ୍ନ-୩୧: ଏହି ଅଧ୍ୟାୟରେ ରାଜା ପରୀକ୍ଷିତଙ୍କର କୌଣସି ପ୍ରଶ୍ନ ନାହିଁ । ତଥାପି ବକ୍ତା ମହାଶୟଙ୍କ ପ୍ରବଚନର ବିରାମ ନାହିଁ । ରାଜାଙ୍କ ଅନ୍ତିମ ପ୍ରଶ୍ନରେ ଯେଉଁ ପିଣ୍ଡ ବ୍ରହ୍ମାଣ୍ଡର ଚାରି ପ୍ରଳୟ ବର୍ଣ୍ଣନ କରିବା ଅନୁରୋଧ ଥିଲା ସେହି ବିଷୟ ବସ୍ତୁର ଅନ୍ତର୍ଗତ ବ୍ରହ୍ମାଣ୍ଡର ନୈମିତ୍ତିକ ପ୍ରଳୟ ଓ ପ୍ରକୃତି ପ୍ରଳୟ ବା ବ୍ରହ୍ମ ପ୍ରଳୟ ବର୍ଣ୍ଣନର ଶୁଭାରମ୍ଭ କିପରି କଲେ ?

ଶ୍ରୀ ଶୁକ ଉବାଚ

**ଚତୁର୍ଯୁଗ ସହସ୍ରଂ ତୁ ବ୍ରହ୍ମଣୋ ଦିନଂ ଉଚ୍ୟତେ ।**
**ସ କଳ୍ପୋ ଯତ୍ର ମନବଃ ଚତୁର୍ଦ୍ଦଶ ବିଶାମ୍ପତେ ॥୨॥**

ଉ. ଶୁକଦେବଜୀ କହିଲେ, ''ହେ ରାଜନ (ବିଶାମ୍ପତେ), ସତ୍ୟ ତ୍ରେତା ଆଦି ଚାରି ଯୁଗକୁ ଏକ ଚତୁର୍ଯୁଗ କୁହାଯାଏ । ଏକସ୍ତରୀ ଥର ଚତୁର୍ଯୁଗ ବିତିଗଲେ ଏକ ମନ୍ୱନ୍ତର ସମୟକୁ ବୁଝାଏ । ଠିକ୍ ସେହି କ୍ରମରେ ଚଉଦ ମନ୍ୱନ୍ତର କାଳ ବା ୯୮ଚତୁଯୁର୍ଗ ସହିତ ଦୁଇ ସଂଧ୍ୟାଂଶ କାଳକୁ ମିଶାଇ ଏକ ହଜାର ଚତୁର୍ଯୁଗରେ ବ୍ରହ୍ମାଙ୍କର ଆୟୁଷ ଏକ ଦିନ କାଳ ବିତେ । ତତ୍ପରେ କଳ୍ପାନ୍ତ ପ୍ରଳୟ ହୁଏ । ଠିକ୍ ସେଇ ଏକହଜାର ଚତୁର୍ଯୁଗ ସମୟରେ ମଧ୍ୟ ବ୍ରହ୍ମାଙ୍କର ଏକ ରାତ୍ରି ବିତେ । ଦୁହେଁ ମିଶିଲେ ଏକ ଅହୋରାତ୍ର ହୁଏ । ଏହିଭଳି ୩୬୦ଦିନରେ ବ୍ରହ୍ମାଙ୍କର ଏକ ବର୍ଷ ଆୟୁଷ ଶେଷ ହୁଏ । ପୁଣି ୧୦୮ବର୍ଷ ସମୟ ବିତିବା (ଦ୍ୱିପରାର୍ଦ୍ଧ) ବ୍ରହ୍ମାଜୀଙ୍କର ଆୟୁଷ । ସେତେବେଳେ ଯେଉଁ ପ୍ରଳୟ ହୁଏ ତାର ନାମ ପ୍ରକୃତି ପ୍ରଳୟ ବା ବ୍ରହ୍ମ ପ୍ରଳୟ । ଏହି ପ୍ରଳୟ ପରେ ବ୍ରହ୍ମାଙ୍କୁ ମଧ୍ୟ ନିଜ ସୁକ୍ଷ୍ମ ଦେହ ତ୍ୟାଗ କରିବାକୁ ପଡ଼େ । ନୂତନ ବ୍ରହ୍ମା ଦାୟିତ୍ୱ ସମ୍ଭାଳନ୍ତି ତାଙ୍କ ଅବସର ଗ୍ରହଣ ସମୟ ବ୍ୟତୀତ ହୁଅନ୍ତେ ।

ପ୍ରକୃତି ପ୍ରଳୟ ପୂର୍ବରୁ ବ୍ରହ୍ମାଙ୍କ ଆୟୁଷ ବର୍ଷକୁ ବର୍ଷ କ୍ଷୟ ହୁଅନ୍ତେ କଳ୍ପାନ୍ତ ପ୍ରଳୟ, ପ୍ରତ୍ୟେକ ମନ୍ୱନ୍ତର ଆୟୁଷ ଶେଷର ମନ୍ୱନ୍ତର ପ୍ରଳୟ ଓ ପ୍ରତ୍ୟେକ ଚତୁର୍ଯୁଗ ଶେଷରେ ଚତୁର୍ଯୁଗୀ ପ୍ରଳୟ ଓ ସତ୍ୟଯୁଗ ପ୍ରଳୟ, ତ୍ରେତାଯୁଗ ପ୍ରଳୟ ଆଦି ଯୁଗ ପ୍ରଳୟ ସହିତ ଖଣ୍ଡ ପ୍ରଳୟ ମାନ ସବୁ ହେଉଥାଏ । ଏ ସକଳ ପ୍ରକାର ପ୍ରଳୟର କିନ୍ତୁ ସେଇ ଗୋଟିଏ ନାମ **ନୈମିତ୍ତିକ ପ୍ରଳୟ** ।

ପ୍ରଶ୍ନ-୩୨ : ପ୍ରକୃତି ପ୍ରଳୟ ବା ବ୍ରହ୍ମ ପ୍ରଳୟ ହୁଏ କାହାର ବ୍ରହ୍ମାଙ୍କର ନା ବ୍ରହ୍ମାଣ୍ଡର ?

**ଏଷ ପ୍ରାକୃତିକୋ ରାଜନ୍ ପ୍ରଳୟୋ ଯତ୍ର ଲୀୟତେ ।**
**ଆଣ୍ଡକୋଶଃ ତୁ ସଂଘାତୋ ବିଘାତ ଉପସାଦିତେ ॥୬॥**

ଉ. ବ୍ରହ୍ମା-ବ୍ରହ୍ମାଣ୍ଡ ଉଭୟଙ୍କର ଏହି ପ୍ରଳୟ ହୋଇଥାଏ । ରୂପ, ରସ, ଗନ୍ଧ, ଶବ୍ଦ, ସ୍ପର୍ଶ, ମହତତ୍ତ୍ୱ ଓ ଅବ୍ୟକ୍ତ ପ୍ରକୃତି ଏହି ସପ୍ତ ମୌଳିକ ତତ୍ତ୍ୱର ବିସ୍ତାର ହେଉଛି ଦୃଶ୍ୟ-ଅଦୃଶ୍ୟ ବା କାର୍ଯ୍ୟକାରଣ ରୂପୀ ଭୌତିକ ସଂସାର । ସୁତରାଂ ଏହି ପ୍ରଳୟରେ ସୃଷ୍ଟିର ନିଖିଳ ବ୍ରହ୍ମାଣ୍ଡ ସହିତ ସ୍ରଷ୍ଟା ଚତୁର୍ମୁଖୀ ବ୍ରହ୍ମା ମଧ୍ୟ ଅଦୃଶ୍ୟ ହୁଅନ୍ତି ।

ପ୍ରଶ୍ନ-୩୩: ବ୍ରହ୍ମ ପ୍ରଳୟ ଆରମ୍ଭରେ ସୃଷ୍ଟିରେ ଶହେ ବର୍ଷଯାଏ ବର୍ଷା ଆଦୌ ହୁଏ ନାହିଁ । ନିରନ୍ନ ନିର୍ଜଳ ସଂସାରରେ ସକଳ ଚର ଅଚର ଜୀବ କ୍ଷୁଧା ତୃଷାରେ ଅନନ୍ୟ ଉପାୟ ହୋଇ ପ୍ରାଣ ତ୍ୟାଗ କରନ୍ତି । ଜୀବମାନେ ନିଜ ନିଜ ଖାଦ୍ୟ ବଦଳରେ ପରସ୍ପରକୁ ଖାଇ ଯାଆନ୍ତି । ଭଗବାନ ସଙ୍କର୍ଷଣ ତାଙ୍କ ମୁଖରୁ ନିର୍ଗତ ପ୍ରଳୟକାଳୀନ

ସୂର୍ଯ୍ୟ ତାଙ୍କର ପ୍ରଚଣ୍ଡ କିରଣ ଦ୍ୱାରା ପୃଥିବୀ ପୃଷ୍ଠସ୍ଥିତ ସମସ୍ତ ଜଳ, ତୁଷାର, ଜଳକଣା ଆଦି ଶୋଷି ନିଅନ୍ତି । ପରେ ପରେ ପ୍ରଳୟକାଳୀନ ବାୟୁ ବହେ । ପୁଣି ପ୍ରଳୟ କାଳୀନ ବର୍ଷା ଆସେ । ସମଗ୍ର ଭୂପୃଷ୍ଠ ଜଳମୟ ହୋଇ ପୁଣି ଥରେ ଏକାର୍ଣ୍ଣବ ହୁଏ । ଏହି ପ୍ରଳୟ ଜଳ ପୃଥିବୀର ଗନ୍ଧଗୁଣକୁ ଦିନେ ଶୋଷିନେବେ । ପୃଥିବୀ ଜଳରେ ଅଦୃଶ୍ୟ ହେବ । ତତ୍‌ପରେ ପ୍ରଳୟ ଅଗ୍ନି ଜଳର ରସ ଗୁଣକୁ ଶୋଷଣ କରିବେ । ଜଳ ଅଦୃଶ୍ୟହେବ । ବାୟୁ ଯେତେବେଳେ ଅଗ୍ନିଙ୍କର ରୂପ ତତ୍ତ୍ୱକୁ ଶୋଷଣ କରିବେ ଅଗ୍ନି ମଧ୍ୟ ଅଦୃଶ୍ୟ ହେବ । ଆକାଶ ଶୋଷିନେବେ ପବନଙ୍କର ସ୍ପର୍ଶ ଗୁଣକୁ । ସେଇ ଆକାଶକୁ ପୁଣି ତମୋଗୁଣୀ ଅହଂକାର ଶବ୍ଦ ଗୁଣକୁ ଶୋଷଣ କରି ଅଦୃଶ୍ୟ କରିଦେବେ । ରଜୋଗୁଣୀ ଅହଂକାରରେ ମିଶିଯିବେ ଦଶ ଇନ୍ଦ୍ରିୟ । ଦେବତାଙ୍କ ସହ ସମଷ୍ଟି ମନ ମିଶି ଯିବେ ସତ୍ତ୍ୱଗୁଣୀ ଅହଂକାରରେ । ଶେଷରେ ତିନି ମିଥ୍ୟା ଅହଂକାର ବିଲୀନ ହେବେ ମହତତ୍ତ୍ୱରେ । ମହତତ୍ତ୍ୱ ମଧ୍ୟ ଅବ୍ୟକ୍ତ ପ୍ରକୃତିରେ ଲୀନ ହେବେ । ପ୍ରକୃତି ଓ ପୁରୁଷଙ୍କ ମିଳନରେ ବିଳୟ ପ୍ରକ୍ରିୟାର ପରିସମାପ୍ତି ଘଟିଲେ ମହାକାଳଙ୍କର କି ଅବସ୍ଥା ହେବ ?

**ଲୟଃ ପ୍ରାକୃତିକୋ ହି-ଏଷ ପୁରୁଷ-ଅବ୍ୟକ୍ତୟୋଃ ଯଦା ।**
**ଶକ୍ତୟଃ ସଂପ୍ରଲୀୟନ୍ତେ ବିବଶାଃ କାଳ ବିଦ୍ରୁତାଃ ॥୨୨॥**

ଉ. କାଳ ପରମାତ୍ମା ନାରାୟଣ ବା ବିରାଟ ପୁରୁଷଙ୍କର ଏକ ଅଲୌକ ଶକ୍ତି ବିଶେଷ । କାଳ ଆଗରେ ସକଳ ଭୂତ ପ୍ରକୃତି, ତତ୍ ତତ୍ ଦେବତା ସମସ୍ତେ ଅସହାୟ (ବିଦ୍ରୁତା) । ସେଇକାଳ ପୁଣି ପରମାତ୍ମାଙ୍କ ନିକଟରେ ସ୍ୱୟଂ ଅସହାୟ । ଅତଏବ ପରମ ପୁରୁଷଙ୍କ ଇଛାଶକ୍ତିର ଆବେଗରେ ସେଇ କାଳ ମଧ୍ୟ ସଂପୂର୍ଣ୍ଣ ବିଲୀନ ହୋଇ ବିଶ୍ରାମ ନିଅନ୍ତି ପରବର୍ତ୍ତୀ ସୃଷ୍ଟି ପ୍ରକ୍ରିୟା ଅପେକ୍ଷାରେ । ଏହା ହିଁ ସୃଷ୍ଟି-ପ୍ରଳୟ ରୂପକ କାଳଚକ୍ର ।

ପ୍ରଶ୍ନ-୩୪: ପିଣ୍ଡ ବ୍ରହ୍ମାଣ୍ଡ ଏକମତ ବୋଲି ବୈଦିକ ବିଶେଷଜ୍ଞ ମାନେ କହନ୍ତି । ବ୍ରହ୍ମାଣ୍ଡ ଓ ବ୍ରହ୍ମା ପରମାତ୍ମାଙ୍କ ଠାରୁ ସୃଷ୍ଟି ହେବା ପୁଣି ତାଙ୍କ ଆଶ୍ରୟକୁ ଫେରି ଯିବାକୁ ବ୍ରହ୍ମା ଓ ବ୍ରହ୍ମାଣ୍ଡର ସର୍ଜନ ଓ ପ୍ରଳୟ କୁହାଯାଏ । ଠିକ୍ ସେହି ନ୍ୟାୟରେ ପରମାତ୍ମାଙ୍କର ସତ୍‌ଚିତ୍ ଆନନ୍ଦ ଅଂଶ ବିଶିଷ୍ଟ ଆତ୍ମାଙ୍କ ଠାରୁ ଜୀବ ଓ ଜୀବ ଦେହ ଦୃଶ୍ୟହେବାକୁ ଜନ୍ମ ଓ ଅଦୃଶ୍ୟ ହେବାକୁ ମରଣ କୁହାଯାଏ । ଏ ଜଟିଳ ତତ୍ତ୍ୱକୁ ବୁଝାଇବା ପାଇଁ କେଉଁ ସରଳ ଉଦାହରଣଟିଏ ରଖିଲେ ଶୁକଦେବଜୀ ଏବେ ?

**ଯଥା ଜଳଧରା ବ୍ୟୋମ୍ନି ଭବନ୍ତି ନ ଭବନ୍ତି ଚ ।**
**ବ୍ରହ୍ମଣୀ-ଇଦଂ ତଥା ବିଶ୍ୱଂ ଅବୟବୀ-ଉଦୟ-ଅପ୍ୟୟାତ୍ ॥୨୬॥**

ଉ. ଆକାଶରେ (ବ୍ୟୋମ୍ନି) ମେଘ (ଜଳଧାରା) କେବେ ଦୃଶ୍ୟ ହୁଏ ପୁଣି କେବେ ଅଦୃଶ୍ୟ ମଧ୍ୟ ହୁଏ । ଠିକ୍ ସେହିଭଳି (ତଥା) ଆତ୍ମାଙ୍କ ଠାରେ (ବ୍ରହ୍ମଣୀ) ଏ ପିଣ୍ଡ ଓ ପରମାତ୍ମାଙ୍କ ଠାରେ ବ୍ରହ୍ମାଣ୍ଡର ମଧ୍ୟ ଜନ୍ମ-ମରଣ, ସୃଷ୍ଟି-ପ୍ରଳୟ ଚକ୍ରରେ ଘୂର୍ଣ୍ଣାୟମାନ ହୁଅନ୍ତି । ବାୟୁ ଦ୍ୱାରା ମେଘର ଇତସ୍ତତଃ ଭ୍ରମଣ ଜୀବର ଲୋକାନ୍ତର ଗମନ ଭଳି । ମେଘରେ ବିଜୁଳିର ପ୍ରକାଶ, ଆଲୋକ ଜୀବର ସୁଖ ଅନୁଭୂତି ଓ ଘଡ଼ଘଡ଼ି ଶବ୍ଦ ଦୁଃଖ ଅନୁଭବର ଦ୍ୟୋତକ ।

ପ୍ରଶ୍ନ-୩୫: ବୀଜରୁ ବୃକ୍ଷ ହେବା ଓ ବୃକ୍ଷରୁ ବୀଜ ସୃଷ୍ଟିକୁ କାର୍ଯ୍ୟ-କାରଣ ବ୍ୟବସ୍ଥା କୁହାଯାଏ । କାରଣରେ କାର୍ଯ୍ୟ ଲୁଚି ଥାଏ ପୁଣି ସେଇ କାର୍ଯ୍ୟରେ ମଧ୍ୟ କାରଣ ଲୁଚିଥାଏ କିନ୍ତୁ ଉଭୟଙ୍କର ପରମକାରଣ ପରମାତ୍ମା ନିଜେ ଅଦୃଶ୍ୟ ଥାଇ ଏଭଳି ଅବସ୍ଥାନ୍ତର ଲୀଳା କରନ୍ତି । କାରଣ କାର୍ଯ୍ୟକାରଣ ପରସ୍ପର ସାପେକ୍ଷ ଅଟନ୍ତି । ନିରପେକ୍ଷ ନୁହନ୍ତି । ନିରପେକ୍ଷ କେବଳ ଠାକୁରଜୀ ଶ୍ରୀକୃଷ୍ଣ । ଅନ୍ୟ ସକଳ କାର୍ଯ୍ୟ ଓ କାରଣ କ୍ଷଣିକ, ପରିବର୍ତ୍ତନଶୀଳ ଅତଏବ ଅସତ୍ ବା ଭ୍ରାମକ, ଅବିବେକ ଅଟେ । ପରମାତ୍ମା କେବଳ ସତ୍ ।

ସତ୍ ବା ଆତ୍ମାଙ୍କଠାରୁ ଜନ୍ମିତ ସକଳ ଭୌତିକ ବସ୍ତୁ ଓ ଚର-ଅଚର ପ୍ରାଣୀ ଭିନ୍ନ ଭିନ୍ନ ନାମ ଧରନ୍ତି ସତ କିନ୍ତୁ ପାରମାର୍ଥିକ ବିଚାରରେ ସମସ୍ତେ ଏକ । ଏହାକୁ ପ୍ରାଞ୍ଜଳ କରିବା ନିମିତ୍ତ କେଉଁ କେଉଁ ତିନୋଟି ଦୃଷ୍ଟାନ୍ତ ଦେଲେ ଶ୍ରୀ ଶୁକଦେବଜୀଙ୍କ ?

**ନ ହି ସତ୍ୟସ୍ୟ ନାନାତ୍ୱଂ ଅବିଦ୍ୱାନ୍ ଯଦି ମନ୍ୟତେ ।**
**ନାନାତ୍ୱଂ ଛିଦ୍ରୟୋଃ ଯତ୍ ବତ୍ ଜ୍ୟୋତିଷୋଃ ବାତୟୋଃ ଇବ ।।୩୦।।**

ଉ. କଳସ ମଧ୍ୟସ୍ଥିତ ଆକାଶ ଓ ବହିଃସ୍ଥିତ ଆକାଶ (ଛିଦ୍ରୟୋଃ) ଯଥାକ୍ରମେ ଘଟାକାଶ ପଟାକାଶ କୁହାଗଲେ ମଧ୍ୟ ଉଭୟେ ବସ୍ତୁତ ଏକ ମହାଆକାଶରେ ଅଂଶ । ଦ୍ୱିତୀୟ ଦୃଷ୍ଟାନ୍ତରେ ଆକାଶରେ ଦୃଶ୍ୟମାନ ଭିନ୍ନ ଭିନ୍ନ ଜ୍ୟୋତିଷ୍କ ମଧ୍ୟରେ ଏକ ତେଜୋତତ୍ତ୍ୱ ବିଦ୍ୟମାନ ଥାଏ ଯଦିଓ କାହାର ନାମ ଧ୍ରୁବ ହେଲେ ପୁଣି ଅନ୍ୟର ନାମ ଅରୁନ୍ଧତୀ ଆଦି । ତୃତୀୟ ଦୃଷ୍ଟାନ୍ତରେ ଗୋଟିଏ ଜୀବର ଫୁସଫୁସ ମଧ୍ୟସ୍ଥିତ ବାୟୁ ଓ ଦେହ ବାହାରସ୍ଥିତ ବାୟୁ ଭିନ୍ନ ବୋଧ ହେଉଥିଲେ ମଧ୍ୟ ବିବେକ ଦୃଷ୍ଟିରେ ଏକ ବାୟୁ ତତ୍ତ୍ୱ ।

ଠିକ୍ ସେହିଭଳି ସୁବର୍ଣ୍ଣ ଧାତୁରେ ଅନେକ କଟକ, କୁଣ୍ଡଳ, ହାର ଆଦି ଅଳଂକାର ତିଆରି ହୋଇ ଅନେକ ନାମ ରୂପରେ ପରିଚିତ ହୁଅନ୍ତି । କିଛିଦିନ ପରେ ସେମାନେ ପୁଣି ତରଳିଯାଇ ସୁବର୍ଣ୍ଣ ନାମ ରୂପ ଧାରଣ କରିଥାନ୍ତି । ବ୍ୟାବହାରିକ ଦୃଷ୍ଟିରେ କେତେବେଳେ ସ୍ୱର୍ଣ୍ଣ ସତ୍ୟ ଅଳଙ୍କାର ଅସତ୍ୟ । ପୁଣି କେତେବେଳେ ଅଳଙ୍କାର

ସତ୍ୟ ସ୍ୱର୍ଣ୍ଣ ଅସତ୍ୟ । ତତ୍ତ୍ୱ ଦୃଷ୍ଟିରେ ଦୁହେଁ କିନ୍ତୁ ଅସତ୍ । ସମୟକ୍ରମେ ଅବସ୍ଥାନ୍ତର କରୁଥିବା ପରମାତ୍ମା କେବଳ ସତ୍ ।

ପ୍ରଶ୍ନ-୩୬: ଜୀବର ଲୋକ ଲୋକାନ୍ତର, ଅବସ୍ଥା ଅବସ୍ଥାନ୍ତର, ଦେହ ଦେହାନ୍ତର ଗମନ ରହସ୍ୟ ବୁଝିବା ପାଇଁ ସୁବର୍ଣ୍ଣ ଓ ଅଳଙ୍କାର ଦୃଷ୍ଟାନ୍ତ ଅବଶ୍ୟ ଯଥେଷ୍ଟ । ଜୀବ ତ ଆଉ ଜଡ଼ ସୁନା କିମ୍ବା ଅଳଙ୍କାର ନୁହେଁ । ତାର ବନ୍ଧନ ହୁଏ କାହିଁକି ଓ ମୁକ୍ତି ହୁଏ କିପରି ?

**ଯଥା ଘନୋଽର୍କ ପ୍ରଭାବୋଽର୍କ ଦର୍ଶିତୋ**
**ହି-ଅର୍କ-ଅଂଶ ଭୂତସ୍ୟ ଚ ଚକ୍ଷୁଷଃ ତମଃ ।**
**ଏବଂ ତୁ-ଅହଂ ବ୍ରହ୍ମଗୁଣଃ ତତ୍ ଇକ୍ଷିତୋ**
**ବ୍ରହ୍ମ-ଅଂଶକସ୍ୟ ଆତ୍ମନଃ ଆତ୍ମବନ୍ଧନଃ ॥୩୨॥**

ଉ. ଆତ୍ମା ଚିନ୍ମୟ ସୂର୍ଯ୍ୟଙ୍କ ସଦୃଶ ସଦା ପ୍ରକାଶମୟ । ସୂର୍ଯ୍ୟଙ୍କଠାରୁ ତାଙ୍କ କିରଣ ଉତ୍ପନ୍ନ ହୁଏ । ସେଇ କିରଣ ସମୁଦ୍ରରୁ ଜଳକଣା ଉଠାଇ ନେଇ ଆକାଶରେ ଜମାକରେ । କଳାମେଘ ସୃଷ୍ଟିହୁଏ । ପବନରେ ସେଇ ମେଘ ଏଣେତେଣେ ବୁଲେ । ସେଇ ମେଘ ବେଳେବେଳେ ତାର କାରଣ ସୂର୍ଯ୍ୟକିରଣକୁ ଓ ମୂଳ କାରଣ ସୂର୍ଯ୍ୟ ଦେବତାଙ୍କୁ କିଛି ସମୟ ଲାଗି ଘୋଡ଼େଇ ପକାଏ ସତ କିନ୍ତୁ ସବୁ ସମୟ ପାଇଁ ଘୋଡ଼େଇ ପାରେ ନାହିଁ । ବିଷ୍ଣୁ ମାୟା ହିଁ ଏହି କଳା ବଉଦ । ତୁଚ୍ଛ ଇନ୍ଦ୍ରିୟ ତୃପ୍ତି ଲାଳସାରେ ବିଷୟ ଭୋଗରେ ମାତିଲେ ମନରେ ଆସକ୍ତିର ବାଦଲ ଜମାଟ ବାନ୍ଧେ । ସାଧୁ ସନ୍ଥ ଗୁରୁ ସେବା ଦ୍ୱାରା ତାଙ୍କ କୃପା ପ୍ରାପ୍ତ ହେଲେ ସଂସାର ମୋହ ଆସକ୍ତି ବଉଦ ହଟିଯାଏ । ଏହାର ନାମ ବ୍ରହ୍ମା ଓ ବ୍ରହ୍ମାଣ୍ଡ ଉଭୟଙ୍କର ପ୍ରଳୟ ପ୍ରକୃତି ପ୍ରଳୟ ବା ବ୍ରହ୍ମ ପ୍ରଳୟ ।

ପ୍ରଶ୍ନ-୩୭: ପିଣ୍ଡର ଆତ୍ୟନ୍ତିକ ପ୍ରଳୟ କଅଣ ?

**ଯଦା-ଏବଂ ଏତେନ ବିବେକ ହେତିନା**
**ମାୟାମୟ-ଅହଂକରଣ-ଆତ୍ମ ବନ୍ଧନମ୍ ।**
**ଛିତ୍ୱା-ଅଚ୍ୟୁତ-ଆତ୍ମ-ଅନୁଭବୋଽବତିଷ୍ଟତେ**
**ତଂ ଆହୁଃ ଆତ୍ୟନ୍ତିକଂ ଅଙ୍ଗ ସଂପ୍ଲବମ୍ ॥୩୪॥**

ଉ. ଶୁକଦେବଜୀ କଥାଟିକୁ ଆହୁରି ପ୍ରାଞ୍ଜଳ କରିବା ନିମିତ୍ତ କହିଲେ, 'ହେ

ପରୀକ୍ଷିତଜୀ (ଅଙ୍ଗ), ବିବେକ ଖଡ୍‌ଗ (ହେତିନା) ବିଷୟ ଆସକ୍ତି ଜନିତ ମିଥ୍ୟା ଆସକ୍ତି ଅହଂକାରକୁ ବୈଷ୍ଣବ (ଅଚ୍ୟୁତ-ଆତ୍ମ) କୃପାଦ୍ୱାରା ଛିନ୍ନ କରିଦେଲେ ଯେଉଁ ଆତ୍ମଜ୍ଞାନ (ମୁଁ ଦେହ ନୁହେଁ ଆତ୍ମା, ମୋର ଶରୀର-ସଂସାର ନୁହେଁ ମୋର କେବଳ ପରମେଶ୍ୱର) ପ୍ରାପ୍ତି ହୁଏ ସେଇ ଜ୍ଞାନ ହିଁ ପିଣ୍ଡର ଆତ୍ୟନ୍ତିକ ପ୍ରଳୟ । ଥରେ ଏହି ଆତ୍ମଜ୍ଞାନ ପ୍ରାପ୍ତ ହେଲେ ଜନ୍ମଜନ୍ମାନ୍ତର ଏହା ଭକ୍ତ ଓ ତତ୍ତ୍ୱଜ୍ଞାନୀମାନଙ୍କର ସାଙ୍ଗରେ ଯାଏ । ବିନା ସାଧନା ବା ଅଳ୍ପ ସାଧନାରେ ସେମାନଙ୍କୁ ଜନ୍ମେ ଜନ୍ମେ ଗୁରୁ, ବୈଷ୍ଣବ ସେବା ସୁଯୋଗ ମିଳୁଥାଏ । ହରି ଭଜନରେ ରୁଚି ହୁଏ ତାର । ତେଣୁ ଏଭଳି ଆତ୍ମଜ୍ଞାନର ନାମ **ଆତ୍ୟନ୍ତିକ ପ୍ରଳୟ** ରଖାଯାଇଛି । କେବଳ ବୈରାଗ୍ୟବାନ ବିବେକୀ ଲୋକ ଏ କଥା ଅନୁଭବ କରିପାରେ ସିନା ବିଷୟୀ ଲୋକ ଏହାର ଟେର ପାଇପାରେନା ଦୀର୍ଘ ଆୟୁଷ ବିତାଇ ମଧ୍ୟ ।

ପ୍ରଶ୍ନ-୩୮ : ପିଣ୍ଡର ନିତ୍ୟ ପ୍ରଳୟ ତେବେ କାହାକୁ କୁହାଯାଏ ?

**କାଳସ୍ରୋତୋ ଜବେନ-ଆଶୁ ହ୍ରିୟମାଣସ୍ୟ ନିତ୍ୟଦା ।**
**ପରିଣାମିନାଂ ଅବସ୍ଥାଃ ତାଃ ଜନ୍ମ ପ୍ରଳୟ ହେତବଃ ।।୩୬।।**

ଉ. ମହାକାଳ ଭଗବାନଙ୍କର ଏକ ଅନାଦି, ଅନନ୍ତ ଓ ଅଚିନ୍ତ୍ୟ ଶକ୍ତିଶାଳୀ ବେଗବାନ (ଆଶୁ) ଦେବତା । ତାଙ୍କର ସ୍ରୋତରେ ଜଡ଼ ଭୂତ ପ୍ରକୃତିସ୍ଥିତ ସକଳ ଅଣୁ ପରମାଣୁକୁ ସଂଯୋଗ ବିଯୋଗ କରିବା କ୍ଷମତା ତାଙ୍କର ଥାଏ । ନିରନ୍ତର (ନିତ୍ୟଦା) ସକଳ ବସ୍ତୁ, ବ୍ୟକ୍ତିର ଶରୀର ପରିବର୍ତ୍ତନ କରୁଥାନ୍ତି ସେ (ପରିଣାମିନାଂ ଅବସ୍ଥାଃ) । ତେଣୁ ମହାକାଳଙ୍କୁ ଜନ୍ମ-ମରଣର କାରଣ (ହେତବଃ) କୁହାଯାଏ ଶାସ୍ତ୍ରରେ ।

୮୪ଲକ୍ଷ ଜୀବ ଯୋନି ଭ୍ରମଣରେ ବୃକ୍ଷଲତା ପଶୁପକ୍ଷୀ ଆଦି ନାନା ଦେହ ଧରିବା ଓ ଦେହ ଛାଡ଼ିବାକୁ ନିତ୍ୟ ପ୍ରଳୟ କୁହାଯାଏ । ପୁଣି ଦେବତା, ରାକ୍ଷସ, ନର ବାନର ଆଦି ଦେହ ପରିବର୍ତ୍ତନ କରି ଭିନ୍ନ ଭିନ୍ନ ଯୋନି ଭ୍ରମଣ କରିବା ମଧ୍ୟ ନିତ୍ୟପ୍ରଳୟ । ନରଜନ୍ମରେ ଗୋଟିଏ ଦିନରେ କିଛି ସମୟ ରହି ତାକୁ ଛାଡ଼ିବା ମଧ୍ୟ ନିତ୍ୟ ପ୍ରଳୟ । ଗୋଟିଏ ଦେହରେ ଶିଶୁ ଦେହ ଛାଡ଼ି କିଶୋର ଦେହ ଧରିବା ପୁଣି କିଶୋରରୁ ଯୁବକ, ଯୁବକରୁ ପ୍ରୌଢ଼ ଓ ବୃଦ୍ଧ ବୃଦ୍ଧା ଶରୀର ଧାରଣ କରିବା ରୂପକ ଅବସ୍ଥାନ୍ତର ମଧ୍ୟ ଏହି ନିତ୍ୟ ପ୍ରଳୟର ଅନ୍ତର୍ଗତ । କାରଣ ଜଣକର ଶିଶୁ ଅବସ୍ଥା ମଲେ ସିନା କିଶୋର ଅବସ୍ଥା ଆସିବ । ଯୌବନକୁ ଆସିବାକୁ ହେଲେ କିଶୋର ଅବସ୍ଥାକୁ ମରିବାକୁ ପଡ଼େ । ଠିକ୍ ସେହିଭଳି ମନୁଷ୍ୟ ତାର ପ୍ରତ୍ୟେକ ଶ୍ୱାସ ପ୍ରଶ୍ୱାସରେ ଚାରି ସେକେଣ୍ଡ

ସମୟ ବ୍ୟବଧାନରେ ଅହଂସଃ ଓ ସୋଽହଂ ଜପ କରୁଛି । ତେଣୁ ପ୍ରତ୍ୟେକ ଶ୍ୱାସରେ ସେ ଥରେ ଜନ୍ମ ହେଉଛି ପୁଣି ମରୁଛି । ଏହାକୁ କୁହାଯାଏ ଜୀବର ନିତ୍ୟ ପ୍ରଳୟ । ଏହା ଠିକ୍ ବ୍ରହ୍ମାଣ୍ଡର ନୈମିତ୍ତିକ ପ୍ରଳୟ ସଦୃଶ ଭିନ୍ନ ଭିନ୍ନ ପ୍ରକାରର ।

କାଳର ଗତି ଏତେ ସୂକ୍ଷ୍ମ ଯେ ଜୀବ ଜାଣି ପାରୁନି ପ୍ରତ୍ୟେକ ଶ୍ୱାସରେ ସେ ଜନ୍ମ ହେଉଛି ଓ ମରୁଛି କିପରି ? କେତେବେଳେ ସେ ଯୁବକରୁ ବୃଦ୍ଧ ହେଲା ବିନା ବିବେକ, ବୈରାଗ୍ୟରେ ଏକଥା ବିଶ୍ୱାସ ହୁଏନା ତାର । ଦୃଷ୍ଟାନ୍ତରେ କୁହାଯାଏ ଯେ ମହାକାଶରେ ଗ୍ରହ ତାରାମାନଙ୍କର ନିତ୍ୟ ଗତିଶୀଳତାକୁ ମନୁଷ୍ୟ ତାର ମୋଟା ବୁଦ୍ଧିରେ ଧରିପାରିବାରେ ଅସମର୍ଥ ହୁଏ ।

ପ୍ରଶ୍ନ-୩୯ : ପିଣ୍ଡ ବ୍ରହ୍ମାଣ୍ଡର ଚାରି ପ୍ରକାର ପ୍ରଳୟ କଥା କହି ଶୁକଦେବଜୀ ରାଜା ପରୀକ୍ଷିତକୁ ଡ଼ରେଇବାକୁ ଚେଷ୍ଟା କଲେ କି ?

**ସଂସାର ସିନ୍ଧୁଂ ଅତି ଦୁସ୍ତରଂ ଉତ୍ତିତୀର୍ଷୋଃ**
**ନ-ଅନ୍ୟଃ ପ୍ଲବୋ ଭଗବତଃ ପୁରୁଷୋତ୍ତମସ୍ୟ ।**
**ଲୀଳା କଥା ରସ ନିଷେବଣଂ ଅନ୍ତରେଣ**
**ପୁଂସୋ ଭବେତ୍ ବିବିଧ ଦୁଃଖ ଦବ-ଅର୍ଦ୍ଦିତସ୍ୟ ॥୪୦॥**

ଉ. ବିଲକୁଲ ଚେଷ୍ଟା କରିନାହାନ୍ତି । ବରଂ ଭବସାଗରକୁ ପାରହେବା ଅତ୍ୟନ୍ତ କଷ୍ଟକର ବୋଲି କହୁ କହୁ ତାକୁ ପାରହେବାକୁ ଚାହୁଁଥିବା (ଉତ୍ତିତୀର୍ଷୋ) ଲୋକ ପାଇଁ ଅତ୍ୟନ୍ତ ସରଳ, ସହଜ ଓ ସର୍ବଜନ ସୁଲଭ ମାର୍ଗଟିଏ ବତେଇ ଦେଇଛନ୍ତି । ସଂସାର ଦୁଃଖମୟ (ଦୁଃଖଦବ-ଅର୍ଦ୍ଦିତସ୍ୟ) କେବଳ ଅଭକ୍ତ ପାଇଁ ଅବିବେକୀ ପାଇଁ । ଭଗବାନ ପୁରୁଷୋତ୍ତମ ନୃସିଂହ, ବାମନ, ରାମ, କୃଷ୍ଣ ଇତ୍ୟାଦି ଅବତାର ନେଇ ଲୀଳା କରନ୍ତି । ବାଲ୍ମୀକି, ବ୍ୟାସ ଆଦି ରୂପରେ ଲୀଳାକୁ ଲେଖି ଗ୍ରନ୍ଥରୂପ ଦିଅନ୍ତି । ଶୁକ, ସୂତ ନାରଦ ରୂପରେ ଲୀଳା, ଗୁଣ ଆଦି ବୁଲି ବୁଲି କୀର୍ତ୍ତନ କରନ୍ତି । ଭଗବାନଙ୍କ ଲୀଳା କଥା ଶ୍ରବଣ ସ୍ୱୟଂ ଏକ ସୁନ୍ଦର ଭେଳା ବା ନୌକା ସଦୃଶ, ଭଗବାନ ବା ଗୁରୁ ତାର ନାବିକ । ଭକ୍ତ ମନୁଷ୍ୟ ତାର ପାସେଞ୍ଜର ବା ଯାତ୍ରୀ । ସାଧୁ, ବୈଷ୍ଣବ ଅନୁକୂଳ ସମୀର । ଦୁସ୍ତର ସଂସାର ସାଗର ପାର ହେବାକୁ ଏହା ବ୍ୟତୀତ ଅନ୍ୟ କୌଣସି ସର୍ବ ଜନସୁଲଭ, ସଦାକାଳେ କରଣୀୟ, ସକଳ ଦେଶ ଓ ସକଳ ଅବସ୍ଥାରେ ସମ୍ଭବ ହେଉଥିବା କଥାନିଷେବଣ ଭେଳା (ପ୍ଲବୋ) ଭଳି ଉପାୟ ନାହିଁ ସେ ଜପ, ତପ, ବ୍ରତ, କର୍ମ, ଯୋଗ, ବେଦାଧ୍ୟୟନ, ଯଜ୍ଞ, ଦାନ ଆଦି ଯାହା ବି ହେଉ ।

ପ୍ରଶ୍ନ-୪୦: ଭବସାଗର ପାର ହେବାର ଅନେକ କୌଶଳ ଉପାୟମାନ ସଂସାରରେ ପୂର୍ବରୁ ଥିଲା କିନ୍ତୁ ଶ୍ରୀମଦ୍ଭାଗବତ ରୂପୀ ଭେଳା(ପ୍ଳବ)କୁ ଏକ ନୂତନ ଆବିଷ୍କାର, ବ୍ୟବସ୍ଥା ବୋଲି ଶ୍ରୀଶୁକଦେବଜୀ ବିଚାର କରିଛନ୍ତି । ଚାରିଟି ଶ୍ଳୋକରେ ସର୍ବ ପ୍ରଥମେ ଶ୍ରୀନାରାୟଣ ବ୍ରହ୍ମାଜୀଙ୍କୁ ଭାଗବତର ବୀଜ ପ୍ରଦାନ କରିଥିଲେ । ସାତଶ୍ଳୋକରେ ଏହାର ଅଙ୍କୁରକୁ ବ୍ରହ୍ମାଜୀ ତାଙ୍କ ପୁତ୍ର ନାରଦ ମହର୍ଷିଙ୍କୁ ଦେଲେ । ପରେ ପରେ ଏହି ଭାଗବତ ବୃକ୍ଷ ରୂପରେ ନାରଦଜୀଙ୍କ ଠାରୁ ବ୍ୟାସଦେବଙ୍କ ନିକଟକୁ ଗଲେ ଏକଶତ ଅଠାବନ ଶ୍ଳୋକରେ (ବ୍ୟାସଙ୍କ ସଂସ୍କୃତ ଭାଗବତଙ୍କର ଦ୍ୱିତୀୟ ସ୍କନ୍ଧ ଦ୍ରଷ୍ଟବ୍ୟ) । ପୁଣି ବ୍ୟାସଦେବଜୀ ଏହି ସନାତନ ଦେବବୃକ୍ଷର ଫଳକୁ ୧୪,୧୦୦ଶ୍ଳୋକରେ ପାଚିଲା, ସ୍ୱୟଂପତିତ ଫଳ ରୂପରେ ସଂସାରକୁ ପ୍ରଦାନ କଲେ । ଶ୍ରୀଶୁକଦେବଜୀ ଏହାକୁ ଆସ୍ୱାଦନ କରି ସାରି (ଚଞ୍ଚୁ ଆଘାତ କରି) ଏକ ମହାନ୍ ଐତିହାସିକ ସତ୍‌ସଙ୍ଗ ଅଧିବେଶନରେ ୬୬ହଜାର ମୁନି, ଋଷି ଆଦିଙ୍କ ଉପସ୍ଥିତିରେ ଜଣେ ଉପଯୁକ୍ତ ସତ୍‌ପାତ୍ର ରାଜର୍ଷି ପରୀକ୍ଷିତଙ୍କ ହସ୍ତରେ ଅର୍ପଣ କରିବାବେଳେ ଭବିଷ୍ୟତରେ ଏହା କିଏ କାହାକୁ କେତେବେଳେ କେଉଁଠାରେ ପୁଣି ହସ୍ତାନ୍ତର କରିବେ ବୋଲି ଭବିଷ୍ୟବାଣୀ କଲେ ?

**ଇମାଂ ବକ୍ଷତି-ଅସୌ ସୂତ ଋଷିଭ୍ୟୋ ନୈମିଷ-ଆଳୟେ ।**
**ଦୀର୍ଘସତ୍ରେ କୁରୁଶ୍ରେଷ୍ଠ ସମ୍ପୃଷ୍ଟଃ ଶୌନକ-ଆଦିଭିଃ ॥୪୩ ॥**

ଉ. ଶୁକଦେବ ପରମହଂସ କହିଲେ, ‘‘ହେ ପରୀକ୍ଷିତ (କୁରୁଶ୍ରେଷ୍ଠ), ଆଜିଠାରୁ ଠିକ୍ ଦୁଇଶହ ବର୍ଷ ପରେ ଉତ୍ତର ପ୍ରଦେଶସ୍ଥିତ ଲକ୍ଷ୍ନୌ ସହରଠାରୁ ୧୦୩କି.ମି. ଦୂରରେ ଅବସ୍ଥିତ ନୈମିଷାରଣ୍ୟ ନାମକ ସ୍ଥାନରେ ହଜାର ବର୍ଷ ବ୍ୟାପୀ ଯଜ୍ଞ ସଂକଳ୍ପରେ କଥା ଶ୍ରବଣ ବେଳେ ଶୌନକ ଆଦି ୮୮ହଜାର ଋଷି ଶ୍ରୀମଦ୍ଭାଗବତ ଧର୍ମ ବିଷୟ ସୂତଗୋସ୍ୱାମୀଙ୍କୁ ଶ୍ରଦ୍ଧାରେ ପଚାରିବେ । ସେତେବେଳେ ସେହି ମହାନ୍ ସତ୍‌ସଙ୍ଗରେ ଉପସ୍ଥିତ ଥିବା ଉଗ୍ରଶ୍ରବା ସୂତଙ୍କ ଭାଗ୍ୟବାନ ପୁତ୍ର ସୂତ ଗୋସ୍ୱାମୀ ଏହା ଶ୍ରବଣ କରି ଚକିତ ହେବା ସହିତ ନିଜକୁ ସେଥିଲାଗି ପ୍ରସ୍ତୁତ କରିନେଇଥିଲେ ।

# ଅଥ ପଞ୍ଚମ ଅଧ୍ୟାୟଃ

## (ମହାପୁରୁଷ ଆଶ୍ରୟରେ ଭଗବତ ଶରଣାଗତି ନିଷ୍ଚୟ ଫଳପ୍ରଦ)

ପ୍ରଶ୍ନ-୪୧ : ସୃଷ୍ଟି ଆରମ୍ଭରେ ଶ୍ରୀମନ୍ ନାରାୟଣଙ୍କ କାମରୁ ବ୍ରହ୍ମାଜୀଙ୍କ ଜନ୍ମ । ପୁଣି ବ୍ରହ୍ମାଜୀଙ୍କ କ୍ରୋଧରୁ ରୁଦ୍ରଙ୍କ ଜନ୍ମ ହୁଏ । ବ୍ରାହ୍ମ ପ୍ରଳୟରେ ସେଇ ବ୍ରହ୍ମା ରୁଦ୍ରଙ୍କୁ ମଧ୍ୟ ଦେହ ତ୍ୟାଗ କରିବାକୁ ପଡ଼େ । ବ୍ରହ୍ମଶାପ ଗ୍ରସ୍ତ ରାଜା ପରୀକ୍ଷିତଙ୍କୁ ଏ କଥାର ମର୍ମକୁ କି କଠୋର ଶବ୍ଦରେ ବୁଝାଇଲେ ବ୍ୟାସ ଆସନର ବକ୍ତା ଶ୍ରୀଶୁକଦେବଜୀ ?

ଶ୍ରୀଶୁକ ଉବାଚ

**ତ୍ୱଂ ତୁ ରାଜନ୍ ମରିଷ୍ୟେ-ଇତି ପଶୁ ବୁଦ୍ଧିଂ ଇମାଂ ଜହି ।**
**ନ ଜାତଃ ପ୍ରାକ୍ ଭୂତୋଽଦ୍ୟ ଦେହବତ୍ ତ୍ୱଂ ନ୍ ନଙ୍କ୍ଷ୍ୟସି ॥୨॥**

ଉ. ଶ୍ରୀ ଶୁକଦେବ ରୋକଠୋକ ରାଜାଙ୍କୁ ଶୁଣାଇ କହିଲେ, ''ହେ ପରୀକ୍ଷିତ, ମୁଁ ମରିଯିବି ଏ ଭାବନା ଆଦୌ ମାନବୋଚିତ ନୁହେଁ । ପଶୁର ଅବିବେକୀ ଭାବନା ମାତ୍ର । ତୁମର ଏ ଦେହ ନଥିବାବେଳେ ତୁମେ ନଥିଲ ଏ କଥା ବୁଦ୍ଧିମାନର କଥା ନୁହେଁ । ଭବିଷ୍ୟତରେ ଏ ଦେହ ନଷ୍ଟ ହୋଇଗଲେ ତୁମେ ମଧ୍ୟ ନଷ୍ଟ ହେବ ନାହିଁ ଏହା ବିବେକୀ ଲୋକର ଭାବନା । କାରଣ ତୁମେ ଜଡ଼ ଦେହ ନୁହଁ ବରଂ ଚିନ୍ମୟ ଆତ୍ମା ।

ପ୍ରଶ୍ନ-୪୨ : କାଷ୍ଠ ମଧ୍ୟରେ ଅଗ୍ନି ଅଦୃଶ୍ୟ ଭାବରେ ରହିଥାନ୍ତି । ସେହିଭଳି ଜୀବର ଜଡ଼ ଦେହରେ ଚେତନ ଆତ୍ମା ଅଦୃଶ୍ୟ ଭାବରେ ଥାଆନ୍ତି । ପୁଣି ବୀଜ ମଧ୍ୟରେ ଅଙ୍କୁର, ବୃକ୍ଷ, ଡ଼ାଳ, ପତ୍ର ଆଦି ସହିତ ଜୀବାତ୍ମା ଲୁଚି ରହିଥିବା କଥା କାହିଁକି ଶ୍ରୀଶୁକଦେବଜୀ ରାଜାଙ୍କୁ କହିଲେ ?

**ନ ଭବିଷ୍ୟସି ଭୂତ୍ୱା ତ୍ୱଂ ପୁତ୍ର ପୌତ୍ର-ଆଦି ରୂପବାନ୍ ।**
**ବୀଜ-ଅଙ୍କୁରବତ୍ ଦେହ-ଆଦେଃ ବ୍ୟତିରିକ୍ତୋ ଯଥା-ଅନଳଃ ॥୩॥**

ଉ. ବୀଜରୁ ବୃକ୍ଷ ଓ ବୃକ୍ଷରୁ ବୀଜ ଉତ୍ପନ୍ନ ହେବା ଦୃଷ୍ଟାନ୍ତ ରାଜା ପରୀକ୍ଷିତଙ୍କ ନିମିତ୍ତ ପ୍ରଯୁଜ୍ୟ ନୁହେଁ । କାରଣ ବୀଜ ଓ ବୃକ୍ଷ ଉଭୟ ସଜାତୀୟ । ଅଗ୍ନିକାଷ୍ଠଠାରୁ ସଂପୂର୍ଣ୍ଣ ବିରୋଧୀ ଧର୍ମୀ ବସ୍ତୁ ହେଲେ ମଧ୍ୟ ଭଗବତ୍ କୃପାରୁ ଦୁହେଁ ଈଶ୍ୱରଙ୍କ ଅଚିନ୍ତ୍ୟ ମାୟାଶକ୍ତି ପ୍ରଭାବରେ ସହାବସ୍ଥାନ କରିଥାନ୍ତି । ରାଜା ମୃତ୍ୟୁପରେ ତାଙ୍କ ବଂଶରେ ପୁତ୍ର ପୌତ୍ର ପ୍ରପୌତ୍ର ଆଦି ରୂପରେ ବୀଜବୃକ୍ଷ ନ୍ୟାୟରେ ଜନ୍ମ ନେବା ମିଛ କଥା । ଅସମ୍ଭବ କଥା । ତେଣୁ ପରୀକ୍ଷିତଙ୍କର ଦେହ ଛାଡ଼ିବା ବେଳେ ଧାରଣା ନ ରହୁ ଯେ

ସେ ଆତ୍ମା ସମ୍ବନ୍ଧୀୟ ବା ଆତ୍ମାଙ୍କର କିଛି ଅବିଚ୍ଛେଦ୍ୟ ଅଂଶ ଛାଡ଼ି ଯାଉଛନ୍ତି । କାରଣ ଆତ୍ମାଙ୍କର ଦେହ ସହିତ ସଂପର୍କ ଅସ୍ଥାୟୀ କିଛି ସମୟ ପାଇଁ କେବଳ । ତାଙ୍କର ଅସଲି ସଂପର୍କ କେବଳ ତାଙ୍କ ଭଳି ସଚ୍ଚିଦାନନ୍ଦ ମୟ ପରମାତ୍ମାଙ୍କ ସହିତ । ଏତିକି ବୁଝାଇଦେଲେ ବିନା ସଙ୍କୋଚ, ଦ୍ୱିଧାରେ ରାଜା ଦେହ ଆସକ୍ତିରୁ ସଂପୂର୍ଣ୍ଣ ମୁକ୍ତ ହେବେ । ଶୁକଦେବଜୀ ଏହି ଲକ୍ଷ୍ୟରେ ସେ ଶ୍ଳୋକଟି ସେଠାରେ ଉପସ୍ଥାପନ କରିଛନ୍ତି ।

ଦୃଶ୍ୟମାନ ଦେହ ଜରାଗ୍ରସ୍ତ ହୁଏ ଓ ଦିନେ ନା ଦିନେ ମୃତ୍ୟୁ ମୁଖରେ ପଡ଼ି ଅଦୃଶ୍ୟ ହୁଏ ସତ କିନ୍ତୁ ଆତ୍ମା ଅଦୃଶ୍ୟରେ ରହି ସକଳ କର୍ମ କରିଥାଏ । ଅଦୃଶ୍ୟ ଭାବରେ ଅତର୍କିତ ରୂପେ ଦେହ ତ୍ୟାଗ କରି ପଳାୟନ କରିବା ।

ଆଦୌ ଦୁଃଖଦ ଘଟଣା ନୁହେଁ । ସ୍ୱପ୍ନରେ ଜଣେ ଦେଖେ ଯେ ତାକୁ ଏକ ବାଘ ଖାଇଗଲା । ସେ ମରିଗଲା (ପଞ୍ଚତ୍ୱ-ଆଦି) । ବାଘ ତା ଶରୀରକୁ ଖାଇବା ସେ ଦେଖେ କିପରି ? ସେ ଦେହ ଠାରୁ ପୃଥକ ବୋଲି ସିନା ଦେହଠାରୁ ସ୍ୱତନ୍ତ୍ର ଭାବରେ ଦୂରରେ ରହି ଏହା ଦେଖେ ।

ପ୍ରଶ୍ନ-୪୩: ବିବେକ, ବୈରାଗ୍ୟ, ଭକ୍ତିର ଅନୁଭବ ହେଲେ ଶୁଖିଲା ନଡ଼ିଆ ଭିତରେ ଥାଇ ଷଢ଼େଇଠାରୁ ନଡ଼ିଆ ଅଲଗା ହେବା ଭଳି ଦେହର ପୃଥକ୍ ପଣିଆ ଅନୁଭବ ହୁଏ । ଗୋଟିଏ ଦେହ ଓ ଆତ୍ମାଙ୍କର ବିଚ୍ଛେଦ ହିଁ କେବଳ ମୃତ୍ୟୁ । ସମ୍ବାଳୁଆ ପୋକରୁ ପ୍ରଜାପତି ଉଡ଼ି ପଳାଇବା ସଦୃଶ ଆତ୍ମା ମର ଦେହ ତ୍ୟାଗ କରି ଦିବ୍ୟ ଦେହ ଧରି ଦିବ୍ୟ ଜଗତରେ ଚଲାବୁଲା କରେ । ଦିବ୍ୟ ଚିନ୍ମୟ ଆତ୍ମାଙ୍କର ଏହି ଦେହରୁ ଦେହାନ୍ତର, ଲୋକରୁ ଲୋକାନ୍ତର ଗମନ କ୍ରିୟାକୁ କଳସିଟିଏ ଭାଙ୍ଗିଗଲେ ଘଟାକାଶ ପଟାକାଶଙ୍କର ମିଳନ ବା ଜୀବ ପରମ ମିଳନ ବୋଲି ବେଦଶାସ୍ତ୍ରାଦି ଦୃଷ୍ଟାନ୍ତ ଦେଇ ବୁଝାନ୍ତି ।

ସ୍ଥୂଳ ଦେହ ଓ ସୂକ୍ଷ୍ମ ମନ, ବୁଦ୍ଧି, ଚିତ୍ତ ଓ ଅହଂକାର ସମସ୍ତଙ୍କଠାରୁ ସଂପୂର୍ଣ୍ଣ ଭିନ୍ନ ତତ୍ତ୍ୱ ଏହି ଆତ୍ମା (ପରଃ) କେବଳ ଅନନ୍ତ, ଅସୀମ, ନିର୍ଲିପ୍ତ ମହାକାଶର ଶୂନ୍ୟତା ସହିତ ଉପମେୟ ବା ତୁଳନୀୟ । ଚତୁର୍ବ୍ୟୂହ ତତ୍ତ୍ୱରେ ତାଙ୍କ ନାମ ବାସୁଦେବ (ବାସୁଦେବ, ସଂକର୍ଷଣ, ପ୍ରଦ୍ୟୁମ୍ନ ଓ ଅନିରୁଦ୍ଧ) ।

ସାତ ଦିନ ଶ୍ରଦ୍ଧା ବିଶ୍ୱାସ ସହିତ ଭାଗବତ ଶ୍ରବଣ ପରେ ଧ୍ୟାନ ଦ୍ୱାରା ବାସୁଦେବଙ୍କୁ ସ୍ମରଣ କରୁଥିଲେ ନିଶ୍ଚୟ ଏ ଅନୁଭବ ରାଜାଙ୍କର ହୋଇ ସାରିବଣି ବୋଲି ଶୁକଦେବଜୀ କିପରି ଜାଣିପାରିଲେ ?

॥ ଅପଣ୍ଡିତ ଦାମୋଦର ବଳୀୟାରସିଂହ ॥

**ଚୋଦିତୋ ବିପ୍ରବାକ୍ୟେନ ନ ତ୍ୱାଂ ଧକ୍ଷ୍ୟତି ତକ୍ଷକଃ ।**
**ମୃତ୍ୟବୋ ନ-ଉପଧକ୍ଷ୍ୟନ୍ତି ମୃତ୍ୟୁନାଂ ମୃତ୍ୟୁଂ ଈଶ୍ୱରମ୍ ।।୧୦।।**

ଉ. କାମ, କ୍ରୋଧ ଆଦି ଛଅ ଦୂତ ଯମରାଜ ମୃତ୍ୟୁଙ୍କର ବୋଲି କୁହାଯାଏ । ଏମାନେ ମନୁଷ୍ୟର ସୂକ୍ଷ୍ମ ଶରୀରରେ ଆଡ୍ଡା ଜମାନ୍ତି । ଶ୍ରୀ ଶୁକଦେବ ପରମହଂସ ତାଙ୍କ ଦିବ୍ୟ ଶକ୍ତି ବଳରେ ରାଜା ପରୀକ୍ଷିତଙ୍କ ସୂକ୍ଷ୍ମ ଶରୀରକୁ ସ୍ପଷ୍ଟ ରୂପେ ଦେଖିପାରୁଥିଲେ । ଆଜନ୍ମ କୃଷ୍ଣ-ଭକ୍ତ ରାଜା ପରୀକ୍ଷିତଙ୍କୁ ସଂପୂର୍ଣ୍ଣ ନିର୍ଭୀକ ହୋଇସାରିଥିବା ଦେଖି ମୃତ୍ୟୁକଥା ମନେ ପକାଇଦେଲେ । କହିଲେ, ‘‘ହେ ରାଜନ, ଶୃଙ୍ଗୀ ଋଷିଙ୍କ ଅଭିଶାପ ହେତୁ ତକ୍ଷକ ଏଠାକୁ ଆସିବ ନିଶ୍ଚୟ । ତୁମେ କୃଷ୍ଣ କଥା ଶ୍ରବଣ କରୁଛ ବୋଲି ସେ ତୁମ ପାଖ ମାଡ଼ି ପାରୁନାହିଁ । ସେ ଏବେ ଆସିଲେ ମଧ୍ୟ ତୁମଭଳି ଜଣେ ମାୟାତୀତ ଏବଂ ଗୁଣାତୀତ କୃଷ୍ଣ ଭକ୍ତକୁ ଦଂଶନ କରିପାରିବନି । ମୁଁ ଏଠାରୁ ପ୍ରଥମେ ବିଦାୟ ନେବି । ତୁମେ ଆତ୍ମ ସ୍ୱରୂପରେ ଦେହଠାରୁ ପୃଥକ ହୋଇ ଉପରେ ରହିବା ପରେ ତକ୍ଷକ ତୁମ ପାଞ୍ଚଭୌତିକ ଶରୀରକୁ ଅବଶ୍ୟ ଦଂଶନ କରିବ କିନ୍ତୁ ତୁମକୁ ନୁହେଁ । କାରଣ ତୁମେ ଏବେଠାରୁ ମୃତ୍ୟୁର ମୃତ୍ୟୁରୂପୀ ସ୍ୱୟଂ ଭଗବାନ କୃଷ୍ଣଙ୍କ ଦିବ୍ୟ ରାଜ୍ୟରେ ଅବସ୍ଥାନ କଲଣି । ଏବେ ଗୋଟିଏ ମୃତ୍ୟୁ କଅଣ ଗଣ୍ଡା ଗଣ୍ଡା ମୃତ୍ୟୁ (ମୃତ୍ୟବୋ) ଆସିଲେ ମଧ୍ୟ ତୁମର କିଛି କ୍ଷତି କରିପାରିବେ ନାହିଁ ।’’

ପ୍ରଶ୍ନ-୪୪ : ଅନ୍ତଃକରଣରେ କିଭଳି ଶୁଦ୍ଧ କୃଷ୍ଣ ଭାବନା କରି ରାଜା ପରୀକ୍ଷିତ ଏପରି ଉଚ୍ଚ ସ୍ଥିତି ପ୍ରାପ୍ତ ହୋଇଥିଲେ ?

**ଅହଂ ବ୍ରହ୍ମ ପରଂ ଧାମ ବ୍ରହ୍ମ-ଅହଂ ପରମଂ ପଦମ୍ ।**
**ଏବଂ ସମୀକ୍ଷ୍ୟ ଚ ଆତ୍ମାନଂ ଆତ୍ମନି-ଆଧାୟ ନିଷ୍କଳେ ।।୧୧।।**

ଉ. ଆତ୍ମା ଓ ପରମାତ୍ମାଙ୍କୁ ଏକ ଅଦ୍ୱୈତ ଭାବନା କରି ଜ୍ଞାନମାର୍ଗୀ ସାଧନ କରେ ଓ ଶେଷରେ ପହଞ୍ଚେ ଦ୍ୱୈତ ଭାବନାରେ । ନିଜେ ପରମାତ୍ମାଙ୍କଠାରୁ ସ୍ୱତନ୍ତ୍ର ରହି ଭକ୍ତି କରିଥାଏ ଆଦି ଶଙ୍କରଙ୍କ ଭଳି । ଠିକ୍ ଓଲଟ ସାଧନ ଭକ୍ତର । ସେ ଆରମ୍ଭ କରେ ଦ୍ୱୈତରେ ପହଞ୍ଚେ ଅଦ୍ୱୈତରେ ବ୍ରଜର ଗୋପ ଲଳନାଙ୍କ ସଦୃଶ । ଏଠାରେ ଲକ୍ଷ୍ୟ କରାଯାଇ ପାରେ ଯେ ଉଦ୍ଧବଜୀଙ୍କର ଜ୍ଞାନ ସାଧନା ଶଙ୍କରଙ୍କ ଭଳି କିନ୍ତୁ ବସୁଦେବଙ୍କ ସାଧନା ଗୋପୀମାନଙ୍କ ଭଳି ।

ପ୍ରଶ୍ନ-୪୫ : ରାଜା ପରୀକ୍ଷିତ ଆଜନ୍ମ ଭକ୍ତ ପୁଣି ମାତା ଉତ୍ତରାଙ୍କ ଗର୍ଭ

ଆଶ୍ରୟରେ ଥିବା ବେଳଠାରୁ । ତାଙ୍କର ଅନ୍ତଃକରଣ ସଂପୂର୍ଣ୍ଣ ଶୁଦ୍ଧ ହୋଇସାରିଛି (ଆତ୍ମନି ଆଧାୟ ନିଷ୍କଳେ) । ବ୍ରହ୍ମଙ୍କ ନାମ, ରୂପ, ଲୀଳା, ଗୁଣ, ଧାମ ଓ ତାଙ୍କ ଭକ୍ତ ସବୁ ତାଙ୍କ ପାଖରେ ଅଦ୍ୱୈତ ହୋଇସାରିଥାନ୍ତି । ତକ୍ଷକ ସର୍ପ ଏକ କାଳ ସର୍ପ । ଭାଗବତ କୀର୍ତ୍ତନ ବନ୍ଦ ହେଲେ ସେ ନିଶ୍ଚୟ ପ୍ରକଟ ହେବ ରାଜାଙ୍କ ସନ୍ନିକଟରେ । ମରଣାନ୍ତକ ବିଷ ଅନଳ ଧରି ତାଙ୍କ ପାଦରେ ଦଂଶନ କଲେ ରାଜା ଦ୍ୱୈତରେ ଥିବେ ନା ଅଦ୍ୱୈତରେ ଅବସ୍ଥାନ କରୁଥିବେ ସେତେବେଳେ ?

**ଦଶନ୍ତଂ ତକ୍ଷକଂ ପାଦେ ଲେଲିହାନଂ ବିଷ-ଆନନୈଃ ।**
**ନ ଦ୍ରକ୍ଷ୍ୟସି ଶରୀରଂ ଚ ବିଶ୍ୱଂ ଚ ପୃଥକ୍ ଆତ୍ମନଃ ।।୧୨।।**

ଉ.ରାଜା ପରୀକ୍ଷିତ ପ୍ରାଣବାୟୁକୁ ଊର୍ଦ୍ଧ୍ୱକୁ ଟୋଳି ନେଇ ଦେହଠାରୁ ଭିନ୍ନ ହୋଇ ଆତ୍ମା ଭାବରେ ପରମାତ୍ମାଙ୍କ ଆଶ୍ରୟରେ ରହିଥିବେ । ପରମାତ୍ମାଙ୍କ ଦୃଷ୍ଟିରେ ଜଡ଼, ଚେତନ, ଦେବତା, ରାକ୍ଷସ, ଅମୃତ ହଳାହଳ ବିଷ ମଧ୍ୟରେ ପାର୍ଥକ୍ୟ ରହିବ କିପରି ? ସୁତରାଂ ରାଜା ପରୀକ୍ଷିତ ମୃତ୍ୟୁଭୟ ଓ ମୃତ୍ୟୁଠାରୁ କୋଟି କୋଟି କିଲୋମିଟର ଦୂରରେ ରହି ତାଙ୍କ ଦେହ ନଷ୍ଟ ହେବାର ଦୃଶ୍ୟ ଉପଭୋଗ କରିପାରିବେ । ଏହାହିଁ ଭାଗବତଙ୍କର ସାର କଥା । ଅନ୍ୟ ଶବ୍ଦରେ ଜଣେ ବୈଷ୍ଣବଙ୍କ ମୃତ୍ୟୁ ବିଜୟଲୀଳା ।

# ଅଥ ଷଷ୍ଠ ଅଧ୍ୟାୟଃ

## (ବୈଷ୍ଣବ ମୁଖରୁ ଭାଗବତ ଶ୍ରବଣ ଫଳପ୍ରାପ୍ତିର ଦୃଷ୍ଟାନ୍ତ)

ପ୍ରଶ୍ନ-୪୬: ଭଗବାନଙ୍କ କୃପା ହେଲେ ବୈଷ୍ଣବ କୃପା(ହରି କଥା ଶ୍ରବଣ/ କୀର୍ତ୍ତନ ସୁଯୋଗ) ମିଳେ । ବୈଷ୍ଣବ କୃପା କଲେ ବିଷ୍ଣୁ ଦର୍ଶନ ହୁଏ । ପ୍ରାୟତଃ ଲୋକେ ସାଧନ ଭଜନ କରି ଭଗବତ ଦର୍ଶନ କରିଥାନ୍ତି । ତେବେ ତାଙ୍କ ଜନ୍ମ ସଫଳ ହୁଏ । ପରୀକ୍ଷିତ ଜଣେ ଏଭଳି ସାଧକ ଯେ ଜନ୍ମହେବା ପୂର୍ବରୁ ସେ ମା ଉଦରରେ ଥାଇ ହରି ଦର୍ଶନ ପ୍ରାପ୍ତ ଓ ହରି କୃପା ଲବ୍ଧ ଜଣେ ଅସାଧାରଣ ମାନବ । ଜୀବନ ସାରା ବିଷ୍ଣୁ ବୈଷ୍ଣବ ସେବାରେ ମନ, ମୁନ, ଚଇତନ ସବୁ ଲଗାଇଛନ୍ତି । ସୁତାରଂ

ଦେହ ଅବସାନ ବେଳେ ତାଙ୍କୁ ଅଯାଚିତ ବୈଷ୍ଣବ କୃପା ମିଳିଛି । ଶୁକଦେବଜୀ ମଧ୍ୟ ତାଙ୍କୁ ଭାଗବତର ପ୍ରଥମ, ପ୍ରଧାନ ଓ ମୁଖ୍ୟଶ୍ରୋତା ଭାବରେ ପାଇ ନିଜକୁ ଧନ୍ୟ ମନେ କରିଛନ୍ତି । ସାତଦିନ ସାତ ରାତି ଅଖଣ୍ଡ ହରିନାମ ସଂକୀର୍ତ୍ତନ, ଭଜନ ସହିତ ୧୪,୧୦୦ଶ୍ଳୋକ ପ୍ରବଚନ କରି ଚାଲିଛନ୍ତି । ପରୀକ୍ଷିତଙ୍କ ବୟସ ୬୬ବର୍ଷ ସଂସାର ପାଠ ପଢ଼ାରେ ଯାଇଥିଲା । ଏବେ ୭ଦିନ ଧରି ସେ ପରୀକ୍ଷା ଦେଉଥିଲେ । ସତ୍ସଙ୍ଗରେ ଭାଗବତ ଶ୍ରବଣ ବେଳେ ତାଙ୍କ ମନ, ବୁଦ୍ଧି, ଚିତ୍ତ ଓ ଅହଂକାର ଭଗବାନଙ୍କ ଚରଣ କମଳ ଚିନ୍ତନରେ ଥିଲା ନା ଅନ୍ୟ କେଉଁଠାରେ ଥିଲା ବୋଲି ସେ ଏବେ ନିଜ ଉତ୍ତର ଖାତାରେ ଲେଖିଲେ ?

ରାଜା ଉବାଚ

**ସିଦ୍ଧୋଽସ୍ମି-ଅନୁଗୃହୀତୋଽସ୍ମି ଭବତା କରୁଣା-ଆତ୍ମନା ।**
**ଶ୍ରାବିତୋ ଯତ୍ ଚ ମେ ସାକ୍ଷାତ୍ ଅନାଦି ନିଧନୋ ହରିଃ ॥୨॥**

ଉ. ରାଜା କହିଲେ, ‘‘ହେ ଭଗବନ୍, ଆପଣ (ଭବତା) ଆଦି ରହିତ, ଅନ୍ତ ରହିତ (ଅନାଦି ନିଧନୋ) ହରିଙ୍କ କଥା (ତାଙ୍କ ସାକ୍ଷାତ୍ ରୂପରେ) ମୋ ସହିତ ଅନ୍ୟ ୬୬ହଜାର ମୁନି, ଋଷି, ଆପଣଙ୍କ ପିତା (ଗୁରୁ ବ୍ୟାସ), ବ୍ୟାସଙ୍କ ଗୁରୁ ନାରଦ ଆଦିଙ୍କ ସମ୍ମୁଖରେ ଯେଉଁ ଗମ୍ଭୀର ବାତାବରଣ ମଧ୍ୟରେ ଶୁଣାଇଲେ ସେଥିରେ ମୁଁ ସଂପୂର୍ଣ୍ଣ ସିଦ୍ଧି ଲାଭ କରିଛି । ଆପଣଙ୍କ ହୃଦୟ (ଆତ୍ମନା) ସଦା କରୁଣାମୟ (ବାଞ୍ଛାକଳ୍ପତରୁ ବୈଷ୍ଣବମାନେ କୃପାସିନ୍ଧୁ ହେବା ହେତୁ) । ସ୍ୱାଭାବିକ ଭାବରେ ଆପଣ ମୋତେ ଓ ମୋର ପ୍ରଜାବର୍ଗଙ୍କୁ ଅନୁଗୃହୀତ କରିବା ଆଦୌ ଆଶ୍ଚର୍ଯ୍ୟର କଥା ବୋଲି ମୁଁ ମନେ କରୁନାହିଁ ।’’

ପ୍ରଶ୍ନ-୪୭: ସାତଦିନ ସାତରାତି ଅଖଣ୍ଡ ହରି ନାମ, ଗୁଣ, ଲୀଳା, କୀର୍ତ୍ତନରେ କି ଅଲୌକିକ, ଅନୁଭୂତି ରାଜା ପରୀକ୍ଷିତ ସତ୍ସଙ୍ଗ ମଣ୍ଡଳୀଙ୍କୁ ନିବେଦନ କଲେ ?

**ଭଗବନ୍ ତକ୍ଷକ-ଆଦିଭ୍ୟୋ ମୃତ୍ୟୁଭ୍ୟୋ ନ ବିଭେମି-ଅହମ୍ ।**
**ପ୍ରବିଷ୍ଟୋ ବ୍ରହ୍ମ ନିର୍ବାଣଂ ଅଭୟଂ ଦର୍ଶିତଂ ତ୍ୱୟା ॥୫॥**

ଉ. ପରୀକ୍ଷିତ ପୁରା ସତ୍ସଙ୍ଗ ମଣ୍ଡଳୀକୁ ଶୁଣାଇ କହିଲେ, ‘‘ହେ ଭଗବନ୍ ମୋତେ ଶ୍ରୀକୃଷ୍ଣଙ୍କ ଆଶ୍ରୟ (ବ୍ରହ୍ମ ନିର୍ବାଣ) ମିଳିଗଲାଣି । ମୋତେ ଏ ବାହ୍ୟ ସଂସାର ଆଉ ଆଦୌ ଅନୁଭବରେ ଆସୁନାହିଁ । ମୁଁ ବର୍ତ୍ତମାନ ପରଂବ୍ରହ୍ମ ଆଶ୍ରିତ । ତକ୍ଷକ ମୃତ୍ୟୁ

ରୂପରେ ଆସନ୍ତୁ ବା ଅନେକ ମୃତ୍ୟୁଙ୍କୁ ସାଙ୍ଗରେ ଆଣି ଆସନ୍ତୁ ମୋତେ ସ୍ପର୍ଶ କରି ପାରୁ ନାହାନ୍ତି କିମ୍ବା ମୋ ପାଖ ମାଡୁନାହାନ୍ତି । କାରଣ ହେଲା ଶ୍ରୀମତ୍ ଭାଗବତ ସତ୍‌ସଙ୍ଗ ଚାଲିଛି । ଗୁରୁଦେବ ଆପଣ ଅଛନ୍ତି ବୋଲି ।''

ପ୍ରଶ୍ନ-୪୮ : ଏବେ ବଡ଼ ଅଡୁଆ କଥା ହେଲା । ଶୃଙ୍ଗୀ ଋଷିଙ୍କ ବ୍ରହ୍ମଶାପ ଫଳବତୀ ହେବ କେମିତି ?

**ଅନୁଜାନୀହି ମାଂ ବ୍ରହ୍ମନ୍ ବାଚଂ ଯଚ୍ଛାମି-ଅଧୋକ୍ଷଜେ ।**
**ମୁକ୍ତ କାମ-ଆଶୟଂ ଚେତଃ ପ୍ରବେଶ୍ୟ ବିସୃଜାମି-ଅସୂନ ॥୬॥**

ଉ. ରାଜାଙ୍କୁ ଭଗବାନଙ୍କ ଇଚ୍ଛା ପୂରଣ କରିବାର କାଇଦା ଭଲ ଭାବରେ ଜଣା । ସେ ଶୁକଦେବଙ୍କୁ କହିଲେ, ''ମୋତେ ଅନୁମତି ଦିଅନ୍ତୁ (ଅନୁଜାନୀହି ମାଂ), ଭଗବତ୍ ବାଣୀ ଶ୍ରବଣ ବିଶ୍ରାମ ଦେବା ପାଇଁ । ମୁଁ ମୋର ଚିତ୍ତରୂପକ କାମନାଗ୍ରନ୍ଥୀକୁ ନିର୍ଗ୍ରନ୍ଥ କରିବି ଓ ପ୍ରାଣତ୍ୟାଗ କରିବି (ବିସୃଜାମି ଅସୂନ୍) ।

ପ୍ରଶ୍ନ-୪୯ : ରାଜା ପରୀକ୍ଷିତଙ୍କ ଅବିଦ୍ୟାମାୟା ଓ ବିଦ୍ୟାମାୟା ଉଭୟ ନଷ୍ଟ (ଅଜ୍ଞାନଂ ଚ ନିରସ୍ତ ମେ) ହୋଇଗଲା ଓ ଭଗବତ ତତ୍ତ୍ୱଜ୍ଞାନ ସହିତ ଭାଗବତ ବର୍ଣ୍ଣିତ ନିଷ୍କାମ ଭକ୍ତି ମଧ୍ୟ ମିଳିଗଲା କେଉଁ ଅଭୁତପୂର୍ବ ଓ ଅଶ୍ରୁତ ପୂର୍ବ କଲ୍ୟାଣକାରୀ (କ୍ଷେମଂ) ଚିଜଟି ଦର୍ଶନ କରିବାରୁ (ଦର୍ଶିତ ମେ) ?

**ଅଜ୍ଞାନଂ ଚ ନିରସ୍ତଂ ମେ ଜ୍ଞାନ ବିଜ୍ଞାନ ନିଷ୍ଠୟା ।**
**ଭବତା ଦର୍ଶିତ କ୍ଷେମଂ ପରଂ ଭଗବତଃ ପଦମ୍ ॥୭॥**

ଉ. ରାଜା ପରୀକ୍ଷିତ ବିନମ୍ରତାର ସହିତ ନିବେଦନ କରି କହିଲେ, ''ଭଗବନ୍, ମୋତେ ପ୍ରଭୁ ଶ୍ରୀକୃଷ୍ଣଙ୍କ ଚରଣ କମଳ (ଭଗବତଃ ପଦମ୍) ଦିଶିଲାଣି ।''

ମୁନିଋଷିମାନେ ଯେଉଁ ଚରଣ କମଳର ଝଲକ ଟିକିଏ ଦର୍ଶନ କରିବାକୁ ଘରଦ୍ୱାର, ରାଜମହାରାଜାମାନେ ରାଜସିଂହାସନ ଆଦି ତ୍ୟାଗ କରି ବଣରେ ବୁଲନ୍ତି । କୁଡ଼ିଆରେ ରହନ୍ତି । ବଣ ଫଳ ମୂଳ ଖାଇ, ଝରଣା ଜଳ ପିଇ, ମଶା, ମାଛି, ହିଂସ୍ର, ବାଘ ସିଂହଙ୍କ ଭୟକୁ ଖାତିର ନକରି କୋଟି କୋଟି ବର୍ଷ, ଜନ୍ମ ଜନ୍ମାନ୍ତର ଧରି ତପସ୍ୟା କରିଥାନ୍ତି ସେହି ଦିବ୍ୟ ଚରଣ କମଳକୁ କେବଳ ସାତଦିନ ଭାଗବତ ଶ୍ରବଣ କରି ପ୍ରାପ୍ତ ହେବା କ'ଣ କମ୍ ଗୌରବର ଏବଂ ଆଶ୍ଚର୍ଯ୍ୟର କଥା ।

ପ୍ରଶ୍ନ-୫୦ : ସାତ ଦିନ ପରୀକ୍ଷା ଖାତାରେ ରାଜା ପରୀକ୍ଷିତ କଅଣ ଲେଖିଛନ୍ତି

ତାହା ଖୋଲାଖୋଲି ସଭାରେ କହିଦିଅନ୍ତେ (ଇତି ଉକ୍ତଃ) ବକ୍ତା ମହାଶୟ ପରମହଂସ ଚୂଡ଼ାମଣି ଶୁକଦେବଜୀ (ବାଦରାୟଣିଃ) ପରୀକ୍ଷିତଙ୍କ କ'ଣ ପାସ୍ ଫେଲ କିଛି ଘୋଷଣା କଲେ କି ?

ସୁତ ଉବାଚ

**ଇତି-ଉକ୍ତଃ ତଂ ଅନୁଜ୍ଞାପ୍ୟ ଭଗବାନ୍ ବାଦରାୟଣିଃ ।**
**ଜଗାମ ଭିକ୍ଷୁଭିଃ ସାକଂ ନରଦେବେନ ପୂଜିତଃ ॥୮॥**

ଉ. ସମଝଦାର ଆଦମିକୋ ଇଶାରା କାଫି ହୈ । ଶୁକଦେବ ପରମହଂସ ଆଦୌ କାଳ ବିଳମ୍ବ ନକରି ତତ୍‌କ୍ଷଣାତ୍ ସତ୍‌ସଙ୍ଗ ପରୀକ୍ଷା ଫଳ ଘୋଷଣା କରିଦେଲେ । ରାଜାଙ୍କୁ 'ପ୍ରସ୍ତୁତି କର' ବୋଲି ଆଦେଶ ଦେଇ (ଅନୁଜ୍ଞାପ୍ୟ) ନିଜ ଆସନରେ ଦଣ୍ଡାୟମାନ ହୋଇଗଲେ ସହର୍ଷ ସଜାଗ ହୋଇ । ପରୀକ୍ଷିତ (ନରଦେବେନ)ତାଙ୍କ ପାଦ ପୂଜନ କଲେ (ପୁଜିତଃ) । ପରୀକ୍ଷିତଙ୍କ ମସ୍ତକରେ ଶୁକଦେବଜୀ ନିଜ ବରଦ ହସ୍ତ ସ୍ଥାପନ କଲେ । ତତ୍‌ସହିତ (ସାକଂ) ସତ୍‌ସଙ୍ଗ ମହାସଭାରେ ଉପସ୍ଥିତ ନାରଦ, ବ୍ୟାସ ଆଦି ସାଧୁସନ୍ଥ, ସନ୍ୟାସୀମାନେ ମଧ ତାଙ୍କ ପୂଜନ କରି କରାଇ ନିଜ ଜୀବନକୁ ଧନ୍ୟ କରିଥିଲେ ।

ଏ ବିଷୟରେ ଭାବୁକ ବକ୍ତା ଗୁଜୁରାଟର ସ୍ୱନାମଧନ୍ୟ ପ୍ରବଚକ ପୂଜନୀୟ ଡ଼େଙ୍ଗାରେଜୀ ମହାରାଜ କୁହନ୍ତି ସେତେବେଳେ ଭାଗବତ ଗ୍ରନ୍ଥ ରଚୟିତା ସ୍ୱୟଂ ବ୍ୟାସଦେବ ନିଜ ପୁତ୍ରଙ୍କ ପାଦତଳେ ପଡ଼ି ସାଷ୍ଟାଙ୍ଗ ପ୍ରଣିପାତ କରିଥିଲେ । ଏକବିଂଶ ଶତାବ୍ଦୀର ଭାଗବତ ପ୍ରବଚକ ବୃନ୍ଦାବନବାସୀ ଆୟୁଷ୍ମାନ ଶ୍ରୀଶ୍ରୀମତ୍ ପୁଣ୍ଡରୀକ ଗୋସ୍ୱାମୀ କହନ୍ତି ଯେ ବ୍ୟାସଦେବଙ୍କ ସହିତ ଥିବା ଅନ୍ୟ ସାଧୁ ସନ୍ଥମାନେ ନିଜ ନିଜ ଢ଼ଙ୍ଗରେ ପ୍ରବକ୍ତା ମହାଶୟଙ୍କୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଜଣାଇଲେ । କେହି ନିଜ ଆସନରୁ ଉଠି ଶୁକଦେବଙ୍କ ଚଲାପଥରେ ନିଜ ନିଜର ଆସନ ପାରିଦେଲେ, କେହି ନିଜ କାନ୍ଧର ଉତ୍ତରୀୟ, ମୁଣ୍ଡର ଠେକା ଫିଟାଇ ଭୂଇଁରେ ପାରିଦେଲେ । କେହି ସାଧୁ ଭୂମି ଉପରେ ଶୋଇପଡ଼ି ତାଙ୍କ ଜଟାଖୋଲି ପାରିଦେଲେ ତ ପୁଣି କେହି ତାଙ୍କ ଲମ୍ବ ଦାଢ଼ିକୁ ଲମ୍ୱେଇ ଦେଲେ ଭାଗବତ ବକ୍ତା ମହାଶୟଙ୍କ ପଦରଜ ଟିକକ ଲୋଭରେ । ଆହୁରି କିଛି ଅକିଞ୍ଚନ ସାଧୁ ସେଥି ମଧ୍ୟରେ ଥିଲେ ଯାହାଙ୍କ ପାଖରେ କିଛି ହେଲେ ଭୌତିକ ଦ୍ରବ୍ୟ ନଥିଲା । ସେମାନେ ଅଧୀର ହୋଇ ନିଜ ମନର କେଉଁ ସନ୍ଧି କଣରେ କିମ୍ବା

ହୃଦୟ କନ୍ଦରରେ ଲୁଚିଥିବା କର୍ମ, ଜ୍ଞାନ, ଭକ୍ତିର ଅହଂକାରକୁ ଭାବ ଭକ୍ତିରେ ସଜାଡ଼ି ପାରିଦେଲେ । ପରମ ବୈଷ୍ଣବ ଭାଗବତ ବକ୍ତାଙ୍କର ଅମୂଲ୍ୟ ଚରଣ ରଜ ପ୍ରାପ୍ତହୋଇ ତାଙ୍କ ଅନ୍ତଃକରଣ ପବିତ୍ର ହେଉ ଏଇ ପ୍ରାର୍ଥନା ସହିତ ମନ୍ତ୍ର ଓ ନିଜ ନିଜ ଇଷ୍ଟ ସ୍ମରଣ କଲେ । ଏହି ପର୍ବର ପରିସମାପ୍ତି ଘଟିଲା ଶୁକଦେବ କିଛି ପଥ ନଗ୍ନ ପାଦରେ ଚାଲିବା ପରେ । ଆସିବା ବେଳେ ଶୁକଦେବଜୀ ହଠାତ୍ ଯେମିତି ଦୃଶ୍ୟମାନ ହୋଇଥିଲେ ଠିକ୍ ସେମିତି ଅଲୌକିକ ଢ଼ଙ୍ଗରେ ଯିବାବେଳେ ମଧ୍ୟ ଅଦୃଶ୍ୟ ହୋଇଗଲେ (ଜଗାମ) ।

ପ୍ରଶ୍ନ-୫୧: ରାଜା ପରୀକ୍ଷିତ ସଙ୍ଗେ ସଙ୍ଗେ ସେହି ଗଙ୍ଗାନଦୀ କୂଳରେ ସମସ୍ତଙ୍କ ସମ୍ମୁଖରେ ଉତ୍ତର ଦିଗକୁ ମୁଖ କରି ଦର୍ଭ ଆସନ ବିଛାଇ ପଦ୍ମାସନରେ ଧ୍ୟାନ ମୁଦ୍ରାରେ ଉପବେଶନ କଲେ । ନିଜର ପବିତ୍ର ମନ, ବୁଦ୍ଧି, ଚିତ୍ତକୁ ଶୁଦ୍ଧ ଦାସୋଽହଂ ଅହଂକାର ଦ୍ୱାରା ପ୍ରାଣପବନକୁ ଊର୍ଦ୍ଧ୍ୱମୁଖ କରି ବ୍ରହ୍ମରନ୍ଧ୍ର ଦେଇ ଶରୀରରୁ ବାହାରି ଉପରକୁ ଉଠିଗଲେ । ରାଜାଙ୍କ ସ୍ଥିତି ଦେଖି ମୁନି ଋଷିମାନେ ଦେଖିଲେ ସଂସାରରେ ଏକ ଅତି ବିରଳ ଅଲୌକିକ ଘଟଣା । ପରୀକ୍ଷିତଙ୍କ ଆତ୍ମା ଏବେ ଅପେକ୍ଷା କରିଛନ୍ତି ତକ୍ଷକ ନାଗଙ୍କୁ ନିଜ ଜଡ଼ ଦେହର ଦଂଶନ ଲାଗି । ତକ୍ଷକ ସତ୍‌ସଙ୍ଗ ସଭାକୁ ଗଲାବେଳେ ବାଟରେ ଦେଖିଲେ ମହାସିଦ୍ଧ ତପସ୍ୱୀ ଯୋଗୀରାଜ ମରୀଚି ପୁତ୍ର କଶ୍ୟପ ମୁନିଙ୍କୁ । ତକ୍ଷକ ପଚାରିଲେ ମୁନିଶ୍ରୀଙ୍କୁ ତାଙ୍କ ଗନ୍ତବ୍ୟ ସ୍ଥଳ । ମୁନିଶ୍ରୀ କହିଲେ ଯେ ରାଜା ପରୀକ୍ଷିତଙ୍କୁ ତକ୍ଷକ ସର୍ପ ଦଂଶନ କରିବାର ଅଛି । ସେ ଦଂଶନ କଲାପରେ କଶ୍ୟପ ମୁନି ନିଜ ଅଲୌକିକ ସିଦ୍ଧି ବଳରେ ତାଙ୍କୁ ପୁନଃ ଜୀବନ ଦାନ ଦେଇ କିଛି ପୁରସ୍କାର ଅର୍ଥ ଲାଭ କରିବେ । ତକ୍ଷକ କହିଲେ ମୁନିଙ୍କ ଯୋଜନା ସୁନ୍ଦର ନିଶ୍ଚୟ କିନ୍ତୁ ଅସମ୍ଭବ । କାରଣ ତାଙ୍କ ବିଷର ଜ୍ୱାଳା ଏତେ ପ୍ରବଳ ଯେ ସେଥିରେ ରାଜାଙ୍କର କେବଳ ପ୍ରାଣ ତ୍ୟାଗ ହେବ ନାହିଁ । ତାଙ୍କ ଭୌତିକ ଶରୀର ମଧ୍ୟ ଭସ୍ମ ହୋଇଯିବ । ମୁନିଶ୍ରୀ ତକ୍ଷକଙ୍କୁ ଦେଖାଇଦେଲେ ଏକ ପ୍ରାଣବନ୍ତ ସବୁଜ ପତ୍ର ଶୋଭିତ ବରୁଣ ବୃକ୍ଷକୁ ଦଂଶନ କରି ବିଷ ଜ୍ୱାଳାର ପ୍ରମାଣ ଦେବାକୁ । ସଙ୍ଗେ ସଙ୍ଗେ ତକ୍ଷକ ଦଂଶନ କଲେ ବୃକ୍ଷଙ୍କୁ ମୁନିଙ୍କ ସମ୍ମୁଖରେ । ବୃକ୍ଷଟି ଜଳିପୋଡ଼ି ପାଉଁଶ ଗଦାଏ ହୋଇଗଲା । କଶ୍ୟପ ମୁନି ଏବେ ତାଙ୍କ ମନ୍ତ୍ର ଶକ୍ତି ପୂତ ଜଳ ସିଞ୍ଚନ କରି ବରୁଣ ବୃକ୍ଷକୁ ପୂର୍ବ ଅବସ୍ଥାକୁ ଫେରାଇ ଆଣିଲେ । ଅନ୍ୟ ଉପାୟ ନ ଦେଖି ତକ୍ଷକୁ ତାଙ୍କୁ (ବିଷହାରିଣଂ) ଯଥେଷ୍ଟ ଧନରତ୍ନ ଦେଇ (ତର୍ପୟିତ୍ୱା) ଫେରାଇ ଦେଲେ (ନିବର୍ତ୍ତ୍ୟ) । ପରୀକ୍ଷିତଙ୍କ ଭୌତିକ ଦେହ ନାଶର ଅନ୍ତିମ ପରଦା ଉଠିଲା କିଭଳି ରୋମାଞ୍ଚକର ପରିସ୍ଥିତିରେ ?

॥ ଅପଣ୍ଡିତ ଦାମୋଦର ବଳୀୟାରସିଂହ ॥

**ତଂ ତର୍ପୟିତ୍ୱା ଦ୍ରବିଣୈଃ ନିବର୍ତ୍ୟ ବିଷହାରିଣମ୍ ।**
**ଦ୍ୱିଜରୂପ ପ୍ରତିଛନ୍ନଃ କାମରୂପୋଽଦଶତ୍ନୃପମ୍ ।।୧୨।।**

ଉ. ତକ୍ଷକଙ୍କୁ କାମରୂପ ସିଦ୍ଧି ମିଳିଥିଲା । ସେ ଯେତେବେଳେ ଯେଉଁ ରୂପ ଧାରଣ କରିବାକୁ ଚାହିଁବେ ସେହି ରୂପ ଧରିପାରିବେ । ସେତେବେଳକୁ ରାଜା ପରୀକ୍ଷିତଙ୍କ ପୁତ୍ର ଜନ୍ମେଜୟ କଡ଼ା ପହରାର ବ୍ୟବସ୍ଥା କରିଥିଲେ । ସତ୍‌ସଙ୍ଗର ପ୍ରବଚନ ବିଶ୍ରାମ ହୁଅନ୍ତେ ତାଙ୍କ ପାଖକୁ ସୁରକ୍ଷା କର୍ମୀଙ୍କ ଦ୍ୱାରା ଯାଞ୍ଚ ହୋଇଥିବା ଦୁଗ୍ଧ ଫଳ ଆଦି କେବଳ ଯାଉଥାଏ । ଥାଳି ମଧ୍ୟରେ ଯାଉଥିବା ଗୋଟିଏ ଫଳ ମଧ୍ୟରେ ତକ୍ଷକ କୀଟ ହୋଇ ଲୁଚି ରହିଲେ । ପରୀକ୍ଷିତଙ୍କ ସମ୍ମୁଖରେ ଫଳ ଥାଳି ରଖାଯାଅନ୍ତେ ତକ୍ଷକ ସଙ୍ଗେ ସଙ୍ଗେ ଭୟଙ୍କର କାଳସର୍ପ ରୂପରେ ରାଜାଙ୍କ ଭୌତିକ ଶରୀରକୁ ଜଳାଇ ମୁଠାଏ ପାଉଁଶ କରିଦେଲେ ଓ ତତ୍‌କ୍ଷଣାତ୍ ଅଦୃଶ୍ୟ ହୋଇଗଲେ ।

ପ୍ରଶ୍ନ-୫୨: ଚକ୍ରବର୍ତ୍ତୀ ସମ୍ରାଟ୍ ରାଜର୍ଷି ପରୀକ୍ଷିତଙ୍କ ଶରୀର ଭସ୍ମହେବା ସମ୍ବାଦରେ ସତ୍‌ସଙ୍ଗରେ ଉପସ୍ଥିତ ଦର୍ଶକ ଓ ଦୂରଦୂରାନ୍ତରେ ଥିବା ଶ୍ରୋତାମାନଙ୍କ ମନବୁଦ୍ଧିରେ କି କ୍ରିୟା ପ୍ରତିକ୍ରିୟା ଦେଖାଗଲା ?

**ହାହାକାରୋ ମହାନ୍ ଆସୀତ୍ ଭୁବି ଖେ ଦିକ୍ଷୁସର୍ବତଃ ।**
**ବିସ୍ମିତା ହି-ଅଭବନ୍ ସର୍ବେ ଦେବ-ଅସୁର ନର-ଆଦୟଃ ।।୧୪।।**

ଉ. ଯେଉଁମାନେ ନିଜ ମନ ବୁଦ୍ଧି ଲଗାଇ ବ୍ରହ୍ମଙ୍କୁ ବୁଝିବାକୁ ଚେଷ୍ଟା କରନ୍ତି ସେମାନଙ୍କୁ ଦେହାତ୍ମ୍ୟବାଦୀ କୁହାଯାଏ । ସେମାନେ ଦେବତା, ରାକ୍ଷସ କିମ୍ବା ମନୁଷ୍ୟ ଯାହା ବି ହୁଅନ୍ତୁ । ସେଭଳି ଲୋକମାନେ ଦୁଃଖରେ ଭାଙ୍ଗି ପଡ଼ିଲେ । ଆଶ୍ଚର୍ଯ୍ୟ ଚିତ୍ତରେ ହାହାକାର କରିବାରେ ଲାଗିଲେ ଯେ ପରୀକ୍ଷିତ ରାଜା ଶେଷରେ ମରିଗଲେ !!!

ପ୍ରଶ୍ନ-୫୩: ଭକ୍ତଶ୍ରେଷ୍ଠ ପରୀକ୍ଷିତ ମହାରାଜାଙ୍କ ଅଲୌକିକ ପ୍ରାୟ ଉପବେଶନ ଜନିତ ଭାଗବତ ଶ୍ରବଣ ଧୈର୍ଯ୍ୟ ଓ ସତ୍‌ସଙ୍ଗରେ ପ୍ରାଣତ୍ୟାଗ ଲୀଳାକୁ ଅଧ୍ୟାତ୍ମବାଦୀ ଦୃଷ୍ଟିରେ ବିଚାର କରି ଅନ୍ୟମାନେ ପୁଣି କି ପ୍ରତିକ୍ରିୟା ପ୍ରକାଶ କଲେ ?

**ଦେବ ଦୁନ୍ଦୁଭୟୋ ନେଦୁଃ ଗନ୍ଧର୍ବ-ଅପ୍ସରସୋ ଜଗୁଃ ।**
**ବବୃଷୁଃ ପୁଷ୍ପ ବର୍ଷାଣି ବିବୁଧାଃ ସାଧୁବାଦିନଃ ।।୧୫।।**

ଉ. ଏ ବିଚିତ୍ର ସୃଷ୍ଟିରେ କିଛି ମନୁଷ୍ୟ ସଦ୍‌ଗୁରୁଙ୍କ ଆଶ୍ରୟରେ ରହି ନିଜ ମନ ବୁଦ୍ଧିରେ ଘଟଣାଟିକୁ ବୁଝିବାକୁ ଚେଷ୍ଟା ନକରି ହୃଦୟ ଦେଇ ଦିବ୍ୟ ବୁଦ୍ଧିରେ ଘଟୁଥିବା

ଦୃଶ୍ୟ ସବୁକୁ ଦେଖନ୍ତି । ସେମାନେ ଦେଖିଲେ ଯେ ଏହା ରାଜାଙ୍କ ମରଣ ନୁହେଁ ବରଂ ମରଣ ବିଜୟୀ ଗୋଲକ ଗମନ ଲୀଳା । ସେମାନେ ସମସ୍ତେ ଖୁସିରେ ଡ଼ିଆଁଡ଼େଇଁରେ ମାତିଲେ । ଦେବତାମାନେ ସ୍ୱର୍ଗରେ ଥାଇ ଦୁନ୍ଦୁଭି ବଜାଇଲେ । ଗନ୍ଧର୍ବଗଣ ସ୍ୱର୍ଗୀୟ ସଙ୍ଗୀତ ଗାନ କଲେ । ରମ୍ଭା, ମେନକା, ତିଲୋତ୍ତମା ଆଦି ସ୍ୱର୍ଗ ଅପ୍‌ସରାମାନେ ଆନନ୍ଦରେ ନାଚ ଆରମ୍ଭ କରିଦେଲେ । ଚତୁର ଉଦାର ହୃଦୟ ବୈଷ୍ଣବ ସାଧୁ ସନ୍ଥ ସମାଜ (ବିବୁଧଃ) ଶୁକଦେବଙ୍କର ଜୟ, ରାଜା ପରୀକ୍ଷିତଙ୍କର ଜୟ, ଶ୍ରୀମଦନ ମୋହନ, ରସ ରାସେଶ୍ୱର, ଯଶୋଦାନନ୍ଦନ, ଆନନ୍ଦକନ୍ଦ, ସଚ୍ଚିଦାନନ୍ଦ ଓ ଗୋଲୋକ ବିହାରୀଙ୍କର ଜୟ, ଶ୍ରୀରାଧାଙ୍କର ଜୟ, ଗୋଲୋକଧାମର ଜୟ, ଭକ୍ତି ଧର୍ମର ଜୟ, ବ୍ୟାସଦେବଙ୍କର ଜୟ, ବୃନ୍ଦାବନଧାମର ଜୟ, ବୈଷ୍ଣବ ସମାଜର ଜୟ ଧ୍ୱନି କରି ଗଗନ ପବନ ମୁଖରିତ କରିଦେଲେ ।

ପ୍ରଶ୍ନ-୫୪: ରାଜା ପରୀକ୍ଷିତଙ୍କ ପୁତ୍ର ମୋଟା ବୁଦ୍ଧିଆ ରାଜା ଜନ୍ମେଜୟ ପିତାଙ୍କ ଦେହାବସାନ ଲାଗି ତକ୍ଷକଙ୍କୁ ଦାୟୀ କରି ସର୍ପମାରଣ ଯଜ୍ଞ ଆରମ୍ଭ କଲେ । ଯେଉଁ ସର୍ପନାମ ଧରି ଯଜ୍ଞ ଅନଳରେ ଆହୂତି ଦିଆଗଲା ସେମାନେ ସମସ୍ତେ ଅଗ୍ନିରେ ପତିତ ହୋଇ ଦଗ୍ଧ ହେଲେ । ତକ୍ଷକ ଆତ୍ମରକ୍ଷା ଉଦ୍ଦେଶ୍ୟରେ ଅନ୍ୟ ଉପାୟ ନଦେଖି ଦେବରାଜ ଇନ୍ଦ୍ରଙ୍କ ଶରଣ ପଶିଲେ । ତକ୍ଷକ କାହିଁକି ଯଜ୍ଞ କୁଣ୍ଡରେ ପଡୁନାହାନ୍ତି ବୋଲି ରାଜା ଜନ୍ମେଜୟ  କାରଣ ପଚାରନ୍ତେ ପୁରୋହିତମାନେ ଧ୍ୟାନ କରି ତକ୍ଷକ ଇନ୍ଦ୍ରଙ୍କ ଶରଣ ପଶିଥିବା କଥା ଜଣାଇଲେ । ଜନ୍ମେଜୟ ଜଣେ ଅତ୍ୟନ୍ତ ଚତୁର ରାଜା । ସେ ଆଦେଶ ଦେଲେ ଇନ୍ଦ୍ରାୟ-ତକ୍ଷକାୟ ସ୍ୱାହା କହି ଆହୂତି ଦେବାକୁ । ସେଭଳି ଆହୂତି ଦିଆଗଲା । ଦେଖଗଲା ସ୍ୱର୍ଗ ରାଜ୍ୟ କମ୍ପମାନ ହେଲା । ସମଗ୍ର ଇନ୍ଦ୍ର ସଭାରେ ଉପସ୍ଥିତ ଦେବଗଣ, ତକ୍ଷକଙ୍କ ସହିତ ଇନ୍ଦ୍ରସିଂହାସନରେ ବସି ତଳକୁ ଖସିବାରୁ (ତଂ ପତନ୍ତଂ ବିମାନେନ) ଦେବଗୁରୁ ବୃହସ୍ପତି ଏଭଳି ଅଚଳ ଅବସ୍ଥାକୁ ସମ୍ଭାଳିବାକୁ କି ଉପାୟ କଲେ ?

**ତଂ ପତନ୍ତଂ ବିମାନେନ ସହ ତକ୍ଷକଂ-ଅମ୍ବରାତ୍ ।**
**ବିଲୋକ୍ୟ-ଆଙ୍ଗିରସଃ ପ୍ରାହ ରାଜାନଂ ତଂ ବୃହସ୍ପତିଃ ॥୨୩॥**

ଉ. ଋଷି ଅଙ୍ଗିରସଙ୍କ ପୁତ୍ର ବୃହସ୍ପତି (ଆଙ୍ଗିରସଃ) ସେ ଯଜ୍ଞକୁଣ୍ଡ ନିକଟରେ ପ୍ରକଟ ହେଲେ । ରାଜାଙ୍କୁ ବୁଝାଇଲେ ଯେ ତକ୍ଷକ ସ୍ୱର୍ଗର ଇନ୍ଦ୍ରଙ୍କ ଅଧୀନସ୍ଥ ଜଣେ ପ୍ରଜା । ସ୍ୱର୍ଗ ଅମୃତ ପାନ କରି ସେ ଅଜର ଅମର ହୋଇସାରିଛି । କୌଣସି ଜୀବର ସୁଖ ଦୁଃଖର କାରଣ ତାର ନିଜ କୃତକର୍ମର ଫଳ । ଅନ୍ୟ କେହି କିପରି ଜଣକର

ଅସମୟରେ ଜନ୍ମ-ମରଣର କାରଣ ହୋଇପାରିବ । ରାଜା ଜନ୍ମେଜୟଙ୍କ ପିତାଙ୍କ ଦେହ ନଷ୍ଟର କାରଣ ତାଙ୍କ ନିଜ କର୍ମଫଳ । ତକ୍ଷକ କେବଳ ପରମେଶ୍ୱରଙ୍କ ଅକାଟ୍ୟ ନିୟମର ହୁକୁମ ତାଲିମ କରିଛନ୍ତି । ଋଷିଙ୍କ ଅବ୍ୟର୍ଥ ବ୍ରହ୍ମଶାପକୁ ଫଳଦାୟୀ କରାଇ । କାହାରି ମୃତ୍ୟୁବେଳେ ସର୍ପ, ଅଗ୍ନି, ବିଜୁଳି, ବ୍ୟାଧି ଇତ୍ୟାଦି କାହାକୁ ନିର୍ଦ୍ଦୋଷରେ ମାରିପାରନ୍ତି ନାହିଁ । ସେମାନେ ଶ୍ରୀମନ୍ ନାରାୟଣଙ୍କ ମାୟାରେ ଯମ ରାଜାଙ୍କ ଦୂତ ରୂପରେ ନିମିତ୍ତ ମାତ୍ର ହୋଇ ଆସନ୍ତି । କାମ ସାରି ନିଜ ନିଜ ସ୍ଥାନକୁ ପୁଣି ବାହୁଡ଼ି ଯାଆନ୍ତି ।

ପ୍ରଶ୍ନ-୫୫: ରାଜା ଜନ୍ମେଜୟ ବୃହସ୍ପତିଙ୍କ ଉଚିତ ଆଧ୍ୟାତ୍ମିକ ପରାମର୍ଶରେ ନିର୍ଦ୍ଦୋଷ ସର୍ପମାନଙ୍କୁ ମାରିବା ଯଜ୍ଞ ବନ୍ଦ କରିଦେଲେ । ସୂତ ଗୋସ୍ୱାମୀ ଏ ବିଚିତ୍ର କାଣ୍ଡ କାରଖାନା ବିଷୟରେ ଶୌନକ ଆଦି ମୁନି ମାନଙ୍କୁ କି ସତର୍କବାଣୀ ଶୁଣାଇଲେ ?

**ସା-ଏଷା ବିଷ୍ଣୋଃ ମହାମାୟା ଅବାଧ୍ୟୟା-ଅଲକ୍ଷଣା ଯୟା ।**
**ମୁହ୍ୟନ୍ତି-ଅସ୍ୟ-ଏବ-ଆତ୍ମଭୂତା ଭୂତେଷୁ ଗୁଣବୃତ୍ତିଭିଃ ॥୨୯॥**

ଉ. ସୂତଜୀ କହିଲେ, ''ହେ, ଶୌନକଜୀ, ଦେଖିଲେ ତ ଅନିରୁଦ୍ଧ ଶକ୍ତି (ଅବାଧ୍ୟୟା), ଅଦୃଶ୍ୟ (ଅଲକ୍ଷଣା) ଶ୍ରୀ ନାରାୟଣଙ୍କ ମହାଶକ୍ତିର କମାଲ୍ । ପରୀକ୍ଷିତଙ୍କ ଜ୍ୟେଷ୍ଠ ପୁତ୍ର ବିଷ୍ଣୁ ଭକ୍ତ ଜନ୍ମେଜୟ ମଧ୍ୟ କିଭଳି ମାୟା ଜାଲରେ ପଡ଼ି ନିନ୍ଦିତ କର୍ମରେ ପ୍ରବୃତ୍ତ ହୋଇଗଲେ ।''

ପ୍ରଶ୍ନ-୫୬: ଶୌନକ ଆଦି ଋଷିମାନେ ବିଷ୍ଣୁମାୟାଙ୍କୁ ପ୍ରତ୍ୟକ୍ଷ କରି ତା କବଳରୁ ଜୀବ ରକ୍ଷା ପାଇବାର କି ଉପାୟ ବତାଇଲେ ?

**ତେ ଏତତ୍ ଅଧିଗଚ୍ଛନ୍ତି ବିଷ୍ଣୋଃ ଯତ୍ ପରମଂ ପଦମ୍ ।**
**ଅହଂ ମମ-ଇତି ଦୌର୍ଜନ୍ୟଂ ନ ଯେଷାଂ ଦେହ ଗେହଜମ୍ ॥୩୩॥**

ଉ. ବୈଷ୍ଣବମାନେ ନିଜ ଦେହ ଗୃହକୁ ମୁଁ ମୋର (ଅହଂ ମମ-ଇତି) ମାନିବା ମନର ଦୂଷିତ ଅବସ୍ଥା । ସେଇ ଶ୍ରୀମନ୍ ନାରାୟଣଙ୍କ ଚରଣ କମଳକୁ ମନରେ ନିରନ୍ତର ଧ୍ୟାନ କଲେ ସେମାନେ ଏ ମାୟାରୁ ପାର ହୋଇଯାଆନ୍ତି (ତେ ଏତତ୍ ଅଧିଗଚ୍ଛନ୍ତି) ।

ପ୍ରଶ୍ନ-୫୭: ସ୍ଥୂଳ ଶରୀରରେ, ଭୌତିକ ଗୃହରେ ବୈଷ୍ଣବକୁ ତ ପୁଣି ସଂସାର ଚଳାଇବାକୁ ପଡ଼ିବ । ସେତେବେଳେ ଜଣେ ବୈଷ୍ଣବ ସଂସାର ସହ କିଭଳି ଆଚାର ବ୍ୟବହାର କରିବ ?

**ଅତିବାଦାନ୍ ତିତିକ୍ଷେତ ନ-ଅବମନ୍ୟେତ କଞ୍ଚନ ।**
**ନ ଚ-ଇମଂ ଦେହଂ ଆଶ୍ରିତ୍ୟ ବୈରଂ କୁର୍ବୀତ କେନଚିତ୍ ॥୩୪॥**

ଉ. ବୈଷ୍ଣବକୁ ସଂସାରର ସମସ୍ତଙ୍କର କାୟିକ, ମାନସିକ, ବାଚିକ ଅପମାନ, ଅତ୍ୟାଚାର ଆଦିକୁ (ଅତିବାଦାନ୍) ପ୍ରଭୁଙ୍କ ପ୍ରସାଦ ବା ନିଜର ପୂର୍ବ କର୍ମର ଫଳ ବୋଲି ମୁଣ୍ଡପାତି ସହିବାକୁ ହେବ (ତିତିକ୍ଷେତ) । ଅନ୍ୟ ପକ୍ଷରେ ନିଜେ ସେଭଳି ବ୍ୟବହାର ଅନ୍ୟ କାହାପ୍ରତି ଦେଖାଇବ ନାହିଁ ( ନ ଅବମେନ୍ୟତ) । କାରଣ ସମସ୍ତଙ୍କ ମଧ୍ୟରେ ନିଜ ଇଷ୍ଟ ବିଦ୍ୟମାନ । ଶେଷରେ ମଶା, ମୂଷା, ଉଇ, ଓଡ଼ଶ, ସର୍ପ, ବ୍ୟାଘ୍ରମାନଙ୍କ ସହିତ ଶତ୍ରୁତା ଆଚରଣ ନକରି ନିଜକୁ ଯଥା ସାଧ୍ୟ ଦୂରେଇ ରଖିବ । ବରଂ ନିଜେ ଅତି ସତର୍କ ହୋଇ ଚଳିବ । ସେମାନଙ୍କ ପ୍ରତି ଆଦୌ ହିଂସା କରିବ ନାହିଁ । ତାହା ହିଁ ଭାଗବତ ଧର୍ମର ସାରତତ୍ତ୍ୱ । ସଗୁଣ ସାକାର ବ୍ରହ୍ମଙ୍କର ଆଶ୍ରୟ ପ୍ରାପ୍ତି ।

ପ୍ରଶ୍ନ-୫୮ : ଶ୍ରୀମଦ୍ଭାଗବତଙ୍କର ଶୁକ ପରୀକ୍ଷିତ ସମ୍ବାଦ ସମାପ୍ତି ଘୋଷଣା କଲେ ବକ୍ତାଶ୍ରୀ ସୂତ ଗୋସ୍ୱାମୀ ନିଜେ କିଭଳି ଅମୃତ ଭାବନା ଯୁକ୍ତ ହୋଇ ?

**ନମୋ ଭଗବତେ ତସ୍ମୈ କୃଷ୍ଣାୟ-ଅକୁଣ୍ଠ ମେଧସେ ।**
**ଯତ୍ପାଦ-ଅମ୍ବୁରୁହ ଧ୍ୟାନାତ ସଂହିତାଃ ଅଧ୍ୟଗାଂ ଇମାମ୍ ॥୩୫॥**

ଉ. ଯେଉଁ ଅନବରୁଦ୍ଧ ଅସରନ୍ତି ଶୁଦ୍ଧ ବୁଦ୍ଧି ଯୁକ୍ତ (ଅକୁଣ୍ଠ ମେଧସେ) ଶ୍ରୀକୃଷ୍ଣ ଚନ୍ଦ୍ରଙ୍କର ପଦକମଳ ଧ୍ୟାନ କରି ଏହି ଭୟଙ୍କର ଭବ ଆସକ୍ତିକୁ ସମ୍ୟକ ବା ସଂପୂର୍ଣ୍ଣ ଜୟ କରିହୁଏ ସେ ସେଇ ପରମହଂସ ସଂହିତାକୁ ଯଥାମତି ଯଥାଶକ୍ତି ପଠନ ପାଠନ କରିଥିଲେ । ପୁଣି ଯେଉଁ ସଦ୍‌ଗୁରୁଙ୍କର କୃପାହେତୁ ସୂତ ଗୋସ୍ୱାମୀ ୮୮ହଜାର ଋଷି ମଣ୍ଡଳୀ ମଧ୍ୟରେ ନୈମିଷାରଣ୍ୟରେ ସାତଦିନ ଭାଗବତ ଗ୍ରନ୍ଥଙ୍କୁ ପ୍ରବଚନ କରି ଶୁଣାଇବାରେ ସମର୍ଥ ହେଲେ ତାଙ୍କରି ଚରଣ କମଳଦ୍ୱୟଙ୍କୁ ଧ୍ୟାନ କରି ଭାଗବତ ଶ୍ରୋତା ମଣ୍ଡଳୀଙ୍କୁ ସେ ବିନମ୍ର ଓ ସଭକ୍ତିକ ନମସ୍କାର କରିଛନ୍ତି ।

ପ୍ରଶ୍ନ-୫୯ : ଯେଉଁ ସାଧକମାନେ ଶ୍ରୀକୃଷ୍ଣଙ୍କର ମାଧୁର୍ଯ୍ୟ ପ୍ରତି ଆକୃଷ୍ଟ ନହୋଇ ତାଙ୍କ ଭଗବତ୍ତା ବା ଅଲୌକିକ ଐଶ୍ୱର୍ଯ୍ୟ ପ୍ରତି ଆକୃଷ୍ଟ ହୁଅନ୍ତି ସେମାନଙ୍କୁ ଭକ୍ତି ରଶିରେ ବାନ୍ଧିବା ଲାଗି ମହାବୈକୁଣ୍ଠ ବିହାରୀ ନାରାୟଣଙ୍କର ସୁନ୍ଦର ବିଧାନ କରାଯାଇଛି ଶ୍ରୀମଦ୍ଭାଗବତ ଶାସ୍ତ୍ରରେ । ମହାତ୍ମାମାନେ ଭାଗବତଙ୍କୁ ବେଦବୃକ୍ଷର ସ୍ୱୟଂ ପତିତ

ପରିପକ୍ୱ ଫଳ କହନ୍ତି । ସେ ବେଦବୃକ୍ଷ କିଭଳି ଭାବରେ ଅଙ୍କୁର, ମୂଳ, ଶାଖା, ପ୍ରଶାଖା, ପତ୍ର, ପୁଷ୍ପ, ମକରନ୍ଦ, ଫଳ ଆଦିରେ ରୂପାନ୍ତରିତ ହୋଇଛି ବୋଲି ପ୍ରଶ୍ନ କରନ୍ତେ ସୂତ ଗୋସ୍ୱାମୀ କି ଉତ୍ତର ଦେଲେ ?

ସୂତ ଉବାଚ

**ତତୋଽଭୂତ୍ ତ୍ରିବୃତ୍ ଓଁକାରୋ ଯୋଽବ୍ୟକ୍ତ ପ୍ରଭବଃ ସ୍ୱରାଟ୍ ।**
**ଯତ୍‌ଲିଙ୍ଗଂ ଭଗବତୋ ବ୍ରହ୍ମଣଃ ପରମାତ୍ମନଃ ।।୩୯।।**

ଉ. ଯେତେବେଳେ ଏ ଦୃଶ୍ୟମାନ ସୃଷ୍ଟି ନଥିଲା, କେବଳ ଶ୍ରୀମନ୍ ନାରାୟଣଙ୍କ ନାଭି କମଳରୁ ଦିବ୍ୟ ପଦ୍ମପୁଷ୍ପର ଉଦ୍ଭବ ହୋଇଥିଲା ସେତେବେଳେ ପଦ୍ମଯୋନି ବ୍ରହ୍ମା ସେଇ ପୁଷ୍ପ ଉପରେ ବସି ଓଁ ଶବ୍ଦ ଉଚ୍ଚାରଣ କରିଥିଲେ । ଓଁ ଶବ୍ଦ ଅ-ଉ-ମ୍ ତିନି ବର୍ଣ୍ଣରେ ବିଭାଜିତ ହୋଇ ଋକ୍, ଯଜୁଃ ଓ ସାମ ତିନି ବେଦ ସଂହିତା ଉତ୍ପନ୍ନ ହେଲେ । ସେଇ ଅଲୌକିକ ବେଦ ବାଣୀ ବର୍ଣ୍ଣନ କଲେ ବ୍ରହ୍ମ, ପରମାତ୍ମା ଓ ଭଗବାନଙ୍କର ତିନି ସ୍ୱରୂପ । ତାଙ୍କୁ ପାଇବାର ତିନି ମାର୍ଗ (କର୍ମମାର୍ଗରେ ବ୍ରହ୍ମ, ଜ୍ଞାନ ମାର୍ଗରେ ପରମାତ୍ମା ଓ ଭକ୍ତି ମାର୍ଗରେ ଭଗବାନ) ବେଦ ଦର୍ଶିତ ତିନି ସତ୍‌ମାର୍ଗ । ଅନ୍ୟ ଯେତେ ମାର୍ଗ କଥା ପୁରାଣ, ଶାସ୍ତ୍ର, ସଂହିତା, ଦର୍ଶନ ଶାସ୍ତ୍ରରେ ଦର୍ଶାଯାଇଛନ୍ତି ସେ ସବୁ ମହାପୁରୁଷମାନଙ୍କ ପ୍ରଦର୍ଶିତ ଉପମାର୍ଗ ଯେଉଁ ମାର୍ଗମାନେ ଏଇ ତିନି ମାର୍ଗ ମଧ୍ୟରୁ କୌଣସି ନା କୌଣସି ଗୋଟିଏ ମାର୍ଗରେ ସାଧକକୁ ପହଞ୍ଚାଇ ଦେଇ ପାରିବେ ।

ଭଗବତ୍ ପ୍ରାପ୍ତିର କେବଳ ତିନୋଟି ମାର୍ଗ କାହିଁକି ହୋଇପାରିବ ଚତୁର୍ଥ ମାର୍ଗ ଅସମ୍ଭବ ଏ ପ୍ରଶ୍ନର ଉତ୍ତରରେ ମହାତ୍ମାମାନେ କହନ୍ତି ଯେ ଯେହେତୁ ମନୁଷ୍ୟର ଶରୀର ତିନୋଟି ଓ ଲକ୍ଷ୍ୟ ମଧ୍ୟ ତିନୋଟି ଅତଏବ ଚତୁର୍ଥ ମାର୍ଗ ଆସିବ କୁଆଡୁ ? ସ୍ଥୂଳ ଶରୀର ଆଧାରରେ ସାଧନା କରି କର୍ମଯୋଗୀ ବ୍ରହ୍ମ ଅନୁଭବ କରେ, ସୂକ୍ଷ୍ମ ଶରୀର ଆଧାରରେ ଜ୍ଞାନଯୋଗୀ ପରମାତ୍ମାଙ୍କ ଆନନ୍ଦ ଅନୁଭବ କଲାବେଳେ କାରଣ ଶରୀରରେ ସାଧନା କରି ସଂପୂର୍ଣ୍ଣ ଅହଂକାର ମୁକ୍ତହୋଇ ଭଗବାନଙ୍କ ଦିବ୍ୟ ପ୍ରେମ ଓ ପୂର୍ଣ୍ଣ ଶରଣାଗତି ଲକ୍ଷ୍ୟ ପ୍ରାପ୍ତ ହୁଏ ।

ପ୍ରଶ୍ନ-୬୦: ଭଗବାନଙ୍କ ଜ୍ଞାନ ଅବତାର ବ୍ୟାସଦେବଙ୍କ ପୂର୍ବରୁ ବେଦ ମନ୍ତ୍ରମାନେ ବହ୍ମାଜୀଙ୍କ ମୁଖରୁ ପ୍ରକଟ ହୋଇ ସାରିଥିଲେ । ବ୍ୟାସଦେବ କେବଳ ସେମାନଙ୍କୁ ଜ୍ଞାନ ମାର୍ଗ ସମ୍ବନ୍ଧୀୟ ଋକ୍‌ବେଦ, କର୍ମମାର୍ଗ ସମ୍ବନ୍ଧୀୟ ଯଜୁଃବେଦ, ଉପାସନା ସମ୍ବନ୍ଧୀୟ ସାମବେଦ ଓ ତିନିବେଦର ସମନ୍ୱୟକାରୀ ଅଥର୍ବବେଦ ରୂପ

ଦେଇ ଭାଗ ଭାଗ କଲେ । ସଂସ୍କୃତରେ ବ୍ୟାସ ଶବ୍ଦର ଅର୍ଥ ବିସ୍ତାର କରିବା ବା ଭାଗ ଭାଗ କରିବା । ତେଣୁ ବ୍ୟାସଙ୍କ ଏପରି ନାମକରଣ କରି ବେଦବ୍ୟାସ ରଖାଗଲା । ବ୍ୟାସଦେବ ପ୍ରଥମ ଦୁଇବେଦ ଋକ ଓ ଯଜୁଃଙ୍କୁ ତାଙ୍କର କେଉଁ ଦୁଇ ଅତି ପ୍ରିୟ ଶିଷ୍ୟଙ୍କୁ ଅଧ୍ୟୟନ କରାଇଲେ ?

**ପୈଲାୟ ସଂହିତାଂ ଆଦ୍ୟାଂ ବହ୍ବୃଚ୍ ଆଖ୍ୟାଂ ଉବାଚ ହ ।**
**ବୈଶମ୍ପାୟନ ସଂଜ୍ଞାୟ ନିଗଦ-ଆଖ୍ୟଂ ଯଜୁଃ ଗଣମ୍ ॥୫୨॥**

ଉ. ବହ୍ବୁ ଋଚା ବିଶିଷ୍ଟ ପ୍ରଥମ ବେଦ ଋକ୍‌ବେଦକୁ ପ୍ରିୟ ଶିଷ୍ୟ ପୈଲଙ୍କୁ ଶିକ୍ଷା ଦେଲେ । ନିଗଦ ନାମକ ଯଜୁଃମନ୍ତ୍ର ସଂଗ୍ରହକୁ ଅନ୍ୟତମ ପ୍ରିୟଶିଷ୍ୟ ବୈଶମ୍ପାୟନଙ୍କୁ ପଢ଼ାଇଥିଲେ ।

ପ୍ରଶ୍ନ-୬୧ : ଛାନ୍ଦୋଗ୍ୟ ନାମକ ଉପାସନା କାଣ୍ଡ ସମ୍ବନ୍ଧୀୟ ସାମବେଦକୁ ଓ ଅଥର୍ବ-ଅଙ୍ଗୀରସ ନାମକ ଚତୁର୍ଥ ବେଦକୁ କାହାକୁ କାହାକୁ ଶିକ୍ଷାଦେଲେ ?

**ସାମ୍ନାଂ ଜୈମିନୟେ ପ୍ରାହ ତଥା ଛାନ୍ଦୋଗ୍ୟ ସଂହିତାମ୍ ।**
**ଅଥର୍ବ-ଅଙ୍ଗିରସୀଂ ନାମ ସ୍ୱଶିଷ୍ୟାୟ ସୁମନ୍ତବେ ॥୫୩॥**

ଉ. ବେଦବ୍ୟାସଜୀ ତାଙ୍କର ଅନନ୍ୟ ଶିଷ୍ୟ ଜୈମିନିଙ୍କୁ ସାମବେଦ ଓ ଶିଷ୍ୟ ସୁମନ୍ତଙ୍କୁ ଅଥର୍ବ-ଅଙ୍ଗିରସ ବେଦ ପଠନ ପାଠନ କରାଇଥିଲେ । ବେଦବ୍ୟାସଙ୍କର ଶିଷ୍ୟମାନେ ଏହି ଚାରି ବେଦଙ୍କର ମନ୍ତ୍ର ଗୁଡ଼ିକ ଗୁରୁଙ୍କ ଶରଣରେ ରହି ନିଜେ ପଢ଼ି ନିଜର ଶିଷ୍ୟ ପ୍ରଶିଷ୍ୟମାନଙ୍କୁ ପଢ଼ାଇଲେ ଓ ଅନେକ ବେଦଶାଖା, ଚାରି ଉପବେଦ, ଛଅ ବେଦାଙ୍ଗ ଓ ୧ ୧ ୨ ୦ଉନିଷଦମାନ ସଂକଳିତ ହୋଇ ସଂସ୍କୃତ ସାହିତ୍ୟର ଜ୍ଞାନ ଭକ୍ତିର ଭଣ୍ଡାରକୁ ସମୃଦ୍ଧ କରିଛନ୍ତି ।

ଉଚ୍ଚବର୍ଣ୍ଣର ଅଧିକାରୀ ଲୋକଙ୍କ ଲାଗି ଭଗବତ ପ୍ରାପ୍ତିର ମାର୍ଗ ଅବଶ୍ୟ ସୁଗମ ହୋଇଗଲା । ଯାହା ଦ୍ୱିଜାଦି ସଂସ୍କାରହୀନ ସ୍ତ୍ରୀ ଶୂଦ୍ରଙ୍କର ଅପହୁଞ୍ଚ ରହିଯାଇଥାଆନ୍ତା । କରୁଣାମୟ ବ୍ୟାସଦେବ ବୈଦିକ ସାହିତ୍ୟର ଅନଧିକାରୀମାନଙ୍କ ପାଇଁ ଅଠର ଖଣ୍ଡ ପୁରାଣ ଲେଖିସାରି ସର୍ବଶେଷ ରଚନା ରୂପେ ଶ୍ରୀମଦ୍ଭାଗବତ ମହାପୁରାଣର ଶ୍ରବଣ କୀର୍ତ୍ତନର ବ୍ୟବସ୍ଥା କରିଗଲେ ଯାହା ପରବର୍ତ୍ତୀ ଅଧ୍ୟାୟର ଆଲୋଚ୍ୟବସ୍ତୁ ।

# ୪୨. ସଗୁଣ ସାକାର ବ୍ରହ୍ମ ଆଶ୍ରୟ ପ୍ରକରଣ ସାର

## ଅଧ୍ୟାୟ ୧ମ-୬ଷ୍ଠ

୧୦ଲକ୍ଷଣ ଯୁକ୍ତ ଦ୍ୱାଦଶ ସ୍କନ୍ଦ ବିଶିଷ୍ଟ ଶ୍ରୀମଦ୍ଭାଗବତଙ୍କର ନଅ ଲକ୍ଷଣ ଯୁକ୍ତ ଏଗାର ସ୍କନ୍ଧଙ୍କ ବିସ୍ତୃତ ବର୍ଣ୍ଣନା ସମାପ୍ତ ହୋଇଛନ୍ତି । ଏଥିରେ ବର୍ଣ୍ଣିତ ସକଳ ଶ୍ଳୋକ, ବ୍ୟାଖ୍ୟା ଦୃଷ୍ଟାନ୍ତ, ଆଖ୍ୟାନ, କଥା, କାହାଣୀ କେବଳ ଏହି ଦଶମ ଲକ୍ଷଣ ଆଶ୍ରୟତତ୍ତ୍ୱକୁ ଠିକ୍ ଠିକ୍ ବୁଝାଇବା ଲାଗି ଉଦ୍ଦିଷ୍ଟ । ମନୁଷ୍ୟ ଜୀବନ ସାରା ମାତାଶ୍ରୟ, ପିତାଶ୍ରୟ, ବିଦ୍ୟାଆଶ୍ରୟ, ଗୁରୁ ଆଶ୍ରୟ, ଧନ ଆଶ୍ରୟ, ପତି କିମ୍ବା ପତ୍ନୀ ଆଶ୍ରୟ, ପଦ ପଦବୀ ଆଶ୍ରୟ, ଧନ ଆଶ୍ରୟ, ରାଜା ଆଶ୍ରୟ, ଦେବୀ ଦେବତା ଆଶ୍ରୟ ଓ କାଳ ଆଶ୍ରୟ ବଦଳାଇଥାଏ । ଭାଗବତ ବୁଝାଇ ଦେଲେ ଯେ ଏ ସମସ୍ତେ ଆଶ୍ରୟ ତ ନିଶ୍ଚୟ କିନ୍ତୁ ପରମ ଆଶ୍ରୟ ନୁହନ୍ତି । ସକଳ ଅଶ୍ରୟମାନଙ୍କର ଆଶ୍ରୟ ପରମ ଆଶ୍ରୟ କେବଳ ସେଇ ବ୍ରହ୍ମ, ପରବ୍ରହ୍ମ ପରମାତ୍ମା ବା ଶ୍ରୀକୃଷ୍ଣ ଭଗବାନ ।

ଏହି ପ୍ରକରଣର ପ୍ରଥମ ଛଅ ଅଧ୍ୟାୟରେ ସଗୁଣ ସାକାର ଭଗବାନଙ୍କର ଆଶ୍ରୟ ବର୍ଣ୍ଣିତ ହୋଇଛନ୍ତି । ପ୍ରଥମ ଅଧ୍ୟାୟରେ ଭଗବତ ଆଶ୍ରୟ ବା ଶରଣାଗତି ନ କରି ପୁରୁଷାର୍ଥ କଲେ ଜୀବର କି ଦୁର୍ଗତି ହୁଏ କୁହାଯାଇଛି ଯାହାର ଫଳ ଆଜି କଳିଯୁଗରେ ପ୍ରତିଦିନ, ପ୍ରତି ଦେଶ, ବିଦେଶରେ ଭୋଗିବାକୁ ମନୁଷ୍ୟ ବାଧ ହେଉଛି । 'ମୁଁ', 'ମୋର', 'ମୋ ପାଇଁ' ମାୟା ଜାଲରେ ପଡ଼ି ସାଧାରଣ ପ୍ରଜା କଅଣ ମହାନ ମହାନ ରାଜା ମହାରାଜାମାନେ ମଧ୍ୟ ମରଣବେଳେ ନିତାନ୍ତ ଅସହାୟ ଅବସ୍ଥାରେ କାଳ କବଳିତ ହୋଇଛନ୍ତି । ପୁରାଣ ଯୁଗର ରାଜା ବେଣ, ରାବଣ, ହରିଣ୍ୟକଶିପୁଙ୍କ ସହିତ ଐତିହାସିକ ଯୁଗର ଗ୍ରୀକ୍‌ବୀର ଆଲେକ୍‌ଜାଣ୍ଡର୍ ଇତ୍ୟାଦି ଅନେକ ଅହଂକାରୀ ପୁରୁଷ ଏହାର ଦୃଷ୍ଟାନ୍ତ ।

ଅପର ପକ୍ଷରେ ଭଗବାନଙ୍କ ଆଶ୍ରୟରେ ରହି ରାଜା ହରିଶ୍ଚନ୍ଦ୍ର, ଶିବି, ଧ୍ରୁବ, ପ୍ରହଲ୍ଲାଦ, ଅମ୍ବରୀଶ, ଭଗୀରଥ, ଦିଲ୍ଲୀପ ପୌରାଣିକ ଚରିତ୍ର ବ୍ୟତୀତ ଯୁଧିଷ୍ଠିର, ପରୀକ୍ଷିତ ଆଦି ସମ୍ରାଟ୍ ଓ ବଶିଷ୍ଠ, ବିଶ୍ୱାମିତ୍ର, ପରାଶର, ଯାଜ୍ଞବଲ୍‌କ୍ୟ ଆଦି ମୁନିଋଷିଙ୍କ ସହିତ ତୁଳସୀଦାସ, ମୀରା, କବୀର, ସନ୍ଥ ଜ୍ଞାନେଶ୍ୱର, ନାମଦେବ, ନରସିଂହ ମେହେଟ୍ଟା ଆଦି ସାଧାରଣ ପ୍ରଜା ମଧ୍ୟ ଇତିହାସ ପୁରାଣ ପୃଷ୍ଠାମାନଙ୍କରେ ସ୍ମରଣୀୟ ହୋଇ ରହିଗଲେ କେବଳ ଭକ୍ତି ଧର୍ମ ବା ଭାଗବତ ଆଶ୍ରୟ କରିଥିବା କାରଣରୁ ।

ଏହି ସଗୁଣ ବ୍ରହ୍ମ ଆଶ୍ରୟ ପ୍ରକରଣ ମହିମା ମଣ୍ଡିତ ହୋଇଛି ମହାମହିମ ଚକ୍ରବର୍ତ୍ତୀ ସମ୍ରାଟ୍ କୁରୁକୁଳ ତିଳକ ପରୀକ୍ଷିତଙ୍କ ଗୋଲୋକ ଗମନ ଏବଂ ମରଣ ଭୟ ବିଜୟ ଲୀଳା କୀର୍ତ୍ତନକୁ ଆଧାର କରି । ତାଙ୍କ ପୂର୍ବରୁ ତାଙ୍କର କୌଣସି ପୂର୍ବଜ ଦେହ ତ୍ୟାଗବେଳେ ସାଧୁ ମଣ୍ଡଳୀ ସତ୍‌ସଙ୍ଗ ଆଶ୍ରୟ କରିଥିବା ଦୃଷ୍ଟାନ୍ତ କୁତ୍ରାପି ଦୃଷ୍ଟିଗୋଚର ହୁଏ ନାହିଁ । ଶୁକଦେବଜୀ ଚତୁର୍ଥ ଅଧ୍ୟାୟରେ ଜୀବ ପିଣ୍ଡର ଦୁଇ ପ୍ରଳୟ ଓ ବ୍ରହ୍ମାଣ୍ଡର ଦୁଇ ପ୍ରଳୟ ଲୀଳାର ଚମତ୍କାର ବର୍ଣ୍ଣନା କରିଛନ୍ତି । ତାହା କେବଳ ରାଜା ପରୀକ୍ଷିତଙ୍କ ଯତ୍‌କିଞ୍ଚିତ ଅବଶିଷ୍ଟ ମରଣ ଭୟ ଦୂର କରିବା ଲକ୍ଷ୍ୟରେ । ଦୃଷ୍ଟାନ୍ତ ହେଲା ଭଗବାନଙ୍କ ଗୁଣାବତାର ସୃଷ୍ଟିକର୍ତ୍ତା ବ୍ରହ୍ମାଜୀଙ୍କର ଦେହ ରୂପୀ ସ୍ଥୁଳ ବ୍ରହ୍ମାଣ୍ଡଙ୍କୁ ଯେତେବେଳେ ପ୍ରଳୟର ସମ୍ମୁଖୀନ ହୋଇ ଅଦୃଶ୍ୟ ହେବାକୁ ପଡ଼ିବ ଜଣେ ଜୀବର ଦେହ ନଷ୍ଟ ହେବା କିବା ଛାର କଥା । ''ମୁଁ ମରିବି'' ଏହା କେବଳ ପଶୁ ବୁଦ୍ଧି ଅଟେ ।

ରାଜା ପରୀକ୍ଷିତ ସପ୍ତଦିବସ ବ୍ୟାପୀ ପ୍ରବଚନ ଶେଷରେ ଦୃଢ଼କଣ୍ଠରେ ଘୋଷଣା କରି ଶୁଣାଇ ଦେଇଛନ୍ତି ଯେ ସେ ମୃତ୍ୟୁକୁ ଆଦୌ ଭୟ କରୁନାହାନ୍ତି । ଶ୍ରୀହରି ନାମ, ଧାମ, ଲୀଳା, ଗୁଣ, ଭକ୍ତ ମାହାତ୍ମ୍ୟ ଶ୍ରବଣ କୀର୍ତ୍ତନରେ ତାଙ୍କ ଅନ୍ତରାତ୍ମା ଅତ୍ୟନ୍ତ ଶୁଦ୍ଧ ହୋଇ କୃଷ୍ଣମୟ ହୋଇସାରିଛି । ବରଂ ମୃତ୍ୟୁ ତାଙ୍କୁ ଡ଼ରିଯାଇଛି । ତାଙ୍କ ପାଖ ପଶୁନାହିଁ । କାରଣ ପରମ ବୈଷ୍ଣବ ଗୁରୁ ଜ୍ଞାନ, ଭକ୍ତି, ବୈରାଗ୍ୟ, ସମର୍ପଣର ଘନୀଭୂତ ବିଗ୍ରହ ଶୁକଦେବଜୀ ଉପସ୍ଥିତ ଥିବାରୁ । ଏ କଥା ଶ୍ରବଣ କରି ସ୍ୱୟଂ ଶୁକଦେବଜୀ ଓ ସେଠାରେ ଉପସ୍ଥିତ ସମସ୍ତ ଶ୍ରୋତାମଣ୍ଡଳୀ କୃଷ୍ଣପ୍ରେମରେ ଗଦ୍ ଗଦ୍ ହୋଇ ଉଠିଛନ୍ତି । ଭକ୍ତ, ଭଗବାନ, ଗୁରୁ ଓ ଭକ୍ତିମହାରାଣୀଙ୍କ ଜୟ ଧ୍ୱନୀ କରି ଗଗନ ପବନ ପ୍ରକମ୍ପିତ କରିଦେଇଛନ୍ତି । ଦେବତାମାନେ ଖୁସିରେ ସ୍ୱର୍ଗ ସୁମନ ବୃଷ୍ଟି କରିଛନ୍ତି । ଦେବତାମାନଙ୍କର ସ୍ୱର୍ଗ ବାଦ୍ୟ ଦୁନ୍ଦୁଭି ବାଦନ ସହିତ ଅପ୍‌ସରାମାନଙ୍କର ସଙ୍ଗୀତ ନାଚ ଆଦିର ପରିବେଷଣରେ ଶ୍ରୀମଭାଗବତ ମହାସତ୍‌ସଙ୍ଗର ପ୍ରଥମ ଅଧିବେଶନ ଆହୁରି କୃଷ୍ଣପ୍ରେମ ରସରେ ରସାଣିତ ଓ ଭବ୍ୟ ହୋଇ ଉଠିଛି ।

ଜନ୍ମପୂର୍ବରୁ, ଜୀବନ କାଳରେ, ଜୀବନ ଅବସାନ କାଳରେ ହରିନାମ ଶ୍ରବଣ, ସାଧୁସଙ୍ଗ, ସାଧୁସେବା ସୁଯୋଗ ପ୍ରାପ୍ତି, ଶ୍ରୀହରି (ସଗୁଣ ସାକାର) ଗୁରୁ ଚିନ୍ତନର ଅଲୌକିକ ଫଳପ୍ରାପ୍ତିର ଏହି ଦୃଷ୍ଟାନ୍ତ କାଳ କାଳକୁ ରହିଗଲା ।

**ତୁଳସୀଦାସଙ୍କ ଚେତାବନୀ :**

ନିରଗୁଣ ରୂପ (ଓଁ) ସୁଲଭ ଅତି ସଗୁଣ ନ ଜାନେ କୋୟ ।

॥ ଅପଣ୍ଡିତ ଦାମୋଦର ବଳୀୟାରସିଂହ ॥

# ପ୍ରକରଣ-୪୩

## ନିର୍ଗୁଣ ନିରାକାର ବ୍ରହ୍ମ (ଓଁ) କିମ୍ବା ସଗୁଣ ନିରାକାର ପରମାତ୍ମା ନାରାୟଣଙ୍କ ଆଶ୍ରୟ(ଅଧ୍ୟାୟ ୭ମ-୧୩ଶ)

## ଅଥ ସପ୍ତମ ଅଧ୍ୟାୟଃ

### (ପୁରାଣ ସାହିତ୍ୟ ହିଁ ବୈଦିକ ସାହିତ୍ୟର ସରଳ ବ୍ୟାଖ୍ୟା)

ପ୍ରଶ୍ନ-୬୨ : ଭଗବତ ଦର୍ଶନର ଦୁଇ ପ୍ରଜ୍ଞାଚକ୍ଷୁ ହେଲେ ବେଦ ଓ ପୁରାଣ । ଜ୍ଞାନୀମାନଙ୍କ ବେଦ ଓ ମୂର୍ଖ, ଗାଉଁଲି, ମଫସଲି, ପତିତ, ଶୂଦ୍ର ଓ ଅନ୍ତ୍ୟଜଙ୍କ କଲ୍ୟାଣ ନିମିତ୍ତ ସ୍ୱୟଂ ବ୍ୟାସଦେବ ଅଷ୍ଟାଦଶ ପୁରାଣ ବ୍ୟବସ୍ଥା କରିଛନ୍ତି । ବେଦବ୍ୟାସଜୀ ନିଜର ପ୍ରିୟ ଶିଷ୍ୟ ରୋମହର୍ଷଣଙ୍କୁ ଅଷ୍ଟାଦଶ ପୁରାଣର ଆଚାର୍ଯ୍ୟପଦବୀ ଦେଇଥିଲେ । ହରି କଥା କୀର୍ତ୍ତନ ଶୁଣାଇ ସେ ଶ୍ରୋତାମାନଙ୍କୁ ଭାବ ବିହ୍ୱଳ କରାଇ, ସେମାନଙ୍କ ନେତ୍ରକୁ ଆନନ୍ଦ ଅଶ୍ରୁରେ ପ୍ଲାବନ କରାଇ ଓ ଦେହଟି ମାନଙ୍କରେ ଲୋମ ଠିଆ ଠିଆ କରାଇପାରୁଥିବାରୁ ଗୁରୁଦେବ ତାଙ୍କୁ ରୋମହର୍ଷଣ ନାମରେ ଡ଼ାକୁଥିଲେ । ମହାନ୍ ଋଷି ରୋମହର୍ଷଣ ତାଙ୍କର କେଉଁ ଛଅ ଶିଷ୍ୟଙ୍କୁ ପୁରାଣ ଅଧ୍ୟୟନ କରାଇଲେ ?

ସୂତ ଉବାଚ

**ତ୍ରୟାରୁଣିଃ କଶ୍ୟପଃ ଚ ସାବର୍ଣ୍ଣିଃ ଅକୃତବ୍ରଣଃ ।**
**ବୈଶମ୍ପାୟନ ହାରୀତୌ ଷଟ୍ ବୈ ପୌରାଣିକା ଇମେ ॥୫॥**

ଉ. ତ୍ରୟାରୁଣି, କଶ୍ୟପ, ସାବର୍ଣ୍ଣି, ଅକୃତବ୍ରଣ, ବୈଶମ୍ପାୟନ ଓ ହାରୀତଙ୍କୁ ପୁରାଣ ବିଶେଷଜ୍ଞ କରାଇଥିଲେ ।

ପ୍ରଶ୍ନ-୬୩: ରୋମହର୍ଷଣ ସୂତଙ୍କ ପୁତ୍ରଙ୍କ ନାମ ସୂତଗୋସ୍ୱାମୀ ଯେ ଆଜି ନୈମିଷ୍ୟାରଣ୍ୟରେ ଶ୍ରୀଭାଗବତ ପ୍ରବଚନ କରୁଛନ୍ତି । ସେ ନିଜେ ଶୁକ-ପରୀକ୍ଷିତ ସତ୍‌ସଙ୍ଗବେଳେ ଭାଗବତ ଶ୍ରବଣ ସୌଭାଗ୍ୟ ପ୍ରାପ୍ତ ହୋଇଥିଲେ । ଅଷ୍ଟାଦଶ ପୁରାଣ ସଂହିତା ଜ୍ଞାନ ସେ କାହା ସୌଜନ୍ୟରୁ ପାଇଥିଲେ ?

**ଅଧୀୟନ୍ତ ବ୍ୟାସ ଶିଷ୍ୟାତ୍ ସଂହିତାଂ ମତ୍‌ପିତୁଃମୁଖାତ୍ ।**
**ଏକ-ଏକଂ-ଅହଂ-ଏତେଷାଂ ଶିଷ୍ୟଃ ସର୍ବାଃ ସମଧ୍ୟଗାତ୍ ।।୬।।**

ଉ. ସୂତ ଗୋସ୍ୱାମୀ ନିଜ ପିତାଙ୍କ (ପୂର୍ବ ଶ୍ଳୋକ ବର୍ଣ୍ଣିତ) ୬ଶିଷ୍ୟଙ୍କ ପାଖରେ ସବୁ ଯାକ ପୁରାଣ ସଂହିତା ଅଧ୍ୟୟନ କରିଥିଲେ । ତାଙ୍କର ପ୍ରଚଣ୍ଡ ସ୍ମରଣଶକ୍ତି ଥିବା ହେତୁ ମୁନିଋଷିମାନେ ତାଙ୍କୁ ଉଗ୍ରଶ୍ରବା ସୂତ ବୋଲି ନାମ ଦେଇଥିଲେ ।

ପ୍ରଶ୍ନ-୬୪: ଅଷ୍ଟାଦଶ ପୁରାଣ ମଧ୍ୟରେ ଶ୍ରୀମଦ୍ଭାଗବତଙ୍କୁ ଗଣାଯାଏ ନା ତାଙ୍କୁ ସ୍ୱତନ୍ତ୍ର ଭାବରେ ସ୍ଥାନିତ କରାଯାଏ ?

**ଦଶଭିଃ ଲକ୍ଷଣୈଃ ଯୁକ୍ତଂ ପୁରାଣଂ ତତ୍‌ବିଦୋ ବିଦୁଃ ।**
**କେଚିତ୍ ପଞ୍ଚବିଧଂ ବ୍ରହ୍ମନ୍ ମହତ୍ ଅଳ୍ପ ବ୍ୟବସ୍ଥୟା ।।୧୦।।**

ଉ. ସର୍ଗ, ବିସର୍ଗ, ସ୍ଥାନ, ପୋଷଣ, ଉତି, ମନ୍ୱନ୍ତର, ଈଶ ଅନୁକଥା, ନିରୋଧ, ମୁକ୍ତି ଓ ଆଶ୍ରୟ ଏପରି ଦଶ ଲକ୍ଷଣ ଥିଲେ ସେ ଗ୍ରନ୍ଥକୁ ପୁରାଣ କୁହାଯାଏ । ପୁଣି ଅନ୍ୟ କାହାରି ମତରେ ପାଞ୍ଚ ଲକ୍ଷଣ ଥିବା ଗ୍ରନ୍ଥକୁ ପୁରାଣ (ଅଳ୍ପ) ଓ ଦଶ ଲକ୍ଷଣ ଥିବା ଗ୍ରନ୍ଥକୁ ମହାପୁରାଣ (ମହତ୍) ମାନ୍ୟତା ମିଳେ । ଉଭୟ ମତରେ ଶ୍ରୀମଦଭାଗବତ ଦଶ ଲକ୍ଷଣଯୁକ୍ତ ବୋଲି ମହାପୁରାଣର ମର୍ଯ୍ୟାଦା ଲାଭ କରିଛନ୍ତି ।

ପ୍ରଶ୍ନ-୬୫: ପାଞ୍ଚ ପାଞ୍ଚ ଲକ୍ଷଣ ନ ଆଇ କମ ଲକ୍ଷଣ ଥିବା ଗ୍ରନ୍ଥକୁ ଉପପୁରାଣ କୁହାଯାଏ । ବ୍ୟାସଦେବଙ୍କ ସଂକଳିତ କେଉଁ କେଉଁ ଅଠର ଗ୍ରନ୍ଥ ପୁରାଣର ଏହି ମର୍ଯ୍ୟାଦା ବା ଗୌରବପ୍ରାପ୍ତ ?

**ବ୍ରାହ୍ମଂ ପାଦ୍ମଂ ବୈଷ୍ଣବଂ ଚ ଶୈବଂ ଲୈଙ୍ଗଂ ସଗାରୁଡ଼ମ ।**
**ନାରଦୀୟଂ ଭାଗବତଂ ଆଗ୍ନେୟଂ ସ୍କାନ୍ଦ ସଜ୍ଞିତମ୍ ।।୨୩।।**
**ଭବିଷ୍ୟଂ ବ୍ରହ୍ମବୈବର୍ତ୍ତଂ ମାର୍କଣ୍ଡେୟଂ ସ ବାମନମ୍ ।**
**ବାରାହଂ ମାତ୍ସ୍ୟଂ କୌର୍ମଂ ଚ ବ୍ରହ୍ମାଣ୍ଡ-ଆଖ୍ୟଂ ଇତି ତ୍ରିଷଟ୍ ।।୨୪।।**

ଉ. ପୁରାଣ ମାନଙ୍କ ନାମ ସହିତ ଶ୍ଳୋକ ସଂଖ୍ୟା ନିମ୍ନରେ ଉଲ୍ଲେଖ କରାଗଲା । କୌଶଳ କରି ବ୍ୟାସଦେବଙ୍କୀ·ଏହି ଅଠର ପୁରାଣ ମଧ୍ୟରେ ନିର୍ଗୁଣ ନିରାକାର ବ୍ରହ୍ମଙ୍କର ଚିନ୍ତନ ଲାଗି ସଗୁଣ ନିରାକାର ନାରାୟଣ ପରମାତ୍ମାଙ୍କ ବର୍ଣ୍ଣନା କରିଯାଇଛନ୍ତି ।

| ସଂଖ୍ୟା ପୁରାଣର ନାମ | ଶ୍ଳୋକ ସଂଖ୍ୟା |
|---|---|
| ୧. ବ୍ରହ୍ମ | ୧୦,୦୦୦ |
| ୨. ପଦ୍ମ | ୫୫,୦୦୦ |
| ୩. ବିଷ୍ଣୁ | ୨୩,୦୦୦ |
| ୪. ଶିବ ଅନ୍ୟ ମତରେ ବାୟୁ | ୨୪,୦୦୦ |
| ୫. ଶ୍ରୀମତ୍ ଭାଗବତ | ୧୮,୦୦୦ |
| ୬. ନାରଦ | ୨୫,୦୦୦ |
| ୭. ମାର୍କଣ୍ଡେୟ | ୯,୦୦୦ |
| ୮. ଅଗ୍ନି | ୧୫,୪୦୦ |
| ୯. ଭବିଷ୍ୟ | ୧୪,୫୦୦ |
| ୧୦. ବ୍ରହ୍ମ ବୈବର୍ତ୍ତ | ୧୮,୦୦୦ |
| ୧୧. ଲିଙ୍ଗ | ୧୧,୦୦୦ |
| ୧୨. ବରାହ | ୨୪,୦୦୦ |
| ୧୩. ସ୍କନ୍ଦ | ୮୧,୧୦୦ |
| ୧୪. ବାମନ | ୧୦,୦୦୦ |
| ୧୫. କୂର୍ମ | ୧୭,୦୦୦ |
| ୧୬. ମତ୍ସ୍ୟ | ୧୪,୦୦୦ |
| ୧୭. ଗରୁଡ଼ | ୧୯,୦୦୦ |
| ୧୮. ବ୍ରହ୍ମାଣ୍ଡ | ୧୨,୦୦୦ |
| | ମୋଟ - ୪,୦୦,୦୦୦ |

# ଅଥ ଅଷ୍ଟମ ଅଧ୍ୟାୟଃ

## (ମାର୍କଣ୍ଡେୟ ମୁନିଙ୍କ ଛଅ ମନ୍ୱନ୍ତର ଓଁକାର ଜପ, ଧ୍ୟାନ ଓ ତପସ୍ୟାରେ ଭଗବାନ ନରନାରାୟଣ ପ୍ରସନ୍ନ)

ପ୍ରଶ୍ନ-୬୬: ଭାଗବତ ଗ୍ରନ୍ଥରେ ତିନି ଅଧ୍ୟାୟରେ ଶ୍ରୀରାମ ଅବତାର କଥା ବର୍ଣ୍ଣିତ । ଶ୍ରୀରାମ ସ୍ୱୟଂ ଭଗବାନ । ମାର୍କଣ୍ଡେୟ ଚରିତ ଏବଂ ସୁଦାମା ଚରିତରେ ମଧ୍ୟ ତିନି ତିନି ଅଧ୍ୟାୟ ଖର୍ଚ୍ଚ ହୋଇଛି ଭାଗବତରେ । ପୁଣି ଅଷ୍ଟାଦଶ ପୁରାଣ ମଧ୍ୟରେ ମାର୍କଣ୍ଡେୟ ପୁରାଣ ମଧ୍ୟ ନିଜର ସ୍ୱତନ୍ତ୍ର ସ୍ଥାନ ଅଧିକାର କରିଛନ୍ତି । ସ୍ଥୂଳ ବୁଦ୍ଧିରେ ଦେଖିବାକୁ ଗଲେ ମାର୍କଣ୍ଡେୟ ଋଷି ଜଣେ ଭୌତିକ ଶରୀର ଧାରୀ ମଣିଷ । ଏହି ଶ୍ୱେତବରାହ କଳ୍ପର ସ୍ୱାୟମ୍ଭୁବ ମନ୍ୱନ୍ତରରେ ମୃକଣ୍ଡୁ ମୁନିଙ୍କ ପୁତ୍ର ମାର୍କଣ୍ଡେୟ କି ବିଶେଷ କର୍ମ କିମ୍ବା ଜ୍ଞାନ ହେତୁ ଏତେ ସମ୍ମାନର ଅଧିକାରୀ ଯାହା ମନୁ, ଅତ୍ରି, ବଶିଷ୍ଠ, ବିଶ୍ୱାମିତ୍ର ଇତ୍ୟାଦିଙ୍କୁ ମିଳି ନାହିଁ ?

### ଶୌନକ ଉବାଚ

**ଆହୁଃ ଚିର-ଆୟୁଷଂ ଋଷିଂ ମୃକଣ୍ଡୁ ତନୟଂ ଜନାଃ ।**
**ଯଃ କଳ୍ପ-ଅନ୍ତେ ହି-ଉର୍ବରିତୋ ଯେନ ଗ୍ରସ୍ତଂ ଇଦଂ ଜଗତ୍ ॥୨॥**

ଉ. ମହାତ୍ମାମାନେ କହନ୍ତି ଇନ୍ଦ୍ର, ଚନ୍ଦ୍ର, ସପ୍ତଋଷି ଆଦିଙ୍କ ଆୟୁଷ ଅତି ଦୀର୍ଘ । ତଥାପି ଗୋଟିଏ ମନ୍ୱନ୍ତର (୩୦କୋଟି ୬୭ଲକ୍ଷ ୨୦ହଜାର ବର୍ଷ) ଶେଷ ହେଲେ ସେମାନଙ୍କର ସୂକ୍ଷ୍ମ ଦେହ ମଧ୍ୟ ନଷ୍ଟ ହୁଏ । ତଥାପି ଚଉଦ ମନ୍ୱନ୍ତର ସମୟ ବିତିବା ପରେ କଳ୍ପାନ୍ତ ପ୍ରଳୟ ହୁଏ ଯେତେବେଳେ ଚତୁର୍ଦ୍ଦଶ ଭୁବନ (ଭୂଃ ଭୁବ ଆଦି) ମହାପ୍ରଳୟରେ ନଷ୍ଟ ହୁଏ (ଗ୍ରସ୍ତଂ) ଏହି ମାର୍କଣ୍ଡେୟ ମୁନିଙ୍କ ଦେହ ନଷ୍ଟ ହୋଇନଥିଲା । ସେ ଏତେ ଦୀର୍ଘାୟୁ (ଚିର-ଆୟୁଷ) ଯେ ପରବର୍ତ୍ତୀ କଳ୍ପରେ ମଧ୍ୟ ସେ ତାଙ୍କର ସେଇ ଦେହ ରହିପାରିଲା (ଉର୍ବରିତୋ) । ଦୀର୍ଘ ଆୟୁଷ ଭୋଗ କରିବାରେ ସେ ଏହି ସର୍ବକାଳୀନ ରେକର୍ଡ଼ ହୋଲଡ଼ର । ସ୍ୱାୟମ୍ଭୁବ ମନ୍ୱନ୍ତରରେ ତପସ୍ୟା କରି ମାର୍କଣ୍ଡେୟ ନର-ନାରାୟଣଙ୍କ କୃପାରେ କାମଜୟୀ ପୁଣି ସ୍ୱାରୋଚିଷ, ଉତ୍ତମ, ତାମସ, ରୈବତ, ଚାକ୍ଷୁସ ଆଦି ଛଅ ମନ୍ୱନ୍ତର ସୁଦୀର୍ଘ କାଳ ତପସ୍ୟା କରି ବର୍ତ୍ତମାନର ବୈବସ୍ୱତ ମନ୍ୱନ୍ତରରେ ପରମ ବୈଷ୍ଣବ ଶଙ୍କରଙ୍କ କୃପାରେ ଜରାଜୟୀ ଓ ମୃତ୍ୟୁଞ୍ଜୟୀ କଳ୍ପାନ୍ତ ପର୍ଯ୍ୟନ୍ତ ।

ପ୍ରଶ୍ନ-୬୭: ମାର୍କଣ୍ଡେୟ ମୁନିଙ୍କର ଦୀର୍ଘ ଆୟୁଷର କାରଣ କ'ଣ ଦୀର୍ଘ କାଳର ତପସ୍ୟା, କାହାରି ବର ପ୍ରାପ୍ତି ନା ଆଉ କିଛି ହୋଇପାରେ ?

ସୂତ ଉବାଚ

**ଏବଂ ତପଃ ସ୍ୱାଧ୍ୟାୟ ପରୋ ବର୍ଷାଣାଂ ଅୟୁତ-ଅୟୁତମ୍ ।**
**ଆରାଧୟନ୍ ହୃଷୀକେଶଂ ଜିଗ୍ୟେ ମୃତ୍ୟୁଂ ସୁଦୁର୍ଜୟମ୍ ॥୧୧॥**

ଉ. ଶୁଦ୍ଧ ମନ, ବୁଦ୍ଧି ଅନ୍ତଃକରଣରେ ଦୀର୍ଘକାଳ ତପସ୍ୟା କରିବାରେ ତାଙ୍କର ମଧ୍ୟ ସର୍ବକଳୀନ ରେକର୍ଡ଼ ବଜାୟ ରହିଛି । ଛଅ ମନ୍ୱନ୍ତର କାଳ ତପସ୍ୟା କରି ସେ ନର-ନାରାୟଣଙ୍କୁ ପ୍ରସନ୍ନ କରିପାରିଥିଲେ । ପ୍ରଭୁଙ୍କ ବରରେ ସେ ଏକ କଳ୍ପ ପର୍ଯ୍ୟନ୍ତ ଜରା (ବୃଦ୍ଧାବସ୍ଥା) ଓ ମୃତ୍ୟୁ ମୁଖରେ ନ ପଡ଼ିବାକୁ ଅତି ଅଦ୍ଭୁତ ବରପ୍ରାପ୍ତ ହୋଇଥିଲେ । ସେତେବେଳେ ଏ କାଣ୍ଡ ଦେଖି ଇନ୍ଦ୍ର ଆଦି ଦେବତା କଅଣ ସ୍ୱୟଂ ବ୍ରହ୍ମା ଓ ତାଙ୍କ ପୁତ୍ର ଦକ୍ଷ ଓ ଭୃଗୁ ଆଦି ମଧ୍ୟ ବିସ୍ମିତ ହୋଇଥିଲେ ।

ପ୍ରଶ୍ନ-୬୮: କୌଣସି ଦେହଧାରୀ ମନୁଷ୍ୟ ଦୀର୍ଘକାଳ ତପସ୍ୟା କଲେ ଇନ୍ଦ୍ର ଈର୍ଷାରେ ନିଜ ସିଂହାସନ ହରାଇବା ଭୟରେ ତାଙ୍କର ତପସ୍ୟା ଭଙ୍ଗ କରନ୍ତି । ଛଅ ମନ୍ୱନ୍ତରରେ ଛଅ ଇନ୍ଦ୍ର ବଦଳିଲେ ମଧ୍ୟ ତାଙ୍କ ତପସ୍ୟା ଅତୁଟ ରହିଲା କେମିତି ?

**ଏତତ୍ ପୁରନ୍ଦରୋ ଜ୍ଞାତା ସପ୍ତମେଽସ୍ମିନ କିଲ-ଅନ୍ତରେ ।**
**ତପୋ ବିଶଙ୍କିତୋ ବ୍ରହ୍ମନ୍ ଆରେଭେ ତତ୍ ବିଘାତନମ୍ ॥୧୫॥**

ଉ. ସେତେବେଳର ସେଇ ସେଇ ଇନ୍ଦ୍ରମାନେ ଚେଷ୍ଟା କରିଥିବେ ନିଶ୍ଚୟ । ସମସ୍ତେ କିନ୍ତୁ ଅସଫଳ ହୋଇଛନ୍ତି ମାର୍କଣ୍ଡେୟଙ୍କ ତପସ୍ୟା ଭଙ୍ଗ କରିବାରେ । ଏହି ଚଳିତ ୭ମ ମନ୍ୱନ୍ତରରେ (ବୈବସ୍ୱତ) ପୁରନ୍ଦର ନାମକ ଇନ୍ଦ୍ର କି ଛାଡ଼ିବା ଲୋକ । ସେ ତାଙ୍କର ସବୁ ଶକ୍ତି ପ୍ରୟୋଗ କରି ବିଘ୍ନ ଉତ୍ପନ୍ନ (ତତ୍ ବିଘାତନମ୍) କରିବା ଉଦ୍ୟମ କଲେ ।

ପ୍ରଶ୍ନ-୬୯: ଇନ୍ଦ୍ର ଦେବତାଙ୍କ ଆଦେଶରେ କନ୍ଦର୍ପ ନିଜ ସଖା ବସନ୍ତ ଋତୁ, ମଳୟ ପବନ, ଅନେକ ଅପ୍ସରା ଓ ଗନ୍ଧର୍ବଙ୍କୁ ନେଇ ମାର୍କଣ୍ଡେୟଙ୍କର କେଉଁଠାରେ ଥିବା ଆଶ୍ରମକୁ ଗଲେ (ଜଗମ୍ମୁ) ?

**ତେ ବୈ ତତ୍ ଆଶ୍ରମଂ ଜଗ୍ମୁଃ ହିମାଦ୍ରେଃ ପାର୍ଶ୍ୱେ ଉତ୍ତରେ ।**
**ପୁଷ୍ପଭଦ୍ରା ନଦୀ ଯତ୍ର ଚିତ୍ରା-ଆଖ୍ୟା ଚ ଶିଳା ଯତ୍ର ॥୧୭॥**

ଉ. ହିମାଳୟ ପର୍ବତର ଉତ୍ତର ପାର୍ଶ୍ୱରେ (ଆଧୁନିକ ଚୀନ ଦେଶରେ) ପୁଷ୍ପଭଦ୍ରା ନାମକ ନଦୀ କୂଳ ଓ ଚିତ୍ରା ନାମକ ପର୍ବତ ଶୃଙ୍ଗ ନିକଟରେ ମାର୍କଣ୍ଡେୟଙ୍କ ଆଶ୍ରମକୁ । ସେଠାରେ ମୁନି ମାର୍କଣ୍ଡେୟ ଏକାନ୍ତରେ ବହୁ କୋଟି ବର୍ଷ ହେଲା ନର-ନାରାୟଣଙ୍କ ପ୍ରସନ୍ନତା ପାଇଁ କଠିନ ତପସ୍ୟା କରୁଥାନ୍ତି । କାମଦେବଙ୍କ ଦୂତମାନେ ଦେଖିଲେ ଅପୂର୍ବ ନୈସର୍ଗିକ ଶୋଭା ବିମଣ୍ଡିତ ଋଷି ଆଶ୍ରମ । ମୁନିଙ୍କ ତପସ୍ୟା ଏବଂ ତପସ୍ୟା ଲବ୍‌ଧ ତେଜ ସେମାନଙ୍କ ଅସହନୀୟ ହେଉଥାଏ । ତଥାପି ସାହସ କରି ସେମାନେ ସ୍ୱର୍ଗୀୟ ନୃତ୍ୟ, ଗୀତ, ଗାଉଣା ବାଜଣା ସବୁ ଆରମ୍ଭ କରିଦେଲେ । ମଧୁର ସୁଗନ୍ଧ ଶୀତଳ ଧୀର ସମୀର ସହିତ ବନ ଉପବନ ସବୁ ସବୁଜ ଫୁଲ, ଫଳ, ସୁଗନ୍ଧରେ ଭରିଗଲା । ଭିନ୍ନ ଭିନ୍ନ ଅହିଂସ୍ର ପଶୁ ପକ୍ଷୀଙ୍କ ମଧୁର କୂଜନ ପରିବେଶ ଋଷିଙ୍କ ମନକୁ ବିଚଳିତ କରିବାକୁ ଆପ୍ରାଣ ଚେଷ୍ଟା କରୁଥାଆନ୍ତି । ପୁଞ୍ଜିକସ୍ଥଳୀ ନାମକ ସ୍ୱର୍ଗ ଅପସରା ଉଜାଣି ଉଠୁଥିବା ନବଯୌବନଶ୍ରୀ ମଣ୍ଡିତ ରୂପ ସମ୍ଭାର ଧରି ଲୀଳା କମଳଟିଏ ଧରି କ୍ରୀଡ଼ା କରୁଥାଆନ୍ତି । ଦୁଷ୍ଟ ମଳୟ ପବନ ତାଙ୍କ ପଣତ କାନି ଖସାଇ ନେଇ ବକ୍ଷସ୍ଥଳର ମନଲୋଭା ଶୋଭା ପ୍ରଦର୍ଶନ କରିବାକୁ ବାରମ୍ବାର ଚେଷ୍ଟା କରୁଥାନ୍ତି ।

ପ୍ରଶ୍ନ-୭୦: ସେହି ସମୟରେ କାମଦେବ ପୁଷ୍ପ ଦଣ୍ଡକୋଦଣ୍ଡ ଧରି ପହଞ୍ଚିଗଲେ । ତାଙ୍କ ପାଖରେ ଅରବିନ୍ଦ, ଅଶୋକ, ଆମ୍ର, ନବମାଳିକା ସହିତ ନୀଳୋତ୍ପଳ ନାମକ ପଞ୍ଚବାଣ ଥାଏ । କାମଦେବ ପରିସ୍ଥିତି ଅନୁଧ୍ୟାନ କରି ଦେଖିଲେ ଋଷିଙ୍କର ମନରେ କାମ ବାସନା ଆଦୌ ନାହିଁ । ଅତଏବ ପଞ୍ଚ ପୁଷ୍ପଶର କିଛି କାମ ଦେବ ନାହିଁ । ସୁତରାଂ ଅନ୍ୟ ଦୁଇ ବାଣ ଲୋଭ ଓ ଗର୍ବ ଉପରେ ଆଖି ପକେଇଲେ । ଋଷିଙ୍କର ତପସ୍ୟାର ଅହଂକାର (ଗର୍ବ) କିମ୍ବା ତପସ୍ୟା ଫଳ ଲୋଭ ନିଶ୍ଚୟ ଥିବା ଅନୁମାନ କରି ଶର ପ୍ରୟୋଗ କରନ୍ତେ କାମଦେବ କି ଫଳ ପାଇଲେ ?

**ତେ ଇତଥଂ ଅପକୁର୍ବନ୍ତୋ ମୁନେଃ ତତ୍ ତେଜସା ମୁନେ ।**
**ଦହ୍ୟମାନା ନିବବୃତ୍ତୁଃ ପ୍ରବୋଧ ଅହିଂଇବ-ଅର୍ଭକାଃ ॥୨୯॥**

ଉ. କନ୍ଦର୍ପ ରାଜାଙ୍କର ଏ କର୍ମକୁ ଅପକର୍ମ (ଅପକୁର୍ବନ୍ତୋ) କୁହାଯିବା ଉଚିତ । ମୁନିଶ୍ରୀଙ୍କର ଅପୂର୍ବ ତପଃତେଜରେ କାମଦେବ ଓ ତାଙ୍କ ସଖା ଅନୁଚରଙ୍କ ଦେହ ଓଲଟ ଜଳିବାରେ ଲାଗିଲା । ମୁନିଙ୍କର କିଛି ହାନୀ କରିପାରିଲାନି ତାଙ୍କ ଦିବ୍ୟବାଣ । ସେ ଆଉ ଅନ୍ୟାନ୍ୟ ବାଣ ମାରିବାରୁ କ୍ଷାନ୍ତ ହେଲେ (ନିବବୃତ୍ତୁଃ) । ସେ ଭାବିଲେ ଯେ ସତେ ଯେପରି ଛୋଟ ବାଳକମାନେ (ଅର୍ଭକାଃ) ଭୟଙ୍କର ବିଷାକ୍ତ ସୁପ୍ତ ସର୍ପକୁ ପଥର ଫିଙ୍ଗି ଜାଗ୍ରତ କରିବା ଭଳି ଅପରାଧ କରିଛନ୍ତି ।

ପ୍ରଶ୍ନ-୭୧ : କୁସୁମାକର କନ୍ଦର୍ପ ସ୍ୱର୍ଗକୁ ଫେରିଯାଇ ଇନ୍ଦ୍ରଙ୍କୁ ନିଜ ପରାଜୟ ଖବର ଜଣାକଲେ । ସ୍ୱର୍ଗ ସମ୍ରାଟ୍ ଇନ୍ଦ୍ର ମାର୍କଣ୍ଡେୟଙ୍କ ବିଜୟ ଖବର ପାଇ ଯେତିକି ଦୁଃଖିତ ହେଲେ ସେତିକି ଆଶ୍ଚର୍ଯ୍ୟ ମଧ୍ୟ ହେଲେ । ମୁନିଶ୍ରେଷ୍ଠ ମାର୍କଣ୍ଡେୟଙ୍କୁ ନିଜର ଅସାଧାରଣ ତପ, ସ୍ୱାଧ୍ୟାୟ, ଇନ୍ଦ୍ରିୟ ସଂଯମର କିଛି ଆଖିଦୃଶିଆ ଫଳ ମିଳିଲାକି ?

**ତସ୍ୟ-ଏବଂ ଯୁକ୍ତତଃ ଚିତ୍ତଂ          ତପଃ ସ୍ୱାଧ୍ୟାୟ ସଂଯମୈଃ ।**
**ଅନୁଗ୍ରହାୟ-ଆବିରାସୀତ୍          ନର ନାରାୟଣୋ ହରିଃ ॥୩୨॥**

ଉ. ମାୟା ସଂସାରରେ ଜଣେ ମନୁଷ୍ୟ ଲୋଭ, କ୍ରୋଧ, ମୋହ, ମଦ, ଈର୍ଷାକୁ ଜିଣିବା ହୁଏତ ସହଜ ହୋଇପାରେ, କିନ୍ତୁ କାମ ଉପରେ ବିଜୟ ପ୍ରାପ୍ତ କରିବା ଅସମ୍ଭବ । ସ୍ୱୟଂ ସୃଷ୍ଟିକର୍ତ୍ତା ବ୍ରହ୍ମା ସ୍ୱରସ୍ୱତୀଙ୍କ ପାଖରେ, ଶଙ୍କରଜୀ ମୋହିନୀଙ୍କ ପାଖରେ, ବିଶ୍ୱାମିତ୍ର ମେନକାଙ୍କ ପାଖରେ, ପରାଶର ମତ୍ସ୍ୟଗନ୍ଧାଙ୍କ ପାଖରେ ଇନ୍ଦ୍ର ଓ ସୂର୍ଯ୍ୟ ଅହଲ୍ୟାଙ୍କ କାମ ପାଶରେ ବନ୍ଦୀହେବା ଖବର ଭାରତର ଇତିହାସ ଓ ପୁରାଣ ସାହିତ୍ୟ ଘୋଷଣା କରୁଛି । ପୂର୍ବେ କେବଳ ଦୁଇଜଣ ତପସ୍ୱୀ ନର-ନାରାୟଣ କାମକୁ ଜିଣିଥିଲେ ଏବେ ତାଙ୍କ ଶିଷ୍ୟ ବା ଭକ୍ତ ମାର୍କଣ୍ଡେୟ ଜୟ କଲେ । ସୁତରାଂ ଶ୍ରୀମନ୍ ନାରାୟଣ ନିଜ ସଖା ନରଙ୍କୁ ସଙ୍ଗରେ ଧରି ମାର୍କଣ୍ଡେୟଙ୍କ ସମ୍ମୁଖ ଆବିର୍ଭୂତ ହେଲେ । ଛଅ ମନ୍ୱନ୍ତର କଠିନ ତପସ୍ୟାର ଫଳ ଏବେ ତାଙ୍କ ହାତ ପାଆନ୍ତାରେ ।

ପ୍ରଶ୍ନ-୭୨ : ମୁନିଶ୍ରେଷ୍ଠ ତୁରନ୍ତ ଆସନରୁ ଉଠି ଦଣ୍ଡାୟମାନ ହେଲେ । ଦଣ୍ଡବତ୍ ପ୍ରଣାମ କଲେ । ଅତ୍ୟନ୍ତ ଭାବ ବିହ୍ୱଳ ହୋଇ ରୋମାଞ୍ଚିତ ହେଲେ । ଅଜସ୍ର ଅଶ୍ରୁଧାରା ତାଙ୍କ ଦୁଇ ନେତ୍ରରୁ ପ୍ଲାବନ ହେଉଥାଏ । ସେ ଭଗବାନଙ୍କୁ ପଞ୍ଚୋପଚାରରେ ପୂଜନ କଲେ । ପୁଣି ପାଦଛୁଇଁ ମଥାନତ କରି ପ୍ରଣାମ କଲେ । ଅତ୍ୟନ୍ତ ଭାବ ଉଚ୍ଛ୍ୱାସ ଗଦ୍ ଗଦ୍ କଣ୍ଠରେ ଦଶ ଶ୍ଳୋକରେ ସ୍ତୁତି ଗାଇ ଗାଇ କିପରି ଉପସଂହାର କଲେ ତାଙ୍କ ଦିବ୍ୟ ସ୍ତୁତିର ?

**ଯତ୍ ଦର୍ଶନଂ ନିଗମେ ଆତ୍ମରହଃ ପ୍ରକାଶଂ**
**ମୁହ୍ୟନ୍ତି ଯତ୍ର କବୟୋଽଜ ପରା ଯତନ୍ତଃ ।**
**ତଂ ସର୍ବାବାଦ ବିଷୟ ପ୍ରତି ରୂପ ଶୀଳଂ**
**ବନ୍ଦେ ମହାପୁରୁଷଂ ଆତ୍ମନି ଗୂଢ଼ ବୋଧମ୍ ॥୪୯॥**

ଉ. ମାର୍କଣ୍ଡେୟ ମୁନି କହିଲେ, ‘‘ହେ ଭଗବନ୍, ଆପଣଙ୍କୁ କେବଳ ପରମରହସ୍ୟମୟ ଚାରି ବେଦ ଅଧ୍ୟୟନରେ ବୁଝିହୁଏ କିନ୍ତୁ ବ୍ରହ୍ମଦେବ (ଅଜ) ସ୍ୱୟଂ

ବେଦ ରହସ୍ୟ ଭେଦ କରି ନପାରି ଆପଣଙ୍କ ନାରାୟଣ ମାୟାରୁ ମୁକୁଳି ପାରନ୍ତି ନାହିଁ (ମୁହ୍ୟନ୍ତି) ଅନେକ ଅନେକ ଯତ୍ନ କରି ମଧ୍ୟ (ଯତ୍‌ନତଃ) । ଛଅ ଦର୍ଶନ ଶାସ୍ତ୍ର ପରସ୍ପର ବାଦ ବିବାଦ ରତ ହୋଇ ଆପଣଙ୍କୁ ବୁଝିବାରେ ଅସମର୍ଥ କିନ୍ତୁ ଆପଣଙ୍କ ଶରଣାଗତ ହୋଇ ନିଜର ଜ୍ଞାନ-ବୈରାଗ୍ୟ-ଭକ୍ତି ସାଧନକୁ ନିଜ ମଧ୍ୟରେ ଯେ ଗୁପ୍ତ ରଖିପାରନ୍ତି ସେଇ ବୈଷ୍ଣବ ନିଶ୍ଚୟ ଏ ସଂସାରରେ ମହାପୁରୁଷ ପଦବାଚ୍ୟ । ମୁଁ ଆପଣଙ୍କର ସେଇ ଭକ୍ତ ବୈଷ୍ଣବଙ୍କୁ ବାରମ୍ବାର ସପ୍ରେମ ଦଣ୍ଡବତ ପ୍ରଣାମ କରୁଛି ।''

# ଅଥ ନବମ ଅଧ୍ୟାୟଃ

## (ମାର୍କଣ୍ଡେୟ ମୁନିଙ୍କ ନାରାୟଣ ମାୟା ଦର୍ଶନ)

ପ୍ରଶ୍ନ-୭୩: ଅତ୍ୟନ୍ତ ଭବ୍ୟ ସ୍ତୁତି ଗାନ କରି ମହାମୁନି ମାର୍କଣ୍ଡେୟ ବିଷ୍ଣୁ ବୈଷ୍ଣବଙ୍କୁ ଭୂରି ଭୂରି ପ୍ରଶଂସା କଲେ । ଭଗବାନ ନର-ନାରାୟଣ ଅତ୍ୟନ୍ତ ପ୍ରସନ୍ନ ହୋଇ ମନଇଛା ବର ପ୍ରାର୍ଥନା କରିବାକୁ ଆଦେଶ କରନ୍ତେ ଓଁକାର ଆଶ୍ରିତ ଶିଷ୍ୟ ମାର୍କଣ୍ଡେୟ କିଛି ଅଜଣା ଅଶୁଣା ଦୁର୍ଲ୍ଲଭ ବର ମାଗି ବସିଲେ କି ଯେଉଁଥିପାଇଁ ଭଗବାନ ସ୍ମିତ ହାସ୍ୟ କଲେ ?

ମାର୍କଣ୍ଡେୟ ଉବାଚ

**ଅଥ-ଅପି-ଅମ୍ବୁଜ ପତ୍ର-ଅକ୍ଷ ପୁଣ୍ୟଶ୍ଳୋକ ଶିଖାମଣେ ।**
**ଦ୍ରକ୍ଷେ ମାୟାଂ ଯୟା ଲୋକଃ ସପାଲୋ ବେଦ ସଦ୍‌ଭିଦାମ୍ ॥୬॥**

ଉ. ନିଜ ଇଷ୍ଟଦେବଙ୍କୁ କମଳନୟନ, ପୁଣ୍ୟଶ୍ଳୋକ (ମହାତ୍ମା) ମାନଙ୍କ ଚୂଡ଼ାମଣି ବା ଶ୍ରେଷ୍ଠ ବୋଲି ସମ୍ବୋଧନ କରି ବୈଷ୍ଣବ ମାନଙ୍କର କେବେ ବି ନ ମାଗିବା ଚିଜଟି ମାଗି ବସିଲେ । ଭଗବାନ ତାଙ୍କୁ ନିରାଶ ନ କରି କୁଣ୍ଠିତ ଚିତ୍ତରେ ତଥାସ୍ତୁ ବୋଲି କହିଲେ । ଋଷିଶ୍ରେଷ୍ଠ କହିଲେ,''ହେ ପ୍ରଭୋ, ଯେଉଁ ଦୁର୍ଜୟା ମୋହିନୀ ମାୟା ଦଶଦିଗପାଳ ଓ ବ୍ରହ୍ମା-ବିଷ୍ଣୁ-ଶଙ୍କରଙ୍କ ବୁଦ୍ଧିକୁ ମୋହିତ କରି ଅସତ୍ ବସ୍ତୁକୁ ସତ୍‌ବୋଲି ବିଶ୍ୱାସ କରାଇ ପାରୁଛି ସେଇ ମାୟାଙ୍କୁ ମୁଁ ଦର୍ଶନ କରିବି (ଦ୍ରକ୍ଷେ) ।'' ଭଗବାନ ସ୍ମିତ ହାସ୍ୟ କରି ତଥାସ୍ତୁ କହି ଅନ୍ତର୍ଦ୍ଧାନ ହେଇଗଲେ ।

ଭଗବାନଙ୍କର ହସିବାର କାରଣ ହେଲା ଯେ ମୋହିନୀ ମାୟାକୁ ଭଗବାନ ନିଜ ଭକ୍ତର ଛାଇ ମଡ଼େଇ ଦିଅନ୍ତି ନାହିଁ । କାଳେ ସେ ଦୁଃଖ କଷ୍ଟରେ ପଡ଼ି ପୁଣି ତ୍ରାହି ତ୍ରାହି ଡ଼ାକିବ, ବ୍ୟତିବ୍ୟସ୍ତ କରିବ ବୋଲି । ଏଣେ ଭକ୍ତ ଜଣେ ମାୟା କବଳରେ ପଡ଼ିବାକୁ ସ୍ୱୟଂ ଆଗଭର ହେଉଛି । ଏହା କଅଣ କମ୍ ହାସ୍ୟାସ୍ପଦ କଥା !!!

ପ୍ରଶ୍ନ-୭୪: ମାୟା ଦର୍ଶନ ଲାଗି ମାର୍କଣ୍ଡେୟ ବ୍ୟାକୁଳ ହେଲେ । ଆଶ୍ରମରେ ଆସନ ପାରି ପ୍ରାଣାୟାମ କଲେ । ମନ, ବୁଦ୍ଧି, ଚିତ୍ତଙ୍କୁ ଏକାଗ୍ର କଲେ । ଅହଂକାରକୁ ଲଗାଇଲେ ନରନାରାୟଣଙ୍କ ଓଁ କାର ଜ୍ୟୋତିରୂପ ବା ବିଭୂତିରୂପର ଅଖଣ୍ଡ ଚିନ୍ତନ ଧ୍ୟାନରେ । ଦିନକର କଥା । ସଂଧ୍ୟାବେଳେ ତାଙ୍କ ଆଶ୍ରମ ନିକଟରେ ପ୍ରବଳ ବେଗରେ ପବନ ବହିଲା । ତୋଫାନ ହେଲା । ପ୍ରଳୟ କାଳୀନ ବର୍ଷା ହେଲା । ନଦୀ, ପର୍ବତ, ସାଗର, ଭୂମି ସବୁ ଜଳ ପ୍ଳାବିତ ହେଲା । ଋଷି ସେଇ ଜଳରେ ଭାସିବାରେ ଲାଗିଲେ । କେବେ ଜଳରେ ବୁଡୁଥାଆନ୍ତି ପୁଣି କେବେ ଉପରକୁ ଉଠୁ ଥାଆନ୍ତି । କ୍ଷୁଧା ତୃଷାରେ ଲହୁଲୁହାଣ ହେଲେ ମୁନି । ମଗର, କୁମ୍ଭୀର, ତିମିଙ୍କ ହାବୁଡ଼ରେ ପଡ଼ି ମୁନି ଭୟରେ ଥରି ଉଠନ୍ତି । ଦୁଃଖ, କଷ୍ଟ, ଶୋକର ଅନ୍ତ ନଥାଏ । ଦିନ ପରେ ଦିନ, ବର୍ଷ ପରେ ବର୍ଷ, ଯୁଗ ପରେ ଯୁଗ ଶେଷରେ ମନ୍ୱନ୍ତର ପରେ ମନ୍ୱନ୍ତର ଏପରି ଛଅ ମନ୍ୱନ୍ତର ସମୟ ବିତିଗଲା । ଏଣେ ତେଣେ ଭାସୁ ଭାସୁ ହଠାତ୍ ଦିନେ ଏକ ଉଚ୍ଚ କୁଦ ସ୍ଥାନରେ (ନୀଳାଚଳ ପର୍ବତରେ) ଏକ ବିଶାଳକାୟ ଅକ୍ଷୟ ବଟବୃକ୍ଷ (ନ୍ୟଗ୍ରୋଧ) ଦେଖିଲେ । ସ୍ଥାନର ଐଶାନ୍ୟ କୋଣର (ପ୍ରାକ୍ ଉତ୍ତରସ୍ୟାଂ) ଶାଖାର ଏକ ମହାନ ବଟପତ୍ର (ପର୍ଣ୍ଣ ପୁଟକେ) ଉପରେ କଅଣ ଦର୍ଶନ କରି ମହାମୁନି ମାର୍କଣ୍ଡେୟ ଆଶ୍ଚର୍ଯ୍ୟ ହୋଇଗଲେ ?

ସୂତ ଉବାଚ

**ପ୍ରାକ୍ ଉତ୍ତରସ୍ୟାଂ ଶାଖାୟାଂ ତସ୍ୟ-ଅପି ଦଦୃଶେ ଶିଶୁମ୍ ।**
**ଶୟାନଂ ପର୍ଣ୍ଣ ପୁଟକେ ଗ୍ରସନ୍ତଂ ପ୍ରଭୟା ତମଃ ।।୨୧।।**

ଉ. ଋଷି ମାର୍କଣ୍ଡେୟ ଦର୍ଶନ କଲେ ସେହି ବଟପତ୍ର ଉପରେ ଏକ ଦିବ୍ୟ ଶିଶୁ ଶୟନ କରିଛନ୍ତି । ତାଙ୍କର ଦିବ୍ୟ ଆଲୋକ ପ୍ରଳୟକାଳର ଅନ୍ଧକାରକୁ ଗ୍ରାସ କରିନେଉଛି । ସେ ଶିଶୁ ନିଜ କର ଅରବିନ୍ଦରେ ନିଜର ପଦ ଅରବିନ୍ଦର ଅଙ୍ଗୁଷ୍ଟକୁ ମୁଖ ଅରବିନ୍ଦଦ୍ୱାରା ଶୋଷି ଚାଲିଛନ୍ତି । ଏଭଳି ଅଦ୍ଭୁତ କ୍ରିୟାରେ ପ୍ରଳୟକାଳୀନ ସମଗ୍ର ଜଳରାଶି ସେଇ ଶିଶୁଙ୍କ ମୁଖ ଗହ୍ୱର ମଧରେ ପଶି ଅଦୃଶ୍ୟ ହୋଇଯାଉଛି ।

ମାର୍କଣ୍ଡେୟ ଶିଶୁଙ୍କର ପରିଚୟ ପଚାରିବାରୁ ଆଗ୍ରହୀ ହୋଇ ନିଜ ହସ୍ତ ପ୍ରସାରଣ କରିଛନ୍ତି । ମାତ୍ର ସେ ନିଜେ ସଶରୀରେ ସେଇ ମୁଖ ରନ୍ଧ୍ର ଦେଇ ତାଙ୍କର ଉଦର ଗର୍ଭରେ ପଶିଯାଉଛନ୍ତି ସତେ କି ଛୋଟ ମଶାଟିଏ ଛୋଟ ରନ୍ଧ୍ର ଦେଇ ପ୍ରବେଶ କରିଗଲା କି ଆଉ । ମୁନିଶ୍ରୀ ଦେଖିଲେ ଶିଶୁଙ୍କର ଉଦର ମଧ୍ୟରେ ସେଇ ପୁରୁଣା ବ୍ରହ୍ମାଣ୍ଡର ପ୍ରଳୟ ଜଳକୁ । ସେଇ କୁମ୍ଭୀର, ତିମିଙ୍ଗଳ, ଶାଙ୍କୁଚଙ୍କ ବିନୋଦ କ୍ରୀଡ଼ା । ଚାରି ବର୍ଣ୍ଣ ଚାରି ଆଶ୍ରମର ମନୁଷ୍ୟ ମାନଙ୍କରେ ଭରା ସଂସାର ଜଞ୍ଜାଳ । ସତ ସତିକା ପଶୁ, ପକ୍ଷୀ, କୀଟ, ପତଙ୍ଗ, ବୃକ୍ଷଲତା, ପର୍ବତ, ସାଗର, ସୂର୍ଯ୍ୟ, ଚନ୍ଦ୍ର, ଗ୍ରହ, ତାରକା ଖଚିତ ଆକାଶ, ଭୂଭାଗ ସହିତ ଅନନ୍ତ ଅନ୍ତରୀକ୍ଷ ।

ପ୍ରଶ୍ନ-୭୫: ମାର୍କଣ୍ଡେୟଙ୍କ ଦେଖୁ ଦେଖୁ କଳ୍ପାନ୍ତ ପ୍ରଳୟ ଶେଷ ହୋଇଗଲା । ସେଇ ଶିଶୁଙ୍କର ନିଃଶ୍ୱାସ ବାୟୁଦ୍ୱାରା ଋଷି ଏବେ ଫିଙ୍ଗି ହୋଇଗଲେ ବାହାରକୁ । ପୁଣି ପଡ଼ିଲେ ସେଇ ଅଥଳ ପ୍ରଳୟ ଜଳରାଶିରେ । ଦର୍ଶନ କଲେ ନୂତନ କଳ୍ପର ସୂର୍ଯ୍ୟଙ୍କର ସୁନ୍ଦର ଆଲୋକରଶ୍ମି । ଋଷି ପୁଣି ଦର୍ଶନ କଲେ ସେଇ ବଟପତ୍ର ଉପରେ ସେଇ ବାଳକ କୃଷ୍ଣଙ୍କୁ ସେଇ ଅବସ୍ଥାରେ । ଅତ୍ୟନ୍ତ ଭାବାବିଷ୍ଟ ହୋଇ ମାର୍କଣ୍ଡେୟ ଧାଇଁଲେ ସେଇ ଦିବ୍ୟ ଅଲୌକିକ ଶିଶୁଙ୍କୁ ଆଲିଙ୍ଗନ କରିବାକୁ (ଅନ୍ୱଥ) । ହଠାତ୍ ମୁନିଶ୍ରେଷ୍ଠ ପୁଣି କେଉଁ ଦିବ୍ୟ ଅନୁଭବ କରି ଆଶ୍ଚର୍ଯ୍ୟ ହୋଇଗଲେ ?

**ତଂ ଅନ୍ୱଥ ବଟୋ ବ୍ରହ୍ମନ୍ ସଲିଳଂ ଲୋକସଂପ୍ଲବଃ ।**
**ତିରୋଧାୟି କ୍ଷଣାତ୍ ଅସ୍ୟ ସ୍ୱ-ଆଶ୍ରମେ ପୂର୍ବବତ୍ସ୍ଥିତଃ ।।୩୪।।**

ଉ. ମୁନିକୁଳ ମଉଡ଼ମଣି ମାର୍କଣ୍ଡେୟ ଦେଖିଲେ ସଂପୂର୍ଣ୍ଣ ପ୍ରଳୟ ଜଳ ଅଦୃଶ୍ୟ । ବ୍ରହ୍ମାଣ୍ଡର ନିମିତ୍ତ ପ୍ରଳୟ ଖତମ୍ । ଏତେ ସବୁ କାଳ ତାଙ୍କୁ କ୍ଷଣକ ଭଳି ଏବେ ଅନୁଭବ ହେଉଛି । ସେ ନିଜକୁ ନିଜ ଆଶ୍ରମରେ ନିଜ ଆସନରେ ବସିଥିବାର ଦେଖିଲେ ।

ମହାତ୍ମାମାନଙ୍କ ମତରେ ସେତେବେଳେ ସେ ଦେଖିଥିବା ପ୍ରଳୟ ବାସ୍ତବରେ ସତସତିକା ବ୍ରହ୍ମାଣ୍ଡ ପ୍ରଳୟ ନୁହେଁ । ଶ୍ରୀ ନାରାୟଣଙ୍କ ମାୟା ପ୍ରଳୟ । ଶ୍ରୀମନ୍ ନାରାୟଣଙ୍କ ଦୁର୍ଜ୍ଜୟା ମହାମାୟାଙ୍କର କରାମତି ବା ମାୟାକ୍ରୀଡ଼ା ଯାହା ଦର୍ଶନ ଅନୁଭବ କରିବାକୁ ମୁନି ଅନୁରୋଧ କରିଥିଲେ ଭଗବାନ ନାରାୟଣଙ୍କୁ । କଳ୍ପଜୀବୀ ମାର୍କଣ୍ଡେୟ ମୁନି ଏବେ ଜୁହାର କଲେ ମାୟା ଓ ମାୟାପତି ଉଭୟଙ୍କୁ ଦୁଇ ହାତ ଯୋଡ଼ି ।

# ଅଥ ୧୦ମ ଅଧ୍ୟାୟଃ

## (ମାର୍କଣ୍ଡେୟ ମୁନିଙ୍କ ପ୍ରତି ବୈଷ୍ଣବ କୃପା)

ପ୍ରଶ୍ନ-୭୬: ଭଗବାନ ନାରାୟଣଙ୍କର ସର୍ବୋଚ୍ଚ ଐଶ୍ୱର୍ଯ୍ୟ ଶକ୍ତିର ନାମ ମହାମାୟା । ଏହି ଅନିର୍ବଚନୀୟ ଦୁର୍ଜୟା ମାୟାଙ୍କ ଦ୍ୱାରା କଳ୍ପାନ୍ତ ପ୍ରଳୟ ଅନୁଭବ କରିବା ପରେ ମାର୍କଣ୍ଡେୟ ମୁନି ନର ନାରାୟଣଙ୍କ ସଂପୂର୍ଣ୍ଣ ଶରଣାଗତ ହୋଇଗଲେ । ମୁନିଶ୍ରେଷ୍ଠ ମାର୍କଣ୍ଡେୟ ବିଷ୍ଣୁ କୃପା ପ୍ରାପ୍ତ ହେବା ପରେ ପୁଣି କାହିଁକି ପରମ ବୈଷ୍ଣବ ସଦାଶିବଙ୍କର ଧ୍ୟାନ କଲେ ଓ ତାଙ୍କ ଆଶିର୍ବାଦ ପ୍ରାପ୍ତ ହେଲେ ?

ସୂତ ଉବାଚ

**ତଂ ଏବ ନିଭୃତ-ଆତ୍ମାନଂ ବୃଷେଣ ଦିବି ପର୍ଯ୍ୟଟନ୍ ।**
**ରୁଦ୍ରାଣ୍ୟା ଭଗବାନ୍ ରୁଦ୍ରୋ ଦଦର୍ଶ ସ୍ୱଗଣୈଃ ବୃତଃ ॥୩॥**

ଉ. ଏକଦା ଭଗବାନ ରୁଦ୍ରଦେବ ପତ୍ନୀ ପାର୍ବତୀ (ରୁଦ୍ରାଣ୍ୟା)କୁ ଧରି ନିଜ ରୁଦ୍ରଗଣଙ୍କ ସହିତ ମହଶୂନ୍ୟରେ ବୃଷଭ ପୃଷ୍ଠରେ ପୃଥିବୀ ପର୍ଯ୍ୟଟନ କରୁଥିଲେ । ହିମାଳୟ ପର୍ବତର ଅପର ପାର୍ଶ୍ୱରେ ପୁଷ୍ପଭଦ୍ରା ନଦୀ ତଟରେ ( ଆଧୁନିକ ଚୀନ୍ ଦେଶରେ) ଗଭୀର ସମାଧିମଗ୍ନ ଅବସ୍ଥାରେ ମାର୍କଣ୍ଡେୟଙ୍କୁ (ତଂ ଏବ) ସେମାନେ ଦେଖିଲେ ।

ପ୍ରଶ୍ନ-୭୭: ଐଶ୍ୱର୍ଯ୍ୟର ଠାକୁର ଶ୍ରୀନାରାୟଣଙ୍କ ଦର୍ଶନ ପରେ ଋଷିଙ୍କର ଲକ୍ଷ୍ୟ ଏବେ ପରମାନନ୍ଦ ପ୍ରାପ୍ତି । ମା'ପାର୍ବତୀ ଆନନ୍ଦରେ ଋଷିଙ୍କ ନିକଟକୁ ଯାଇ ତପସ୍ୟାର ଫଳ ପ୍ରଦାନ କରିବାକୁ ଭଗବାନଙ୍କ ଶଙ୍କରଙ୍କୁ ଅନୁରୋଧ କଲେ । କଥାଟି ଶୁଣୁ ଶୁଣୁ ଶଙ୍କରଜୀ ଉତ୍ତରରେ ଜଣାଇଦେଲେ ଯେ ମାର୍କଣ୍ଡେୟ ଜଣେ ସାମାନ୍ୟ ତପସ୍ୱୀ ନୁହନ୍ତି । ସେ ଆମ ପ୍ରଭୁ ନରନାରାୟଣଙ୍କ ଦର୍ଶନ ଓ କୃପା ପ୍ରାପ୍ତ ପରମ ବୈଷ୍ଣବ । ଧର୍ମ, ଅର୍ଥ, କାମ ଓ ମୋକ୍ଷ ପ୍ରାପ୍ତି ପର୍ଯ୍ୟନ୍ତ ଇଚ୍ଛା ତାଙ୍କର ନାହିଁ । ସେ କିଛି ଚାହୁଁନାହାନ୍ତି । ତଥାପି ଶଙ୍କର ଭଗବାନ ମା ଭବାନୀ ଓ ଶିବ ଗଣକୁ ନେଇ କାହିଁକି ଋଷିଙ୍କ ନିକଟକୁ ଗଲେ ?

ଶ୍ରୀ ଭଗବାନ ଉବାଚ

**ଅଥ-ଅପି ସଂବଦିଷ୍ୟାମୋ ଭବାନି-ଏତେନ ସାଧୁନା ।**
**ଅୟଂ ହି ପରମୋ ଲାଭୋ ନୃଣାଂ ସାଧୁ ସମାଗମଃ ॥୭॥**

ଉ. ସାଧୁ ସଙ୍ଗ ବ ବୈଷ୍ଣବ ସଙ୍ଗ (ସାଧୁ ସମାଗମଃ) ଲୋଭରେ ଗଲେ । ସଂସାର ପାଇଁ ଏକ ଅତି ଉଚ୍ଚ ଆଦର୍ଶର ସଙ୍କେତ କଲେ ମନୁଷ୍ୟ ଜୀବନରେ କ୍ଷଣିକ ସତ୍‌ସଙ୍ଗ ମଧ୍ୟ ଅତ୍ୟନ୍ତ ଲାଭଦାୟକ ବୋଲି । ସୁତରାଂ ଭଗବାନ ଶିବ କହିଲେ, ''ଭବାନି, ଚାଲ ତେବେ ସାଧୁସଙ୍ଗ ଟିକିଏ କରିବା ।''

ପ୍ରଶ୍ନ-୭୮: ଦେବ ଦେବ ମହାଦେବ ପହଞ୍ଚିଲେ ମହାମୁନି ମାର୍କଣ୍ଡେୟଙ୍କ ସମ୍ମୁଖରେ । ମୁନିଶ୍ରୀ ତାଙ୍କର ପ୍ରଗାଢ଼ ସମାଧି ହେତୁ ସେମାନଙ୍କୁ ଦେଖି ନ ପାରନ୍ତେ (ତତ୍ ଅଭିଜ୍ଞାୟ) ଶଙ୍କର ଭଗବାନ ସେତେବେଳେ କି ଉପାୟ କଲେ ତାଙ୍କ ସତ୍‌ସଙ୍ଗ ପ୍ରାପ୍ତି ଲାଗି ?

ସୂତ ଉବାଚ

**ଭଗବାନ୍ ତତ୍ ଅଭିଜ୍ଞାୟ ଗିରୀଶୋ ଯୋଗମାୟୟା ।**
**ଆବିଶତ୍ ତତ୍ ଗୁହା-ଆକାଶଂ ବାୟୁଃ ଛିଦ୍ରଂ ଇବ-ଈଶ୍ୱରଃ ॥୧୦॥**

ଉ. କ୍ଷୁଦ୍ର ଛିଦ୍ର ଟିଏ ଦେଖିଲେ ବାୟୁ ଯେଭଳି ସେଥିରେ ପ୍ରବେଶ କରିଯାଏ ଭଗବାନ ଶଙ୍କର ସତ୍‌ସଙ୍ଗ ଲୋଭରେ ପ୍ରିୟ ବୈଷ୍ଣବ ଶିଷ୍ୟଙ୍କ ହୃଦୟ ଗୁହାରେ ସପତ୍ନୀକ ଯୋଗମାୟା ଶକ୍ତି ବଳରେ ପ୍ରବେଶ କରି ସହସା ତାଙ୍କ ହୃଦୟରେ ପ୍ରକଟ ହୋଇଗଲେ । ଯେହେତୁ ଭଗବାନଙ୍କ ଉଦ୍ଦେଶ୍ୟ ସତ୍‌ସଙ୍ଗ ପ୍ରାପ୍ତି । ତାଙ୍କର ଏ ପ୍ରବେଶକୁ ଅନଧିକାର ପ୍ରବେଶ କୁହାଯାଇ ନପାରେ ।

ପ୍ରଶ୍ନ-୭୯: ମୁନିଶ୍ରୀ ସ୍ୱ ହୃଦୟ ଆକାଶରେ ପରମ ବୈଷ୍ଣବ ଦମ୍ପତିଙ୍କୁ ଦର୍ଶନ କରି ହଠାତ୍ ଠଉରେଇ ପାରିଲେନି । ଏ କିଏ ଓ କେଉଁ ଠାରୁ ଆସିଛନ୍ତି ଜାଣିବା ପାଇଁ ସମାଧି ଭଗ୍ନ କରି ବାହାରେ ଦର୍ଶନ କଲେ ସଂପୂର୍ଣ୍ଣ ଶିବ ଦରବାରକୁ ନିଜ ଦିବ୍ୟଚକ୍ଷୁରେ । ଭାବ ଉଚ୍ଛ୍ୱାସରେ ମୁନିଶ୍ରେଷ୍ଠ ଭଗବାନଙ୍କୁ କିଭଳି ସ୍ୱାଗତ ସତ୍କାର କଲେ ?

**ତସ୍ମୈ ସପର୍ଯ୍ୟାଂ ବ୍ୟଦଧାତ୍ ସଗଣାୟ ସହ-ଉମୟା ।**
**ସ୍ୱାଗତ-ଆସନ ପାଦ୍ୟ-ଅର୍ଘ୍ୟ ଗନ୍ଧ ସ୍ରକ୍ ଧୂପ ଦୀପକୈଃ ॥୧୫॥**

ଉ. ମାର୍କଣ୍ଡେୟଜୀ ଜଗଦ୍ ଅମ୍ବାଙ୍କ ସହ ଶିବଗଣ ଓ ଶିବଙ୍କର ଯଥା ଯୋଗ୍ୟ ପୂଜନ କଲେ । ସ୍ୱାଗତ ସମ୍ଭାଷଣ, ଆସନ ପ୍ରଦାନ, ପାଦ୍ୟ, ଅର୍ଘ୍ୟ, ସୁଗନ୍ଧ ଦ୍ରବ୍ୟ ବିରତଣ, ପୁଷ୍ପ ମାଲ୍ୟ ଅର୍ପଣ, ଧୂପ ଅର୍ପଣ ସହିତ ସମସ୍ତଙ୍କର ଆଳତୀ ବନ୍ଦପନା କଲେ ଦୀପ ପ୍ରଜ୍ୱଳନ ଇତ୍ୟାଦି ସ୍ୱହସ୍ତରେ କରି ।

ପ୍ରଶ୍ନ-୮୦ : ଭୂମିରେ ମଥାପାତି ସାଷ୍ଟାଙ୍ଗ ଦଣ୍ଡବତ କରି ମୁନିମହାଶୟ କି ସେବା କରିପାରିବି ବୋଲି ପ୍ରଶ୍ନ କରନ୍ତେ ଭଗବାନ ଶଙ୍କର ଅତ୍ୟନ୍ତ ପ୍ରସନ୍ନ ହୋଇ ତାଙ୍କୁ କିଭଳି ପ୍ରଶଂସା କଲେ ସେତେବେଳେ ?

**ସଲୋକା ଲୋକପାଳାଃ ତାନ୍ ବନ୍ଦନ୍ତି-ଅର୍ଚ୍ଚନ୍ତି-ଉପାସତେ ।**
**ଅହଂ ଚ ଭଗବାନ୍ ବ୍ରହ୍ମା ସ୍ୱୟଂ ଚ ହରିଃ ଈଶ୍ୱରଃ ॥୨୧॥**

ଉ. ଯେଉଁ ନାରାୟଣ ଭକ୍ତମାନେ ବ୍ରହ୍ମା ବିଷ୍ଣୁ ଶଙ୍କରଙ୍କ ମଧ୍ୟରେ ଥିବା ଭେଦ ଓ ଅଭେଦକୁ ତତ୍ତ୍ୱତଃ ଜାଣନ୍ତି ଓ ଦୁହିଁଙ୍କ ଠାରେ ଅଣୁମାତ୍ର ଦ୍ୱେଷ ରଖନ୍ତି ନାହିଁ ସେମାନଙ୍କୁ ବ୍ରହ୍ମାଣ୍ଡର ଚତୁର୍ଦ୍ଦଶ ଭୁବନର ଭକ୍ତଗଣ, ଇନ୍ଦ୍ରାଦି ଦିକ୍‌ପାଳଗଣ ଏପରିକି ବ୍ରହ୍ମା, ବିଷ୍ଣୁ ଓ ଶଙ୍କର ମଧ ନମସ୍କାର କରନ୍ତି (ବନ୍ଦନ୍ତି), ପୂଜା କରନ୍ତି (ଅର୍ଚ୍ଚନ୍ତି) ଓ ଭଗବତ ଭକ୍ତି ମାର୍ଗରେ ସକଳ ସହାୟତା କରନ୍ତି (ଉପାସନା) ।

ପ୍ରଶ୍ନ-୮୧ : ଭେଦଭାବ ରହିତ ଦ୍ୱେଷ ରହିତ ସାଧୁମାନଙ୍କର ପ୍ରଶଂସା କରିବାକୁ ଯାଇ କେଉଁ କେଉଁ ଦୃଷ୍ଟାନ୍ତ ଦୁଇଟି ଶଙ୍କର ଭଗବାନ ସେଠାରେ ଉପସ୍ଥାପନା କଲେ ?

**ନ ହି-ଅପ୍ ମୟାନି ତୀର୍ଥାନି ନ ଦେବାଃ ଚେତନା ଉଜ୍‌ଝିତାଃ ।**
**ତେ ପୁନନ୍ତି-ଉରୁ କାଳେନ ଯୂୟଂ ଦର୍ଶନ ମାତ୍ରତଃ ॥୨୩॥**

ଉ. ପବିତ୍ର ଗଙ୍ଗା ଯମୁନା ଆଦିଙ୍କର ନଦୀଜଳ, ପୁଷ୍କର, ମାନସରୋବର ଆଦିର କିମ୍ବା ମହୋଦଧିର ଜଳ କେବଳ ତୀର୍ଥ ନୁହନ୍ତି । ଚେତନା ରହିତ(ଉଜ୍‌ଝିତା) ଜଡ଼ କାଠ, ପଥର, ପିତଳ, ଧାତୁ ନିର୍ମିତ ମୂର୍ତ୍ତି କେବଳ ଦେବୀ ଦେବତା ନୁହନ୍ତି । ଏମାନେ ସିନା ଅନେକ ଥର ଅନେକ ସ୍ନାନ, ସ୍ପର୍ଶ, ଆଚମନ, ପୂଜନ, ଅର୍ଚ୍ଚନ ପରେ ଆଶୀର୍ବାଦ କରନ୍ତି କିନ୍ତୁ ସନ୍ଥ କୃପା ତ ଅକ୍ଳେଶରେ କେବଳ ଦର୍ଶନରୁ ମିଳିଯାଇଥାଏ ।

ପ୍ରଶ୍ନ-୮୨ : ଦେବଦେବ ମହାଦେବ ମହା ଆନନ୍ଦରେ ଘୋଷଣା କରି କହିଲେ ଯେ ସେ ନିଜେ ବୈଷ୍ଣବ ଦର୍ଶନ, ପୂଜନ, ଅର୍ଚ୍ଚନ ଓ ଉପାସନା କରିଥାଆନ୍ତି । ବୈଷ୍ଣବଙ୍କ ଦର୍ଶନରେ ଯେତେବେଳେ ଜୀବର କୋଟି ଜନ୍ମର ପାପ ନଷ୍ଟ ହୋଇଯାଏ, ତାଙ୍କ ସହ କଥା ବିପଦ ହେଲେ, ତାଙ୍କର ସେବା, ସତ୍କାର, ପୂଜା ଆଦି କରିଦେଲେ କି ପରମାର୍ଥିକ ଲାଭ ନହେବ କହନ୍ତୁ ତ ? ପରମ ବୈଷ୍ଣବ ମାର୍କଣ୍ଡେୟ ମୁନି ଦୀର୍ଘ ସମୟ ଧରି ମାୟା ନଦୀରେ ପହଁରି ପହଁରି ଥକି ପଡ଼ିଥିଲେ ଅବଶ୍ୟ । ଅନେକ କାୟିକ, ମାନସିକ, ବୌଦ୍ଧିକ କ୍ଳେଶ ସହିତ ଶୋକ, ମୋହ ଇତ୍ୟାଦି ବିଷ୍ଣୁମାୟା

ଦର୍ଶନ କରି ଅଙ୍ଗେ ଅଙ୍ଗେ ସଦ୍ୟ ଅନୁଭବ କରିଛନ୍ତି । ସେତେବେଳେ ସେସବୁକୁ ଏକତ୍ର ମନେ ପକାଇ ଶଙ୍କର ଭଗବାନଙ୍କୁ କ'ଣ ଅଡୁଆ କଥାଟେ କହିପକାଇଲେ ?

ମାର୍କଣ୍ଡେୟ ଉବାଚ

**ଅହୋ ଈଶ୍ୱର ଲୀଳା-ଇୟଂ ଦୁର୍ବିଭାବ୍ୟା ଶରୀରିଣାମ୍ ।**
**ଯତ୍ ନମନ୍ତି-ଈଶିତବ୍ୟାନି ସ୍ତୁବନ୍ତି ଜଗତ୍ ଈଶ୍ୱରାଃ ॥୨୮॥**

ଉ. ମହାମୁନି ମାର୍କଣ୍ଡେୟ ନିଜ ପ୍ରଶଂସା ଶୁଣି କାନରେ ହାତଦେଲେ । କହିଲେ, ''ହେ ଭଗବନ୍, ମୁଁ ସିନା ଦୁର୍ଜୟା ବିଷ୍ଣୁମାୟାରୁ ମୁକୁଳି ଥିଲି । ଏବେ ଶିବ ମାୟାରେ ପଡ଼ିଯାଇଛି । କାରଣ ଯେଉଁ ତ୍ରିଦେବଙ୍କୁ ଇନ୍ଦ୍ର, ଚନ୍ଦ୍ର, ସୂର୍ଯ୍ୟ ଅଗ୍ନି ଆଦି ଦେବତା ପ୍ରଣାମ କରନ୍ତି । ତାଙ୍କ କୃପା ଭିକ୍ଷା କରନ୍ତି । ତାଙ୍କ ପଦତଳେ ଶରଣ ପଶନ୍ତି ସେଇ ଜଗଦ୍ ଈଶ୍ୱର ପୁଣି ଆମଭଳି ଭୌତିକ ଦେହଧାରୀ ମନୁଷ୍ୟର (ଶରୀରିଣାମ୍) ପ୍ରଶଂସା କରୁଛନ୍ତି !! ଏସବୁ ତ ଆପଣଙ୍କର ଅବୋଧ ଲୀଳା (ଦୁର୍ବିଭାବ୍ୟା) ।'' ସେ ଯାହା ହେଉ ଅନେକ ସମୟ ଧରି ସତ୍‌ସଙ୍ଗରେ ଉଭୟ ପକ୍ଷର ଭାବ ବିନିମୟ ଲୀଳା ଚାଲିଲା । ଶେଷରେ ଭଗବାନ ଶଙ୍କର ପ୍ରସନ୍ନ ହୋଇ ବର ଯାଚନା କରିବାକୁ ସଙ୍କେତ କଲେ ।

ପ୍ରଶ୍ନ-୮୩: ସତ୍‌ସଙ୍ଗ ଶେଷରେ ମୁନିଶ୍ରେଷ୍ଠ ମାର୍କଣ୍ଡେୟ ଶଙ୍କର ଭଗବାନଙ୍କୁ କି ବର ପ୍ରାର୍ଥନା କଲେ ?

**ବରଂ ଏକଂ ବୃଣେଽଥ-ଅପି ପୂର୍ଣ୍ଣାତ୍ କାମ-ଅଭିବର୍ଷଣାତ୍ ।**
**ଭଗବତି ଅଚ୍ୟୁତାଂ ଭକ୍ତିଂ ତତ୍ପରେଷୁ ତଥା ତ୍ୱୟି ॥୩୪॥**

ଉ. ଶିବଜୀ ବାଞ୍ଛାକଳ୍ପତରୁ । ସୁତରାଂ ତାଙ୍କୁ ନାରାୟଣଙ୍କଠାରେ ଭକ୍ତି, ତାଙ୍କ ଭକ୍ତଙ୍କଠାରେ ଭକ୍ତି ସହିତ ପରମ ବୈଷ୍ଣବ ଶିବଜୀଙ୍କଠାରେ (ତ୍ୱୟି) ଭକ୍ତି ଅବିଚଳିତ, ନିରନ୍ତର, ଅନପାୟିନୀ ଅବସ୍ଥାରେ ରହୁ ବୋଲି ପ୍ରାର୍ଥନା କରିଥିଲେ ।

ପ୍ରଶ୍ନ-୮୪: ମାର୍କଣ୍ଡେୟଜୀଙ୍କ ସହ ହରଗୌରୀ ମିଳନ କଅଣ କେବଳ ତଥାସ୍ତୁ ବଚନରେ ସମାପ୍ତ ହୋଇଗଲା ?

**କାମୋ ମହର୍ଷେ ସର୍ବୋଽୟଂ ଭକ୍ତିମାନ୍ ତ୍ୱଂ ଅଧୋକ୍ଷଜେ ।**
**ଆକଳ୍ପାନ୍ତାତ୍ ଯଶଃ ପୁଣ୍ୟଂ ଅଜର-ଅମରତା ତଥା ॥୩୬॥**

ଉ. ଶଙ୍କର ଭଗବାନ ଅକୁଣ୍ଠ ଦାନୀ ବା ଅବଢ଼ର ଦାନୀ । ସୁତରାଂ ମୁନିଶ୍ରୀଙ୍କ

ମାଗିବା ଚିଜ ଅବିଳମ୍ବେ ଦେଇ ଦେଲେ । ନିଜ ତରଫରୁ ପୁଣି କେତେ କ'ଣ ଢ଼ାଳି ଦେଲେ । କହିଲେ, ''ହେ ମୁନିବର, ଆୟୁଷ ରହିଲେ, ଦେହ ସୁସ୍ଥ ରହିଲେ ସିନା ଏ ଭକ୍ତି ସବୁ କରିବ । ତୁମର ଆୟୁଷ ଇନ୍ଦ୍ର, ଚନ୍ଦ୍ର, ସୂର୍ଯ୍ୟ ସପ୍ତର୍ଷିଙ୍କ ଆୟୁଷ ଭଳି କେବଳ ଏକ ମନ୍ୱନ୍ତର ନହୋଇ ଚଉଦ ମନ୍ୱନ୍ତର ବ୍ୟାପ୍ତି ହେଉ । ତୁମେ ସଦା ସର୍ବଦା ଅଜର, ଅମର ରହିବ । ତ୍ରିକାଳଜ୍ଞାତା ହେବ । ତୁମର ଭକ୍ତି, ବୈରାଗ୍ୟ, ଜ୍ଞାନ, ବିଜ୍ଞାନ, ବ୍ରହ୍ମତେଜ କଳ୍ପଜୀବୀ ଜୀବନ ସାରା ବଜାୟରହିବ । ପୁଣି ତୁମେ ପୁରାଣ ଆଚାର୍ଯ୍ୟ ଭାବରେ ସମ୍ମାନୀତ ହେବ । ତୁମ ନାମରେ ଏକ ପୁରାଣ ବ୍ୟାସଦେବ ରଚନା କରିବେ ।

ଯେଉଁ ନିର୍ଗୁଣ ନିରାକାର ବ୍ରହ୍ମରୂପୀ ଓଁ ଧ୍ୟାନ କରି ମାର୍କଣ୍ଡେୟ ମୁନି ସଗୁଣ ନିରାକାର ପରମାତ୍ମାଙ୍କୁ ପ୍ରାପ୍ତ ହେଲେ ସେହି ଓଁକାରଙ୍କର ବର୍ଣ୍ଣନା ହେବ ପର ଅଧ୍ୟାୟରେ ।

## ଅଥ ୧୧ଶ ଅଧ୍ୟାୟଃ

### (ମହାବିଷ୍ଣୁଙ୍କର ବିରାଟରୂପର ଦିବ୍ୟ ବିଭୂତି ରୂପରେ ଓଁକାର ସୂର୍ଯ୍ୟନାରାୟଣଙ୍କ ପୂଜନ ବିଧି)

ପ୍ରଶ୍ନ-୮୫: ସତ୍‌ସଙ୍ଗର ମୁଖ୍ୟ ଶ୍ରୋତା ଶୌନକ ବୁଝିଗଲେ ଯେଉଁ ମହାକାଳ ମହାମାୟା ରୂପ ଧରି ସୃଷ୍ଟି ପାଳନ ଓ ସଂହାର ସବୁକାର୍ଯ୍ୟ କରୁଛନ୍ତି ସେଇ ହିଁ ମହାକାଶରେ ସୂର୍ଯ୍ୟ ନାରାୟଣ ରୂପରେ ବିଦ୍ୟମାନ । ସୂର୍ଯ୍ୟ ହିଁ ମହାକାଳଙ୍କର ନିୟନ୍ତା । ତାଙ୍କୁ ଆଶ୍ରୟ କରି ଦିନ, ମାସ, ବର୍ଷ, ଯୁଗ, କଳ୍ପ ଆଦି ବ୍ରହ୍ମା ଠାରୁ ପିମ୍ପୁଡ଼ି ପର୍ଯ୍ୟନ୍ତ ସମସ୍ତଙ୍କର ଆୟୁଷ କ୍ଷୟ ବୃଦ୍ଧି ଆଦି ନିୟନ୍ତ୍ରଣ କରୁଛନ୍ତି । ସୂର୍ଯ୍ୟ କେବଳ ଏକ ଜଡ଼ ଜ୍ୱଳନ୍ତ ଅଗ୍ନି ପିଣ୍ଡୁଳା ନୁହନ୍ତି ବରଂ ସତ୍‌ଚିତ୍ ଆନନ୍ଦ ଆତ୍ମା ରୂପ ଓଁକାର ସ୍ପନ୍ଦନର ମୂଳସ୍ରୋତ । ଜଗତର ସକଳ ଶକ୍ତିର ଆଧାର ସୂର୍ଯ୍ୟ ହିଁ ଭଗବାନଙ୍କର ବିରାଟ ରୂପର କେବଳ ଚକ୍ଷୁ ନୁହନ୍ତି ସେ ତ ଜଗତ୍‌ଚକ୍ଷୁ, ଜଗତ ଆଧାର, ଜଗତ ନିୟନ୍ତା ଓ ଜଗତ୍ ସଂହର୍ତ୍ତା । ମହା ପରୋପକାରୀ ଜଗତର ଆଦର୍ଶ କର୍ମଯୋଗୀ ସୂର୍ଯ୍ୟଙ୍କର କିରଣ ଓଁକାରକୁ ଆଶ୍ରୟ କରିବା ହିଁ ନିର୍ଗୁଣ-ନିରାକାର ବ୍ରହ୍ମ ଆଶ୍ରୟ ।

ପୂର୍ବରୁ ସଗୁଣ ସାକାର ଶ୍ରୀକୃଷ୍ଣଙ୍କ ଆଶ୍ରୟ କରିଥିଲେ ମହାରାଜ ପରୀକ୍ଷିତ । ଏବେ ସଗୁଣ ନିରାକାର ନର-ନାରାୟଣଙ୍କୁ ଆଶ୍ରୟ କଲେ ମହାମୁନି ମାର୍କଣ୍ଡେୟଜୀ । ସୂର୍ଯ୍ୟଦେବଙ୍କ ଶକ୍ତି ଓଁକୁ ବା କିରଣକୁ ଆଶ୍ରୟ କଲେ ଜୀବ କେଉଁ ଗତି ପ୍ରାପ୍ତ ହେବ ?

**ଶୌନକ ଉବାଚ**

**ତତ୍ ନୋ ବର୍ଣ୍ଣୟ ଭଦ୍ରଂ ତେ କ୍ରିୟାଯୋଗଂ ବୁଭୁତ୍ସତାମ୍ ।**
**ଯେନ କ୍ରିୟା ନୈପୁଣ୍ୟେନ ମର୍ତ୍ତ୍ୟୋ ଯାୟାତ୍ ଅମର୍ତ୍ତ୍ୟତାମ୍ ॥୩॥**

ଉ. ଶୌନକଜୀ ବିନମ୍ର ଅନୁରୋଧ ଜଣାଇ କହିଲେ, "ହେ ପରମବୈଷ୍ଣବ ସୂତଜୀ, ଆପଣଙ୍କର କଲ୍ୟାଣ ହେଉ (ଭଦ୍ରଂ ତେ) । ଯେଉଁ ସୂର୍ଯ୍ୟଦେବଙ୍କୁ ଗାୟତ୍ରୀ ମନ୍ତ୍ରରେ ଆରାଧନା କରି ମନୁଷ୍ୟ କ୍ରିୟା ଯୋଗ ସିଦ୍ଧି ପ୍ରାପ୍ତ ହୁଏ । ମରଣଶୀଳ ମନୁଷ୍ୟ ମରଣ ଭୟକୁ ଆଡ଼େଇ ଦେଇପାରେ ଆମେ ଅତ୍ୟନ୍ତ ଆଗ୍ରହୀ ତାକୁ ଶିକ୍ଷା କରିବାକୁ (ବୁଭୁତ୍ସତାମ୍) । ସୁତରାଂ ଆମର ସର୍ବଶେଷ ଅନୁରୋଧ ରକ୍ଷା କରି ଆମକୁ ସେତିକି ଉପଦେଶ ଦିଅନ୍ତୁ । ଧ୍ରୁବ, ପ୍ରହ୍ଲାଦ, ପରୀକ୍ଷିତ ରାଜା ଓ ମାର୍କଣ୍ଡେୟ ମୁନିଙ୍କ ଭଳି ଆମେମାନେ ଏତେ ଉଚ୍ଚ ଅଧିକାରୀ ନୋହୁ ।"

ପ୍ରଶ୍ନ-୮୬: ବେଦ ଓ ତନ୍ତ୍ର ଶାସ୍ତ୍ର ଭଗବାନଙ୍କୁ ଦର୍ଶନ କରିବା ପାଇଁ ଦୁଇଟି ଚକ୍ଷୁ ସ୍ୱରୂପ । ଉଭୟ ମାର୍ଗରେ ସୂର୍ଯ୍ୟଦେବଙ୍କର ଉପାସନା ବିଧି ବର୍ଣ୍ଣିତ ହୋଇଛନ୍ତି । ପୁରୁଷ ସୂକ୍ତରେ ମଧ୍ୟ ବିରାଟ ରୂପ ବର୍ଣ୍ଣନା ବେଳେ ସୂର୍ଯ୍ୟଦେବଙ୍କୁ ଭଗବାନଙ୍କର ଶ୍ରେଷ୍ଠତମ ବିଭୂତିର ପରିପ୍ରକାଶ ବୋଲି ସ୍ତୁତି କରାଯାଇଛି । ବେଦମାର୍ଗରେ ସାଧକ ନିଜ ଅନ୍ତର ମଧ୍ୟରେ ସୂର୍ଯ୍ୟମଣ୍ଡଳକୁ ବା ଓଁକାରକୁ ଧ୍ୟାନ କରିବାର ଫଳ କିସ ?

**ସୂତ ଉବାଚ**

**ମଣ୍ଡଳଂ ଦେବ ଯଜନଂ ଦୀକ୍ଷା ସଂସ୍କାର ଆତ୍ମନଃ ।**
**ପରିଚର୍ଯ୍ୟା ଭଗବତ ଆତ୍ମନୋ ଦୁରିତକ୍ଷୟଃ ॥୧୭॥**

ଉ. ଦ୍ୱିଜମାନଙ୍କର ବ୍ରତ ଉପନୟନ ସଂସ୍କାର ସାଧକର ମନ (ଆତ୍ମନଃ) ଶୁଦ୍ଧିର ଉପାୟ । ସୂର୍ଯ୍ୟମଣ୍ଡଳଙ୍କର ମାନସିକ ପୂଜନ ଧ୍ୟାନ ହିଁ ମନ, ବୁଦ୍ଧି ଚିତ୍ତ ସ୍ଥିତ ସଂସାର ଭୋଗ କାମନା ରୂପୀ ପାପର (ଦୁରିତ) ବୀଜ ନାଶର (କ୍ଷୟଃ) ଉପାୟ ।

ସୂର୍ଯ୍ୟଦେବଙ୍କୁ ଧ୍ୟାନ କରି ତାଙ୍କ ଭକ୍ତମାନେ ତାଙ୍କୁ ଭିତରେ ଓ ବାହାରେ ଦର୍ଶନ କରି କୃତ କୃତ୍ୟ ହୁଅନ୍ତି । ସେମାନେ ନିର୍ଭୟରେ ଘୋଷଣା କରନ୍ତି ବିରାଟ

ପୁରୁଷଙ୍କ ଦୃଶ୍ୟମାନ ଦିବ୍ୟ ଅଂଶ ହିଁ ସୂର୍ଯ୍ୟଦେବ । ତାଙ୍କର ଅଦୃଶ୍ୟ ଅଂଶ ନିର୍ଗୁଣ-ନିରାକାର ବ୍ରହ୍ମ ଓଁରୂପୀ କିରଣ ବା ଜ୍ୟୋତି । ବାସ୍ତବରେ ସୂର୍ଯ୍ୟ ସିନା ଦୃଶ୍ୟମାନ ସଗୁଣ ସାକାର ବ୍ରହ୍ମ କିନ୍ତୁ ତାଙ୍କର କିରଣ ନିର୍ଗୁଣ-ନିରାକାର ହେତୁ ଅଦୃଶ୍ୟ ।

ପ୍ରଶ୍ନ-୮୭: ଯୋଗନେତ୍ରରେ ଦର୍ଶନ କଲେ ସୂର୍ଯ୍ୟଙ୍କର ବାରମାସ ଓ ଛଅ ଋତୁର ବିକୀରିତ କିରଣର ପ୍ରଭାବ ଅଲଗା ଅଲଗା ହୋଇଥାଏ । ସେଇ ଅଚିନ୍ତ୍ୟ ଶକ୍ତିର ବଳରେ ସେ ସମସ୍ତ ଚର ଅଚର ଜୀବ ଜଗତର ଭୌତିକ ଦେହକୁ ଜନ୍ମ, ବୃଦ୍ଧି, ପରିବର୍ତ୍ତନ, ଅପକ୍ଷୟ, ବାର୍ଦ୍ଧକ୍ୟ ଓ ମୃତ୍ୟୁ ଆଦି ଷଡ଼ ବିକାର କରୁଥିବା ଭଗବତ ବିଭୂତି । ସୂର୍ଯ୍ୟଦେବ ଆପାତତଃ ସ୍ଥିର ବୋଲି ମନେ ହେଉଥିଲେ ମଧ୍ୟ ବାସ୍ତବରେ ସେ ତାଙ୍କର ସମସ୍ତ ଗ୍ରହ, ଉପଗ୍ରହ ସପ୍ତର୍ଷି ମାନଙ୍କୁ ଧରି ଧ୍ରୁବତାରାଙ୍କ ଚତୁର୍ଦ୍ଦିଗରେ ସତେଇଶ ଶହ ବର୍ଷରେ ଥରେ ପରିକ୍ରମା କରନ୍ତି ବା ଏକ ନକ୍ଷତ୍ର ବ୍ୟବଧାନ ପାର କରିବାକୁ ସେ ଏକ ଶହ ବର୍ଷ ଲେଖାଏଁ ସମୟ ନିଅନ୍ତି । ସତେଇଶ ନକ୍ଷତ୍ର ବା ବାର ରାଶି ପାର କରିବାକୁ ତାଙ୍କୁ ସତେଇଶ ଶହ ବର୍ଷ ଲାଗେ । ମନୁ, ଇନ୍ଦ୍ର, ସପ୍ତର୍ଷି ଇତ୍ୟାଦି ଦେବୀ ଦେବତା ଏକ ମନ୍ୱନ୍ତରରେ ବଦଳୁଥିବା ବେଳେ ସୂର୍ଯ୍ୟ କେତେ ସମୟ ବ୍ୟବଧାନରେ ବଦଳନ୍ତି ?

**ଏବଂ ହି-ଅନାଦି ନିଧନୋ ଭଗବାନ୍ ହରିଃ ଈଶ୍ୱରଃ ।**
**କଳ୍ପେ କଳ୍ପେ ସ୍ୱଂ ଆତ୍ମାନଂ ବ୍ୟୁହ୍ୟ ଲୋକାନ୍ ଅବତି-ଅଜଃ ॥୫୦॥**

ଉ. ମହାବିଷ୍ଣୁ ଭଗବାନ ନାରାୟଣ ସ୍ୱୟଂ ଅନାଦି ଓ ଅନିଧନ । ନା ତାଙ୍କର ଜନ୍ମ ଅଛି ନା ମୃତ୍ୟୁ ଅଛି । ତାଙ୍କ ସୃଷ୍ଟ ବ୍ରହ୍ମଦେବ ବହୁଦୀର୍ଘ ଆୟୁଷ ଲାଭ କରି ଅଜ ବୋଲାଇଲେ ମଧ୍ୟ ୪୩୨କୋଟି ବର୍ଷରେ ତାଙ୍କ ଆୟୁଷ ଏକ ଦିନ ଶେଷ ହୁଏ । ପୁଣି ୪୩୨କୋଟି ବର୍ଷରେ ତାଙ୍କର ଆୟୁଷ ରାତିଟିଏ ବିତିଯାଏ । ୮୬୪କୋଟି ବର୍ଷ ବ୍ୟବଧାନରେ ଦିନ ଦିନ, ମାସ ମାସ, ବର୍ଷ ବର୍ଷ କ୍ଷୟ ହୁଏ । ଏହିଭଳି (ଏବଂ) ୧୦୮ବର୍ଷରେ ବ୍ରହ୍ମାଜୀଙ୍କର ମଧ୍ୟ ସୂକ୍ଷ୍ମ ଦେହ ନଷ୍ଟ ହୁଏ । ପ୍ରକୃତି ପ୍ରଳୟ ପରେ ନୂତନ ସୃଷ୍ଟିର ଆରମ୍ଭରେ ଅନ୍ୟ ଜଣେ ବ୍ରହ୍ମା ଦାୟିତ୍ୱ ସମ୍ଭାଳନ୍ତି ।

ସେଇ ନିୟମରେ ପ୍ରତ୍ୟେକ ମନ୍ୱନ୍ତରରେ ଭୌତିକ ସୂର୍ଯ୍ୟମଣ୍ଡଳ ରହନ୍ତି ଅବଶ୍ୟ କିନ୍ତୁ ତାଙ୍କ ମଧ୍ୟସ୍ଥିତ ଆତ୍ମା ବଦଳନ୍ତି । ସୂର୍ଯ୍ୟ ମଣ୍ଡଳ ମଧ୍ୟସ୍ଥିତ ଜଣେ ମହାତ୍ମା ଅବସର ନେଲେ ଆଉ ଜଣେ ବହୁ ଯଜ୍ଞ ପୁଣ୍ୟ ଫଳ ଧରି ଅପେକ୍ଷା କରିଥିବା ମହାତ୍ମା ସୂର୍ଯ୍ୟ ପଦବୀରେ ପରମ ଆତ୍ମା ରୂପରେ କ୍ଷମତାସୀନ ହୁଅନ୍ତି । ୧୪ମନ୍ୱନ୍ତର ପରେ

କଳ୍ପାନ୍ତ ପ୍ରଳୟରେ ଦୃଶ୍ୟମାନ ସୂର୍ଯ୍ୟ ଦେବଙ୍କ ଭୌତିକ ଆଲୋକପିଣ୍ଡ ମଧ୍ୟ ସମୂଳେ ବିନଷ୍ଟ ହୁଅନ୍ତି ଓ ନୂତନ କଳ୍ପ ଆରମ୍ଭରେ ଆଉ ଜଣେ ଆତ୍ମା ନୂତନ ସୂର୍ଯ୍ୟ ରୂପରେ ସୃଷ୍ଟି ପାଳନ କାର୍ଯ୍ୟଭାର ଗ୍ରହଣ କରିଥାନ୍ତି । ଏହି ନିୟମରେ ସୃଷ୍ଟି ବିଲୟର କାଳଚକ୍ର ଗଡି ଚାଲେ ।

ସଗୁଣ ଭାବରେ ଯେ ଦୃଶ୍ୟମାନ ସୂର୍ଯ୍ୟ ନିର୍ଗୁଣ ଭାବରେ ସେଇ କେବଳ ତାଙ୍କର କିରଣ । ନାମ ତାଙ୍କର ଓଁକାର ବା ପ୍ରଣବ ରୂପୀ ପ୍ରତୀକ । ଏବେ ସଗୁଣ ବ୍ରହ୍ମ ଶ୍ରୀକୃଷ୍ଣ , ଶ୍ରୀହରି କିମ୍ବା ନାରାୟଣ ଓ ନିର୍ଗୁଣ ବ୍ରହ୍ମ ଓଁକାରଙ୍କ ଆଶ୍ରୟ ବର୍ଣ୍ଣନାର ପରିସମାପ୍ତି ହେଲା । ପରବର୍ତ୍ତୀ ଦୁଇ ଅଧ୍ୟାୟରେ ଫଳଶ୍ରୁତି ଏବଂ ଗ୍ରନ୍ଥ ମାହାତ୍ମ୍ୟ ବର୍ଣ୍ଣିତ ହେବ ।

# ଅଥ ୧୨ଶ ଅଧ୍ୟାୟଃ

## (ଶ୍ରୀମଦ୍ଭାଗବତଙ୍କର ସଂକ୍ଷିପ୍ତ ବିଷୟ ସୂଚୀ ଓ ଫଳଶ୍ରୁତି)

ପ୍ରଶ୍ନ-୮୮ : ଭାଗବତରେ ମୁଖ୍ୟ ଆଲୋଚ୍ୟ ବିଷୟ ଶୁକ ପରୀକ୍ଷିତ ସମ୍ବାଦ ଶେଷ ହୋଇଛି ୪୩ପ୍ରକରଣରେ । ଏବେ ଏହି ଶେଷ ପ୍ରକରଣରେ ନିର୍ଗୁଣ ବ୍ରହ୍ମ ଆଶ୍ରୟ ବିଷୟକ ପ୍ରଶ୍ନ-ଉତ୍ତର ପର୍ଯ୍ୟାୟର ଅବସାନ ଘଟିଛି । ଶୌନକଜୀଙ୍କ ଆଉ କୌଣସି ପ୍ରଶ୍ନ ପଚାରିବାକୁ ନାହିଁ । ଦ୍ୱାଦଶ ସ୍କନ୍ଧ ଓ ୩୩୩ ଅଧ୍ୟାୟର ବିଶାଳ ବିଷୟ ବସ୍ତୁକୁ ପୁଣି କାହିଁକି ଦୋହରାଇବାକୁ ସୂତଜୀ ଆଗଭର ହେଲେ ?

**ସୂତ ଉବାଚ**

**ଅତ୍ର ସଂକୀର୍ତ୍ତିତଃ ସାକ୍ଷାତ୍ ସର୍ବପାପ ହରୋ ହରିଃ ।**<br>**ନାରାୟଣୋ ହୃଷୀକେଶୋ ଭଗବାନ୍ ସାତ୍ୱତାଂ ପତିଃ ।।୩।।**

ଉ. ସାପ୍ତାହିକ, ପାକ୍ଷିକ, ମାସିକ ଓ ବାର୍ଷିକ ଭାଗବତ ପାରାୟଣ ପ୍ରବଚନ ଆଦିରେ ଅନେକ ଶ୍ରୋତା ନିରବଚ୍ଛିନ୍ନ ଶ୍ରବଣ ପାରାୟଣ ଆଦି କରିପାରିନଥାନ୍ତି । ସେମାନଙ୍କ ମନ ମନ୍ଥନ ଲାଗି ଏ ସମାସ-ବ୍ୟାସ (ସଂକ୍ଷେପ ଓ ବିସ୍ତୃତ) ପଦ୍ଧତିରେ ବିଷୟ ସୂଚୀ ପ୍ରଦାନ କରାଯାଇଛି । ଭକ୍ତ ବତ୍ସଳ ଭଗବାନ (ସାତ୍ୱତାଂ ପତିଃ)ଙ୍କ

ଭକ୍ତମାନଙ୍କ ପ୍ରତି କୃପାକୁ ଆଧାର କରି ଯାହା ବର୍ଣ୍ଣନା କରାଯାଇଛି ତାକୁ ଶ୍ରଦ୍ଧା ବିଶ୍ୱାସ ସହିତ ଶ୍ରବଣ କଲେ ମନୁଷ୍ୟ ସକଳ ପାପରୁ ଅବଶ୍ୟ ମୁକ୍ତ ହେବ ହିଁ ହେବ କିନ୍ତୁ ସେ ବିଷୟ ସୂଚୀକୁ କେବଳ ଶ୍ରବଣ କଲେ ମଧ୍ୟ ତଦନୁରୂପ ଫଳ ପ୍ରାପ୍ତ ହେବ ।

ଭକ୍ତି, ଜ୍ଞାନ, ବୈରାଗ୍ୟ ଓ ବ୍ରହ୍ମ ତତ୍ତ୍ୱ ମୂଳକ ବ୍ୟାସ ନାରଦ ସମ୍ବାଦ, ଶୁକ ପରୀକ୍ଷିତ ସମ୍ବାଦରେ ସୃଷ୍ଟି ପ୍ରଳୟ ଆଖ୍ୟାନ ସହିତ ଭଗବାନଙ୍କ ୨୪ ଅବତାର ବାରମ୍ବାର କୀର୍ତ୍ତିତ ହୋଇଛନ୍ତି । ମନୁ-ଶତରୂପା, କପିଳ-ଦେବହୂତି, ଦକ୍ଷ ଯଜ୍ଞ ଚରିତ, ଧ୍ରୁବ ଚରିତ, ପୃଥୁ ଚରିତ ସହିତ ପ୍ରାଚୀନ ବର୍ହିଙ୍କ ଚରିତ ସବୁ ବର୍ଣ୍ଣିତ ହୋଇଛନ୍ତି ପ୍ରଥମ ଚାରି ସ୍କନ୍ଧରେ ।

ପଞ୍ଚମ ସ୍କନ୍ଧରେ ପ୍ରିୟବ୍ରତ, ନାଭି, ଋଷଭ ଓ ଭରତଙ୍କ ଚରିତ ସହିତ ସପ୍ତ ଦ୍ୱୀପ, ସପ୍ତ ସାଗର, ସପ୍ତ ପର୍ବତ ଓ ସପ୍ତ ନଦୀମାନଙ୍କ ବର୍ଣ୍ଣନ ପରେ ୨୭ନରକର କଥା କଥିତ ହୋଇଛି ।

ଷଷ୍ଠ ସ୍କନ୍ଧରେ ଅଜାମିଳ ଚରିତ, ବୃତ୍ତାସୁର କଥା ପରେ ସପ୍ତମ ସ୍କନ୍ଧରେ ପ୍ରହ୍ଲାଦ ଚରିତ, ଯୁଧିଷ୍ଠିର-ନାରଦ ସମ୍ବାଦ ଆଲୋଚିତ ହୋଇଛି । ଅଷ୍ଟମ ସ୍କନ୍ଧରେ ମନ୍ୱନ୍ତର ଲୀଳା ବର୍ଣ୍ଣନ ସହିତ ଗଜେନ୍ଦ୍ର ଉଦ୍ଧାର, ସମୁଦ୍ର ମନ୍ଥନ, ଦେବାସୁର ସଂଗ୍ରାମ, ବାମନ ଜନ୍ମ ଓ ଶ୍ରାଦ୍ଧଦେବ ମନୁଙ୍କ ଚରିତ ବର୍ଣ୍ଣିତ ହୋଇଛନ୍ତି ।

୯ମ ସ୍କନ୍ଧରେ ସୂର୍ଯ୍ୟବଂଶ କଥା, ସୁକନ୍ୟା-ଶର୍ଯାତି କଥା, ରାମ କଥା, ନିମି କଥା ସହିତ ପର୍ଶୁରାମଙ୍କ ଦିବ୍ୟ କଥା କୁହାଯାଇଛି । ଚନ୍ଦ୍ର ବଂଶ ପ୍ରସଙ୍ଗରେ ଐଳ ଚରିତ, ଯଯାତି, ଦୁଷ୍ମନ୍ତ, ଭରତ, ଶାନ୍ତନୁ ଓ ଯଦୁବଂଶ କଥା କୀର୍ତ୍ତିତ ।

ଦଶମ ସ୍କନ୍ଧରେ ପ୍ରଥମାର୍ଦ୍ଧରେ ଶ୍ରୀକୃଷ୍ଣ ଜନ୍ମ, ପୁତନା ଉଦ୍ଧାର, ଶକଟ, ତୃଣାବର୍ତ୍ତ, ବକାସୁର, ଅଘାସୁର, ବସ୍ତ୍ରାହରଣ, ଗୋବର୍ଦ୍ଧନ ଧାରଣ, ଇନ୍ଦ୍ରଦର୍ପ ଦଳନ, ଗୋବିନ୍ଦ ଅଭିଷେକ, ରାସକ୍ରୀଡ଼ା, ଶଙ୍ଖଚୂଡ଼ ଉଦ୍ଧାର, ଅକ୍ରୂର ଆଗମନ, ମଥୁରା ବିଜୟ, କଂସ ଉଦ୍ଧାର, ଜରାସନ୍ଧ ଆକ୍ରମଣ ଲୀଳା ସ୍ଥାନ ପାଇଛନ୍ତି ।

ଦ୍ୱିତୀୟ ଅର୍ଦ୍ଧରେ ରକ୍ମିଣୀ ହରଣ, ପାରିଜାତ ହରଣ, ବାଣା ପରାଜୟ, ନରକାସୁର ଉଦ୍ଧାର, ଶିଶୁପାଳ, ପୌଣ୍ଡ୍ରକ, ଶାଲ୍ୱ, ମୁର, ପାଞ୍ଚଜନ୍ୟ ଉଦ୍ଧାର ସହିତ ମହାଭାରତ ଯୁଦ୍ଧ, କୁରୁକ୍ଷେତ୍ର ଯଜ୍ଞ ଆଦି ଯଜ୍ଞ ପ୍ରସଙ୍ଗ ବର୍ଣ୍ଣନ ପରେ ଏକାଦଶ ସ୍କନ୍ଧରେ ପାଞ୍ଚ ପ୍ରକାର ମୁକ୍ତିର ବିଶେଷ ବର୍ଣ୍ଣନ ସହିତ ଯଦୁକୁଳ ସଂହାର ଶ୍ରୀକୃଷ୍ଣଙ୍କର ଗୋଲୋକ ଗମନର ଅଦ୍ଭୁତ ଏବଂ ଦିବ୍ୟ ଲୀଳାମାନ ବର୍ଣ୍ଣିତ ହୋଇଛନ୍ତି ।

॥ ଅପଣ୍ଡିତ ଦାମୋଦର ବଳୀୟାରସିଂହ ॥

ପ୍ରଶ୍ନ-୮୯: ଶେଷରେ ଦ୍ୱାଦଶ ସ୍କନ୍ଧରେ ପିଣ୍ଡ ବ୍ରହ୍ମାଣ୍ଡର ଚାରି ପ୍ରକାର ପ୍ରଳୟ ବର୍ଣ୍ଣିତ ହୋଇ ଶୁକଦେବଙ୍କ ସପ୍ତଦିବସ ବ୍ୟାପୀ ପ୍ରବଚନର ପରିସମାପ୍ତି ପରେ ମରଣଜୟୀ ପରୀକ୍ଷିତଙ୍କ ଗୋଲୋକ ଗମନ ଲୀଳା ବର୍ଣ୍ଣିତ ହୋଇଛନ୍ତି । ଶେଷରେ ବେଦ ଓ ଅଷ୍ଟାଦଶ ପୁରାଣଙ୍କ ବିଷୟବସ୍ତୁ ଓ ଅଧ୍ୟୟନକାରୀଙ୍କ କଥା ସହିତ କଳ୍ପଜୀବୀ ମାର୍କଣ୍ଡେୟଙ୍କ ଜରା ମରଣ ବିଜୟ କାହାଣୀ ବର୍ଣ୍ଣିତ ହୋଇ ସର୍ବଶେଷରେ ନିର୍ଗୁଣ ନିରାକାର ବ୍ରହ୍ମଙ୍କର ଆଶ୍ରୟ ଗ୍ରହଣ ଲାଗି ସୂର୍ଯ୍ୟଦେବଙ୍କ ପୂଜନ ବିଧି ବର୍ଣ୍ଣନ କରି ବିଷୟ ସୂଚୀର ପରିସମାପ୍ତି ଘଟିଛି । ଭଗବାନଙ୍କ ଏହି ଦିବ୍ୟ ଲୀଳା ଶ୍ରବଣ, କୀର୍ତ୍ତନରେ ପାପ କ୍ଷୟ ସିନା ହୁଏ ଭଗବାନଙ୍କ ରାମ, କୃଷ୍ଣ, ନୃସିଂହ, ହରି ଇତ୍ୟାଦି ନାମ ସଂକୀର୍ତ୍ତନରେ କଅଣ କିଛି ଅଧିକ ଲାଭ ହୁଏ କି ?

**ପତିତଃ ସ୍ଖଳିତଃ ଚ-ଆର୍ତ୍ତଃ କ୍ଷୁତ୍ତ୍ୱା ବା ବିବଶୋ ଗୃଣନ୍ ।**
**ହରୟେ ନମଃ ଇତି-ଉଚ୍ଚୈଃ ମୁଚ୍ୟତେ ସର୍ବପାତକାତ୍ ॥୪୭॥**

ଉ. ହରି ଲୀଳା ମଧୁର ସର୍ବତ ହେଲେ ହରିନାମ ଘନୀଭୂତ ମିଶ୍ରି ଅଟେ । ହରି ଲୀଳା ଶ୍ରବଣ କୀର୍ତ୍ତନ କରି ଜୀବନ କାଟୁଥିଲେ ଭକ୍ତ ଉଚ୍ଚସ୍ଥାନରୁ ପଡ଼ିଗଲା ବେଳେ, ଚାଲୁ ଚାଲୁ ଗୋଡ଼ ଖସିଗଲାବେଳେ, ଆଧିବ୍ୟାଧି ପୀଡ଼ିତ ଥିବାବେଳେ ଏପରିକି ହସିବା, କାଶିବା ଓ ଛିଙ୍କିବା ବେଳେ (କ୍ଷୁତ୍ତ୍ୱା) ଆନମନା ହୋଇ (ବିବଶୋ) 'ହରୟେ ନମଃ' କହି ହାତଯୋଡ଼ି ଦେବା ଅଭ୍ୟାସ କଲେ ମୃତ୍ୟୁବେଳେ ମଧ୍ୟ ହରିନାମ ଅବଶ୍ୟ ଉଚ୍ଚାରିତ ହୋଇଯିବ । ସେତିକିରେ ଜୀବ ଭବସାଗରରୁ ଉଦ୍ଧାର ପାଇଯିବ ।

ଭଗବାନଙ୍କର ନାମ, ରୂପ, ଲୀଳା, ଗୁଣ, ଧାମ ଓ ସନ୍ଥ ଏଇ ଛ'କଥା ସଚ୍ଚିଦାନନ୍ଦମୟ । ଆଉ ସବୁ କଥା ଚିନ୍ତନ ମଧ୍ୟ ପ୍ରମାଦପୂର୍ଣ୍ଣ । ଯେଉଁ ଗ୍ରନ୍ଥରେ ଏ ଛଅ କଥା ନ ଥାଏ ସେ ସବୁ କାକତୀର୍ଥ (ମଇଳାସ୍ଥାନ) । ଯେଉଁ ଗ୍ରନ୍ଥରେ ସେସବୁ ଥାଏ ତାହା ହଂସ ତୀର୍ଥ ଓ ହରି ଭକ୍ତର ଆସ୍ୱାଦ୍ୟ ହରିନାମାମୃତ ।

ପ୍ରଶ୍ନ-୯୦: ନୈଷ୍କର୍ମ୍ୟ କର୍ମ କିମ୍ବା ମାୟାମୁକ୍ତ ଜ୍ଞାନ ଯଦି ଭକ୍ତି ବିରହିତ ତେବେ ମଧ୍ୟ ସେ ଦୁହେଁ ଶୋଭନୀୟ ନୁହନ୍ତି । ପୁଣି ଭାଗବତ ଘୋଷଣା କରନ୍ତି ଅଶ୍ୱମେଧ ଆଦି ଯଜ୍ଞ କରି ସ୍ୱର୍ଗରେ ଦେବତା ଆଦି ହେବା ନଶ୍ୱର ସୁଖକୁ ପଚାରେ କିଏ ? ଶ୍ରୀମଦ୍ଭାଗବତ ଶ୍ରବଣ କୀର୍ତ୍ତନରେ ଶୁଭ କାଳର କିଛି ମାହାତ୍ମ୍ୟ ରହେ କି ?

**ଦ୍ୱାଦଶ୍ୟାଂ ଏକାଦଶ୍ୟାଂ ବା ଶୃଣ୍ୱନ୍ ଆୟୁଷ୍ୟବାନ୍ ଭବେତ୍ ।**
**ପଠତି-ଅନଶ୍ନନ୍ ପ୍ରୟତଃ ପୂତୋ ଭବତି ପାତକାତ୍ ॥୬୦॥**

ଉ. ଏଥିରେ ନିଶ୍ଚୟ ଅଧିକତର ଫଳ ମିଳେ । ଏକାଦଶୀ କିମ୍ବା ଦ୍ୱାଦଶୀରେ ପଠନ ଶ୍ରବଣାଦି କଲେ ଭକ୍ତର ଆୟୁଷ ବଢ଼େ । ଅନାହାର ରହି ପାରିଲେ ମନ ଅଧିକ ପବିତ୍ର ହୋଇପାରୁଥିବାରୁ ଅଧିକରୁ ଅଧିକ ପାପ ନଷ୍ଟ ହୋଇଥାଏ ।

ପ୍ରଶ୍ନ-୯୧: ଭାଗବତ ସେବନରେ ପବିତ୍ର ତୀର୍ଥସ୍ଥାନ କିମ୍ବା ମନ୍ଦିର ଭଳି ସ୍ଥାନର କିଛି ମାହାତ୍ମ୍ୟ ଥାଏ କି ?

**ପୁଷ୍କରେ ମଥୁରାୟାଂ ଚ ଦ୍ୱାରବତ୍ୟାଂ ଯତ୍-ଆତ୍ମବାନ୍ ।**
**ଉପୋଷ୍ୟ ସଂହିତାଂ ଏତାଂ ପଠିତ୍ୱା ମୁଚ୍ୟତେ ଭୟାତ୍ ॥୬୧॥**

ଉ. ପୁଷ୍କର, ମଥୁରା ଓ ଦ୍ୱାରକା ଆଦି ସ୍ଥାନରେ ଭାଗବତ ସେବନ,ଶ୍ରବଣ, କୀର୍ତ୍ତନ ଓ ସତ୍‌ସଙ୍ଗ କରିବା ଅଧିକା ଲାଭପ୍ରଦ । ଦୁଗ୍ଧ ଫଳାହାର କିମ୍ବା ଉପବାସ କରି ସେବନ କଲେ ଆଉ କହିବାର କ'ଣ ଅଛି ?

ପ୍ରଶ୍ନ-୯୨: ଭାଗବତ ସେବନରେ ପାତ୍ରତାର ମାହାତ୍ମ୍ୟ କିସ ?

**ଦେବତା ମୁନୟଃ ସିଦ୍ଧାଃ ପିତରୋ ମନବୋ ନୃପାଃ ।**
**ଯଚ୍ଛନ୍ତି କାମାନ୍ ଗୃଣତଃ ଶୃଣ୍ୱତୋ ଯସ୍ୟ କୀର୍ତ୍ତନାତ୍ ॥୬୨॥**

ଉ. ସ୍ୱର୍ଗଲୋକ କିମ୍ବା ପିତୃଲୋକସ୍ଥିତ ଦେବୀ, ଦେବତା, ମୁନି, ସିଦ୍ଧଗଣ, ପିତର, ମନୁ, ରାଜା ଇତ୍ୟାଦିଙ୍କୁ ନିମିତ୍ତ କରି ଭାଗବତ ସେବନ କଲେ ଭକ୍ତର ବାଞ୍ଛିତ ଭୌତିକ କାମନା ମଧ୍ୟ ପୂରଣ ହୋଇଥାଏ ।

ପ୍ରଶ୍ନ-୯୩: ଭାଗବତ ସେବନରେ ବର୍ଣ୍ଣ ଭେଦରେ କି ଫଳ ଭେଦ ହୁଏ ?

**ବିପ୍ରୋଽଧିତ୍ୟ-ଆପ୍ନୁୟାତ୍ ପ୍ରଜ୍ଞାଂ ରାଜନ୍ୟୋ-ଉଦଧି ମେଖଳାମ୍ ।**
**ବୈଶ୍ୟୋ ନିଧିପତିତ୍ୱଂ ଚ ଶୂଦ୍ରଃ ଶୁଦ୍ଧ୍ୟେତ ପାତାକାତ୍ ॥୬୩॥**

ଉ. ସେଇ ଏକ ଭାଗବତ ସେବନରେ ବ୍ରାହ୍ମଣର ବୁଦ୍ଧି ଶୁଦ୍ଧ ହୋଇ ଜ୍ଞାନ ଓ ଭକ୍ତି ଦୃଢ଼ ହୁଏ, କ୍ଷତ୍ରିୟ ରାଜ୍ୟପରେ ରାଜ୍ୟ ଜୟ କରିଚାଲେ, ବୈଶ୍ୟ ଅଧିକରୁ ଅଧିକ ଧନ ସଂପତ୍ତିର ମାଲିକ ହୁଏ ଓ ଶୁଦ୍ର କ୍ରମଶଃ ପାପମୁକ୍ତ ହୋଇଚାଲେ ।

ପରବର୍ତ୍ତୀ ଅଧ୍ୟାୟରେ ସୂତଗୋସ୍ୱାମୀ ଶେଷ ତିନି ଶ୍ଲୋକରେ ଭଗବାନଙ୍କୁ, ଭାଗବତଙ୍କୁ ଓ ନିଜ ଗୁରୁଦେବ ଶୁକଦେବ ଗୋସ୍ୱାମୀଙ୍କୁ ଭକ୍ତିପୂତ ନମସ୍କାର କରି ଭାଗବତ ମାହାତ୍ମ୍ୟ ବର୍ଣ୍ଣନ ସହିତ ବିଷୟ ସୂଚୀ ବର୍ଣ୍ଣନର ବିଶ୍ରାମ କରିଛନ୍ତି ।

॥ ଅପଣ୍ଡିତ ଦାମୋଦର ବଡ଼ାୟାରସିଂହ ॥

# ଅଥ ୧୩ଶ ଅଧ୍ୟାୟଃ

## (ଶ୍ରୀମଦ୍‌ଭାଗବତ ମହାପୁରାଣ ମହିମା)

ପ୍ରଶ୍ନ-୯୪: ମହା ସତ୍‌ସଙ୍ଗରେ ଉନ୍ମୋଚିତ ମହାପୁରାଣର ୧୨ଶ ସ୍କନ୍ଧ ୧୩ଶ ଅଧ୍ୟାୟରେ ଭଗବାନ ଓ ଭାଗବତଙ୍କ ମହିମା ୨୩ଶ୍ଳୋକରେ କୀର୍ତ୍ତିତ। ଗ୍ରନ୍ଥ ପ୍ରାରମ୍ଭରେ ଯେଉଁ ପରମ ସତ୍ୟକୁ ଅନାବରଣ କରିବାକୁ ଯାଇ ୩୩୪ଅଧ୍ୟାୟରେ ବିଶେଷ ବ୍ୟାଖ୍ୟା କରାଗଲା ତାକୁ ସଂକ୍ଷେପରେ କିପରି ଗୋଟିଏ ଶ୍ଳୋକରେ କୁହାଯାଇପାରିଲା ?

ସୂତ ଉବାଚ

**ଯଂ ବ୍ରହ୍ମା ବରୁଣ-ଇନ୍ଦ୍ର ମରୁତଃ ସ୍ତୁନ୍ୱନ୍ତି ଦିବ୍ୟୈ ସ୍ତବୈଃ**
**ବେଦୈଃ ସ-ଅଙ୍ଗ ପଦକ୍ରମ-ଉପନିଷଦୈଃ ଗାୟନ୍ତି ଯଂ ସାମଗାଃ ।**
**ଧ୍ୟାନ-ଅବସ୍ଥିତ ତଦ୍‌ଗତେନ ମନସା ପଶ୍ୟନ୍ତି ଯଂ ଯୋଗିନୋ**
**ଯସ୍ୟ-ଅନ୍ତଂ ନ ବିଦୁଃ ସୁର-ଅସୁର ଗଣା ଦେବାୟ ତସ୍ମୈ ନମଃ ।।୧୧।।**

ଉ. ଇନ୍ଦ୍ର, ବରୁଣ, ବାୟୁ, ଅଗ୍ନି ଆଦିଙ୍କ ସହିତ ବ୍ରହ୍ମା ଶଙ୍କର ମଧ୍ୟ ଦିବ୍ୟ ବେଦ ସ୍ତୁତି ଗାନ କରନ୍ତି ଏବଂ ଯାହାଙ୍କ ଶରଣାଗତ ହେବା ଲକ୍ଷ୍ୟରେ ଧ୍ୟାନ ଯୋଗୀମାନେ ଯୁଗ ଯୁଗ ଧରି ଯାହାଙ୍କ ଝଲକ ଟିକକ ପାଇବା ପାଇଁ ଚାହିଁ ବସିଥାନ୍ତି । ପୁଣି କି ଦେବତା କି ରାକ୍ଷସ ଯାହାଙ୍କର ପ୍ରକଟ-ଅପ୍ରକଟ, ଆଦି-ଅନ୍ତ ବୁଝିବାରେ ଅସମର୍ଥ ତାଙ୍କର ନାମ ଦେବ ବା ଅନ୍ୟ ଏକ ସର୍ବମାନ୍ୟ ନାମ ପରମ ସତ୍ୟ । ଗ୍ରନ୍ଥ ଆରମ୍ଭ ଓ ବିଶ୍ରାମ ହେଲା ସେଇ ପରମ ସତ୍ୟ ବର୍ଣ୍ଣନ ଆଶ୍ରୟରେ ।

ପ୍ରଶ୍ନ-୯୫: କ୍ଷୁଦ୍ର ଓ ବୃହତ୍ କଳେବର ବିଶିଷ୍ଟ ଅଷ୍ଟାଦଶ ପୁରାଣ ସମୂହଙ୍କର (ସନ୍ଦୋହୋ) ସର୍ବମୋଟ ଶ୍ଳୋକ ସଂଖ୍ୟା କେତେ ?

**ଏବଂ ପୁରାଣ ସନ୍ଦୋହୋ ଚତୁର୍ଲକ୍ଷ ଉଦାହୃତଃ ।**
**ତତ୍ର-ଅଷ୍ଟାଦଶ ସାହସ୍ରଂ ଶ୍ରୀଭାଗବତଂ ଇଷ୍ୟତେ ।।୯।।**

ଉ. ଅଠର ପୁରାଣଙ୍କର ମୋଟ ଶ୍ଳୋକ ସଂଖ୍ୟା ଚାରି ଲକ୍ଷ ଯାହା ମଧ୍ୟରେ କେବଳ ଶ୍ରୀମଦ୍‌ଭାଗବତଙ୍କର ଶ୍ଳୋକ ସଂଖ୍ୟା ଅଠର ହଜାର କୁହାଯାଏ (ଇଷ୍ୟତେ) ।

ପ୍ରଶ୍ନ-୯୬: ଏହି ମହପୁରାଣକୁ ପ୍ରଥମେ କେତେବେଳେ କିଏ କେଉଁଠି କାହାକୁ କହିଥିଲେ ?

**ଇଦଂ ଭଗବତା ପୂର୍ବଂ ବ୍ରହ୍ମଣେ ନାଭି ପଙ୍କଜେ ।**
**ସ୍ଥିତାୟ ଭବ-ଭୀତାୟ କାରୁଣ୍ୟାତ୍ ସଂପ୍ରକାଶିତମ୍ ॥୧୦॥**

ଉ. ଏହାକୁ (ଇଦଂ) ସର୍ବପ୍ରଥମେ (ପୂର୍ବଂ) ସ୍ୱୟଂ ନାରାୟଣ ନିଜ ନାଭିରେ ଉତ୍ପନ୍ନ ହୋଇଥିବା ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କୁ (ବ୍ରହ୍ମଣେ) କହିଥିଲେ । ଯେତେବେଳେ ଭୂଃ, ଭୁବ ଆଦି ଚତୁର୍ଦ୍ଦଶ ଭୁବନ ନିର୍ମାଣ ହୋଇ ନଥିଲା ଯାହାକୁ ପ୍ରକଟ କରିବାକୁ ବ୍ରହ୍ମାଜୀ ଭୟ କରୁଥିଲେ (ଭବ ଭୀତାୟ) କାଳେ ମାୟା ହାବୁଡ଼ରେ ପଡ଼ି କଲବଲ ହେବେ ସେଇ ଭୟରେ ବ୍ରହ୍ମାଜୀ ଶଙ୍କିତ ଥିଲେ । ପୁଅ ଡ଼ରିଗଲେ ବାପାଙ୍କର କରୁଣାହେବା ସ୍ୱାଭାବିକ । ସୁତରାଂ ପରମପିତା ପରମାତ୍ମା ନାରାୟଣ କରୁଣା କରି ଏହି ଭାଗବତର ଦିବ୍ୟଜ୍ଞାନକୁ ତାଙ୍କୁ ସଂକ୍ଷେପରେ ଚାରି ଶ୍ଳୋକରେ (ଚତୁଃ ଶ୍ଳୋକୀ) କହିଲେ । ପରେ ବ୍ରହ୍ମାଜୀ ନାରାୟଣଙ୍କୁ ଇଚ୍ଛାରେ ଦେବର୍ଷି ନାରଦଙ୍କୁ ସାତ ଶ୍ଳୋକରେ ଓ ନାରଦଜୀ ବେଦ ବ୍ୟାସଙ୍କୁ ଶହେ ଅଠାବନ ଶ୍ଳୋକରେ କହିଥିଲେ (ଭାଗବତର ଦ୍ୱିତୀୟ ସ୍କନ୍ଦ ଦ୍ରଷ୍ଟବ୍ୟ) । ବ୍ୟାସଦେବ ଗଭୀର ଧ୍ୟାନ କରି ଶେଷରେ ଏହାକୁ ୧୪,୧୦୦ଶ୍ଳୋକ ବା ୧୮,୦୦୦ମନ୍ତ୍ରରେ ସଂସାରକୁ ପ୍ରଦାନ କରିଥିଲେ ଗଣେଶଜୀଙ୍କ ଲେଖନୀ ମୁନରେ ।

ପ୍ରଶ୍ନ-୯୭: ଭାଗବତ ଗ୍ରନ୍ଥରେ ଆଦି, ମଧ୍ୟ ଓ ଅନ୍ତରେ ଶ୍ରୀହରିଙ୍କ ଦିବ୍ୟ ଲୀଳାରେ କେଉଁ କେଉଁ ବିଷୟ ସମୂହ (ବ୍ରାତଂ)ରେ ବିଶେଷ ଧ୍ୟାନ ଦିଆଯାଇଛି ?

**ଆଦି ମଧ୍ୟ-ଅବସାନେଷୁ ବୈରାଗ୍ୟ-ଆଖ୍ୟାନ ସଂଯୁତମ୍ ।**
**ହରି ଲୀଳା କଥା ବ୍ରାତଂ ଅମୃତ-ଆନନ୍ଦିତ ସତ୍ ସୁରମ୍ ॥୧୧॥**

ଉ. ଭୌତିକ ଜଗତର ଚାକଚକ୍ୟ ଭରା ସଂସାର ଆସକ୍ତିରୁ କିଭଳି ଭକ୍ତିମାର୍ଗୀ ସାଧକ ଅକ୍ଳେଶରେ ମୁକୁଳି ତୀବ୍ର ସଂସାର ବୈରାଗ୍ୟ ପ୍ରାପ୍ତହୋଇ ସାଧୁ ସନ୍ଥଙ୍କ ଆସ୍ୱାଦ୍ୟ ହରି ଲୀଳା କଥା ମାଧ୍ୟମରେ ଦିବ୍ୟ ଆନନ୍ଦର ରସ ପନ କରିବ ତାର ବ୍ୟବସ୍ଥା ଖଞ୍ଜାଯାଇଛି ।

ପ୍ରଶ୍ନ-୯୮: ଏହି ଶ୍ରୀମଦ୍‌ଭାଗବତଗ୍ରନ୍ଥ ଅବଲମ୍ବନରେ ଧର୍ମ-ଅର୍ଥ-କାମ-ମୋକ୍ଷ ମଧ୍ୟରୁ ସାଧକର କେଉଁ ଲକ୍ଷ୍ୟ ପ୍ରାପ୍ତି ହେବ ?

**ସର୍ବବେଦାନ୍ତସାରଂ ଯତ୍ ବ୍ରହ୍ମ-ଆତ୍ମା-ଏକତ୍ୱ ଲକ୍ଷଣମ୍ ।**
**ବସ୍ତୁ-ଅଦ୍ୱିତୀୟଂ ତତ୍‌ନିଷ୍ଠଂ କୈବଲ୍ୟ-ଏକ ପ୍ରୟୋଜନମ୍ ॥୧୨॥**

ଉ. ବ୍ୟାସଦେବଙ୍କ ରଚିତ ବେଦାନ୍ତର ଦ୍ୱୈତ, ଅଦ୍ୱୈତ, ଦ୍ୱୈତାଦ୍ୱୈତ, ବିଶିଷ୍ଟ ଅଦୈତ୍ୱ ଇତ୍ୟାଦି ଅନେକ ପ୍ରକାର ଭାଷ୍ୟ ହୋଇପାରନ୍ତି । କାରଣ ବେଦାନ୍ତ ବର୍ଣ୍ଣିତ ବ୍ରହ୍ମ ଓ ଆତ୍ମା ଉଭୟେ ସେଇ ସତ୍, ଚିତ୍, ଆନନ୍ଦ ତିନି ଲକ୍ଷଣ ବିଭୂଷିତ ଅଟନ୍ତି । ତଥାପି ସୃଷ୍ଟିରେ ପ୍ରେମ ବା ଜ୍ଞାନ ଦୃଷ୍ଟିରେ ଅନେକ ସଚ୍ଚିଦାନନ୍ଦ ବସ୍ତୁ ମଧ୍ୟରେ ଏକ ଅଦ୍ୱିତୀୟ ପରବ୍ରହ୍ମଙ୍କୁ ସ୍ୱୀକାର କରିବାକୁ ହୁଏ । ସେ ତାଙ୍କର ନିତ୍ୟ ପାର୍ଷଦ, ଲୀଳା ପରିକର ବେଷ୍ଟିତ ହୋଇ ନିତ୍ୟ ଗୋଲୋକରେ ସଦା ବିଦ୍ୟମାନ୍ । ଏହି ଗୋଲୋକ ଧାମ ସତ୍ୟଲୋକ ମଧ୍ୟସ୍ଥିତ ବୈକୁଣ୍ଠ ଓ ମହାବୈକୁଣ୍ଠ ଲୋକଠାରୁ ମଧ ସ୍ୱତନ୍ତ୍ର ଅଟନ୍ତି । ସେଇ ପରମ ଇଷ୍ଟ ଅଦ୍ୱିତୀୟ ପ୍ରେମମୟ ଠାକୁର ଠାକୁରାଣୀ ଶ୍ରୀରାଧାକୃଷ୍ଣଙ୍କୁ ନିଷ୍ଠାର ସହିତ ଭକ୍ତି କରି କରି ଶରୀର ସଂସାରର ସକଳ ଭୌତିକ ଆକର୍ଷଣରୁ ଦୂରେଇ ରହିବା ହିଁ ଏକମାତ୍ର ଚରମ ପରମ ଲକ୍ଷ୍ୟ (ପ୍ରୟୋଜନ) ଯାହାର ଅନ୍ୟନାମ କୈବଲ୍ୟ ମୁକ୍ତି ବା ଜୀବନ୍ମୁକ୍ତି । ଏହି ଜୀବନ୍ମୁକ୍ତି ଧର୍ମ-ଅର୍ଥ-କାମ-ମୋକ୍ଷ ଲକ୍ଷ୍ୟମାନଙ୍କ ଠାରୁ କୋଟି କୋଟି କିଲୋମିଟର ବା ଜନ୍ମ-ଜନ୍ମାନ୍ତର ଦୂରରେ ଅବସ୍ଥିତ ।

କୈବଲ୍ୟ ମୁକ୍ତିକୁ କେହି ଆଧ୍ୟାତ୍ମ୍ୟବାଦୀ ସାଧକ କେବଳ ସାଯୁଜ୍ୟ ମୁକ୍ତି ବୁଝିବା ଉଚିତ ନୁହେଁ । ସାଯୁଜ୍ୟ ମୁକ୍ତିରେ ଜୀବକୁ ପୁରୁଷାର୍ଥ କରିବାକୁ ହୁଏ କିନ୍ତୁ କୈବଲ୍ୟ ମୁକ୍ତିରେ ଭକ୍ତ କେବଳ ସର୍ବସ୍ୱ ସମର୍ପଣ କରି ସଂପୂର୍ଣ୍ଣ ଶରଣାଗତ ହୋଇ ହାତ ଗୋଡ଼ ଲମ୍ବାଇ ବସିଯାଏ । କାରଣ କୈବଲ୍ୟ ମୁକ୍ତି ପୁରୁଷାର୍ଥ ପରାୟଣ ନହୋଇ ଭଗବତ କୃପା ପ୍ରଧାନ ହୋଇଥାଏ । ଅନ୍ୟ ଶବ୍ଦରେ ଏହା ମୁକ୍ତିର ମୁକ୍ତି ଜୀବନ୍ ମୁକ୍ତି ଅଟେ ।

ପ୍ରଶ୍ନ-୯୯ : ଅନ୍ନଦାନ, ବସ୍ତ୍ରଦାନ, ଭୂଦାନ, ଗୋଦାନ, ସ୍ୱର୍ଣ୍ଣଦାନ ଆଦିଠାରୁ ଶ୍ରୀମଭାଗବତ ଗ୍ରନ୍ଥ ଦାନର ମହିମା ବେଶି କାହିଁକି ?

**ପ୍ରୌଷ୍ଠପଦ୍ୟାଂ ପୌର୍ଣ୍ଣମାସ୍ୟାଂ ହେମସିଂହ ସମନ୍ୱିତମ୍ ।**
**ଦଦାତି ଯୋ ଭାଗବତଂ ସ ଯାତି ପରମାଂ ଗତିମ୍ ।।୧୩।।**

ଉ. ଅନ୍ୟ ସବୁ ଦାନରେ କେବଳ ପୁଣ୍ୟ ଅର୍ଜନ କରାଯାଇଥାଏ । ଭାଦ୍ରବ ମାସରେ (ପ୍ରୌଷ୍ଠପଦ୍ୟାଂ) ପୂର୍ଣ୍ଣିମା ତିଥିରେ ସୁବର୍ଣ୍ଣ ଖଟୁଲି ( ହେମସିଂହ ସମନ୍ୱିତଂ) ସହିତ ଏହି ଗ୍ରନ୍ଥ ଭାଗବତଙ୍କୁ ଜଣେ ସନ୍ଥ ଭାଗବତଙ୍କୁ ସଭକ୍ତିକ କେବଳ ଦାନ କରିଦେଲେ ଗୋଲେକଧାମ ପ୍ରାପ୍ତି ହୁଏ ।

।। ଅପଣ୍ଡିତ ଦାମୋଦର ବଳିୟାରସିଂହ ।।

ପ୍ରଶ୍ନ-୧୦୦: ଶିବ ପୁରାଣ, ବିଷ୍ଣୁ ପୁରାଣ ଆଦିକୁ ବୈଷ୍ଣବମାନେ ଅତି ଆଦରରେ ଶ୍ରବଣ କୀର୍ତ୍ତନ କରିଥାନ୍ତି । ତଥାପି କେତେକ ସାଧୁ ସନ୍ଥମାନେ କେବଳ ଶ୍ରୀଭଭାଗବତଙ୍କୁ କାହିଁକି ଏତେ ଭବ୍ୟ ଦୃଷ୍ଟିରେ ଦେଖନ୍ତି ?

**ରାଜନ୍ତେ ତାବତ୍ ଅନ୍ୟାନି ପୁରାଣାନି ସତାଂ ଗଣେ ।**
**ଯାବତ୍ ଭାଗବତଂ ନ-ଏବ ଶ୍ରୂୟତେଽମୃତ ସାଗରମ୍ ॥୧୪॥**

ଉ. ଯେଉଁ ପର୍ଯ୍ୟନ୍ତ ସେମାନେ ଶ୍ରୀମଭାଗବତଙ୍କ ଆଶ୍ରୟ ଗ୍ରହଣ କରି ନଥାନ୍ତି ସେପର୍ଯ୍ୟନ୍ତ ଅନ୍ୟ ପୁରାଣମାନଙ୍କୁ ଶ୍ରଦ୍ଧା କରୁଥାଆନ୍ତି କିନ୍ତୁ ଥରେ ଭାଗବତଙ୍କ ସେବନ କଲେ ଦିବ୍ୟ ଅମୃତ ସାଗର ଛାଡ଼ି ଲୌକିକ ମିଷ୍ଟଦ୍ରବ୍ୟ ପ୍ରତି ଆଗ୍ରହ ପ୍ରକାଶ କରିବେ କେମିତି ?

ପ୍ରଶ୍ନ-୧୦୧: ବେଦଙ୍କୁ ସନାତନ ହିନ୍ଦୁ ଧର୍ମରେ କଳ୍ପବୃକ୍ଷର ମର୍ଯ୍ୟାଦା ଦିଆଯାଏ । ଚାରି ବେଦର ସାର ୧୧୨୦ଉପନିଷଦ ଗ୍ରନ୍ଥ । ସେମାନଙ୍କର ସାରଭୂତ ତତ୍ତ୍ୱ ପୁଣି ବେଦାନ୍ତ ସୂତ୍ର ଯାହା ଷଟ୍ ଦର୍ଶନ ଓ ପ୍ରସ୍ଥାନ ତ୍ରୟୀ ଉଭୟର ଅନ୍ତର୍ଗତ । ଶ୍ରୀମଭାଗବତ ଗ୍ରନ୍ଥ କ'ଣ ସେ ସବୁଠାରୁ ଆହୁରି ଅଧିକ ସ୍ୱତନ୍ତ୍ର କି ?

**ସର୍ବବେଦାନ୍ତ ସାରଂ ହି ଶ୍ରୀଭାଗବତଂ ଇଷ୍ୟତେ ।**
**ତତ୍‌ରସାମୃତ ତୃପ୍ତସ୍ୟ ନ-ଅନ୍ୟତ୍ର ସ୍ୟାତ୍ ରତିଃ କ୍ୱଚିତ୍ ॥୧୫॥**

ଉ. ଭାଗବତ ଗ୍ରନ୍ଥ ସେହି ବେଦ ବୃକ୍ଷର ସ୍ୱୟଂ ପତିତ ଚୋପା, ଟାକୁଆ ନଥିବା ଘନୀଭୂତ ରସମୟ ଫଳ ଯାହା ଶୁକ ଚଞ୍ଚୁଘାତ ଦ୍ୱାରା ପୂର୍ବରୁ ଭକ୍ତ ପରୀକ୍ଷିତଙ୍କ ଠାରେ ପରୀକ୍ଷା ହୋଇସାରିଛି । ଅତଏବ ଭାଗବତ ରସ ଆସ୍ୱଦନ ପରେ ଅନ୍ୟ କୌଣସି ସୁମିଷ୍ଟ ରସପ୍ରତି ଭକ୍ତର ସାମାନ୍ୟ ମଧ୍ୟ ଆଗ୍ରହ ଉପୁଜେ ନାହିଁ ।

ପ୍ରଶ୍ନ-୧୦୨: ପୃଥିବୀରେ ନଦୀମାନଙ୍କ ମଧ୍ୟରେ (ନିମ୍ନଗାନାଂ) ଗଙ୍ଗାନଦୀଙ୍କୁ ଏବଂ ଦେବୀ ଦେବତାମାନଙ୍କ ମଧ୍ୟରେ ଅଚ୍ୟୁତ ବା ମହାବିଷ୍ଣୁଙ୍କୁ ଶ୍ରେଷ୍ଠ କୁହାଯାଏ । ଶିବ ଭକ୍ତମାନେ ଶଙ୍କରଜୀଙ୍କୁ ଇଷ୍ଟ ମାନନ୍ତି ଓ ଅଚଳ ଭକ୍ତି କରନ୍ତି । ସେହିଭଳି ସର୍ବଶ୍ରେଷ୍ଠ ବୈଷ୍ଣବ ବୋଲି ସଂସାରରେ କାହାକୁ ମାନ୍ୟତା ପ୍ରଦାନ କରାଯାଏ ?

**ନିମ୍ନଗାନାଂ ଯଥା ଗଙ୍ଗା ଦେବାନାଂ ଅଚ୍ୟୁତୋ ଯଥା ।**
**ବୈଷ୍ଣବାନାଂ ଯଥା ଶମ୍ଭୁଃ ପୁରାଣାନାଂ ଇଦଂ ତଥା ॥୧୬॥**

ଉ. ଶଙ୍କରଜୀଙ୍କୁ (ଶମ୍ଭୁଃ) ବୈଷ୍ଣବ ଶ୍ରେଷ୍ଠ ଓ ଅଷ୍ଟାଦଶ ପୁରାଣ ମଧ୍ୟରେ ଶ୍ରୀମଭାଗବତଙ୍କୁ ଦଶଲକ୍ଷଣ ଯୁକ୍ତ ମହାପୁରାଣ ବା ପୁରାଣ ତିଳକ କୁହାଯାଏ ।

ପ୍ରଶ୍ନ-୧୦୩: ସତ୍ୟଯୁଗରେ ବଦ୍ରିନାଥ, ତ୍ରେତାଯୁଗରେ ରାମେଶ୍ୱର, ଦ୍ୱାପର ଯୁଗରେ ଦ୍ୱରିକା ନାଥ ଓ କଳିଯୁଗର ପୁରୁଷୋତ୍ତମ ଧାମଙ୍କୁ ତୀର୍ଥଶ୍ରେଷ୍ଠ କୁହାଯାଏ । ଏମାନଙ୍କ ମଧ୍ୟରେ ପରମବୈଷ୍ଣବ ଶ୍ରୀ ଶଙ୍କର ଭଗବାନ କାଶୀଧାମଙ୍କ କାହିଁକି ଶ୍ରେଷ୍ଠ (ଅନୁତ୍ତମା) ତୀର୍ଥର ମାନ୍ୟତା ମିଳିନାହିଁ ?

**କ୍ଷେତ୍ରାଣାଂ ଚ-ଏବ ସର୍ବେଷାଂ ଯଥା କାଶୀ ହି-ଅନୁତ୍ତମା ।**
**ତଥା ପୁରାଣ ବ୍ରାତାନାଂ ଶ୍ରୀମଦ୍ଭାଗବତଂ ଦ୍ୱିଜା ॥୧୭॥**

ଉ. ସୂତଜୀ ମହାରାଜଜୀ ପରିଷ୍କାର ଭାବରେ ଶୁଣାଇ କହିଲେ, ''ହେ ଶୌନକାଦି ମୁନିଗଣ (ଦ୍ୱିଜା), ଅନ୍ୟ ତୀର୍ଥମାନେ ସିନା କେବଳ ଗୋଟିଏ ଗୋଟିଏ ଯୁଗରେ ଶ୍ରେଷ୍ଠ ବୋଲାନ୍ତି ମାତ୍ର ଏହି ପବିତ୍ର ଶିବକ୍ଷେତ୍ର କାଶୀ ଚାରିଯୁଗରେ ଶ୍ରୀମଦ୍ଭାଗବତଙ୍କ ସଦୃଶ ନିଜର ଶ୍ରେଷ୍ଠତମତାର ଗୌରବ ପତକା ଉଡ଼ାଇଥାନ୍ତି ।''

ପ୍ରଶ୍ନ-୧୦୪: ଅନ୍ୟାନ୍ୟ ପୁରାଣମାନେ ସତ୍ୱଗୁଣୀ, ରଜୋଗୁଣୀ କିମ୍ବା ତମୋଗୁଣୀ ବୋଲି ଗଣାଯିବା ବେଳେ ଭାଗବତ ସଂପୂର୍ଣ୍ଣ ଗୁଣାତୀତ (ଅମଳଂ) ବୋଲିପରମହଂସ ଜ୍ଞାନୀ ଓ ଗୋସ୍ୱାମୀ ଉକ୍ତ ସମାଜରେ ଅତ୍ୟନ୍ତ ଆଦରଣୀୟ ଅଟନ୍ତି କାହିଁକି ?

**ଶ୍ରୀମଦ୍ଭାଗବତଂ ପୁରାଣଂ ଅମଳଂ ଯତ୍ ବୈଷ୍ଣବାନାଂ ପ୍ରିୟଂ**
**ଯସ୍ମିନ୍ ପାରମହଂସ୍ୟଂ ଏକଂ ଅମଳଂ ଜ୍ଞାନଂ ପରଂ ଗୀୟତେ ।**
**ତତ୍ର ଜ୍ଞାନ ବିରାଗ ଭକ୍ତି ସହିତଂ ନୈଷ୍କର୍ମ୍ୟଂ ଆବିଷ୍କୃତଂ**
**ତତ୍ ଶୃଣ୍ୱନ୍ ବିପଠନ୍ ବିଚାରଣ ପରୋ ଭକ୍ତ୍ୟା ବିମୁଚ୍ୟେତ୍ ନରଃ ॥୧୮॥**

ଉ. କାରଣ ଅନ୍ୟ ପୁରାଣରେ ଜ୍ଞାନ, ଭକ୍ତି, ବୈରାଗ୍ୟ ମଧ୍ୟରେ କେବଳ ଗୋଟିଏ କିମ୍ବା ଦୁଇଟି ଲକ୍ଷଣର ପ୍ରାଧନ୍ୟ ଥାଏ କିନ୍ତୁ ଭାଗବତରେ ତିନୋଟି ଯାକ ଲକ୍ଷଣ ଛତ୍ରେ ଛତ୍ରେ ପତ୍ରେ ପତ୍ରେ ବିଦ୍ୟମାନ । ସେଥିରେ ପୁଣି ଏକ ନୂଆ କଥାର ଅବତାରଣା (ଆବିଷ୍କୃତଂ) କରାଯାଇଛି । ଯାହାର ନାମ ନୈଷ୍କର୍ମ୍ୟ । ଯେଉଁଥିରେ କର୍ମ ତ କରଯାଏ କିନ୍ତୁ କର୍ମର ଫଳ ଶୁଭ କିମ୍ବା ଅଶୁଭ, ପାପ କିମ୍ବା ପୁଣ୍ୟ ଯାହା ବି ହେଉ କର୍ତ୍ତାକୁ ବାନ୍ଧିପାରେ ନାହିଁ । କାରଣ କର୍ମ କରିବା ପୂର୍ବରୁ ସାଧକ କର୍ମ ଫଳକୁ କୃଷ୍ଣଙ୍କୁ ଅର୍ପଣ କରିସାରିଥାଏ । ଏହା ଗୀତା ବର୍ଣ୍ଣିତ ନିଷ୍କାମ କର୍ମଠାରୁ ବହୁ ଉଚ୍ଚରେ ।

ଏହି ଶ୍ରୀମଦ୍ଭାଗବତ ପୁରାଣକୁ ଶ୍ରଦ୍ଧା ବିଶ୍ୱାସ ସହକାରେ ଶ୍ରବଣ, ପଠନ,

ମନନ କଲେ (ବିଚାରଣ ପରୋ) ଭକ୍ତ ଯେଉଁ ପ୍ରେମ ଭକ୍ତି ପ୍ରାପ୍ତି ହୁଏ ତାହା ପାଞ୍ଚ ପ୍ରକାର ମୋକ୍ଷକୁ ତୁଚ୍ଛ କରିପାରୁଥିବା ଜୀବନ୍ମୁକ୍ତି ଦେଇ ଦିଅନ୍ତି । ତେଣିକି କୃଷ୍ଣ ଭକ୍ତ ହୁଏ ମାଲାମାଲ୍ । ଗୀତା ଦିଅନ୍ତି ଦୁଃଖରୁ ମୁକ୍ତି । ଭାଗବତ ଦେବେ ମୁକ୍ତିରୁ ମୁକ୍ତି କୃଷ୍ଣ ପ୍ରେମ ।

ପ୍ରଶ୍ନ-୧୦୫: ଆଉ ମାତ୍ର ଚାରି ଶ୍ଳୋକ ପରେ ଭାଗବତ ମହାଗ୍ରନ୍ଥ ବିଶ୍ରାମ ନେବେ । ସୁତରାଂ ପ୍ରଭୁ ବନ୍ଦନା, ଗୁରୁ ବନ୍ଦନା, ଭକ୍ତି ଯାଚନା ସହିତ ଆଶ୍ରୟ ପ୍ରାପ୍ତି ଯଥାକ୍ରମେ ଚାରି ଶ୍ଳୋକରେ ସ୍ଥାନ ପାଇଛନ୍ତି । ଏହି ଶ୍ଳୋକରେ ନର-ନାରାୟଣଙ୍କ ନାମ ଉଲ୍ଲେଖ କରାନଯାଇ ଭଗବାନ ବାସୁଦେବଙ୍କୁ ଇଷ୍ଟ ରୂପେ ଉଲ୍ଲେଖ କରିବାର କାରଣ କ'ଣ ହୋଇପାରେ ?

**ନମଃ ତସ୍ମୈ ଭଗବତେ ବାସୁଦେବାୟ ସାକ୍ଷିଣେ ।**
**ଯ ଇଦଂ କୃପୟା କସ୍ମୈ ବ୍ୟାଚଚକ୍ଷେ ମୁମୁକ୍ଷବେ ॥୨୦॥**

ଉ. ମହାବୈକୁଣ୍ଠ ବିହାରୀ ନାରାୟଣ ଅବଶ୍ୟ ଭଗବାନଙ୍କର ସକଳ ଐଶ୍ୱର୍ଯ୍ୟର ଘନୀଭୂତ ବିଗ୍ରହବାନ ଠାକୁର । ବାସୁଦେବ କୃଷ୍ଣ ଗୋଲୋକ ବିହାରୀ ପୁଣି ଆଉ ଚାରିଟି ଅଧିକ ଗୁଣର ଅଧିକାରୀ । ସେଗୁଡ଼ିକ ହେଲା ୧. ରୂପ ମାଧୁରୀ, ୨. ପ୍ରେମ ମାଧୁରୀ, ୩. ମୁରଲୀ ମାଧୁରୀ ଓ ୪.ବାଳ ଲୀଳା ମାଧୁରୀ ଯାହା ପ୍ରତ୍ୟେକ ମନ୍ୱନ୍ତର ପରେ ହେଉଥିବା ଶ୍ରୀମନ୍ ନାରାୟଣଙ୍କ ଅବତାରମାନଙ୍କରେ ଅନୁପଲବ୍‌ଧ ।

ସୃଷ୍ଟିରେ ତିନି ପ୍ରକାରର କୃଷ୍ଣ ଅବତାର ହୁଅନ୍ତି । ଏକ ମନ୍ୱନ୍ତରରେ ୭୧ ଚତୁର୍ଯୁର୍ଗ ମଧ୍ୟରେ ୭୦ଟି ଦ୍ୱାପରଯୁଗରେ ସତ୍ୟଲୋକସ୍ଥିତ ବୈକୁଣ୍ଠବିହାରୀ ବିଷ୍ଣୁ କୃଷ୍ଣ ରୂପେ ଅଭିନୟ କରନ୍ତି ତାଙ୍କର ଲୀଳା ପରିକରମାନଙ୍କୁ ଧରି । କେବଳ ଗୋଟିଏ ଦ୍ୱାପରରେ ମହାବୈକୁଣ୍ଠ ବିହାରୀ ମହାନାରାୟଣଙ୍କୁ ଏ କୃଷ୍ଣଲୀଳା କରିବାକୁ ପଡ଼ିଥାଏ । ସେହି ନ୍ୟାୟରେ ଏକ କଳ୍ପକାଳରେ ଚଉଦ ମନ୍ୱନ୍ତରରେ ତେର ଥର ନାରାୟଣ କୃଷ୍ଣଲୀଳା କଲାବେଳେ ମାତ୍ର ଗୋଟିଏ ଥର ସ୍ୱୟଂ ଗୋଲୋକ ବିହାରୀ କୃଷ୍ଣ ବାସୁଦେବଙ୍କୁ ଲୀଳା ଅଭିନୟ କରିବାକୁ ହୋଇଥାଏ । ତାଙ୍କରି ନିର୍ଦ୍ଦେଶରେ ଭଗବାନ ନାରାୟଣ କଳ୍ପ ଆରମ୍ଭବେଳେ ବ୍ରହ୍ମାଙ୍କୁ (କସ୍ମୈ) ମରଣ ଭୟ ଏବଂ ସଂସାର ଭୟରୁ (ଭବ ଅର୍ଥ ଜନ୍ମ ଓ ସଂସାର ଉଭୟ)ମୁକ୍ତ କରିବାକୁ (ମୁମୁକ୍ଷବେ ) ସଂକ୍ଷିପ୍ତ ଚତୁଃଶ୍ଳୋକୀ ଭାଗବତ ଉପଦେଶ ଦେଇଥିବା କଥା କୁହାଯାଇଛି ।

ପ୍ରଶ୍ନ-୧୦୬: ଗୁରୁ ବନ୍ଦନା ଶ୍ଳୋକରେ ସୂତଜୀ ଶୁକଦେବଙ୍କୁ ଯୋଗୀନ୍ଦ୍ରାୟ କହିବାର ତାତ୍ପର୍ଯ୍ୟ(ଭିତିରିଆ) ଅର୍ଥ କଅଣ ?

**ଯୋଗୀନ୍ଦ୍ରାୟ ନମଃ ତସ୍ମୈ ଶୁକାୟ ବ୍ରହ୍ମରୂପିଣେ ।**
**ସଂସାର ସର୍ପ ଦଷ୍ଟଂ ଯୋ ବିଷ୍ଣୁରାତଂ ଅମୂମୁଚତ୍ ॥୨୧॥**

ଉ. ଗୀତା ଗ୍ରନ୍ଥ ଅନୁସାରେ କର୍ମଯୋଗୀ, ଧ୍ୟାନଯୋଗୀ ଓ ଜ୍ଞାନଯୋଗୀ ସମସ୍ତେ ଅବଶ୍ୟ ଯୋଗୀ । ଭକ୍ତିଯୋଗୀ କେବଳ ଯୋଗୀନ୍ଦ୍ର ବା ଯୋଗୀ ଶ୍ରେଷ୍ଠ । ବଶିଷ୍ଠ, ପରାଶର, ଶକ୍ତି, ବ୍ୟାସ ଏମାନେ ସମସ୍ତେ ମୁନି ପଦବାଚ୍ୟ । ଶୁକଦେବ ଶ୍ରୀରାଧାଙ୍କ ପ୍ରେମ, ଶ୍ରୀକୃଷ୍ଣଙ୍କ ଐଶ୍ୱର୍ଯ୍ୟ ଓ ଶ୍ରୀ ଶଙ୍କରଙ୍କର ବୈରାଗ୍ୟର ମିଳିତ ଘନୀଭୂତ ବିଗ୍ରହ ହୋଇଥିବାରୁ ମୁନୀନ୍ଦ୍ର ସମ୍ମାନର ଅଧିକାରୀ । ରାଜା ପରୀକ୍ଷିତ କିଛି ସାମାନ୍ୟ ଶ୍ରୋତା ନଥିଲେ । ସେ ଜଣେ ହାଇ ପ୍ରୋଫାଇଲ୍‌ର ଶ୍ରୋତା । ମାତୃଗର୍ଭରେ ସେ କୃଷ୍ଣ କୃପା ପ୍ରାପ୍ତ କୃଷ୍ଣ ଦର୍ଶନ କରିବା ବାଲା ହରିଭକ୍ତ । ସେଇ ବିଷ୍ଣୁ ରକ୍ଷିତ ବା ବିଷ୍ଣୁରାତଙ୍କୁ ବ୍ରହ୍ମଶାପ କବଳରୁ ମୁକ୍ତ କରିବାର ଗୁରୁଦାୟିତ୍ୱ ଶୁକଦେବଙ୍କୁ ମୁଣ୍ଡାଇବାକୁ ପଡ଼ିଥିଲା । ସେଥିରେ ସଫଳ ହେବାର ଦେଖି ସୂତଜୀ ତାଙ୍କୁ ମୁନୀନ୍ଦ୍ର କହି ଅତ୍ୟନ୍ତ ବିନମ୍ର ବନ୍ଦନା କରିଛନ୍ତି ।

ପ୍ରଶ୍ନ-୧୦୭: ହୋସ୍ ଆସିଗଲେ ଜୀବ ଭଗବାନଙ୍କୁ ଭକ୍ତି ବ୍ୟତୀତ ଅନ୍ୟ କିଛି ମାଗି ପାରେ ନାହିଁ । ଦୃଷ୍ଟାନ୍ତ ଧ୍ରୁବ, ପ୍ରହ୍ଲାଦ, ଅମ୍ବରୀଶ, ହନୁମାନ ଇତ୍ୟାଦି । ଯାଚନାବେଳେ ସୂତଜୀ କାହିଁକି ଭଗବାନଙ୍କୁ ଦେବେଶ, ପ୍ରଭୋ କହିବା ସହିତ ନାଥ ବୋଲି ସମ୍ବୋଧନ କଲେ ?

**ଭବେ ଭବେ ଯଥା ଭକ୍ତିଃ ପାଦୟୋଃ ତବ ଜାୟତେ ।**
**ତଥା କୁରୁଷ୍ୱ ଦେବ-ଈଶ ନାଥଃ ତ୍ୱଂ ନୋ ଯତଃ ପ୍ରଭୋ ॥୨୨॥**

ଉ. ସୂତଜୀ ନିଜର ହୃଦୟ କପାଟ ଖୋଲି ଉଦ୍‌ଗାର କରୁଛନ୍ତି, "ପ୍ରଭୋ, ଆପଣ ଏଭଳି କୃପା କରନ୍ତୁ ଆପଣଙ୍କ ଚରଣ ଯୁଗଳରେ ଜନ୍ମ-ଜନ୍ମାନ୍ତର (ଭବେ ଭବେ) ଆମ୍ଭମାନଙ୍କର(କେବଳ ମୋର ନୁହେଁ ସକଳ ଭାଗବତ ବକ୍ତା ଓ ଶ୍ରୋତାମାନଙ୍କର) ନିରନ୍ତର, ନିଷ୍କାମ ଏବଂ ଅନନ୍ୟ ଭକ୍ତି ହେଉଥାଉ । ମନୁଷ୍ୟ, ରାକ୍ଷସ, ଦେବତା, ପଶୁପକ୍ଷୀ, କୀଟ ପତଙ୍ଗ, ବୃକ୍ଷଲତା ଜନ୍ମ ଯାହାବି ହେଉ ପଛକେ ହୃଦୟରେ ଭକ୍ତି ରତ୍ନ ଟିକକ ସାଇତା ହୋଇ ରହୁ ସେଇ ବ୍ୟବସ୍ଥା କରିଦିଅନ୍ତୁ ।

ଆପଣ କେବଳ ଆମର ଏକ ମାତ୍ର ନାଥ ବା ନ ଅଥ (ଅନ୍ୟ ଗତି ) ।''

ପ୍ରଶ୍ନ-୧୦୮ : ଆଶ୍ରୟ ପ୍ରାପ୍ତି ଶ୍ଳୋକରେ ବକ୍ତା ମହାଶୟ କାହା ନାମ ଧରି ସେତେବେଳେ ପ୍ରଣାମ, ନମସ୍କାର ଓ ନମନ କଲେ ?

**ନାମ ସଂକୀର୍ତ୍ତନଂ ଯସ୍ୟ ସର୍ବପାପ ପ୍ରଣାଶନମ୍ ।**
**ପ୍ରଣାମୋ ଦୁଃଖ ଶମନଃ ତଂ ନମାମି ହରିଂ ପରମ୍ ॥୨୩॥**

ଉ. ସେ ଗ୍ରନ୍ଥ ଆରମ୍ଭରେ ଏବଂ ଗ୍ରନ୍ଥ ସମାପ୍ତିରେ ସେଇ ପରମସତ୍ୟଙ୍କ ଆବିଷ୍କାର ସ୍ୱରୂପ ଶ୍ରୀହରିଙ୍କ ନାମ (ହରିଂ ପରମ୍ ) ଉଚ୍ଚାରଣ କଲେ ଯାହାଙ୍କ କଥା ଶ୍ରବଣ, କୀର୍ତ୍ତନ, ସ୍ମରଣ କଲେ ସକଳ ପାପ, ଦୁଃଖରୁ ମୁକ୍ତିମିଳେ ଓ ବିଭୁ ପଦାର ବିନ୍ଦରେ ପ୍ରେମ ପ୍ରାପ୍ତିହୁଏ ।

## ୪୩. ନିର୍ଗୁଣ ନିରାକାର ବ୍ରହ୍ମ ଆଶ୍ରୟ ପ୍ରକରଣ ସାର

### ଅଧ୍ୟାୟ ୭ମ-୧୩ଶ

ଜୀବକୁ ବ୍ରହ୍ମ କଅଣ ଚିହ୍ନାଇ ଦେବା ଶ୍ରୀମଦ୍‌ଭଗବତ ଗୀତାଙ୍କର କାମ । ସେଇ ଜୀବକୁ ପ୍ରେମ ରସ ଆସ୍ୱାଦନ କରାଇବା ଶ୍ରୀମଦ୍‌ଭାଗବତଙ୍କର ଦାୟିତ୍ୱ । ଭାଗବତ ସକାମକୁ କରନ୍ତି ନିଷ୍କାମ । ପୁଣି ନିଷ୍କାମକୁ କରନ୍ତି କୃଷ୍ଣକାମ । ଦୃଷ୍ଟାନ୍ତ ଶୁକଦେବ ପରମହଂସ । ପୁଣି ଗୀତା ଅଜ୍ଞାନୀକୁ କରନ୍ତି ଜ୍ଞାନୀ । ଭାଗବତ ଜ୍ଞାନୀକୁ କରନ୍ତି ଜ୍ଞାନ ନିରଭିମାନୀ ବା ଜ୍ଞାନ ନିରହଂକାରୀ ।

ବ୍ୟାସ, ବଶିଷ୍ଠ, ଶୁକ, ଧ୍ରୁବ ପ୍ରହ୍ଲାଦଙ୍କ ଭଳି ସାଧକମାନେ ଆଜନ୍ମ ଶୁଭ ସଂସ୍କାର ଯୁକ୍ତ ବୋଲି ଉଚ୍ଚଅଧିକାରୀ ବୋଲାଇ ଶୈଶବରୁ ସଗୁଣ ସାକାର ଭଗବାନ ଶ୍ରୀହରିଙ୍କର ଆଶ୍ରୟ ନେଇ ପାରନ୍ତି । ଅନ୍ୟମାନଙ୍କୁ ମଧ୍ୟ ଶ୍ରୀହରିଙ୍କ ଆଶ୍ରୟ ପ୍ରାପ୍ତିର ରହସ୍ୟମୟ ମାର୍ଗକୁ ଟାଣି ନେଇ ପାରନ୍ତି ।

ଦ୍ୱାଦଶ ସ୍କନ୍ଧର ଏହି ଦ୍ୱିତୀୟ ପ୍ରକରଣରେ କିନ୍ତୁ ଆମଭଳି ନିମ୍ନ ଅଧିକାରୀ,

ଅଳ୍ପ ଶୁଭ ସଂସ୍କାର ଯୁକ୍ତ ସାଧକମାନଙ୍କ ପାଇଁ ଶ୍ରୀମଦ୍ଭାଗବତ ଅଣ୍ଟା ଭିଡ଼ିଛନ୍ତି ନିର୍ଗୁଣ ନିରାକାର ବ୍ରହ୍ମ(ଓଁ)ଙ୍କର ଆଶ୍ରୟ ଯୋଗାଇଦେବାକୁ । ବ୍ରହ୍ମଜ୍ଞାନ ଶାସ୍ତ୍ରରେ ନାମନାମୀଙ୍କୁ ଅଭେଦ କହିଲେ ମଧ୍ୟ ନାମୀଙ୍କଠାରୁ ନାମ ଅଧିକ ବଳବାନ, ଲାଭପ୍ରଦ ବୋଲି କହନ୍ତି । ଦୃଷ୍ଟାନ୍ତରେ କହନ୍ତି ଶ୍ରୀରାମ ତାଙ୍କ ଅବତାର କାଳରେ କେବଳ କେତେକ ମୁଷ୍ଟିମେୟ ଲୋକଙ୍କୁ ଉଦ୍ଧାର କରିଥିଲେ । ତାଙ୍କ ନାମ କିନ୍ତୁ ଆଜି ଅସଂଖ୍ୟ ଲୋକଙ୍କୁ ରାମପ୍ରେମର ସ୍ୱାଦ ଚଖାଉଛନ୍ତି ନିଜ ଅଲୌକିକ ଶକ୍ତି ବଳରେ । ତୁଳସୀଦାସଙ୍କ ମତରେ ପ୍ରଭୁ ରାମ ମଧ୍ୟ ରାମ ନାମର ମାହାତ୍ମ୍ୟ ଗାନ କରିବାରେ ଅସମର୍ଥ ।

ଭାଗବତଙ୍କର ଏହି ପ୍ରକରଣ ଓଁକାର ନାମଙ୍କର ମୂଳଉତ୍ସ ସୂର୍ଯ୍ୟନାରାୟଣ ବୋଲି ଘୋଷଣା କରିଛନ୍ତି । ସୂର୍ଯ୍ୟ ହିଁ ଭଗବାନ ମହାବିଷ୍ଣୁଙ୍କର ବିରାଟ ରୂପରସୂର୍ଯ୍ୟକିରଣ ରୂପରେ ତାଙ୍କର ପ୍ରତୀକ ଶକ୍ତି ଓ ଭୌତିକ ସୂର୍ଯ୍ୟ ଦେବ ରୂପରେ ସେ ଶକ୍ତିମାନ ଉଭୟ । ସଂସାରର ସୃଷ୍ଟି, ପାଳନ ଓ ସଂହାର ତିନିକଥା ସୂର୍ଯ୍ୟ ହିଁ କରିଥାନ୍ତି । ସୂର୍ଯ୍ୟ ମଧ୍ୟ କାଳର ବା ସମୟର ନିୟାମକ । ସକଳ ଜୀବ ଜନ୍ତୁଙ୍କର ସ୍ଥୂଳ ଶରୀରକୁ ଜନ୍ମଦେଇ ବୃଦ୍ଧି, ପରିବର୍ତ୍ତନ, ଅପକ୍ଷୟ, ମୃତ୍ୟୁ ମୁଖରେ ପହଞ୍ଚାଇବା ସହିତ ସୂକ୍ଷ୍ମ ଶରୀରକୁ ଉପଯୁକ୍ତ ଲୋକରେ ସ୍ଥାନିତ କରିବା ମଧ୍ୟ ତାଙ୍କର ଦାୟିତ୍ୱ । ସେ ସୃଷ୍ଟିର ସର୍ବପ୍ରଥମ ଓ ସର୍ବଶ୍ରେଷ୍ଠ ନିଷ୍କାମ କର୍ମଯୋଗୀ । ଗୀତାଙ୍କ ବାଣୀ ଅନୁସାରେ ଭଗବାନ ସର୍ବ ପ୍ରଥମେ କର୍ମଯୋଗର ରହସ୍ୟ ସୂର୍ଯ୍ୟଙ୍କୁ ଉପଦେଶ ଦେଇଥାଆନ୍ତି । ପରେ ପରେ ସୂର୍ଯ୍ୟଙ୍କଠାରୁ ଶିକ୍ଷା ଲାଭ କରି ଅନ୍ୟାନ୍ୟ ମୁନି, ଋଷିଗଣ ଗାୟତ୍ରୀ ମନ୍ତ୍ରରେ ତାଙ୍କ ଆରାଧନା କରି ସୂର୍ଯ୍ୟ ଓ ସୂର୍ଯ୍ୟଙ୍କର ନିୟନ୍ତ୍ରଣ କର୍ତ୍ତା ନାରାୟଣଙ୍କୁ ଜାଣନ୍ତି । ଉଭୟଙ୍କର ଆରାଧନା କରି ଦୁସ୍ତର ଭବସାଗର ଓ ଦୁର୍ଜ୍ଜୟା ମାୟାକୁ ଜିଣି ଜୀବନର ଲକ୍ଷ୍ୟ ପ୍ରାପ୍ତ ହୁଅନ୍ତି । ମାର୍କଣ୍ଡେୟ ମୁନି କାଳଜୟୀ ହେଲେ ଏବଂ ମାୟା ଦର୍ଶନ କଲେ ସେଇ ନାରାୟଣଙ୍କ ଶରଣାପନ୍ନ ହୋଇ । ସୁତରାଂ କାଳ ଅଧୀନ ମନୁଷ୍ୟକୁ ଏକ ମହାନ୍ ଶିକ୍ଷା ମିଳିଲା ଶ୍ରୀମନ୍ ନାରାୟଣଙ୍କର ଶରଣାଗତିକୁ ସାଦରେ ଗ୍ରହଣ କରିନେବା ପାଇଁ । ସବୁଠାରୁ ମଜାଦାର ରହସ୍ୟଟି ହେଲା ଯେ ନିର୍ଗୁଣ ନିରାକାର ବ୍ରହ୍ମଙ୍କୁ ସାଧକ ଆଶ୍ରୟ କରି ପହଞ୍ଚେ ପୁଣି ସଗୁଣ ନିରାକାର ପରମାତ୍ମା ଶ୍ରୀମନ୍ ନାରାୟଣଙ୍କ ଦରବାରରେ ଯେଉଁଠାରେ ଯଥାକ୍ରମେ ସାଲୋକ୍ୟ, ସାମୀପ୍ୟ, ସାରୂପ୍ୟ ଓ ସାର୍ଷ୍ଟିମୁକ୍ତିଙ୍କର ଅବସର ମିଳେ ସାଧକକୁ ଯଦି ସେ ଶକ୍ତି (କିରଣ, ଜ୍ୟୋତି) ଧ୍ୟାନ ନ କରି ଶକ୍ତିମାନଙ୍କ ଧ୍ୟାନ କରିଥାଏ ତେବେ ସେ ସାଯୁଜ୍ୟ ମୁକ୍ତି ପ୍ରାପ୍ତ ହୋଇଥାଏ । ଦୁଇ ପ୍ରକାର ଧ୍ୟାନରୁ

ଯେ କୌଣସି ଗୋଟିଏ ଧ୍ୟାନ କରିବା ସାଧକର ଇଚ୍ଛାଧୀନ ବିଷୟ । ସେ ଅଧିକାରରେ ଭଗବାନ ନାରାୟଣ ଆଦୌ ହସ୍ତକ୍ଷେପ କରି ନଥାନ୍ତି ।

ଭକ୍ତି, ଭକ୍ତ, ଭଗବାନ, ଗୁରୁଙ୍କର ଜୟ ହେଉ ।

ଇତି ଶ୍ରୀମଦ୍ ଭାଗବତେ ମହାମୁନି କୃତେ ମହାପୁରାଣେ ବୈୟାସିକ୍ୟାଂ
ଅଷ୍ଟାଦଶ ସାହସ୍ର୍ୟାଂ ପାରମହଂସ୍ୟାଂ ସଂହିତାୟାଂ ଦ୍ୱାଦଶସ୍କନ୍ଧଃ ସମାପ୍ତଃ ।

। ।ହରିଃ ଓଁ ତତ୍‌ସତ୍ । ।

ଶ୍ରୀକୃଷ୍ଣାର୍ପଣଂ ଅସ୍ତୁ

-୦-

ପରିଶିଷ୍ଟ-୧

# ଚାରିବେଦଙ୍କ ସାର

## ବୈଦିକ କର୍ମକାଣ୍ଡ, ଜ୍ଞାନକାଣ୍ଡ ଓ ଉପାସନା କାଣ୍ଡରେ ତିନି ଗତି

| ମାର୍ଗ | ଆଶ୍ରୟ | ଲକ୍ଷ୍ୟ |
|---|---|---|
| ୧.କର୍ମକାଣ୍ଡ | ବ୍ରହ୍ମ ବା ଧର୍ମ ବା ଓଁକାର | ସାତ୍ତ୍ୱିକ ସୁଖ ପ୍ରାପ୍ତି (ଜୀବନ କାଳେ ବା ମୃତ୍ୟୁପରେ) |
| ୨.ଜ୍ଞାନକାଣ୍ଡ | ପରମାତ୍ମା ଶ୍ରୀଲକ୍ଷ୍ମୀ ନାରାୟଣ କିମ୍ବା ସୂର୍ଯ୍ୟ ନାରାୟଣ | ସାତ୍ତ୍ୱିକ ଭକ୍ତି ପ୍ରାପ୍ତି |
| ୩.ଉପାସନା କାଣ୍ଡ | ଶ୍ରୀରାଧାକୃଷ୍ଣ | ସାତ୍ତ୍ୱିକ ଜ୍ଞାନ ପ୍ରାପ୍ତି |

ପରିଶିଷ୍ଟ-୨

## ୧୦୮ ଉପନିଷଦ ବା ଗୀତାଙ୍କ ସାର

| କାହାର ଆଶ୍ରୟ | କେଉଁ ଯୋଗ ଦ୍ୱାରା | କେଉଁ ଚିଜ ପ୍ରାପ୍ତି |
| --- | --- | --- |
| ୧.ବ୍ରହ୍ମ ବା ଧର୍ମ ବା ଓଁକାର | କର୍ମଯୋଗ (ଜ୍ୟୋତିଧ୍ୟାନ) | ମହ,ଜନ,ତପ ସତ୍ୟଲୋକରେ ବୈକୁଣ୍ଠ ଆନନ୍ଦ |
| ୨.ପରମାତ୍ମା ଶ୍ରୀଲକ୍ଷ୍ମୀ ନାରାୟଣ କିମ୍ବା ସୂର୍ଯ୍ୟ ନାରାୟଣ | ଜ୍ଞାନଯୋଗ (ସୂର୍ଯ୍ୟଙ୍କଧ୍ୟାନ) | ମହାବୈକୁଣ୍ଠରେ ପାଞ୍ଚ ମୁକ୍ତି ଆନନ୍ଦ |
| ୩.ଭଗବାନ ଶ୍ରୀରାଧାକୃଷ୍ଣ | ଭକ୍ତିଯୋଗ (ଶ୍ରୀରାଧାକୃଷ୍ଣ ) | ଗୋଲୋକ ଧାମରେ ସେବା ବା ପ୍ରେମ ଆନନ୍ଦ |

ପରିଶିଷ୍ଟ-୩

# ଷଟ୍ ଦର୍ଶନ ସାର

| ପ୍ରଦର୍ଶିତ ମାର୍ଗ | ଅନ୍ତିମ ଲକ୍ଷ୍ୟ |
|---|---|
| ୧. ସାଂଖ୍ୟ ଦର୍ଶନ (କପିଳ ମୁନି) | ଆତ୍ୟନ୍ତିକ ଦୁଃଖ ନିବୃତ୍ତି(ପାଞ୍ଚ ମୁକ୍ତି) |
| ୨.ଯୋଗ ଦର୍ଶନ (ପତଞ୍ଜଳି ମୁନି) | ଆତ୍ୟନ୍ତିକ ଦୁଃଖ ନିବୃତ୍ତି(ପାଞ୍ଚ ମୁକ୍ତି) |
| ୩. ନ୍ୟାୟ ଦର୍ଶନ (ଗୌତମ ଋଷି) | ଆତ୍ୟନ୍ତିକ ଦୁଃଖ ନିବୃତ୍ତି(ପାଞ୍ଚ ମୁକ୍ତି) |
| ୪.ବୈଶେଷିକ ଦର୍ଶନ (କଣାଦ ମୁନି) | ଆତ୍ୟନ୍ତିକ ଦୁଃଖ ନିବୃତ୍ତି(ପାଞ୍ଚ ମୁକ୍ତି) |
| ୫.କର୍ମ ମୀମାଂସା (ଜୈମିନି ମୁନି) | ଆତ୍ୟନ୍ତିକ ଦୁଃଖ ନିବୃତ୍ତି(ପାଞ୍ଚ ମୁକ୍ତି) |
| ୬.ବେଦାନ୍ତ ଦର୍ଶନ (ବ୍ୟାସ ମହାମୁନି) | **ପରମ ଆନନ୍ଦ ପ୍ରାପ୍ତି** |

**ପରିଶିଷ୍ଟ-୪**

## ଶ୍ରୀମଦ୍ ଭାଗବତ ମହାଗ୍ରନ୍ଥ ସାର

| ଜୀବର ଲକ୍ଷ୍ୟ | ଜୀବର ସାଧନ |
|---|---|
| (କ) ଇହଲୋକରେ ସିଦ୍ଧି ପ୍ରାପ୍ତି ସୁଖ, ପର ଲୋକରେ ସ୍ୱର୍ଗ ସୁଖ, ମହ-ଜନ-ତପ ଲୋକରେ କ୍ରମ ମୁକ୍ତି, ସତ୍ୟ ବା ବୈକୁଣ୍ଠ ଲୋକରେ ସାଲୋକ୍ୟାଦି ପାଞ୍ଚ ମୁକ୍ତି ଚାହିଁବା (ଶ୍ରୀକୃଷ୍ଣଙ୍କଠାରୁ କିଛି ଚାହିଁବା) | ସକାମ ଭକ୍ତି (ତ୍ରିଗୁଣାତ୍ମିକା ଭକ୍ତି) |
| (ଖ) କେବଳ ଶ୍ରୀକୃଷ୍ଣଙ୍କୁ କିମ୍ବା ଶ୍ରୀକୃଷ୍ଣଙ୍କ ପ୍ରେମକୁ ଚାହିଁବା | ନିଷ୍କାମ ଭକ୍ତି (ନିର୍ଗୁଣୀ ଭକ୍ତି ବା ଐକାନ୍ତିକ ଭକ୍ତି) |

।। ପଣ୍ଡିତ ଦାମୋଦର୍ ବକ୍ସୀୟାରସିଂହ ।।

**୫୦ ମହାନ୍ ଗୁଣ ଅଧିକାରୀ ବିଶିଷ୍ଟ ମହାପୁରୁଷ ଲକ୍ଷଣ**

୧. ସତ୍ୟବାଦିତା
୨. ଦୟାଶୀଳତା
୩. କ୍ଷମାଶୀଳତା
୪. ସହିଷ୍ଣୁତା
୫. ଆତ୍ମାରାମ
୬. ଶରଣଦାତା ଇତ୍ୟାଦି ୪୯ ଗୁଣ

... ... ... ... ... ... ... ... ...

୫୦. ସର୍ବଜନ ପୂଜ୍ୟ

**ଅଧିକ ୫ ବିଶିଷ୍ଟ ଗୁଣ (ବ୍ରହ୍ମା, ବିଷ୍ଣୁ ଓ ଶଙ୍କର) ସତ୍ୟଲୋକ ବା ବୈକୁଣ୍ଠବାସୀ ଈଶ୍ୱରଙ୍କ ଲକ୍ଷଣ**

୫୧. ବ୍ରହ୍ମାଙ୍କ ଆୟୁଷ (ଦ୍ୱିପରାର୍ଦ୍ଧ) ଶେଷ ପର୍ଯ୍ୟନ୍ତ ପରିବର୍ତ୍ତନ ରହିତ ।
୫୨. ନିଜ ନିଜ ବ୍ରହ୍ମାଣ୍ଡଟି ବିଷୟରେ ସର୍ବଜ୍ଞ ।
୫୩. ନିଜ ସର୍ବମୟ ପ୍ରଭୁ ଶ୍ରୀମନ୍ ନାରାୟଣଙ୍କ ଆଦେଶ ପାଳନକାରୀ ।
୫୪. ପୂର୍ଣ୍ଣ ସଚ୍ଚିଦାନନ୍ଦ ଦିବ୍ୟ ଦେହଧାରୀ ।
୫୫. ନିଜ ନିଜ ମାୟାଶକ୍ତି ବଳରେ ସର୍ବଶକ୍ତିମାନ ।

**ଅଧିକ ୫ ବିଶିଷ୍ଟ ଗୁଣ ଥିବା ମହାବୈକୁଣ୍ଠବାସୀ ମହାବିଷ୍ଣୁ ବା ନାରାୟଣ ବା ପରମାତ୍ମାଙ୍କ ଲକ୍ଷଣ**

୫୬. ପ୍ରତ୍ୟେକ ବ୍ରହ୍ମାଣ୍ଡର ବ୍ରହ୍ମା, ବିଷ୍ଣୁ, ଶଙ୍କରଙ୍କୁ ନିୟନ୍ତ୍ରଣ କରୁଥିବା ଅଚିନ୍ତ ମାୟା ଶକ୍ତିର ଅଧିକାରୀ
୫୭. ଅନନ୍ତ କୋଟି ବ୍ରହ୍ମାଣ୍ଡ ମାନଙ୍କ ସୃଷ୍ଟି ପ୍ରଳୟର ମୂଳ ଉତ୍ସ ।
୫୮. ଅନନ୍ତକୋଟି ଅବତାରମାନଙ୍କର ମୂଳ ଉତ୍ସ ।
୫୯. ଆତ୍ମାରାମଗଣ ଆକର୍ଷଣକାରୀ ।
୬୦. ହତ ଅରି ଗତି ଦାୟକ ।

**ଆହୁରି ଅଧିକ ଅତି ବିଶିଷ୍ଟ ୪ଗୁଣ ଥିବା ଗୋଲୋକ ବିହାରୀ ଶ୍ରୀକୃଷ୍ଣ ଭଗବାନଙ୍କ ଲକ୍ଷଣ**

୬୧. ଦିବ୍ୟ ଅନନ୍ୟ ଅଲୌକିକ ରୂପମାଧୁରୀ ।
୬୨. ଦିବ୍ୟ ବାଳଲୀଳା ମାଧୁରୀ ।
୬୩. ଦିବ୍ୟ ପାର୍ଷଦମାନଙ୍କ ସହିତ ପ୍ରେମଲୀଳା ମାଧୁରୀ ।
୬୪. ଦିବ୍ୟ ମୂରଲୀ ମାଧୁରୀ ।